

## ଲିଓ ଟଲ୍‌ଷ୍ଟୟ

# ଯୁଦ୍ଧ ଓ ଶାନ୍ତି

# ଯୁଦ୍ଧ ଓ ଶାନ୍ତି

ପ୍ରଥମ ଖଣ୍ଡ

ଲେଖକ

ଲିଓ ଟଲଷ୍ଟୟ

ଅନୁବାଦକ

ଶ୍ରୀ ଗୋପୀନାଥ ମହାନ୍ତି

ପ୍ରକାଶକ



ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର

# ଯୁଦ୍ଧ ଓ ଶାନ୍ତି

ପ୍ରକାଶକ :
**ଶ୍ରୀ ଅନନ୍ତ ମିଶ୍ର**
**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ-୨**

ପ୍ରଥମ ସଂସ୍କରଣ :
୧୯୮୩

ପ୍ରଚ୍ଛଦ :
ଅସୀତ ମୁଖାର୍ଜୀ

ମୁଦ୍ରଣ :
**ପ୍ରସାଦ ପ୍ରେସ, କଟକ**
ଗଣେଶଘାଟ ରୋଡ଼, କଟକ-୨

ମୂଲ୍ୟ:
ବୋର୍ଡ଼ ବନ୍ଧାଇ ଟ ୩୫-୦୦
ସାଦା ବନ୍ଧାଇ ଟ ୩୦-୦୦

# WAR & PEACE

*Written by :*
**Lev Tolstoy**

*Translated by :*
**Sri Gopinath Mohanty.**

*Printer :*
**Sri R. P. Misra.**

Prasad Press
Ganeshghat Road, Cuttack-2

First Edition-1983

*Published :*
On behalf of
Sahitya Akademi, New-Delhi.
**Cuttack Students' Store, Cuttack-2**

*Price :*
Delux **Rs. 35-00**
Popular **Rs. 30-00**

## କ୍ଷମା ଭିକ୍ଷା

ଅସାଧାରଣ ପ୍ରତିଭାସମ୍ପନ୍ନ, ବିଶ୍ୱବିଖ୍ୟାତ ଲେଖକ ଲିଓ ଟଲଷ୍ଟୟ (Lev Tolstoy)ଙ୍କ ଲେଖନୀ ନିଃସୃତ 'War and Peace' ପୁସ୍ତକର ଓଡ଼ିଆ ଅନୁବାଦ **'ଯୁଦ୍ଧ ଓ ଶାନ୍ତି'** ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କ ଦ୍ୱାରା ଅନୂଦିତ । ଲବ୍ଧପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀଯୁକ୍ତ ମହାନ୍ତି ଓଡ଼ିଆ ଭାଷାରେ ବିଭିନ୍ନ ପ୍ରକାରର ବହୁ ଉପନ୍ୟାସ, ନାଟକ, କ୍ଷୁଦ୍ରଗଳ୍ପ ପ୍ରଭୃତି ଲେଖି ଓଡ଼ିଆ ସାହିତ୍ୟଭଣ୍ଡାରକୁ ଋଦ୍ଧିମନ୍ତ ତଥା ଗୌରବାନ୍ୱିତ କରିଛନ୍ତି । ତାଙ୍କର ଜନ୍ମ ୧୯୧୪ ମସିହାରେ । ବର୍ତ୍ତମାନ ସତୁରି ବର୍ଷ ବୟସରେ ମଧ୍ୟ ସେ କର୍ମଠ । ଦେଖିବାକୁ ଜଗନ୍ନାଥଙ୍କ ବର୍ଣ୍ଣ । ସବୁବେଳେ ହସ ହସ ବଦନରେ ସମଦରଶୀ ଭାବରେ ସମସ୍ତଙ୍କୁ ଶ୍ରଦ୍ଧା, ସ୍ନେହ, ଭକ୍ତି କରିବାକୁ ସେ କେବେ ଭୁଲି ନାହାନ୍ତି ବୋଲି ମନେହୁଏ । ମନୀଷ ଭାବରେ ଆକାରରେ ଶ୍ରେଷ୍ଠ ହେଲେ ମଧ୍ୟ ଓଡ଼ିଆ ସାହିତ୍ୟ, ନୃତତ୍ତ୍ୱ, ରାଜନୀତି ବିଜ୍ଞାନ ଏବଂ ଆଦିବାସୀ ସାହିତ୍ୟ ସମ୍ବନ୍ଧେ ତାଙ୍କର ଅଗାଧ ପାଣ୍ଡିତ୍ୟ । ଓଡ଼ିଶାରେ ଗାଁ ଗହଳିରୁ ଆରମ୍ଭ କରି ସହରର ଉଚ୍ଚ ଶିକ୍ଷିତମାନଙ୍କ ନିକଟରେ ଶ୍ରୀଯୁକ୍ତ ମହାନ୍ତି ସୁପରିଚିତ । ସର୍ବୋପରି ତାଙ୍କର ବିଖ୍ୟାତ 'ମାଟି ମଟାଳ' ପୁସ୍ତକଟି ଉପରେ ସେ ଜ୍ଞାନପୀଠ ପୁରସ୍କାର ପାଇବା-ପରେ ଭାରତର ଜଣେ ବିଶିଷ୍ଟ ସାହିତ୍ୟିକ ଭାବରେ ସୁପରିଚିତ ।

ଶ୍ରୀଯୁକ୍ତ ମହାନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀଙ୍କ ନିର୍ଦ୍ଦେଶରେ 'War and Peace' ପୁସ୍ତକର ଓଡ଼ିଆ ଅନୁବାଦ କରିଛନ୍ତି । ଏହି ବହିର ମୂଳ ଲେଖକ ତଥା ଅନୁବାଦକ ଉଭୟେ ବିଶିଷ୍ଟ ସାହିତ୍ୟିକ ହୋଇଥିବାରୁ ଏଥିରେ ମଣିକାଞ୍ଚନର ସଂଯୋଗ ହୋଇଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ଓଡ଼ିଆରେ ଅନୂଦିତ ଉକ୍ତ ପୁସ୍ତକଟି ଛପାରେ ଡିମାଇ ସାଇଜ୍‌ରେ ପ୍ରାୟ ଏକ ହଜାର ପୃଷ୍ଠା ହେବାର ସମ୍ଭାବନା । ପ୍ରଥମ ଖଣ୍ଡ ପ୍ରକାଶ ପାଇଲା । ଦ୍ୱିତୀୟ ଓ ତୃତୀୟ ଖଣ୍ଡ ମୁଦ୍ରଣ ଅବସ୍ଥାରେ ରହିଛି । ନିକଟ ଭବିଷ୍ୟତରେ ପ୍ରକାଶ ପାଇବାର ସମ୍ଭାବନା ।

କେନ୍ଦ୍ର ସାହିତ୍ୟ ଏକାଡେମୀ ଉକ୍ତ ପାଣ୍ଡୁଲିପି ପ୍ରକାଶନ ପାଇଁ ଆମକୁ ଦେଇଥିବାରୁ ଆମେ ତାଙ୍କ ନିକଟରେ ଚିରକୃତଜ୍ଞ । ପାଣ୍ଡୁଲିପି ବହୁଦିନୁ ଆମର ହସ୍ତଗତ ହୋଇଥିଲେ ମଧ୍ୟ କେତେକ ଅନିବାର୍ଯ୍ୟ କାରଣରୁ ପ୍ରକାଶନରେ ବିଳମ୍ବ ହୋଇଥିବାରୁ ଆମେ ପ୍ରକାଶକ ଭାବରେ ସାହିତ୍ୟ ଏକାଡେମୀ ଏବଂ ଲେଖକ, ଅନୁବାଦକ, ତଥା ଅଗଣିତ ପାଠକଙ୍କ ନିକଟରେ କ୍ଷମା ଭିକ୍ଷା କରୁଛୁ ।

ପ୍ରଭୁ ଶ୍ରୀ ଜଗନ୍ନାଥ ସମସ୍ତଙ୍କର ମଙ୍ଗଳ କରନ୍ତୁ ।

କଟକ-ଧନୁ ସଂକ୍ରାନ୍ତି
ତା ୭-୧୨-୧୯୮୩

ଅନନ୍ତ ମିଶ୍ର
ପ୍ରକାଶକ

# ସୂଚୀ


| | |
|---|---|
| ପ୍ରଥମ ଭାଗ | ୧ |
| ଦ୍ୱିତୀୟ ଭାଗ | ୧୮୯ |
| ତୃତୀୟ ଭାଗ | ୨୮୩ |




# ଯୁଦ୍ଧ ଓ ଶାନ୍ତି

## ଏକ

"କଣ ହେଲା ଦେଖିଲେ ତ ପ୍ରିନ୍ସ, ମୁଁ ଆପଣଙ୍କୁ ଯାହା କହୁଥିଲି, ସେଇଆ ହେଲା କି ନାହିଁ ? ଜେନୋଆ ଆଉ ଲୁକ୍କା ଏ ଯୋଡ଼କଯାକ ସହର ବୋନାପାର୍ଟ ଘରର ସମ୍ପତ୍ତି ହୋଇସାରିଲାଣି । ଏବେ ବି ଯଦି ଆପଣଙ୍କର ବିଶ୍ୱାସ ନ ହେଲା ଯେ ନେପୋଲିଅନ ସଙ୍ଗରେ ଯୁଦ୍ଧ କରିବା ଦରକାର, ଆଉ ସେ ଲୋକଟା ଯେତେ ଯେତେ ବିଭୀଷିକା ସୃଷ୍ଟି କରୁଛି, ଯେତେ ଯେତେ କାଣ୍ଡ କରିଯାଉଛି, ଆପଣ ଯେବେ ଖାଲି ବସି ବସି ତାକୁ ସମର୍ଥନ କରୁଥିବେ, ତେବେ ମୁଁ ଆପଣଙ୍କୁ କହିଦେଉଛି ଯେ ମୋର ବନ୍ଧୁ ହୋଇ ପୂଜା ପାଇବା ଗୌରବ, କି ଆପଣ ଯେମିତି କହନ୍ତି— ମୋର ଏ ତଦାସ ହୋଇ ରହିବାର ସୌଭାଗ୍ୟ,—ଆଉ ଆପଣ ଏ ଜନ୍ମରେ ପାଇ ପାରିବେ ନାହିଁ, ବୁଝିଲେ ନା ? ମୁଁ ଆପଣଙ୍କୁ ଆଗରୁ ସାବଧାନ କରି-ଦେଉଛି । ଏ ଲୋକଟା ଯେ ନିଜେ ଈଶ୍ୱରଦ୍ରୋହୀ ସଇତାନ୍‌ର ଅବତାର, ସେଥିରେ ମୋର ଆଉ ତିଳେ ବୋଲି ସନ୍ଦେହ ନାହିଁ । ହଉ, ଛାଡ଼ନ୍ତୁ, ଏଥର ଆପଣଙ୍କ ଖବର କହନ୍ତୁ । ଆପଣଙ୍କର ସବୁ କୁଶଳ ତ ? କହନ୍ତୁ ପ୍ରିୟବନ୍ଧୁ ! ଆପେ, ମୁଁ ଆପଣଙ୍କୁ ଗୋଟାସୁଦ୍ଧା ଛନିଆ କରିଦେଲି ଯେ ! ଆସନ୍ତୁ, ବସନ୍ତୁ, କଥାଭାଷା ହେବା ।"

ସମୟ,— ଅଠରଶହ ପାଞ୍ଚ ସାଲର ଜୁଲାଇ ମାସ । ସ୍ଥାନ— ସେଣ୍ଟ୍ ପିଟର୍ସ୍‌ବର୍ଗ୍ ସହର ! ବକ୍ତା ଆନ୍ନା ପାଲେଭ୍ନା ସେଆରେର୍, ସେ ରୁଷ୍ ଦେଶର ସାମ୍ରାଜ୍ଞୀ ରାଜମାତାଙ୍କ ସହଚରୀ । ସାମ୍ରାଜ୍ଞୀଙ୍କର ଅତି ଅନ୍ତରଙ୍ଗ ହୋଇ ରାଜଦରବାରରେ ଯେଉଁ କ୍ଷମତାଶାଳୀ ଭିତର ଗୋଷ୍ଠୀଟିଏ ଥିଲା, ସେ ତାହାରି ଭିତରୁ ଜଣେ । ରୁଷ୍ ଦେଶର ଭାବୀ ସମ୍ରାଟ୍ ସେତେବେଳେ ଅପ୍ରାପ୍ତବୟସ୍କ ଥିଲେ, ତେଣୁ ବିଧବା ରାଜମାତା ହିଁ ସେତେବେଳେ ଶାସନକାର୍ଯ୍ୟ ତୁଲାଉଥାଆନ୍ତି ଆନ୍ନା ପାଲେଭ୍ନା ଯାହାକୁ ଏକଥା କହିଲେ

ସେ ପ୍ରିନ୍ସ୍ ବେସିଲ— ସେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ସେଦିନ ଆନ୍ନା ପାଭ୍‌ଲୋଭ୍ନା ଗୋଟିଏ ଭୋଜ ଉତ୍ସବ କରୁଥିଲେ, ନିମନ୍ତ୍ରିତମାନଙ୍କ ଭିତରୁ ଆଗ ପ୍ରିନ୍ସ୍ ବେସିଲ ଆସି ପହଞ୍ଚି ଯାଇଥିଲେ । ଅଳ୍ପ କେତେଦିନ ହେଲା ଆନ୍ନା ପାଭ୍‌ଲୋଭ୍ନା ର କାଶ ହେଉଥାଏ । ତାଙ୍କୁ ସର୍ଦ୍ଦିଜ୍ୱର ଟିକିଏ ହୋଇଥିଲା, ସେଇ ଯାହାକୁ ଫରାସୀ ଭାଷାରେ କହୁଥିଲେ "ଗ୍ରୀପ୍"। (ସର୍ଦ୍ଦିଜ୍ୱରର ଏ ଫରାସୀ ପ୍ରତିଶବ୍ଦଟା ସେତେବେଳେ ରୁଷ୍ ଭାଷାରେ ନୂଆ ହୋଇ ବ୍ୟବହାର କରା ହେଉଥିଲା ଯେ, ଶବ୍ଦଟାକୁ ବ୍ୟବହାର କରିବା ଗୋଟାଏ ଭାରି ବଡ଼ ଫେସନ ହୋଇଥାଏ ।) ରାଜଦରବାରର ନାଲି ପୋଷାକ ପିନ୍ଧି ଗୋଟିଏ ଚାକର ଚିଟିଗୁଡ଼ାଏ ଧରି ସହରଯାକ ବୁଲି ବୁଲି ବାଣ୍ଟିଦେଇ ଆସିଥାଏ । ସବୁ ଚିଠି ଫରାସି ଭାଷାରେ ଲେଖା ହୋଇଥାଏ । ସବୁଥିରେ ସେଇ ଏକା କଥା—

"କାଉଣ୍ଟ୍ (ବା ପ୍ରିନ୍ସ୍), ଆଜି ସନ୍ଧ୍ୟାରେ ଆପଣଙ୍କର ଯଦି ଏହାଠୁଁ ବଳି ଅଧିକ ରୁଚିକର କାର୍ଯ୍ୟ କିଛି ନଥିବ ଓ ଯଦି ଆପଣ ଗୋଟିଏ ଅସହାୟା ଚଳଚ୍ଛକ୍ତିହୀନା ରୋଗିଣୀର ସାହଚର୍ଯ୍ୟରେ ଏ ସନ୍ଧ୍ୟାଟି କଟାଇବାକୁ ପଡ଼ିବ ବୋଲି ଭାବି ଆତଙ୍କ ନ ମଣିବେ, ତେବେ ଆଜି ସନ୍ଧ୍ୟା ୭ଟାରୁ ୧୦ଟା ଭିତରେ ଏଠି ଆପଣଙ୍କ ଦର୍ଶନସୁଖ ଲଭି-କଲେ ମୁଁ ପରମ ଆନନ୍ଦ ଅନୁଭବ କରିବି । ଇତି ।

ଆନ୍ନା ପାଭ୍‌ଲୋଭ୍ନା ।"

ଆରମ୍ଭରୁ ଏପରି ଚର୍ଚ୍ଚା ପାଇ ଟିକିଏ ବି ବିଚଳିତ ନ ହୋଇ ପ୍ରିନ୍ସ୍ ବେସିଲ୍ କହିଲେ, "ଓଃ ! କେଡ଼େ ଦୁଃଖର କଥା । ଆପଣ ଏଡ଼େ ବେମାର ହୋଇ ପଡ଼ିଲେ !"

ରାଜଦରବାରରେ ଯେପରି ପୋଷାକ ପିନ୍ଧାଯାଏ, ସେ ସେହିପରି ପୋଷାକଟିଏ ପିନ୍ଧିଥାନ୍ତି, ଖାଣ୍ଟି ସୁନାର ସୂତାରେ ସେ ପୋଷାକରେ ଜରି କାମ ହୋଇଥାଏ । ପ୍ରକାର ପ୍ରକାର ରାଜକୀୟ ପଦକ୍ଷାର ଚିହ୍ନ ସ୍ୱରୂପ ନାନା ପଦକ ଖଞ୍ଜି ହୋଇ ସେ ପୋଷାକଟି ଝଲମଲ ଦିଶୁଥାଏ । ସେ ପାଦରେ ରେଶମର ମୋଜା ପିନ୍ଧିଥାନ୍ତି ଓ ପଟିବନ୍ଧା ଯୋତା ମାଡିଥାନ୍ତି । ତାଙ୍କ ଚଟା ମୁହଁରେ ସ୍ନିଗ୍ଧ ହସଟିଏ ଲିଭିଥାନ୍ତି । ସେ ଫରାସୀ ଭାଷାରେ କଥା କହୁଥାନ୍ତି, ସେହି ସେ ଶବ୍ଦ ଆଡ଼ମ୍ବରପୂର୍ଣ୍ଣ ଫରାସୀ ଭାଷା, ଯେଉଁ ଭାଷାରେ ପୂରୁଷେ ଦୁଇପୁରୁଷ ତଳର ରୁଷ୍ ଦେଶର ଲୋକେ ଯେ

, ଖିଲି କଥା କହୁଥିଲେ ସେତିକ ନୁହେଁ, ମନ ଭିତରେ କିଛି ଭାବିଲା ବେଳେ ବି ସେମାନେ ସେହି ଭାଷାରେ ଭାବୁଥିଲେ । ଜଣେ ପୁରୁଣା ରାଜ-ଦରବାରରେ ଜଣେ ପ୍ରତିପତ୍ତିଶାଳୀ ବ୍ୟକ୍ତି ହୋଇଥିବେ, ତେବେ ତାଙ୍କର କଥା କହିବା ଭଙ୍ଗୀରେ ଯେପରି ଏକପ୍ରକାର ନିର୍ଦ୍ଦିଷ୍ଟତା ବାରି ହୋଇ ପଡ଼େ ଓ ତାଙ୍କର ଠାଣିରେ ଯେପରି ପରକୁ ଦୟା କଲାପରି ଏକପ୍ରକାର ଭଙ୍ଗୀ ବାହାରିଯାଏ, ପ୍ରିନ୍‌ସ୍ ବେସିଲ୍ କଥା କହିଲା ବେଳେ ତାଙ୍କ ଭଙ୍ଗୀ ବି ସେହିପରି ଲାଗୁଥିଲା ।

ଆନ୍ନା ପାଭେଲୋଭ୍ନାଙ୍କର ଆହ୍ବାନ ପାଖକୁ ଚାଲିଆସି ସେ ତାଙ୍କ ହାତ ପାପୁଲି ଉପରେ ମୁହଁ ଲଗାଇ ଚୁମ୍ବନ କଲେ । ତାଙ୍କ ମୁଣ୍ଡ ଚନ୍ଦା ପଡ଼ିଯାଇଥିଲା ଓ ସେଥିରେ ଅତର ବୋଳା ହୋଇଥିଲା । ତାପରେ ସେ ଗଦି ପଡ଼ିଥିବା ଆସନରେ ଆରାମରେ ବସିପଡ଼ିଲେ । କହିଲେ—

"ଆଗ ଆପଣଙ୍କୁ ମୋର ଏତିକି ମାଗୁଣି ଯେ ଆପଣଙ୍କ ସ୍ୱାସ୍ଥ୍ୟ କେପରି ଅଛି ମତେ ସେ ବିଷୟରେ ସୁସମ୍ବାଦ ଶୁଣାନ୍ତୁ, ଗୋଟିଏ ବନ୍ଧୁର ହୃଦୟର ଆଶଙ୍କା ଦୂର କରନ୍ତୁ । ଆଶ୍ୱାସନା ଦିଅନ୍ତୁ ।"

ତାଙ୍କ ସ୍ୱର ଶୁଭୁଥିଲା ସମ୍ଭ୍ରମ ଓ ଶିଷ୍ଟାଚାରରେ ଜୁଡ଼ୁବୁଡ଼ୁ । ତହିଁରେ ଉଦାସୀନତା ନ ଥିଲା, କିନ୍ତୁ ଶିଷ୍ଟାଚାରର ବାହାଗତ ଉଦାହରୁ ସେଥିରେ କେଉଁଠି ପ୍ରଚ୍ଛନ୍ନ ବ୍ୟଙ୍ଗ ବାରିହୋଇ ପଡ଼ୁଥିଲା ।

ଆନ୍ନା ପାଭେଲୋଭ୍ନା କହିଲେ, "ମୋର ପ୍ରାଣ ଏତେ ବିକଳ ହେଉ-ଥିଲା ବେଳେ ମୁଁ ଆଉ ସୁସ୍ଥ ରହିପାରିବି କିପରି ? ମତେ ତ ଲାଗୁଛି ଯେ ଆଜିକାଲି ଦିନକାଳ ଏପରି ହୋଇଛି ଯେ, ଯାହା ହୃଦୟରେ ଟିକିଏ ବୋଲି ସହାନୁଭୂତି ଥିବ, ସେପରି ପ୍ରତ୍ୟେକ ମଣିଷ ମାନସିକ ଯନ୍ତ୍ରଣାରେ ଅଧୀର ହେଉଥିବ । —ଗୁଡ଼ନ୍ତୁ । ମୁଁ ଆଶା କରୁଛି, ଆପଣ ଏ ଗୋଟିକଯାକ ସନ୍ଧ୍ୟା ଏଇଠି କଟାଇବେ ବୋଲି ଆସିଛନ୍ତି, ନା କଣ କହୁଛନ୍ତି ?"

"ନା, ଅତି ଦୁଃଖରେ କହିବାକୁ ପଡ଼ୁଛି ଯେ ସନ୍ଧ୍ୟାଟି ଯାକ ଏଇଠି ରହି କଟାଇବା ଆଜି ମୋ ପକ୍ଷରେ ସମ୍ଭବ ହେବନାହିଁ । ଆଜି ବୁଧବାର । ଆଜି ଇଂରେଜ ରାଜଦୂତ ଗୋଟିଏ ବିରାଟ ବଲ୍ ନାଚ ଓ ଭୋଜି ଆୟୋଜନ କରିଛନ୍ତି, ସେଠି ଉପସ୍ଥିତ ରହିବାକୁ ମୁଁ ବାଧ୍ୟ । ମତେ ସେଠିକି ସଙ୍ଗରେ ନେଇଯିବ ବୋଲି ମୋ ଝିଅ ଆସୁଛି ।"

"ମୋ ମନରେ କଣ ଧାରଣା ଥିଲା ନା ତାଙ୍କର ସେ ଭୋଜଟା ବନ୍ଦ ହୋଇଗଲା । ସତେ, ମୋ ମନ କଥା ଆପଣଙ୍କ ଆଗରେ ଫିଟାଇ କହୁଛି, ବୁଝିଲେ ନା, ଏସବୁ ଏତେ ଉତ୍ସବ ସମାରୋହ, ବାଣଫୁଟା—ଏଗୁଡ଼ାକ ମତେ ଏଣିକି ଭାରି ଅରୁଚି ଲାଗିଲାଣି ।"

କଳ ଚଳିଲା ପରି ପ୍ରିନ୍ସ୍ ବେସିଲ୍ ସଙ୍ଗେ ସଙ୍ଗେ ଉତ୍ତର ଦେଲେ,—"ଆପଣଙ୍କର କଣ ଇଚ୍ଛା ହେଉଛି, ସେ କଥା ଟିକିଏ ଆଗରୁ ଜଣାପଡ଼ିଥିଲେ ତାଙ୍କ ଉତ୍ସବଟା ଆଉ ହୋଇଥାନ୍ତା ନା ! ଅବଶ୍ୟ ବନ୍ଦ ହୋଇଯାଇଥାନ୍ତା ।"

ଲାଗୁଥିଲା, ସତେ ଯେପରି ପ୍ରିନ୍ସ୍ ବେସିଲ୍ ଗୋଟିଏ ଠିକଣା ସମୟ ରଖୁଥିବା ଘଣ୍ଟା । ତାଙ୍କ ମନରେ ସତେ ଯେପରି କାଣିଚାଏ ବି ବିଶ୍ୱାସ ନଥିଲା ଯେ ସେ ଯାହା ଯାହା କହିଗଲେ ସେସବୁ ପ୍ରକୃତରେ ତାଙ୍କର ଅନ୍ତରର କଥା ।

ଆନ୍ନା ପାଲେଭ୍ନା କହିଲେ, "ହଉ ସେତିକି ଥାଉ, ମତେ ଆଉ ଚିଡ଼ାନ୍ତୁନାହିଁ । ଆଚ୍ଛା ଗୋଟିଏ କଥା କହିଲେ, ଆପଣଙ୍କୁ ସବୁ କଥା ତ ଜଣା, ମୁଁ ଖାଲି ଏତିକି ପଚାରୁଛି,—ନୋଭୋସିଲ୍ ଜାଉଁଠୁଁ ଯେଉଁ ଚିଠିଖଣ୍ଡିକ ଆସିଥିଲା ନା, ସେ ବିଷୟରେ ଶେଷରେ କଣ ନିଷ୍ପତ୍ତି ହେଲା ?"

କ୍ଳାନ୍ତ ଓ ବିରକ୍ତିର ଭାବ ଦେଖାଇ ପ୍ରିନ୍ସ୍ ବେସିଲ୍ କହିଲେ—"କଣ ଆଉ କହିବି ? ସେମାନେ ଶେଷରେ କଣ ନିଷ୍ପତ୍ତି କଲେ ମୋଠୁଁ ସେହିକଥା ନେବାପାଇଁ ମତେ ଆପଣ ବଳାଉଛନ୍ତି, ଏଇଆ ତ ? ହଉ ତେବେ ମୁଁ କହୁଛି ଶୁଣନ୍ତୁ । ସେମାନେ ଏଇଆ ନିଷ୍ପତ୍ତି କଲେ ଯେ, ବୋନାପାର୍ଟ୍ ଯେତେବେଳେ ଖାଲି ଲାଗିପଡ଼ିଛନ୍ତି କେମିତି ଯୁଦ୍ଧଟା ଜିତିବେ, ଆଉ ଯୁଦ୍ଧରୁ ଅପସରି ଯିବାର ସବୁ ବାଟ ବନ୍ଦ କରିଦେଇଛନ୍ତି, ସେତେବେଳେ ଆମର ଆଉ କି ଚାରା ? ଆମେ ବି ସେଇଆ କରିବାକୁ ବାଧ୍ୟ ।"

ଅଭିନୟ କରିବାକୁ ଅଭ୍ୟାସ କରୁଥିଲା ବେଳେ ଅଭିନେତା ଯେପରି ତାର ପୁରୁଣା ଚିହ୍ନା ଭୂମିକାର ସଂଳାପକୁ ଅବିଚଳିତ ଅନାସକ୍ତ ସହକାରରେ ଆବୃତ୍ତି କରିଯାଏ, ପ୍ରିନ୍ସ ବେସିଲ୍‌ଙ୍କ କଥା କହିବା ଭଙ୍ଗୀ ବି ସବୁବେଳେ ସେହିଭଳି; କିନ୍ତୁ ଆନ୍ନା ପାଲେଭ୍ନାଙ୍କର କଥା କହିବା ଭଙ୍ଗୀ ସେମିତି ନୁହେଁ । ଚାଳିଶବର୍ଷ ବୟସର ପ୍ରୌଢ଼ା ହେଲେ ସୁଦ୍ଧା ସେ

ଅତି ରସମୟ ଜୀବନ, ଛଳଛଳ ଭଙ୍ଗୀ ଦେଖାଇ କଥା କହିବାର ପରି ଚଳନା ଦେଖାନ୍ତି । ସମାଜରେ ତାଙ୍କର ଖ୍ୟାତି ରହିଥିଲା ଯେ, ତାଙ୍କଠି ପ୍ରଚୁର ଉତ୍ସାହ ଓ ଉଚ୍ଛ୍ୱାସ ରହିଛି । ବେଳେବେଳେ ଏପରି ହେଉଥିଲା ଯେ, ପ୍ରକୃତରେ ଯଦିଓ ତାଙ୍କ ମନ ଭିତରେ ଏତେ ଟିକିଏ ବୋଲି ଉତ୍ତେଜନା ନ ଥାଉ, କାଳେ କିଏ ଦେଖିବ ତାଙ୍କଠି ଉତ୍ସାହ ଉଦ୍ଦୀପନା ନାହିଁ; ତେଣୁ ନିରାଶ ହେବ, କେବଳ ଏଇଆ ଭାବି ସେ ନିଜକୁ ଉତ୍ତେଜିତ କରି ଦେଉଥିଲେ । ଅବଶ୍ୟ ଏକଥା ସତ ଯେ, ସବୁବେଳେ ତାଙ୍କ ମୁହଁରେ ଅଧେ ହସ ଲେଖିଦେଲା ପରି ଯେଉଁ ଦରହସା ଠାରିଟି ଲାଗିରହିଥିଲା, ସେ ତାଙ୍କର ଶୀର୍ଣ୍ଣ ରୂପକୁ ମାନୁ ନ ଥିଲା, ଓଲଟି ଏବେତଙ୍କ ବଢ଼ୁଥିଲା, କି ସେ ନିଜେ ବି ବୁଝିପାରୁଥିଲେ ଯେ, ଏମିତି ଅତିସୌଜନ୍ୟ ଦେଖାଇବା ତାଙ୍କର ଗୋଟିଏ ଦୁର୍ବଳତା; ତଥାପି ତାଙ୍କ ହସରୁ ଏତିକି ପ୍ରକାଶ ପାଉଥିଲା ଯେ, ସତେ ଯେମିତି ଗୋଟିଏ ଅତି ଗେହ୍ଲା ଅତି ଅଳିଅଳୀ ପିଲାଟିଏ ପରି ସେ ଆପଣାର ସେ ଦୁର୍ବଳତାକୁ ଶୁଧାରିବାକୁ ଆଦୌ ଚାହାନ୍ତି ନାହିଁ ।

ରାଜନୀତି ବିଷୟରେ ଯେଉଁ ଆଲୋଚନା ପଡ଼ିଗଲା, ସେଇଟା କେଉଁ ଆଡ଼କୁ ମୋଡ଼ିହୁଛି ତାରି ସେ ଢଗକୁ ଦେଖିପାରି ସେ ଉତ୍ତେଜନାରେ ସମ୍ପୂର୍ଣ୍ଣଭାବେ ମାତି ଉଠିଲେ ।

ସେ କହିଲେ, "ହଃ ରଖିଦିଅନ୍ତୁ ମ' ସେ କଥାଗୁଡ଼ାକ । ଅଷ୍ଟ୍ରିଆ କଥା ମୋ ଆଗରେ ଆଉ ବଖାଣନ୍ତୁ ନାହିଁ । ମୁଁ ସେସବୁ ବିଷୟରେ କିଛି ନ ଜାଣିଲେ ନାଇଁ, କିନ୍ତୁ ଏକଥା ମୁଁ କଦାପି ବିଶ୍ୱାସ କରିପାରିବ ନାହିଁ ଯେ, ଏ ଯୁଦ୍ଧରେ ଯୋଗ ଦେବାକୁ ଅଷ୍ଟ୍ରିଆର ମନ ହେଉଛି କି ଆଉ କେବେ ତାର ସେମିତି ମନ ହୋଇଥିଲା ! ସେ କଥା କେବେ ନୁହେଁ ! ଅଷ୍ଟ୍ରିଆ ଆମ ସଙ୍ଗରେ ବିଶ୍ୱାସଘାତକତା କରୁଛି । କାହାରି ସାହା ସାହାଯ୍ୟ ନଥାଇ ଏକୁଟିଆ ଆମ ରୁଷ୍ ଦେଶକୁହିଁ ଯୁରୋପ ମହାଦେଶ ଗୋଟାକ-ଯାକକୁ ଉଦ୍ଧାର କରିବାକୁ ପଡ଼ିବ । ଆଉ କେହି ଏ କାମ କରିବେ-ନାହିଁ । ଆମର ପରମହିତୈଷୀ ସମ୍ରାଟ ତାଙ୍କର ଏ ଗୌରବମୟ କର୍ତ୍ତବ୍ୟକୁ ଭଲ କରି ବୁଝିପାରିଛନ୍ତି । ସେ ଦାୟିତ୍ୱ ତୁଲାଇବାକୁ ସେ ଯେ ସମ୍ପୂର୍ଣ୍ଣ ଉପଯୁକ୍ତ, ତା ସେ ବଳେ ବଳେ କାର୍ଯ୍ୟରେ ପ୍ରମାଣ କରି ଦେଖାଇଦେବେ—ଏଥିରେ ମୋର ପୂର୍ଣ୍ଣ ବିଶ୍ୱାସ । ମୁଁ ମୋତ ସହାନଃ-

କରଣରେ ଏହାଣ ଉପରେ ଭରସା ରଖିଛୁ । ଆମର ଅତି ଚମତ୍କାର ପରମଦୟାଳୁ ଉଦାରହୃଦୟ ସମ୍ରାଟଙ୍କ ଆଗରେ ଥୁଆହୋଇଛୁ ଗୋଟିଏ ମହାନ୍ କାର୍ଯ୍ୟ ସାଧନ କରିବାର ଦାୟିତ୍ୱ । ଈଶ୍ୱର କେତେବେଳେ ହେଲେ ତାଙ୍କର ସଙ୍ଗ ଛାଡ଼ିବେନାହିଁ । ତାଙ୍କ କର୍ତ୍ତବ୍ୟ ସେ ସମ୍ପାଦନ କରିବେ । ଏଇ ଯେଉଁ ପ୍ରଳୟଙ୍କର ବିପ୍ଳବ ମୁଣ୍ଡ ଟେକିଛି, ଯେ ଏଇ ଘଞ୍ଚାସ, ଏଇ ନର ହନ୍ତା ପିଶାଚର ମୁଖା ପିନ୍ଧି ଆହୁରି ବିକଟ, ଆହୁରି ଭୟଙ୍କର ହୋଇ ରକ୍ତଗର୍ଯ୍ୟ ଦାନବପରି ଘୋଟିରହିଛି, ଏ ବିପ୍ଳବ ଆମର ମହାମାନ୍ୟ ସମ୍ରାଟଙ୍କ ହାତରେ ସମୂଳେ ଧ୍ୱଂସ ପାଇଯିବ । ସତ୍ୟ-ପଥର ପଥଭ୍ରଷ୍ଟମାନଙ୍କର ଯେତେ ଯେତେ ରକ୍ତ ଢଳାହୋଇଛି, ସେଥି-ପାଇଁ ପ୍ରତିହିଂସା ସାଧିବାର ସୌଭାଗ୍ୟ ହେବ ଆମର । କହନ୍ତୁ ମତେ, ଆମେ କାହାକୁ ବିଶ୍ୱାସ କରିବା ? ଇଂଲଣ୍ଡ କେବଳ ବେପାରୀଟାଏ । ସେ କି ବୁଝିବ ସମ୍ରାଟ ଆଲେକ୍‌ଜାଣ୍ଡରଙ୍କ ମହାପ୍ରାଣର ମହତ୍ତ୍ୱ । ସେ ତ ମାଲ୍‌ଟା ଉପଦ୍ୱୀପ ଉପରୁ ଦଖଲ ଛାଡ଼ିଦେବାକୁ ମନା କରିଦେଲା । ସେ ଖାଲି ବେଳ ଚାଳି ଚାଳି ଓର ଉଣ୍ଡୁଛି କାଁଲ ଆମ କଲା କାମ ପଛଆଡ଼େ କଣ ସ୍ୱାର୍ଥାନ୍ଧ କୂଟ ଅଭିସନ୍ଧି ଲୁଚି ରହିଥିବ, ସେଇ ଛିଦ୍ର ସେ ଖୋଜୁଛି । ନୋଭୋସିଲ୍‌ଜାଓଙ୍କୁ କି ଉତ୍ତର ଦେଲେ ସେମାନେ ? କିଛି ନାହିଁ । ନା ନା, ଆମ ସମ୍ରାଟଙ୍କ କର୍ତ୍ତବ୍ୟନିଷ୍ଠା ସେମାନେ ବୁଝି ପାରିବେ ନାହିଁ । ସମସ୍ତଙ୍କର କିପରି ମଙ୍ଗଳ ହେବ, ସେଇ କଥାକୁ ତାଙ୍କର ନିଘା ଥାଏ । ଆମକୁ କି ସାହାଯ୍ୟ ଦେବେ ବୋଲି ସେମାନେ ପ୍ରତିଶ୍ରୁତି ଦେଇଛନ୍ତି ? ଟେନା ଗୁଡ଼ । ତାଙ୍କ ପ୍ରତିଶ୍ରୁତିଗୁଡ଼ାକର କି କଡ଼ାର ମୂଲ୍ୟ ଥାଆନ୍ତା ଭଲା ! କହିଲେ, ପ୍ରୁସିଆ ଏକଥା ଘୋଷଣା କରିଥିଲା କି ନାହିଁ, ଯେ ବୋନାପାର୍ଟ ଅଜେୟ, ତା ସଙ୍ଗରେ ଲଢ଼ିବାକୁ ୟୁରୋପ ଅସମର୍ଥ ? ହାର୍ଡେନ୍‌ବର୍ଗଙ୍କ କଥା ଉପରେ ମୋର ବିଶ୍ୱାସ ନାହିଁ କି ହାଉଗଓ୍ୱିଜ୍‌ଙ୍କ କଥାରେ ବିଶ୍ୱାସ ନାହିଁ । ପ୍ରୁସିଆ ଦେଶର ନିରପେକ୍ଷ ରହିବା ନୀତିଟା ଗୋଟାଏ ଫାନ୍ଦ ପାତିଲା ଭଳିଆ । ଯେ ଯାହା କରୁଥାଉ, ଭଗବାନଙ୍କଠି ମୋର ବିଶ୍ୱାସ ଅଛି, ଆଉ ମୋର ବିଶ୍ୱାସ ଅଛି, ଆମର ପ୍ରିୟତମ ସମ୍ରାଟଙ୍କର ମହାନ୍ ଆସନ ଉପରେ ।—ସମଗ୍ର ୟୁରୋପ ମହାଦେଶର ଶାନ୍ତିକର୍ତ୍ତା ସେ—"

ଆନ୍ନା ପାଭଲୋଭ୍ନା କଥା କହୁ କହୁ ହଠାତ୍ ମଝିରେ ଅଟକିଗଲେ । ସ୍ମିତ ହସି ହସି ସେ ନିଜର ଉତ୍ତେଜନାକୁ ନିଜେ ବିଦ୍ରୂପ କଲେ ।

ପ୍ରିନସ ବେସିଲ ମୁରୂକ ହସି କହିଲେ, "ଓ୍ୱିଣ୍ଟଜଙ୍ଗେରୋଡ଼କୁ ଯେଉଁ ଦାୟିତ୍ୱ ଦିଆହୋଇଛି, ତା ତାଙ୍କୁ ନଦେଇ ଆପଣଙ୍କୁ ଯଦି ଦିଆ ନ ହେଲା, ସେଇଟା ହିଁ ତ ଘୋର ପରିତାପର କଥା । ତା ଯଦି ହୋଇଥାନ୍ତା, ତା ହେଲେ ଆପଣଙ୍କ ଓଜସ୍ୱିନୀ ବକ୍ତୃତା ପଦ୍ମ ବଳେ ବଳେ ପ୍ରୁସିଆର ରାଜାଙ୍କଠୁଁ ଏ ଯୁଦ୍ଧରେ ଯୋଗଦେବାକୁ ସ୍ୱୀକୃତି ଅସୁଲ କରିଥାନ୍ତା । ଶୁଣନ୍ତୁ, ମୋ ପାଇଁ ଚାହା ମଗାନ୍ତେ ନାହିଁ ?"

'ହଁ ହଁ, ହେଉଛି ଏଇ ସଙ୍ଗେ ସଙ୍ଗେ ମଗାଉଛି ।" ଆନ୍ନା କହିଲେ ।

ତା ପରେ ଅତି ଶାନ୍ତ ସଂଯତ ହୋଇ ପୁଣି ସେ କହିଲେ, "ଶୁଣନ୍ତୁ, ଗୋଟିଏ କଥା । ମୋର ଆଶା ଯେ, ଆଜି ସନ୍ଧ୍ୟାରେ ଏଠିକି ଦି ଜଣ ଭାରି ଚମତ୍କାର ମଣିଷ ଆସିବେ । ତାଙ୍କରୁ ଜଣେ ଭାଇକମ୍ଟେ ଦ୍ୟୋ ମର୍ଟେମାର୍ଟ୍ । ରୋହାନ୍ ପରିବାରଙ୍କ ବାଟେ ମନ୍ଟମରେନ୍ସି ପରିବାର ସଙ୍ଗରେ ତାଙ୍କର ବନ୍ଧୁବାନ୍ଧବ ସମ୍ପର୍କ ଅଛି । ମନ୍ଟମରେନସି ପରିବାର ଫ୍ରାନ୍ସ ଦେଶର ଅତି ସମ୍ଭ୍ରାନ୍ତ ଖାନଦାନ୍ ବଂଶ ଭିତରୁ ଗୋଟିଏ । ଫରାସୀ ଦେଶରୁ ପଳାତକ ହୋଇ ଯେତେ ଯେତେ ଲୋକ ବାହାର ଚାଲି ଆସିଛନ୍ତି, ତାଙ୍କ ଭିତରେ ଅତି ଉତ୍ତମ ଲୋକଙ୍କ ଭିତରୁ ମର୍ଟେମାର୍ଟେ ଜଣେ । ସେ ତ ଅତି ବଡ଼ ଦାର୍ଶନିକ ଓ ଜ୍ଞାନୀ ଲୋକ, ଜାଣନ୍ତି ନା ? ନିଜେ ସମ୍ରାଟ୍ ତାଙ୍କୁ ଅଭିନନ୍ଦନ ଦେଇଥିଲେ ।"

ପ୍ରିନ୍ସ୍ ବେସିଲ୍ କହିଲେ,—"ସେମାନଙ୍କ ସଙ୍ଗରେ ଦେଖା ହୋଇ ପାରିଲେ ମୁଁ ଭାରି ଖୁସି ହୁଅନ୍ତି । ହଉ, କହିଲେ ଗୋଟିଏ କଥା,— ସାମ୍ରାଜ୍ଞୀ ରାଜମାତା କୁଆଡ଼େ ଭିଏନାର ପ୍ରଧାନ ଅମାତ୍ୟ ପଦରେ ବ୍ୟାରେନ୍ ଫୁଙ୍କ୍ ନିଯୁକ୍ତ ହେବେ ବୋଲି ଆଦେଶ ଦେଇ ଦେଇଛନ୍ତି ? ଏକଣ ସତ କଥା ? ମୋର ତ' ଧାରଣା ଥିଲା ଯେ ବ୍ୟାରେନ୍ ଫୁଙ୍କ୍ ଲୋକଟା ଜଣେ ନିହାତି ବାଜେ ଲୋକ ବୋଲି ।"

ଏ କଥା କହିଲାବେଳେ ସେ ଆଗଠୁଁ ବଳି ଆହୁରି ବେଶି ଉଦାସୀନତା ଓ ନିସ୍ପୃହତା ଦେଖାଉଥାନ୍ତି, ସତେ ଯେପରିକି ଏଇ ମୁହୂର୍ତ୍ତରେ ହିଁ ଏ କଥା ତାଙ୍କର ମନେ ପଡ଼ିଯାଇଛି, ସେମିତି । ଅଥଚ ଖାସ୍ ଏହିକଥା ପଚାରି ବୁଝିବା ତାଙ୍କର ଆନ୍ନା ପାଭ୍ଲୋଭ୍ନାଙ୍କ ଘରକୁ ଆସିବାର ପ୍ରଧାନ ଉଦ୍ଦେଶ୍ୟ ।

ପ୍ରିନ୍ସ୍ ବେସିଲ ମନେ ମନେ ଭାବୁଥିଲେ ଯେ, ଭିଏନାରେ ପ୍ରଧାନ ଅମାତ୍ୟ ପଦରେ ନିଯୁକ୍ତି ତାଙ୍କ ପୁଅକୁ କେମିତି ମିଳିଯାଆନ୍ତା କି ! କିନ୍ତୁ ଏଣେ ସାମ୍ରାଜ୍ଞୀ ମେରିଆ ଫିଡ୍ରେରିଭ୍ନାଙ୍କ ପ୍ରତିପତ୍ତିର କ୍ଷମତା ବଳରେ ଚେଷ୍ଟା ଚାଲିଥିଲା ଯେ ସେ ନିଯୁକ୍ତି କୌଣସି ପ୍ରକାରେ ବ୍ୟାରେନ୍ ଫୁଙ୍କଙ୍କୁ କେମିତି ମିଳିଯାଉ ।

ଆଖି ବୁଜିହୋଇ ରହିଲାପରି ଆନ୍ନା ପାଭ୍ଲୋଭ୍ନାଙ୍କ ଆଖିପତା ଯୋଡ଼ିକ ଓହଳି ପଡ଼ିଲା । ଆଖି ଯୋଡ଼ିକ ବୁଜିଲା ପରି କରି ସେ ତାହାଁରେ ଏହିକଥା ଜଣାଇଦେଲେ ଯେ କି ଉପାୟ କଲେ ସମ୍ରାଜ୍ଞୀ ରାଜମାତା ଖୁସି ହେବେ କି ବିରକ୍ତ ହେବେ, ସେ କଥା ସେ ନିଜେ ଜାଣିବାକୁ ଆଉ କେହି ଜାଣିବା ଆଦୌ ସମ୍ଭବ ନୁହେଁ ।

ନୀରସ ଅଥଚ ବିଷଣ୍ଣ ସ୍ୱରରେ ସେ କହିଲେ, "ମହିମା ସାମ୍ରାଜ୍ଞୀ ରାଜମାତାଙ୍କ ପାଖକୁ ତାଙ୍କ ଭଉଣୀ ବ୍ୟାରେନ୍‌ଫୁଙ୍କ୍‌ଙ୍କ ସକାଶେ ସୁପାରିସ କରି ପଠାଇଥିଲେ ।" ସେ କଥା କହିଲାବେଳେ ଯେପରି ମୁଖଭଙ୍ଗୀ କରୁଥାନ୍ତି, ସେ ଭଙ୍ଗୀରେ ଗମ୍ଭୀର ଓ ପ୍ରଗାଢ଼ ଭକ୍ତି ସହିତ ଅଳ୍ପ ବିଷାଦ ମିଶିଥାଏ । ସେ ଯେତେବେଳେ ତାଙ୍କର ସେହି ମହାସମ୍ଭ୍ରାନ୍ତା ପୃଷ୍ଠ-ପୋଷିକାଙ୍କ ନାମ ଧରନ୍ତି, ସେତେବେଳେ ସବୁଥର ତାଙ୍କ ମୁହଁର ଭଙ୍ଗୀ ଏହିପରି ହୁଏ । ତାପରେ ପୁଣି ସେ ଯେତେବେଳେ କହିଲେ ଯେ ମହିମା ତାଙ୍କ ଶ୍ରୀମୁଖରେ ପ୍ରକାଶ କରିସାରିଛନ୍ତି, ବ୍ୟାରେନ୍ ଫୁଙ୍କ୍‌ଙ୍କ ସମ୍ବନ୍ଧରେ ତାଙ୍କର ଧାରଣା ଉଚ୍ଚ, ଏକଥା କହିଲାବେଳେ ପୁଣି ତାଙ୍କ ଦୃଷ୍ଟି ତଳକୁ ହୋଇଗଲା ।

ପ୍ରିନ୍ସ ବେସିଲ କିଛି ପଦଟି ଫିଟାଇଲେ ନାହିଁ । ସତେକି ଏଥିରେ ତାଙ୍କର କିଛି ଯାଏ ଆସେ ନାହିଁ, ଏମିତି ସେ ସମ୍ପୂର୍ଣ୍ଣ ନିର୍ଲିପ୍ତ ଥିଲା ପରି ଦେଖାଯାଉଥାନ୍ତି; ଅଥଚ ଏଣେ ଠିକ୍ ସେତିକବେଳେ ଆନ୍ନା ପାଭ୍ଲୋଭ୍ନା ତାଙ୍କୁ ଦଣ୍ଡ ଦେବା ଅଭିପ୍ରାୟରେ ତାଙ୍କର ନାରୀସୁଲଭ ତୀକ୍ଷ୍ଣ ବୁଦ୍ଧି ବଳରେ ତାଙ୍କ ଉପରେ ତାଙ୍କର ଜନ୍ତୁ ନଖର ତୀକ୍ଷ୍ଣ ସ୍ପର୍ଶ ବୁଲାଇ ଆଣିଥାନ୍ତି, କେବଳ ଏଥିପାଇଁ ଯେ ଯେଉଁ ଲୋକ ସାମ୍ରାଜ୍ଞୀ ରାଜମାତାଙ୍କ ଅମୃତ ଦୃଷ୍ଟିରେ ପଡ଼ିଯାଇଛି, ସୁପାରିସ୍ ବି ପାଇଛି, କେଉଁ ଦୁଃସାହସରେ ପ୍ରିନ୍ସ୍ ବେସିଲ୍ ସେହିଭଳି ଲୋକ ବିରୁଦ୍ଧରେ ଆପଣା ଅଭିମତ ପ୍ରକାଶ କରିଦେଲେ ! ତଥାପି ପୁଣି ସେ ପ୍ରିନ୍ସ

ବେସିଲଙ୍କୁ ଅତିଶୀଘ୍ର ଆଶ୍ୱାସନା ଦେବାକୁ ମନ ବଳାଇ କହିଲେ, "ଆପଣଙ୍କ ନିଜ ଲୋକଙ୍କ ସମାଚାର କାହିଁ କହୁ ନାହାନ୍ତି ? କହନ୍ତୁ । ବୁଝିଲେ, ଆପଣଙ୍କ ଝିଅ ସମାଜରେ ମିଳାମିଶା ହେବବୋଲି ଯେଉଁ ଦିନଠାରୁ ଆପଣ ତାକୁ ପଦାକୁ ବାହାର କଲେଣି, ସେଦିନୁ ତାକୁ ଦେଖି ଆମ ସମସ୍ତଙ୍କ ହୃଦୟରେ ଆନନ୍ଦ ଉଚ୍ଛୁଳି ଉଠୁଛି । ସମସ୍ତେ ଭାବୁଛନ୍ତି, ସେ ସାକ୍ଷାତ୍ ଦିନ ପରି ଉଜ୍ଜ୍ୱଳ ଓ ସୁନ୍ଦର ।"

ଏକଥା ଶୁଣି କୃତଜ୍ଞତା ଓ ସମ୍ଭ୍ରମ ଜଣାଇ ଦେବା ଲାଗି ପ୍ରିନ୍ସ୍ ବେସିଲ ମୁଣ୍ଡ ନୁଆଇଁଦେଲେ ।

ଟିକିଏ ରହି ଆନ୍ନା ପାଭ୍ଲୋଭ୍ନା ପୁଣି କହିଗଲେ—"କେଜାଣି କେତେଥର ମୁଁ ଏଇଆ ଭାବି ଭାବି କାବା ହୁଏ, ଯେ ଏ ଦୁନିଆରେ ସୁଖ ବଣ୍ଟାବଣ୍ଟି ବେଳେ ଏଡ଼େ ପାତର ଅନ୍ତର ହୁଏ କାହିଁକି !"

ପ୍ରିନ୍ସ ବେସିଲ୍ଙ୍କ ପାଟିକୁ ଅଳ୍ପ ଘୃଣା ଆସି ସେ ତାଙ୍କଆଡ଼କୁ ଅନାଇଁ ପ୍ରସନ୍ନ ହୋଇ ହସିଦେଲେ । ସତେ ଯେପରିକି ଏ ଭଙ୍ଗୀରେ ସେ ଜଣାଇଁ ଦେବାକୁ ଚାହିଁଲେ ଯେ, ରାଜନୀତି ଚର୍ଚ୍ଚା ଓ ଦାଣ୍ଡଘରେ ଫଖୋଲା କାର୍ଯ୍ୟଟା ତାଙ୍କର ଏଇଠୁ ଏଥର ସରିଗଲା, ଏଣିକି ପଡ଼ିବ ଗହନ କଥା ମାନ । ସେ ହସି ହସି କହିଲେ—

"ସତେ ! ବହୁ ବେଳେ ମୁଁ ଏଇଆ ଭାବୁଥାଏଁ ବସି, ଯେ କାହା ଜୀବନରେ କେତେ ପରିମାଣରେ ସୁଖ ପଡ଼ିବ । ଭିନ୍ନ ଭିନ୍ନ ଲୋକଙ୍କ ଜୀବନରେ ଏଇ ଯେଉଁ ବାଣ୍ଟକୁଣ୍ଟି ହୋଇଥାଏ, କେତେ ଅନ୍ୟାୟ ପକ୍ଷପାତିତା ଥାଏ ସେ ବଣ୍ଟାବଣ୍ଟିରେ ! ଉଦାହରଣରେ ଦେଖନ୍ତୁ, ଆପଣଙ୍କ ପରିବାର ଭିତରେ ପିଲାଟିମାନେ କେଡ଼େ ଚମତ୍କାର ପିଲା । କେଡ଼େ ବଡ଼ ଭାଗ୍ୟ ଆପଣଙ୍କର । — ଅବଶ୍ୟ ଏ ଉଦାହରଣ ଭିତରୁ ଆପଣଙ୍କ ସାନପୁଅ ଆନାତୋଲେକୁ ଛାଡ଼ିଦେବାକୁ ପଡ଼ିବ ।"

ସେ ଆଖିପତାକୁ ଉପରକୁ ଟେକିଲେ । ମକଦ୍ଦମାରେ ଯେଉଁ ରାୟ ଉପରେ ଆଉ ପୁନର୍ବିଚାର ହୋଇପାରିବ ନାହିଁ, ସେହିପରି ରାୟଟାଏ ଶୁଣାଇ ଦେଲାପରି ସେ କହିଲେ —

"ହଁ ଏକା ଆନାତୋଲେକୁ ଛାଡ଼ । ମତେ ସେ ଭଲ ଲାଗେ ନାହିଁ । ଆପଣ ଆପଣଙ୍କ ପିଲାଙ୍କ ଭଲଗୁଣ ଦେଖି ପ୍ରଶଂସା ବି କରନ୍ତି ନାହିଁ । ଏଡ଼େ ଚମତ୍କାର ପିଲାଙ୍କ ବାପପଣକୁ ଆପଣ ଯୋଗ୍ୟ ନୁହନ୍ତି ।"

ଆନ୍ନା ପାଭ୍ଲୋଭ୍ନା ଅତି ଆନନ୍ଦରେ ଉଚ୍ଛ୍ୱାସରେ ଯେମିତି ହସନ୍ତି ସେମିତି ହସଟିଏ ହସିଦେଲେ ।

ପ୍ରିନ୍ସ୍ ଭେସିଲ୍ କହିଲେ,—"ସେଥିପାଇଁ ମୁଁ ଆଉ କଣ କରିବି, ମତେ କହନ୍ତୁ । ବୈଜ୍ଞାନିକ ଲାଭାଟେ ଯଦି ଥାନ୍ତେ, ସେ ନିଶ୍ଚୟ ଦେଖିଥାନ୍ତେ ଯେ ମଣିଷର ଜାତି ଜାତି ଗୁଣର ସୂଚପଙ୍କ ହୋଇ ମଣିଷ ମୁଣ୍ଡରେ ଯେଉଁ ଆବୁଗୁଡ଼ାକ ଥାଏ ସେଥିଭିତରୁ ଯେଉଁ ଆବୁଟା ସନ୍ତାନ-ବାତ୍ସଲ୍ୟ ଗୁଣକୁ ବୁଝାଏ ସେଇଟା ମୋ ମୁଣ୍ଡରେ ନାହିଁ ।"

"ନାଇଁ ନାଇଁ, ଥଟ୍ଟା କରନ୍ତୁ ନାହିଁ । ମୁଁ ସତରେ କହୁଛି । ଆପଣଙ୍କ ସାନପୁଅ ଉପରେ ମୁଁ ଭାରି ବିରକ୍ତ । ଶୁଣନ୍ତୁ ମୁଁ କହୁଛି, ଆଉ ଯେମିତି ଏକଥା ନ ଶୁଣେ । (ଏକଥା କହିଲାବେଳେ ତାଙ୍କ ମୁହଁ ବିଷଣ୍ଣ ଦିଶୁଥାଏ ।) ସେଦିନ ସାମ୍ରାଜ୍ଞୀ ରାଜମାତାଙ୍କ ଗୃହରେ ଲୋକେ ତା ନାଁ ର ବାରକଥା କରି କହୁଥିଲେ ପରା, ଆଉ ଆପଣଙ୍କ କଥା ପକାଇ ଲୋକେ ଦୁଃଖିତ ହେଉଥିଲେ ।"

ପ୍ରିନ୍ସ୍ ଭେସିଲ୍ ପାଟି ଫିଟାଇଲେ ନାହିଁ । ଆନ୍ନା ଅପେକ୍ଷା କରିଥାନ୍ତି । ସେ ଭୂନ ହୋଇ ପ୍ରିନ୍ସ୍ ଭେସିଲଙ୍କ ଆଡ଼କୁ ଅର୍ଥପୂର୍ଣ୍ଣ ଚାହାଣିରେ ଅନାଇଥାନ୍ତି ।

ପ୍ରିନ୍ସ୍ ଭେସିଲ୍ ଶେଷରେ କହିଲେ, "କଣ ଆଉ କରିବି କହିଲେ ? ମତେ କିଛି ବୁଦ୍ଧି ଦିଶୁନାହିଁ । ବାପ ହିସାବରେ ସେମାନଙ୍କୁ ପାଠ ପଢ଼ାଇବାକୁ ମୋର ଯେତିକି କର୍ତ୍ତବ୍ୟ, ତା ମୁଁ କରିସାରିଛି । ହେଲେ କଣ ହେବ ? ଯୋଡ଼ାକଯାକ ଚୁଲିକି ଗଲେ । ଗୋଟାଏ ତ ହେଲା ମୂର୍ଖଟାଏ, ତେବେ ଯେତେ ଖରାପ ହେଲେ ବି ସେ କାହାରି ଅନିଷ୍ଟ କରିନାହିଁ । ଆଉ ଆରଟା,—ଆନାତୋଲେ ସେଇଟା ମୂର୍ଖ ପୁଣି ଦୁର୍ଦାନ୍ତ । ଯୋଡ଼ାକଯାକଙ୍କ ଭିତରେ ତଫାତ୍ ସେତିକି ।"

ସେ ଆଗଠୁ ଆହୁରି ତେଜରେ କଥା କହୁଥାନ୍ତି, ଆହୁରି ଅସ୍ୱାଭାବିକ ଭଙ୍ଗୀରେ । ସେ ମୁରୁକି ମୁରୁକି ହସୁଥାନ୍ତି । ତାଙ୍କର ଶୁଖିଲା କୋରୁକୋରୁ ଓଠ ଯୋଡ଼ିକର କୋଣ ମୋଡ଼ି ମୋଡ଼ିକା ହୋଇ ରୁକ୍ଷ ଓ ଅପ୍ରୀତିକର ଦେଖାଯାଉଥାଏ ।

ଆନ୍ନା ପାଭ୍ଲୋଭ୍ନା ବିଷଣ୍ଣ ଚାହାଣିରେ ତାଙ୍କୁ ଅନାଇ ଦେଇ କହିଲେ, "ଆପଣ ଯେମିତିଆ ଲୋକ ନା,— ଆପଣଙ୍କର ପିଲାଛୁଆ

ନ ଦେବା ଉଚିତ ଥିଲା । ଆପଣ ପିଲଙ୍କ ବାପ ନ ହୋଇଥିଲେ ଯେତେ ବାଛୁଲେ ଆପଣଙ୍କଠିଁ ମୁଁ ଆଉ କୌଣସି ଦୋଷ ପାଇ ନ ଥାନ୍ତି ।"

ପ୍ରିନ୍ସ୍ କହିଲେ, ଆପଣ ତ ଜାଣିଛନ୍ତି—ମୁଁ ଆପଣଙ୍କର କାନ୍ଦ ତୋଳିଲି, ତେଣୁ ମୋ ଅନ୍ତର ଭିତରର ଗୁପ୍ତ କଥା ଖୋଲି ଆପଣଙ୍କ ଆଗରେ ମୁଁ ଖୋଲି କହିପାରିବି । ବୁଝିଲେ ମୋ ପିଲାଏ ମୋର ଭାରି ବଡ଼ ବୋଝ ହୋଇଛନ୍ତି । ସେହି ଗୋଟିଏ ଦୁଃଖକୁ ମୁଁ ମୋ ଜୀବନରେ ମୁଣ୍ଡେଇ ମୁଣ୍ଡେଇ ବାଟ ଚାଲିଛି । ସେହି ମୋର ସନ୍ତାପ, ମୋର ଯନ୍ତ୍ରଣା, ଆ ଅନ୍ୟ କୌଣସି ଉପାୟରେ ମୁଁ ମୋ ଦୁଃଖର କଥା ଆପଣଙ୍କ ଆଗରେ ବୁଝାଇ ପାରୁନାହିଁ । ଆଉ ଅଧିକା ମୁଁ କଣ କରିପାରିବି ?"

ସେ ଏ ବାକ୍ୟଟି ସମ୍ପୂର୍ଣ୍ଣ କରି ସାରି ଅସହାୟ ହୋଇ ଭାଗ୍ୟକୁ ଆଦରି ରହିଲା ପରି ଭଙ୍ଗୀ କରି କାନ୍ଧ ଥରାଇଲେ ।

ଆନ୍ନା ପାଲୋଭ୍ନା ଗଭୀର ଚିନ୍ତା କରୁଥିବା ପରି ଜଣାପଡ଼ୁଥିଲେ । ସେ କହିଲେ, 'ଆପଣଙ୍କର ସେ ଅମାନିଆ ପୁଅଟି ପାଇଁ ଗୋଟିଏ ସ୍ତ୍ରୀ ଠିକଣା କରିବା କଥା ଆପଣ କେବେ ମୁଣ୍ଡରେ ପୂରେଇ ଥିଲେ କି ? ଲୋକେ କହନ୍ତି ଯେ, ସ୍ତ୍ରୀ ଲୋକମାନେ ନିଜେ ବିଭା ନ ହୋଇ ବୟସ୍କା ହୋଇଗଲେ ଅନ୍ୟମାନଙ୍କ ବିବାହ ସମ୍ବନ୍ଧ ସ୍ଥିର କରିବାକୁ ଭଲ ପାଇଲେ । ଅବଶ୍ୟ ମୋଠିଁ ସେ ଦୁର୍ବଳତାଟି ଅଛି ବୋଲି ମୁଁ ଭାବୁନାହିଁ । ତେବେ ଗୋଟିଏ ଯୁବତୀ ଉପରେ ମୁଁ ଆଖି ରଖିଛି ଯେ, ପିଲାଟି ଆପଣଙ୍କ ପୁଅକୁ ଠିକ୍ ହୁଅନ୍ତା, ସେ ଆମର ବନ୍ଧୁବାନ୍ଧବ, ପ୍ରିନ୍ସେସ୍ ବଲ୍‌କନ୍‌ସ୍କି, ବାପ ପାଖରେ ଅତି ଅଶାନ୍ତିରେ ରହିଛି ବିଚାରୀ ।"ପ୍ରିନ୍ସ ବେସିଲ କିଛି କହିଲେ ନାହିଁ । ଆସ୍ତେ ଆସ୍ତେ ମୁଣ୍ଡ ହଲାଇଲେ । ସଂସାରୀ ଲୋକର ଅଭ୍ୟସ୍ତ ତତ୍ପରତା ଓ ଘଟନାକୁ ଆପଣ ସ୍ମରଣ ପଟ୍ଟରେ ଛାପା ମାରିଦେଇ ରଖିନେବାର ଗୁଣ ଅନୁଯାୟୀ ସେ ହଠାତ୍ କ'ଣ ମୀମାଂସା କରିଦେଲେ ବୋଲି ସେଥିରୁ ଜଣାପଡ଼ୁଥାଏ ।

ସେ ଦୀର୍ଘଶ୍ୱାସ ପକାଇଲେ । ହତାଶ ଭାବନାରେ ଆପଣାକୁ ଭସାଇ ଦେଇ ସେ କହିଲେ, "ଆପଣ ଜାଣନ୍ତି ସେଇ ଆନାତୋଲେ ମୋ ପକେଟରୁ ବର୍ଷକୁ ହଜାର ରୁବଲ୍ ଉଡ଼ାଏ ।" ସେ ଟିକିଏ ବେଳ ତୁନି ପଡ଼ି ରହିଲେ । ପୁଣି କହିଲେ, "ସେ ଯେମିତି ଚାଲିଛି,

ସେମିତି ପାଞ୍ଚବର୍ଷ ଗଲେ କଣ ହେବ ତା ଦଶା ! ବାପା ହେବାର ଲାଭ ହେଉଛି ଏଇସବୁ ଦୁଶ୍ଚିନ୍ତା ।"

"ଆପଣଙ୍କର ସେ ପ୍ରିନ୍‌ସେସ୍‌ର ଧନସମ୍ପତ୍ତି ଅଛି ତ ?" "ତା ବାପ ଭାରି ଧନୀ ଆଉ ଭାରି କୃପଣ । ମଫସଲରେ ତାଙ୍କର ଜମିବାଡ଼ି ଅଛି ।" ସେଇଠି ସେ ଥାଆନ୍ତି । ସେ ସେହି ପ୍ରସିଦ୍ଧ ବଲ୍‌କନ୍‌ସ୍କି, ବୃଦ୍ଧ ସମ୍ରାଟ ମରିବା ପୂର୍ବରୁ ଯାହାଙ୍କୁ ରାଜକାର୍ଯ୍ୟରୁ ଅନ୍ତର କରିବାକୁ ପଡ଼ିଥିଲା । ତାଙ୍କୁ ଲୋକେ ନାଁ ଦେଇଥିଲେ "ପ୍ରୁସିଆର ପ୍ରିନ୍‌ସ୍ ।" ତାଙ୍କର ପ୍ରଖର ବୁଦ୍ଧି ଅଛି, କିନ୍ତୁ ସେ ଭାରି ଏକବାଗିଆ ଲୋକ, ବଡ଼ ବଦ୍‌ରାଗୀ । ଝିଅଟି ବିଚରା ଏଡ଼େ ଦୁଃଖରେ ଅଛି ଯେ କହିଲେ ନ ସରେ । ତାର ଖାଲି ଭାଇଟିଏ, ଲିସା ମାନେନ ସାଙ୍ଗରେ ଯା ହାର ବାହାଘର ହେଲା ।

ସେନାପତି କୁତୁସାଉଁକର ସେ ପାର୍ଶ୍ୱରେ ଉପସେନାପତି, ଆପଣ ଏଇଠି ତାକୁ ଅତିଶୀଘ୍ର ଦେଖିବେ ।"

ହଠାତ୍ ଭଦ୍ରମହିଳାଙ୍କ ହାତ ଧରିପକାଇ ବିନା କାରଣରେ ତାଙ୍କୁ ତଳକୁ ଝୁଙ୍କି ଦେଇ ପ୍ରିନ୍‌ସ ବେସିଲ୍ କହି ପକାଇଲେ, "ଆଦରର ଆନ୍ନା ମୋର, ଏ ପ୍ରସ୍ତାବଟି ପକ୍କା କରିଦେଲେ ମୁଁ ଚିରକାଳ ଆପଣଙ୍କର ଦାସ ହୋଇ ରହିଥିବି । ସେ ଯଦି ଧନୀ ହୋଇଥିବ, ଉପଯୁକ୍ତ ପରିବାରର ପିଲା ହୋଇଥିବ, ତେବେ ମୁଁ ଯେପରି ଖୋଜୁଛି ସେ ଅବିକଳ ସେହିପରି ।"

ତା ପରେ, ଯେଉଁ ସହଜ ଅଥଚ ସୁରୁଚିପୂର୍ଣ୍ଣ ଆନ୍ତରିକତା ତାଙ୍କର ସ୍ୱରୂପ ଉପରେ ଫୁଟି ରହିଥିଲା, ସେହି ଭଙ୍ଗୀରେ ସେ ତାଙ୍କର ହାତକୁ ଚୁମ୍ବନ କଲେ, ହାତଧରି ଏକର ସେକର ହଲାଇଲେ, ଆପଣା ଆସନରେ ଅଜାଡ଼ି ହେଲାପରି ବସିପଡ଼ିଲେ ଓ ଅନ୍ୟଆଡ଼କୁ ଅନାଇଲେ । ମନେ ମନେ ଭାବି ଭାବି ଆନ୍ନା ପାଭ୍ଲୋଭ୍ନା କହିଲେ, "ହଉ ତେବେ । ଆଜି ସଞ୍ଜରେ ଲିସାକୁ ଏ ବିଷୟ କହିବି । (ଲିସା ଯୁବକ ବଲ୍‌କନ୍‌ସ୍କିଙ୍କ ସ୍ତ୍ରୀ) । କିଏ କହିପାରେ, ହୁଏତ ଏସମ୍ବନ୍ଧଟି ଠିକଣା କରାଇ ଦେଇ ପାରିବ । ଆପଣଙ୍କ ପରିବାର ପ୍ରତି ମୋର ଯେଉଁ ଶ୍ରଦ୍ଧା ଅଛି, ତାହାରି ଖାତିରରେ ମତେ ସେହି ବୟସ୍କା ଅଭିଆଡ଼ୀମାନଙ୍କ କାମରେ ନୂଆ କରି ହାତ ଦେବାକୁ ହିଁ ପଡ଼ିବ ।"

## ଦୁଇ

ଧୀରେ ଧୀରେ ଆନ୍ନା ପାଲୋଭ୍ନାଙ୍କ ବୈଠକଖାନା ସେଣ୍ଟପିଟର୍ସବର୍ଗ ସହରର ସମାଜର ସବୁଠୁ ବେଶୀ ନାମଗଣ୍ୟ ଲୋକଙ୍କ ଗହଳରେ ପୂରି-ଉଠିଲା । ସେଠି ଯେଉଁମାନେ ଆସି ଏକାଠି ହେଲେ, ତାଙ୍କ ଭିତରେ ବୟସ ଓ ଚରିତ୍ର ଅନୁସାରେ ଅବଶ୍ୟ ବହୁତ ପାର୍ଥକ୍ୟ ଥିଲା କିନ୍ତୁ ସେମାନେ ସବୁ ଗୋଟିଏ ସ୍ତରର ହିଁ ମଣିଷ । ପ୍ରିନସ୍‌ବେସିଲଙ୍କ ଝିଅ ପରମାସୁନ୍ଦରୀ ପ୍ରିନସେସ ହେଲେନ୍ ଆସିଲେ ତାଙ୍କ ବାପାଙ୍କ ସଙ୍ଗରେ ନେଇ ଯିବାକୁ, ଇଂରେଜ ରାଜଦୂତଙ୍କ ଘରକୁ ଯିବେ ବୋଲି । ସେ ତାଙ୍କ ନାଚ ପୋଷାକ ଉତାରି ନ ଥିଲେ, ନାଚ ପୋଷାକ ଉପରେ ତାଙ୍କ କାନ୍ଧରେ ରାଜଦରବାରର ଚିହ୍ନ ପଦକ ଝଲମଲ କରୁଥିଲା । ଆଉ ସେଠି ଥିଲେ ସେଣ୍ଟପିଟର୍ସବର୍ଗର ସବୁଠୁ ବେଶୀ ମନୋହାରିଣୀ ସେହି ନାରୀ, ପ୍ରିନ୍‌ସେସ ବଲକନ୍‌ସ୍କୀ , ଆକୃତିରେ ସାନ, ଯୌବନ ଛଳ-ଛଳ, ଅତି ମେଳାପୀ । ଠିକ୍ ତା ଆଗ ଶୀତଦିନେ ତାଙ୍କର ବାହାଘର ସରିଥିଲା । ପ୍ରଥମ ଗର୍ଭ, ତେଣୁ ସେ 'ବିଶାଳ ଦୁନିଆ' ଭିତରକୁ ଯାଉ ନ ଥିଲେ' କିନ୍ତୁ ସାନ ସାନ ଭୋଜି ନିମନ୍ତ୍ରଣକୁ ଆସୁଥିଲେ । ସେଠିକି ଆସି-ଥିଲେ ପ୍ରିନ୍‌ସ ବେସିଲ୍‌ଙ୍କ ପୁଅ ପ୍ରିନ୍‌ସ ହିପୋଲାଇଟ୍, ସଙ୍ଗରେ ମର୍ଟେମାର୍ଟ୍, ତାଙ୍କୁ ସେ ବାଏଁ ଡାହାଣେ ଅନ୍ୟମାନଙ୍କ ସଙ୍ଗେ ପରିଚୟ କରାଇ ଦେଇ ଦେଉଥିଲେ । ଆଉ ଥିଲେ ମହନ୍ତ ମହାରାଜ ଆବେ ମୋରିଓ, ପୁଣି ଆହୁରି କେତେ ।

ଆନ୍ନା ପାଲୋଭ୍ନା ପ୍ରତ୍ୟେକ ଅତିଥିଙ୍କି ପଚାରୁଥିଲେ, "ମୋ ମାଉସୀଙ୍କ ସଙ୍ଗେ କଥାଭାଷା ହେଲାଣି ?" ନହେଲେ, "ମୋ ମାଉସୀଙ୍କ ସଙ୍ଗେ ଚିହ୍ନାପରିଚୟ ଅଛି ?"; ଜଣକ ଉତ୍ତରରୁ ଆଉ ଜଣଙ୍କୁ ଗୋଟିଏ ସାନ ବୁଢ଼ୀଙ୍କ ପାଖକୁ ନେଇ ଯାଉଥିଲେ । ବୁଢ଼ୀ ସେହିକ୍ଷଣି ସେ ଘର

ଭିତରେ ଆସି ଠିଆହୁଅନ୍ତି, ମୁଣ୍ଡରେ ଏକ ଟୋପି, ବେକ ତଳେ ମସ୍ତବଡ଼ ଜାପଟିଏ ପରି ବାଓଟାଇ ବେକବନ୍ଧା । ଚିନ୍ତା କରେଇ ଦେଖିଲାବେଳେ ଆନ୍ନା ପାଭ୍ଲୋଭ୍ନା ଆଗ ଅତିଥିଙ୍କ ମୁଁଙ୍କୁ ତାପରେ ମା ର୍ଙ୍କ ମୁହଁକୁ ରହି ରହିକା ଅନାଇ ଯାଉଥାନ୍ତି, ତାପରେ ତାଙ୍କୁ ଛାଡ଼ିଦେଇ ଆଉଜଣଙ୍କୁ ଆଣିବାପାଇଁ ଚାଲିଆସୁଥାନ୍ତି । ଏଇ ଅଜଣା ଅକର୍ମଣ୍ୟ ବୁଢ଼ୀ ଜଣଙ୍କ ପାଇଁ ସମସ୍ତଙ୍କୁ ଏମିତି ପାଳି କରିବାକୁ ପଡ଼ୁଥାଏ, ତାଙ୍କ ପାଇଁ ପାହୁଲକର କାହାରି ଖାତିର ନଥାଉ ପଛେ । ଏଣେ ସେମାନଙ୍କ ସଙ୍ଗେ ବୁଢ଼ୀଙ୍କର, ବୁଢ଼ୀଙ୍କ ସଙ୍ଗେ ସେମାନଙ୍କର ଭୁଣ୍ଡ କଥାରେ ଯେଉଁ ମର୍ଯ୍ୟାଦା ଦିଆ ନିଆ ଚାଲିଥାଏ ଆନ୍ନା ପାଭ୍ଲୋଭ୍ନା ଅଧାଗମ୍ଭୀର ଅଧାବିଷର୍ଣ୍ଣ ଦୃଷ୍ଟିରେ ଅନାଇଁ ରହି ସେସବୁ କଥାରେ ଭାରି ଖୁସିହେଲାପରି ତାକୁ ଶୁଣୁଥାନ୍ତି । ମାଉସୀ ତ' ଘୋରଚେଇ ଚୋରନ୍ତଇ ହୋଇ ସମସ୍ତଙ୍କୁ ସେହି ଏକା କଥା କହି ଲାଗିଥାନ୍ତି । ଅତିଥିଙ୍କ ଦେହପା କଥା ପଚାରନ୍ତି । ଆପଣା ଦେହପା ବିଷୟରେ ବକ୍ତୃତା ଦିଅନ୍ତି, ପୁଣି ସାମ୍ରାଜ୍ଞୀ ରାଜମାତାଙ୍କ ସ୍ୱାସ୍ଥ୍ୟ ବିଷୟରେ ଆଉ କହନ୍ତି, 'ଭଗବାନଙ୍କର ଭାରି ଦୟା, ଆମ ସାମ୍ରାଜ୍ଞୀ-ରାଜମାତାଙ୍କ ଦେହ ଆଗଠୁ ଏବେ ଭଲ ଅଛି ।' ଯେଉଁ ଅତିଥିଜଣକ ସେତେବେଳେ ଭାଲୁ ହାବୁଡ଼ରେ ପଡ଼ିଲା ପରି ତାଙ୍କ ହାବୁଡ଼ରେ ପଡ଼ିଥିବେ ସେ ତାଙ୍କଠୁ ଖସି ପଳାଇବାକୁ ତରତର ହେଉଛନ୍ତି ବୋଲି ଦେଖାଇ ହେଉନଥାନ୍ତି ଚିନା, ସଜ୍ଜପହରଯାଏଁ ସେଠୁ ଘରକୁ ଗଲାପାଏ ପୁଣି ଯେମିତି ତାଙ୍କ ପାଖକୁ ଆସିବାକୁ ନପଡ଼େ ସେ ବିଷୟରେ ହୁସିଆର ହୋଇ ତରକି ରହନ୍ତି ।

ଗୋଟିଏ ଟିକି ମଖମଲ ବଟୁଆ ଉପରେ ସୁନା ଜରି କାମ ହୋଇଥାଏ । ତାହାର ଭିତରେ ପୁରାଇ ପ୍ରିନ୍‌ସେସ୍ ବଲକନ୍‌ସ୍କି କଛି ବୁଣାବୁଣି କାମଟି ଧରିନ ଆସିଥାନ୍ତି । ତାଙ୍କ ଉପର ଓଠ ଏଡ଼େ ସୁନ୍ଦର, ସେ ଲୁନ ଓଠଟିକୁ ଥରେ ଅନାଇଁଦେଲେ ଆଖି ଓଟାରି ଆଣିହେବ-ନାହିଁ । ତା ଉପରେ ନହେଇ ରୁମ ପରି ପାତଳ ହୋଇ ପରସ୍ତେ ରୁମ, ବାଳ ହୁଏ କି ନହୁଏ ଏହିପରି । ସେହି ଟିକି ଓଠଟିକୁ ଯେତେ କହିଲେ ଯେପରିକି ସେ ତଳ ଓଠ ଉପରେ ବୁଜି ହେବାକୁ ନାରାଜ । ଏଇ ସାନ ଖୁଣଟିର ଥିଲା ଗୋଟିଏ ବଶିଷ୍ଟ ସ୍ୱରୂପ, ସତେକି ଏକ ମୌଳିକତା, ଯାହା ଅନ୍ୟ କାହାଠି ନଥାଏ, ସେହି ଅଧବୁଜା ପାଟିଟି ତାଙ୍କୁ ଆହୁରି ଅଧିକ

ସୁନ୍ଦର କରି ଦେଉଥିଲା । ଏକ ସର୍ବାଙ୍ଗସୁନ୍ଦରୀ ପରମ ରୂପବତୀ ନାରୀର ଅତି ବିଶିଷ୍ଟ ଛବି ସେ ଅଧାଖୋଲା ମୁହଁ, ତାର ନିଜସ୍ୱ ବିଶିଷ୍ଟତା । ଜୀବନ ଓ ସ୍ୱାସ୍ଥ୍ୟରେ ପରିପୂର୍ଣ୍ଣ ସେହି ଲାବଣ୍ୟବତୀ ମାତୃମୂର୍ତ୍ତିକି ଦେଖି ସମସ୍ତେ ପ୍ରଶଂସା କରୁଥିଲେ ଓ ଅଦ୍ଭୁତ ପ୍ରଶଂସା କରୁଥିଲେ ସେ ଅସଜ ଗର୍ଭ ଅବସ୍ଥାରେ ବି କିପରି ସେ ଧୀରେ ଧୀରେ ଆପଣାକୁ ଚଳାଇ ନେଇ ପାରୁ-ଥିଲେ । ଯେତେ ଲୋକ ତାଙ୍କ ସହିତ ବିପଦ କଥାବାର୍ତ୍ତା କରନ୍ତି, ବିରକ୍ତ ହୋଇ ପଡ଼ିଥିବା ଯୁବକ ଲୋକ ହୁଅନ୍ତୁ କି ନୀରସ ବୃଦ୍ଧଲୋକ ହୁଅନ୍ତୁ, ସମସ୍ତଙ୍କୁ ଲାଗୁଥାଏ ସେ ଯେପରି କି ତାଙ୍କ ମୋହିନୀ ଶକ୍ତିରୁ ଆପେ କିଛି ଧରି ରଖିନେଇ ପାରିଛନ୍ତି କି କିଛି ନହେଲେ ଅନ୍ତତଃ ଆପଣାକୁ ଅନ୍ୟ ଆଖିରେ ରୁଚିକର କରିପାରିଛନ୍ତି । ଏତେ ସନ୍ଧାମକ ହୋଇଥିଲା ତାଙ୍କର ସେହି ଆଲୁଅ କଲାଭଳି ମୁରୁକି ହସ । କଥା କହିଲାବେଳେ ଯେମିତି ସେ ହସି ଦେଉଥିଲେ, ସେତେବେଳେ ଦାନ୍ତଗୁଡ଼ିକ ମୁକ୍ତାପରି ଦିଶୁଥିଲା ।

ଗ୍ରେଟିଆ ପ୍ରିନ୍‌ସେସ ନାଚିଲା ପରି ସାନ ସାନ ପାହୁଣ୍ଡ ପକାଇ ସାମାନ୍ୟ ଦୋହଲିଲା ପରି ଚାଲି ଚାଲି ଟେବୁଲ ଚାରିକଡ଼ରେ ବୁଲି ଆସିଲେ । ତାପରେ ପିନ୍ଧା ପୋଷାକର ଭାଙ୍ଗଗୁଡ଼ାକ ଠିକେଇ ଥରେଇ ସଜାଡ଼ି ଦେଇ ରୂପାର ଚାହା ପାତ୍ର ଯେଉଁଠି ଥୁଆ ହୋଇଥିଲା ତାରି କଡରେ ପଡ଼ିଥିବା ସୋଫା ଉପରେ ଆରାମରେ ବସି ପଡ଼ିଲେ । ତାଙ୍କ ଧରଣ ଦେଖି ମନେ ହେଉଥିଲା ଯେପରି କି ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ହେଉଛି ଆପଣାକୁ ଖୁସି କରିବା ଓ ପରଙ୍କୁ ଖୁସି କରିବା ।

ସାନ ମୁଣିଟି ଖୋଲି ପକାଇ ସମସ୍ତିଙ୍କି କଥା କହିଲା ପରି ସେ କହିଲେ, "ସାଙ୍ଗରେ ମୋ ହାତ କାମଟାକୁ ଘେନି ଆସିଛି । ଆନ୍ନା, ମତେ ତୁମେ ଠକିବା ପାଇଁ ଡାକିନାହଁ ତ' ?" ତୁମେ କଣ ଲେଖିଥିଲ ଯେ 'ଅଳ୍ପ କେଇଜଣ ବନ୍ଧୁଙ୍କ ସଙ୍ଗେ ଭେଟାଭେଟି ହେବ ଆସ' । ସେଇଥି ପାଇଁ ଦେଖୁଚ କେତେ ଖରାପ ପୋଷାକ ପିନ୍ଧି ମୁଁ ଚାଲି ଆସିଚି" । ସେ ଦୁଇ ହାତଯାକ ଉପରକୁ ଟେକିଦେଇ ଦେଖାଇଲେ ଏକ ରୁଚିକର ସକାଳ-ପିନ୍ଧା ସାଜ ପିନ୍ଧିଛନ୍ତି ସେଥିରେ ରେଶମ ସୂତାରେ କାରିଗରି କାମ ପଡ଼ିଚି । ତା ଉପରେ ଅଣ୍ଟାରେ ଏକ ଓସାର କମରପଟି ବନ୍ଧା ହୋଇଛି ।

"ସେ ପୋଷାକଟା କଥା ମନକୁ ଆଣି ବ୍ୟସ୍ତ ହୁଅନାହିଁ ଲିସା," ଆନ୍ନା କହିଲେ "ତୁମେ ଯାହା ମନ ତାହା ପିନ୍ଧ ପଛେ ସବୁବେଳେ ତୁମେ ସମସ୍ତିଙ୍କଠୁଁ ବେଶୀ ସୁନ୍ଦର ।"

ସେହି ଭଙ୍ଗୀରେ ଲିସା କହିଲେ, "ଜାଣିଛ ତୁମେ ସମସ୍ତେ—" ତା ପରେ ସୈନ୍ୟବିଭାଗର ଏକ ଅଫିସରଙ୍କ ଆଡ଼କୁ ବୁଲାପଡ଼ି କହିଲେ, "ଜାଣିଛ ସମସ୍ତେ, ମୋ ସ୍ୱାମୀ ମତେ ଛାଡ଼ିଦେଇ ଚାଲିଯାଉଛନ୍ତି ! ଆପେ ଜାଣିଶୁଣି ସେ ମରିବାକୁ ଯାଉଛନ୍ତି । କଣ ଥାଏ ଏ ନଅାଁ ଲାଗା ଲଢ଼େଇରେ କହିଲ ?", ସେ ପ୍ରିନସ୍ ବେସିଲ୍‌ଙ୍କୁ ପଚାରିଲେ, କିନ୍ତୁ ସେ ଉତ୍ତର ପାଇଁ ଅପେକ୍ଷା କଲେ ନାହିଁ । ବେସିଲ୍‌ଙ୍କ ଝିଅ ହେଲେନ୍ ସଙ୍ଗରେ କଥାଭାଷା ଆରମ୍ଭ କରିଦେଲେ । "କେଡ଼େ ଚମତ୍କାର ଟିକି ମଣିଷଟିଏ !", ପ୍ରିନସ୍ ବେସିଲ୍ କହିଲେ ସେ ଘରର ମାଲିକାଣିଙ୍କି ।

ସାନ ପ୍ରିନସେସ୍ ପହଞ୍ଚିବାର ଅଳ୍ପସମୟ ଉତ୍ତାରୁ ଜଣେ ଭାରି ଡେଙ୍ଗା ଛେଳିପିଟା ଯୁଆନ୍ ଆସି ପହଞ୍ଚିଲା । ତା ମୁଣ୍ଡବାଳ ଏଡ଼େ ଟିକି ଟିକି ହୋଇ କଟା ହୋଇଥିଲା । ଆଖିରେ ଚଷମା । ଫିକା ରଙ୍ଗର ପତ୍‌ଲୁନ୍, ତା କାଟଛାଟ ଖୁବ୍ ଫେସନ । ବାଦାମି ରଙ୍ଗର କୋଟ, କାମିଜ୍‌ର୍ ହାତମୁହଁ ଝାଲର ଓସାରିଆ । ସେହି ଯୁବକ କାଉଣ୍ଟ ବେଜୁହଭ୍‌ଙ୍କ ଜାରଜ ପୁଅ ପିଏରେ । ମହାରାଣୀ କ୍ୟାଥାରିନ୍‌ଙ୍କ ରାଜତ୍ୱବେଳେ କାଉଣ୍ଟ ବେଜୁହଭ୍ ଥିଲେ ଜଣେ ଅତି ପ୍ରସିଦ୍ଧ ଅମାତ୍ୟ, ସେ ତ ଅତୀତର କଥା ଏତେବେଳକୁ ବେଜୁହଭ୍ ଅସୁସ୍ଥ, ତାଙ୍କର ଶେଷ ଦଶା, ମସ୍କୋ ନଗରୀରେ ଅଛନ୍ତି, ରୋଗ ଶଯ୍ୟାରେ ପଡ଼ି ପଡ଼ି ଧୀରେ ଧୀରେ ମୃତ୍ୟୁଆଡ଼କୁ ମୋହିଁ ଚାଲିଛନ୍ତି । ଯୁବକଟି ଏପର୍ଯ୍ୟନ୍ତ କୌଣସି ନଉକିରି କରିନାହାନ୍ତି, ବିଦେଶରୁ ଅଳ୍ପଦିନ ହେଲା ଫେରିଛନ୍ତି, ସେଠ ସେ ପାଠପଢୁଥିଲା, ସେଣ୍ଟପିଟର୍ସବର୍ଗ ନଗରୀର ଖାନ୍ଦାନ ସମାଜରେ ପିଏରେର ଏ ନୂତନ ପ୍ରବେଶ ।

ଆନ୍ନା ପାଭ୍‌ଲୋଭ୍‌ନା ତାକୁ ସ୍ୱାଗତ ଜଣାଇଲାବେଳେ ସେତିକି ଆଦର ଅଭ୍ୟର୍ଥନା କଲେ ଯେତିକି ସେ ଦେଖାଉଥାନ୍ତି ତାଙ୍କ ଅତିଥିମାନଙ୍କ ଭିତରେ ଯେଉଁମାନେ ସବୁଠୁଁ କମ୍ ନିମ୍ନ ସେହିମାନଙ୍କୁ ତାହେଲେ ବି ଏ ଭଦ୍ରଲୋକଟିକି ପାଛୋଟି ନେଲାବେଳେ ତାକୁ କେବଳ ନିମ୍ନ ଶ୍ରେଣୀର ଆଦର ଅଭ୍ୟର୍ଥନା ଦେଖାଇଲେ ବି ସେ ଯେତେବେଳେ ପିଏରକୁ ଅନାଇଁ ଦେଖିଲେ ତାଙ୍କ ମୁହଁ ଉପରେ ଦୁଶ୍ଚିନ୍ତା ଓ ଆତଙ୍କର ଛାଇ ଖେଳିଗଲା । ଆମେ ଯେତେବେଳେ କୌଣସି ଗୋଟାଏ ପ୍ରକାଣ୍ଡ ପଦାର୍ଥକୁ ଦେଖୁଁ ଯାହା ତାର ପରିସ୍ଥିତି ସହିତ ଖାପେ ନାହିଁ, ଅସଙ୍ଗତ

ବଦଶେ ସେତେବେଳେ ଆମ ମୁହଁର ଭଙ୍ଗୀ ଯେପରି ବଦଶେ ପିଏରେଙ୍କୁ ଅନାଇଁ ଆନ୍ନା ପାଭ୍ଲୋଭ୍ନାଙ୍କ ମୁହଁର ଭଙ୍ଗୀ ସେହିପରି ବଦଳିଲା । ସେଠି ଯେତେ ମଣିଷ ଥିଲେ, ଆକାରରେ ପିଏରେ ଯେ ସମସ୍ତଙ୍କଠୁଁ ଖୁବ୍ ଡେଙ୍ଗା ସେଥିରେ ତ ସନ୍ଦେହ ନ ଥିଲା । କିନ୍ତୁ ଆନ୍ନା ପାଭ୍ଲୋଭ୍ନାଙ୍କ ମନରେ ଏପରି ଧାରଣା ହେବାର ଅନ୍ୟ କାରଣ ଥିଲା । କାରଣଟା ପିଏରେର ପ୍ରକାଣ୍ଡ ଆକାର ନୁହେଁ, କାରଣ ତାର ସେ ଚାହାଣି । ସେ ଚାହାଣିଟା କେମିତି ଲାଜକୁଳା ହେଲେ ବି ଖୋଲାଖୋଲା । ସେ ତାର ଭାବନାକୁ ସଫାସଫା ଜଣାଇ ଦିଏ, ଖୁବ୍ ମୁନିଆ ସେ ଚାହାଣି; କିନ୍ତୁ ଖୁବ୍ ଆନ୍ତରିକତାମୟ । ସେତିକି ଦେଖି ସେ ନିମନ୍ତ୍ରଣକାରିଣୀ ଚମକି ପଡ଼ିଲେ, ଆଉ ସେତିକି ଲାଗି ପିଏରେ ଅନ୍ୟ ସମସ୍ତଙ୍କଠୁଁ ବାରି ହୋଇ ପଡ଼ୁଥାଏ ।

ଆନ୍ନା ପାଭ୍ଲୋଭ୍ନା ତାକୁ ନେଇ ତାଙ୍କ ବୁଢ଼ୀ ମାଉସୀଙ୍କି ଭେଟାଇ ଚିହ୍ନା କରାଇ ଦେଲାପରେ କହିଲେ, "ମହାଶୟ ପିଏରେ ! ଆପଣ ଯେ ଏଡ଼େ କଷ୍ଟକରି ଜଣେ ଅସହାୟା ପଙ୍ଗୁ ବୁଢ଼ୀ ମଣିଷଙ୍କୁ ଦେଖିବାକୁ ଆସିଲେ ସେ ଆପଣଙ୍କର ଅସୀମ ଦୟା । ଆଜ୍ଞା, ନା ଦୟାଠୁଁ ଆଦରର ବେଶି—" କହିଦେଇ ମାଉସୀଙ୍କ ଆଡ଼କୁ ଆଶଙ୍କାରେ ଅନାଇଁ ରହିଲେ ।

ପିଏରେ ତା ଉତ୍ତରରେ କଣ ବଡ଼ ବଡ଼ ହୋଇ କହିଲା ବାରି-ହେଲା ନାହିଁ, ଆଉ ତା ଆଖି ଘରଯାକ ବୁଲିଗଲା ଯେମିତି ସେ କାହାକୁ ଖୋଜୁଛି । ହଠାତ୍ ଏକ ଉଜ୍ଜ୍ୱଳ ହସରେ ତା ମୁହଁ ସତେକି ଆଲୁଅ ହୋଇଗଲା । ସେ ସ୍ଥାନ ପ୍ରିନ୍‌ସେସ୍‌ଙ୍କ ଆଡ଼କୁ ଚାହିଁ ମୁଣ୍ଡ ହଲାଇଲା, ଯେପରିକି ସେ ଆଉ ପ୍ରିନ୍‌ସେସ୍ କେଉଁକାଳରୁ ପରସ୍ପରର ଅତି ଆପଣାର । ତାପରେ ସେ ମାଉସୀ ବୁଢ଼ୀଙ୍କ ଆଡ଼କୁ ଚାଲିଲା । ଆନ୍ନା ପାଭ୍ଲୋଭ୍ନାଙ୍କ ଆଶଙ୍କା ଅମୂଳକ ନ ଥିଲା; କାରଣ ମାଉସୀଙ୍କ ପାଖକୁ ଯାଉ ଯାଉ ହଠାତ୍ ଚଞ୍ଚଳବେଗରେ ବୁଲିପଡ଼ି ତାଙ୍କ ଆଡ଼କୁ ପିଠି ବୁଲାଇ ଦେଇ ସେ ମାଉସୀଙ୍କ ପାଖରୁ ଚାଲିଗଲା । ସାମ୍ରାଜ୍ଞୀ ରାଜମାତାଙ୍କ ଦେହପା ବିଷୟରେ ମାଉସୀ ଯେଉଁ ବକ୍ତୃତା ଆରମ୍ଭ କରି ଦେଇଥିଲେ, ତାର ଶେଷଯାକେ ଶୁଣିବା ଲାଗି ଟିକିଏ ବୋଲି ଅଟକିଲା ନାହିଁ ।

ଆମନ୍ତ୍ରଣକାରିଣୀ ଆନ୍ନା ପାଭ୍ଲୋଭ୍ନା ଗମ୍ଭୀର ହୋଇ ଯାଇ ତାଙ୍କୁ ଅଟକାଇ, ପଚାରିଲେ "ଆବେ ମୋରିଓ ମହାମାନ୍ୟ ମହାରାଜଙ୍କୁ ଜାଣିଛନ୍ତି ଆପଣ ? ସେ ଜଣେ ଭାରି ଅଦ୍ଭୁତ ମଣିଷ ।"

"ହଁ ମୁଁ ଶୁଣିଛି ଶାଶ୍ୱତ ଶାନ୍ତି ପ୍ରତିଷ୍ଠା ବିଷୟରେ ତାଙ୍କ ଯୋଜନାମାନଙ୍କ କଥା । ବଡ଼ ଚତୁର ଯୋଜନା ସେସବୁ; କିନ୍ତୁ ତାକୁ କାର୍ଯ୍ୟରେ ପରିଣତ କରିବା ଅସମ୍ଭବ ।

ଯାହା କିଛି ପଦେ କହିଦେଇ ତାଠୁଁ ମୁକୁଳି ଯାଇ ଆମନ୍ତ୍ରଣକାରିଣୀ ହିସାବରେ ଆପଣା କର୍ତ୍ତବ୍ୟ ଭୁଲେଇବାକୁ ପଡ଼ିବ, ଏଇଆ ମନେ କରି ଉପର ଠାଉରିଆ କରି ଆନ୍ନା ପାଭ୍ଲୋଭ୍ନା କହି ପକାଇଲେ "ସତେ ! ଆପଣ ଏପରି ଭାବୁଛନ୍ତି ?"

ପିଏରେ ପୁଣି ଆଉଥରେ ଗୋଟାଏ ଭୁଲ୍ କଲା । ଯେଉଁ ହେଲା ତାର ଦ୍ୱିତୀୟ ଭୁଲ । ଅଗରେ ଜଣେ ଭଦ୍ରମହିଳାଙ୍କ ପାଖରୁ ସେ ଚାଲି ଆସିଥିଲା ତାଙ୍କ ତୁଣ୍ଡରୁ କଥା ନ ସରୁଣୁ । ଏଥରକ ଆଉ ଜଣେ ଭଦ୍ରମହିଳା ତା'ଠୁଁ କେମିତି ଖସି ପଳାଇବେ ଭାବୁଛନ୍ତି ସେ ତାଙ୍କୁ ଅଟକାଇଦେଲା । ତା ପ୍ରକାଣ୍ଡ ପ୍ରକାଣ୍ଡ ପାଦଦିଟା ସେ ଘର ଚଟାଣରେ ସତେକି ଚେର ଲାଗି ଯାଇଥାଏ, ସେ ତାଙ୍କ ଉପରେ ନଇଁପଡ଼ି କହି ଲାଗିଥାଏ, ଆଉ ବୁଝାଇବାରେ ଲାଗିଥାଏ, କେମିତି ଆବେ ମୋରିଓଙ୍କ ସ୍ୱପ୍ନଗୁଡ଼ାକ ସବୁ ଅବାସ୍ତବ, ସେଗୁଡ଼ାକୁ କାର୍ଯ୍ୟରେ ପରିଣତ କରିବା ସମ୍ଭବ ନୁହେଁ ।

ଆନ୍ନା ପାଭ୍ଲୋଭ୍ନା ହସିଦେଇ କହିଲେ, "ଥାଉ, ଆଉ କେବେବେଳେ ସେ କଥା ଆଲୋଚନା କରିବା ।"

ଟୋକାଟା ଭଦ୍ରତା କଣ ତା ଜାଣେ ନାହିଁ । ତା ପାଖରୁ ଖସି ପଳାଇ ଆନ୍ନା ପାଭ୍ଲୋଭ୍ନା ଆପଣା କାମରେ ଲାଗିଗଲେ । କାମ, କିଏ କଣ କହୁଛି କାନପାରି ଶୁଣିବା, ନଜରଦେବା, ଯେଉଁଠି କଥାଭାଷା ଟିକିଏ ଧିମେଇ ଆସୁଛି, ସଙ୍ଗେ ସଙ୍ଗେ ସେଠିକି ଛୁଟିଯାଇ କଥା ଖିଅରେ ଯେଉଁଠି ଟିକିଏ ବଳ ଊଣା ପଡ଼ିଗଲା, ସେଠି ବଳ ଦେଇ କଥାଭାଷାକୁ ତେଜ ଦେବା । ସତେ ଯେପରିକି ସୂତାକଟା କଳରେ ସେ ଜଣେ ଦେଖଣ୍ଡି । ଦେଖଣ୍ଡି ଯେପରି ଯନ୍ତ୍ରଗୁଡ଼ାକ ମଝିରେ ଏମୁଣ୍ଡ ସେମୁଣ୍ଡ ଧାଁ ଧପଡ଼ କରି ତଦାରଖ କରୁଥାଏ, କେଉଁ ଟାକୁଡ଼ିଟା ଅଟକି ଗଲା କି କେଁ କେଁ ଶବ୍ଦକଲା କି ଖଟର ଖଟର ହୋଇ ବାଜିଲା, ଧାଇଁଯାଇ ତାକୁ

ସଜାଡ଼ି ଦିଏ କି ଏକଦମ୍ ବନ୍ଦ କରିଦିଏ, ଏ ବି ସେମିତି । ଆନ୍ନାସେରର୍ ତାଙ୍କ ବୈଠକଖାନା ଭିତରେ ଏକର ସେକର ହୋଇ ବୁଲୁଥାନ୍ତି । କେଉଁଠି ଦଳେ ଖାଲି ଚୁପ୍ ଚୁପ୍ ହୋଇ ବସିଛନ୍ତି ଯେ କଥା ନାହିଁ, ବାର୍ତ୍ତା ନାହିଁ, ଆଗ ଗଲେ ସେମାନଙ୍କ ପାଖକୁ । ପଛେ ଗଲେ ଆଉ କେଉଁ ଦଳକୁ ଯେଉଁଠି ଲୋକେ ଗପିବାକୁ ଉଦ୍‌ଗ୍ରୀବ, ପଦେ କଥା କହିଦେଲେ, ଅଥବା ଦଳ ଭିତରେ ଯେ ଯେଉଁ ଜାଗାରେ ବସିଛନ୍ତି, କାଇଦା କଦରରେ ତାଙ୍କ ଭିତରୁ ଟିକିଏ କାହାକୁ ଏଠୁ ସେଠିକି କରିଦେଲେ, ଏତିକିରେ ଗପିଲା କଳକୁ ପୁଣି ନୂଆ କରି ଚଳାଇ ହେଉଥିଲା, ଆଉ ତା'ପରେ ସେ କଳ ସମାନ ଛନ୍ଦ ରଖି ଗପି ଚାଲୁଥିଲା ଆହୁରି ଲୁହାଏ; କିନ୍ତୁ ସେ ଯାହା କରୁଥିଲେ ତା ଭିତରେ ବି ପିଏରେ ପ୍ରତି ତାଙ୍କ ଆଶଙ୍କା ଓ ସନ୍ଦେହ ବାରି ହୋଇ ପଡ଼ୁଥିଲା । ସେ ତାକୁ ଆଖିଏ ଆଖିଏ ରଖିଥାନ୍ତି । ଦେଖୁଥାନ୍ତି ଯେ ଆଗ ସେ ଗଲା ମର୍ତ୍ତେମାର୍ଙ୍କ ପାଖକୁ । ସେଠି କ'ଣ କୁହାକୋହି ହେଉଥିଲା ତାକୁ ଶୁଣିଲା । ତାପରେ ସେ ଦେଖିଲେ ଦଳେ ଲୋକ ଆବେ ମୋରିଓଙ୍କୁ ଘେରି ବସିଥିଲେ, ପିଏରେ ଯାଇ ସେ ଦଳରେ ବସିପଡ଼ିଲା । ପିଏରେ ଲାଗିଥାଏ ସେଣ୍ଟ୍ ପିଟରସ୍‌ବର୍ଗ୍ ସମାଜ ବିଷୟରେ ତାର ପ୍ରଥମ ଅଭିଜ୍ଞତା ଅନୁଭବ କରିବାରେ । ସେଠି ତାକୁ କେହି ଚିହ୍ନନ୍ତି ନାହିଁ । ସେ ଜାଣିଥିଲା ଯେ ରାଜଧାନୀର ସବୁଯାକ ବଡ଼ ମୁଣ୍ଡିଆ ଏଠି ଠୁଳ ହୋଇଛନ୍ତି । ସେ ବଡ଼ ବଡ଼ ଆଖି କରି ଗୋଟାଏ ଦଳ ପାଖରୁ ଆଉ ଗୋଟାଏ ଦଳ ପାଖକୁ ବୁଲି ବୁଲି ଯାଉଥାଏ, ତାର ଭାରି ଡର, କାଳେ ତାଙ୍କ କଥାଭାଷା ଭିତରୁ କିଛି ଶୁଣିପାରିବ ନାହିଁ, ସେହିଭଳି କଥା ଭାଷାରୁ, ଯହିଁରେ ପ୍ରତିଭାର ମୋହର ଛାପା ପଡ଼ୁଛି । ପିଏରେ ଏଠି ଯେତେବେଳେ ଏତେ ମୁହଁ ଦେଖିଲା, ଦେଖିଲା ସବୁ ମୁହଁରେ ଆତ୍ମ-ବିଶ୍ୱାସ ଓ ବିଶିଷ୍ଟତାର ଛବି ଫୁଟିଛି, ସେ ଭାବିନେଲା ଗପ ଏମାନଙ୍କ ତୁଣ୍ଡରୁ ଯାହା ବାହାରିବ ପ୍ରତି ପଦେ ପଦେ କଥାର ସାର ଅର୍ଥ ଥିବ, କହିବା ଭଙ୍ଗୀରେ ଚଟକ ଥିବ ।

ଶେଷରେ ଆବେ ମୋରିଓଙ୍କ କଥା ପ୍ରତି ତା ମନଟା ଓଟାରି ହୋଇଗଲା । ଆପଣା ମତ ସେ କେତେବେଳେ ପ୍ରକାଶ କରିବ, ସେଥିପାଇଁ ସୁଯୋଗ ଲାଗି ସେ ଅପେକ୍ଷା କରି ବସି ରହିଲା । ଦୁନିଆଁରେ ଯେତେ ଯୁବା ବୟସର ଲୋକ ସମସ୍ତଙ୍କର ସେହି ଏକା ଦୁର୍ବଳତା ।

## ତିନି

ଆନ୍ନା ପ ଲେଭ୍‌ନ୍ନଙ୍କ ପଙ୍ଗତ ଖୁବ୍ ଜମି ଆସୁଥିଲା, ସତେକ ତାଙ୍କ ସୂତାକଟା କାରଖାନାର ସବୁପାକ ତାକୁତ ଘୂରୁଥିଲା । ଅଚଳ ଥିଲେ ଖାଲି ମାଉସୀ ବୁଢ଼ୀ, ସେ ଅଲଗା ହୋଇ ଆଉ ଜଣେ ବୁଢ଼ୀଙ୍କ ସଙ୍ଗେ ବସି ପଡ଼ିଥିଲେ । ସେ ଆଉ ବୁଢ଼ୀ ଜଣଙ୍କର ମୁହଁ ଲୁହ ଝରଝର ଘୋର ହୋଇଯାଉଛି । ଏଇ ହସ ଖୁସି ଜକ ଜକ ଦଳ ସଙ୍ଗରେ ସେ ମୁହଁଟି ଖାପ ନାହିଁ । ଦଳଟି ତିନି ଧାରରେ ଫାଟି ପଡ଼ୁଥାଏ । ଗୋଟିଏ ଦଳରେ ଅଧିକାଂଶ ଖାଲି ପୁରୁଷ ଲୋକ । ତା ମଝିରେ ମହନ୍ତ ମହାରାଜ ଆବେ ମୋରିଓ । ଆଉ ଦଳ ମଝିରେ ପରମା ସୁନ୍ଦରୀ ହେଲେନ୍ ଓ ମୋହିନୀ ମୂର୍ତ୍ତି ପ୍ରିନ୍‌ସେସ୍ ବଲ୍‌କନ୍‌ସ୍କି, ଟିକଏ ବେଶି ମୋଟା ହେଲେ ବି ଅତି ସଜ, ଆଉ ଅତି ସୁନ୍ଦର । ତାଙ୍କ ଚାରିପାଖେ ଯୁବାଲୋକ ସମସ୍ତେ । ତୃତୀୟ ଦଳଟି ବେଢ଼ିଥାଏ ମର୍ତ୍ତେମାର୍ଟ ଓ ଆନ୍ନା ପାଲେଭ୍‌ନ୍ନଙ୍କ ଚାରିପାଖେ ।

ଭାଇ କାଉଣ୍ଟଙ୍କ ମୁହଁଟି ସୌମ୍ୟ, ଶାନ୍ତ । ତାଙ୍କ ବ୍ୟବହାର ଦେଖି ଖୁସି ଲାଗେ । ତାଙ୍କ କହାଣିରୁ ଲାଗୁଥାଏ ଯେପରିକ ସେ ଜାଣନ୍ତି ଯେ ସେ ଜଣେ ପ୍ରସିଦ୍ଧ ଲୋକ; କିନ୍ତୁ ଜାଣିଶୁଣି ଆପଣାକୁ ଛାଡ଼ିଦେଇ ଥାଆନ୍ତି ଯେ ଯେଉଁମାନେ ସେଠି ରୁଣ୍ଡିଛନ୍ତି ସେମାନେ ତାଙ୍କୁ ଆପଣା ମନଇଚ୍ଛା ବ୍ୟବହାର କରିଯାଆନ୍ତୁ । ଆନ୍ନା ପାଲେଭ୍‌ନ୍ନ ଏ ସବୁ କଥାରୁ ସୁବିଧା ଉଠାଉଥାଆନ୍ତି, ସତେ ଯେମିତି ଗୋଟିଏ ହୋଟେଲରେ ସେ ପ୍ରଧାନ ପରଷିବା ଲୋକ, ଏଭଳି ସେ ଯେଉଁ ଜିନଷଟା ଭଲ ରନ୍ଧଣୀ ହାତରେ ନ ପଡ଼ି ଏକଦମ୍ ଅଖାଦ୍ୟ ହୋଇ ଯାଇଥାନ୍ତା, ତାକୁ ସେ କହି ଘୋଷୁଛି ଅତି ସୁଆଦିଆ ହୋଇଛି ବୋଲି ଅନ୍ୟମାନଙ୍କ ଆଗରେ ସୁପାରିସ କରିବାରେ ଲାଗି ପଡ଼ିଛନ୍ତି, ଆଉ ଏଇ ଆମନ୍ତ୍ରିତମାନଙ୍କ ଭିତରେ ଭାଇ କାଉଣ୍ଟ ବି ଗୋଟିଏ ସୁଆଦିଆ ଖାଦ୍ୟ, ଆଗ ସେ ଖାଦ୍ୟକୁ ଆନ୍ନା ପାଲେଭ୍‌ନ୍ନ ସବୁ ଆମନ୍ତ୍ରିତ ଲୋକଙ୍କୁ ପରଷି ଦେଲେ, ତାପରେ ପରଷି

ଦେଲେ ଆଉ ଏକ ପ୍ରକାର ଖାଦ୍ୟ, ସେ ମହାନ୍ତ ମହାରାଜ ମୋରିଓ, ଅତି ଉତ୍କୃଷ୍ଟଭାବେ ରନ୍ଧା ହୋଇଥିବା ଦୁଇ ପ୍ରକାର ଅତି ଚମତ୍କାର ଖାଦ୍ୟ ଯାହା ସହଜରେ ଅନ୍ୟ କେଉଁଠି ମିଳେ ନାହିଁ ।

ମର୍ତ୍ତେମାର୍ତ୍ତଙ୍କ ଗୃହପାଖେ ଯେଉଁ ଗପ ଲାଗିଥାଏ, ତାର ବିଷୟ ବସ୍ତୁ ଡିଉକ୍ ଡି ଏନ୍ ଘିଏନ୍‌ଙ୍କ ମୃତ୍ୟୁ । ଭାଇ କାଉଣ୍ଟ୍ କହୁ ଥାଆନ୍ତି ଯେ ଡିଉକ୍ ଆପଣା ଉଦାରପଣ ପାଖେ ବଳି ପଡ଼ିଲେ ଓ ବୋନାପାର୍ଟଙ୍କର ଡିଉକ୍‌ଙ୍କ ପ୍ରତି ଏକ ଘରୋଇ ଓ ବ୍ୟକ୍ତିଗତ ଆକ୍ରୋଶ ଆଗରୁ ଥିଲା ।

"ସତେ, ସତେ" ଆନ୍ନା ପାଭ୍ଲୋଭ୍ନା ପାଟି କରି ଉଠିଲେ, "କହନ୍ତୁ ଆମକୁ ସେ ବିଷୟରେ" ଆନ୍ନା ପାଭ୍ଲୋଭ୍ନା ଖୁସି ହୋଇ ଅନୁଭବ କରୁଥିଲେ ଯେ ଆଗେ ଫରାସୀ ଦେଶର ରାଜା ପଞ୍ଚଦଶ ଲୁଇ ଠିକ୍ ଏମିତି ଗର୍ବରୁ ଥିଲେ, ଅବିକଳ ଏଇ ଭାଷାରେ ।

ମର୍ତ୍ତେମାର୍ତ୍ତ୍ ହସିଦେଇ ସମ୍ମତି ଜଣାଇ ମୁଣ୍ଡ ନୁଆଇଁ ଦେଲେ । ଆନ୍ନା ତାଙ୍କ ଦଳର ସମସ୍ତଙ୍କୁ ଡାକିଲେ, "ଶୁଣିବ ଆସ ।"

ପାଖରେ ଥିବା ଜଣକ କାନରେ ଆନ୍ନା ଫୁସ୍ ଫୁସ୍ କରି କହିଲେ, "ଏ ଭାଇ କାଉଣ୍ଟ୍ ଡିଉକ୍ ଡି ଏନ୍ ଘିନ୍‌ଙ୍କୁ ଅତି ଘନିଷ୍ଠ ଭାବେ ଜାଣି-ଥିଲେ ।" ଆଉ ଜଣକ ଆଡ଼କୁ ବୁଲିପଡ଼ି ସେ ପୁଣି କହିଲେ, "ଭାଇ କାଉଣ୍ଟ୍ ଗୋଟିଏ ବିଷୟ ବର୍ଣ୍ଣନା କଲାବେଳେ ଏତେ ସୁନ୍ଦର କରି କହନ୍ତି ଯେ ଶୁଣିଲେ ଭାରି ଖୁସି ଲାଗେ ।" ପୁଣି ଆଉ ଜଣକୁ ସେ କହିଲେ "ଭାଇ କାଉଣ୍ଟ୍ ଯେ ଅତି ବଡ଼ ବଡ଼ ଲୋକଙ୍କ ସଙ୍ଗେ ବସା ଉଠା କରିଛନ୍ତି, ତା ତାଙ୍କୁ ଥରେ ଚାହିଁ ଦେଲେ ପରିଷ୍କାର ବାରି ହୋଇ ପଡ଼େ ।"

ଏହି ପ୍ରକାରେ ସେ ଭାଇ କାଉଣ୍ଟ୍‌ଙ୍କୁ ସବୁ ଅତିଥିଙ୍କ ପରଷି ଦେଲେ, ଖୁବ୍ ରୁଚିକର ଓ ଚିତ୍ତାକର୍ଷକ ବ୍ୟବହାରରେ, ଯେପରି କି ଭାଇ କାଉଣ୍ଟ୍ ଥାଳିଆଏ ଗରମମାଂସ ଭଜା, ବାମ୍ଫ ବାହାରୁଛି, ମାଂସରେ ଗୋଟି ଗୋଟି ହୋଇ ଚଣା ପଡ଼ିଛି । ଭାଇ କାଉଣ୍ଟ୍ ଯେମିତି କଥା ଆରମ୍ଭ କଲେ, ଆନ୍ନା ଚତୁର ହସଟିଏ ହସିଦେଲେ ।

ଆର ଦଳ ମଝିରେ ଯେଉଁ ସୁନ୍ଦରୀ ଝିଅଟି ଥିଲା, ଆନ୍ନା ତାକୁ କଅଁଳେଇ ଡାକି କହିଲେ, "ଆ ଆ ହେଲେନ୍ ମା, ବସ ଏଠି ।" ହେଲେନ୍ ଠିଆ ହେଲେ । ଆସିଲାବେଳକୁ ତାଙ୍କ ମୁହଁରେ ଯେଉଁ ହସ ଲାଗି ରହିଥିଲା, ସେହି ହସରେ ତାଙ୍କ ମୁହଁଟି ଆଲୁଅ ଜକ ଜକ ଦେଖା-

ଯାଉଥାଏ । ତାର ଯେଉଁ ଅସାମାନ୍ୟ ରୂପଲାବଣ୍ୟ, ତା ହସ ବି ତାର ଗୋଟିଏ ସହଜ ଉପାଦାନ । ସେ ଯେତେବେଳେ ଘରର ଏ ମୁଣ୍ଡରୁ ସେମୁଣ୍ଡକୁ ଚାଲି ଚାଲି ଗଲା, ପୁରୁଷ ଲୋକେ ବାଟ ଛାଡ଼ି ଦେଉଥାଆନ୍ତି । ସେବାଟେ ଗଲାବେଳେ ତାର ଧଳା ପୋଷାକ ଓ ସେଥିରେ ଲାଗିଥିବା ଉଦ୍ଭି ଲତା ଓ ଶିଉଳି ଦଳର ହାର ତଳେ ଘୁଷୁଡ଼ି ଘୁଷୁଡ଼ି ଯାଉଥାଏ । ଲାଗୁଥାଏ ଯେ ଝଟକୁଥିବା ମାଣିକ୍ୟ ଚକ୍‌ଚକ୍ ମୁଣ୍ଡବାଳ ଓ ଜକ୍‌ଜକ୍ କାନ୍ଧ ମିଶି ସେ ଗୋଟିଏ ଉଜ୍ଜ୍ୱଳ ସ୍ୱପ୍ନ, ସଭିଙ୍କ ଉତ୍ସବର ଏକ ଜୀବନ୍ତ ପ୍ରତିମୂର୍ତ୍ତି । ସେ କାହାରିକି ଲକ୍ଷ କରି ଅନାଇଲା ନାହିଁ; କିନ୍ତୁ ସମସ୍ତଙ୍କୁ ଚାହିଁ ହସୁଥିଲା, ଯେପରି କି ସମସ୍ତଙ୍କୁ ନିଶ୍ଚିତ ସୁବିଧା ଦେଉଥିଲା ଯେ ସେମାନେ ତାର ସୁନ୍ଦର ରୂପକୁ ଦେଖନ୍ତୁ, ଫେସନ୍‌ରେ କଟାହୋଇ ତଳକୁ ଖସି ପଡ଼ିଥିବା ପୋଷାକରେ ତା କାନ୍ଧ ଓ ବେକ ଖୋଲା ପଡ଼ିଥିଲା, ସେ କେଡ଼େ ଧଳା ଚକ୍‌ଚକ୍ ତାକୁ ଲୋକେ ଦେଖିବାକୁ ସୁବିଧା ପାଆନ୍ତୁ ସେଥିନିମନ୍ତେ ଏଇଥିପାଇଁ । ହେଲେନ୍ ଏଡ଼େ ଆଶ୍ଚର୍ଯ୍ୟ ପ୍ରକାର ସୁନ୍ଦରୀ ଯେ ତାଠି ଛାନ ଫୁଲେଇପଣର ଲେଶମାତ୍ର ବି ନ ଥିଲା । ଏଡ଼େ ପୂର୍ଣ୍ଣାଙ୍ଗ ଓ ବିଶ୍ୱ-ବିଜୟୀ ସୌନ୍ଦର୍ଯ୍ୟ ତାଠି ଅଛି, ଏପରି ଧାରଣା ଯଦି ତା ମନରେ ଟିକେମାତ୍ର ଥାଆନ୍ତା, ତେବେ ତ ଆପେ ତାକୁ ନିଜକୁ ଅଖାଉ଼ଆ ଲାଗୁଥାଆନ୍ତା ଓ ଆପେ ତାର ଇଚ୍ଛା ହୁଅନ୍ତା, ନିଜ ସୌନ୍ଦର୍ଯ୍ୟକୁ ଲୁଚାଇ ରଖିବାକୁ । ତାହେଲେ ସେ ଏପରି ବ୍ୟବହାର କରିପାରି ନ ଥାଆନ୍ତା ।

ସମସ୍ତଙ୍କ ତୁଣ୍ଡରେ ସେଇ ଏକା କଥା—"କେଡ଼େ ସୁନ୍ଦର ! କେଡ଼େ ସୁନ୍ଦର !" ଯେତେବେଳେ ହେଲେନ୍ ଭାଇ କାଉଣ୍ଟଙ୍କ ପାଖରେ ଗୋଟିଏ ଆସନରେ ବସିପଡ଼ିଲା ଓ ସେଇ ଅନନ୍ୟ ହସର ସବୁଯାକ ମୋହିନୀ ତାଙ୍କ ଉପରେ ଢାଳି ଦେଲା, ସେତେବେଳେ ଭାଇକାଉଣ୍ଟ୍ କାନ୍ଧ ଥରାଇଲେ ଓ ଆଖି ତଳକୁ ପୋତିଲେ, ସତେ ଯେପରିକି ସେପୁରନ୍ଦ୍ର ଅଲୌକିକ ସୌନ୍ଦର୍ଯ୍ୟ ତାଙ୍କ ଆଖିରେ ଆଘାତ କରିଛି ।

ଭାଇକାଉଣ୍ଟ୍ ହସିଦେଇ ମୁଣ୍ଡ ନୁଆଁଇ କହିଲେ, "ଏଭଳି ଶ୍ରୋତାମାନଙ୍କ ଆଗରେ ମତେ ଭାରି ମାଡ଼ ପଡ଼ୁଛି ।"

ଟେବୁଲ ଉପରେ ଗୋଟିଏ ସୁନ୍ଦର ବାହା ଭରାଦେଇ ହେଲେନ୍ ଖାଲି ହସିଲା ଆଉ ଅପେକ୍ଷା କଲା । ଭାଇକାଉଣ୍ଟଙ୍କ କଥାକୁ ଉତ୍ତର ଦେବା

ସେ ଆବଶ୍ୟକ ମନେକଲା ନାହିଁ । ଯେତେବେଳଯାକେ ସେ କଥା କହୁଥାନ୍ତି, ସେତେବେଳଯାକେ ହେଲେନ୍ ସିଧାହୋଇ ବସିଥାଏ, କେତେବେଳେ ଆପଣା ବାହାକୁ ଅନାଉଥାଏ, ସେଥିରେ ଗୋଲ ଗୋଲ ମାଂସ ଆଉ ଖାଲ, ଟେବୁଲରେ ମାଡ଼ିହୋଇ ତା ବାହୁର ଆକୃତି ବଦଳ ଯାଇଛି, କେତେବେଳେ ଧଳା ମଝିଗୁଡ଼ିକୁ ଅନାଉଥାଏ, ତା'ର ହୀରା ହାରକୁ ଯଥା ସ୍ଥାନରେ ଟେକି ଥୋଉଥାଏ, କେତେବେଳେ ପୋଷାକକୁ ଥାପୁଡ଼ାଉଥାଏ ଓ ଶୁଣୁଥିବା କାହାଣୀରେ ଯେତେବେଳେ କିଛି ଗୁରୁତ୍ୱପୂର୍ଣ୍ଣ ଘଟଣା କାନରେ ପଡ଼େ, ସେତେବେଳେ ଆମନ୍ତ୍ରଣକାରିଣୀଙ୍କ ମୁହଁକୁ ଅନାଇ ମୁହୂର୍ତ୍ତକପାଇଁ ତାଙ୍କ ମୁହଁର ଭଙ୍ଗୀକୁ ଆପଣା ମୁହଁରେ ଅନୁକରଣ କରି ପୁଣି ଆପଣାର ସେହି ସହଜ ସୌମ୍ୟ ହସକୁଲା ଠାଣିକୁ ସେ ଲେଉଟି ଆସୁଥାଏ ।

ଟିକି ପ୍ରିନ୍‌ସେସ୍ ମଧ୍ୟ ଗୃହା ଟେବୁଲ ଛାଡ଼ି ଆଗକୁ ଉଠି ଆସି ଥାଆନ୍ତି ।

"ରହିଥା ରହିଥା ଟିକିଏ," ସେ ପାଟି କଲେ, "ନେହ ମୁଁ ମୋ କାମଟା ଟିକିଏ ସାରିଦିଏଁ ।" ସେ ହିପୋଲାଇଟ୍‌କୁ କହିଲେ, "ଆପଣ କଣ କରୁଛନ୍ତି ? କଣ ଭାବୁଛନ୍ତି ? ମତେ ମୋ ମୁଣିଟା ଟିକିଏ ଆଣିଦେଲେ ?"

ହସି ହସି କଥାକହି ସେ ଘର ଭିତରେ ଗୋଟାଏ ଧୂମ୍‌ଧାମ ଲଗାଇ ଦେଲେ ।

ପ୍ରିନ୍‌ସ ହିପୋଲାଇଟ୍ ତାଙ୍କ ହାତକୁ ମୁଣି ବଢ଼ାଇ ଦେଲେ, ଗୋଟିଏ ଚୌକି ଆଣି ତାଙ୍କ ପାଖରେ ବସି ପଡ଼ିଲେ । ମୁଣିଟି ନେଇ ବସିପଡ଼ି ସାନ ପ୍ରିନ୍‌ସେସ୍ କହିଲେ, "ବେଶ—ଏଥର ମତେ ଆରାମ୍ ଲାଗିଲା ।"

ତରୁଣ ପ୍ରିନ୍‌ସ୍ – ଲୋକେ ଯାହାଙ୍କୁ କହନ୍ତି ସୁନ୍ଦର ହିପୋଲାଇଟ୍, ସେ ଦେଖିବାକୁ ତାଙ୍କ ଭଉଣୀ ପରି, ଯଦିଚ ଭଉଣୀଟି ପରମାସୁନ୍ଦରୀ ଓ ଭାଇଟି ତାହା ଅସୁନ୍ଦର । ସେ ଦୁହିଁଙ୍କ ଚେହେରା ଏକାପରି କିନ୍ତୁ ଭଉଣୀଠାରେ ଶାଶ୍ୱତ ଉଜ୍ଜ୍ୱଳ ଯୌବନ ଝଟକୁଥିଲା, ଏକ ଆପଣା-ତୁଷ୍ଟ ସ୍ନିଗ୍ଧ ହସ ଥିଲା, ତା'ର ଧମୁଦାସ୍ତି ମୁହଁ ଓ ଦେହର ଆକାର ଓ ଗଢ଼ଣରେ ଏକ ପ୍ରକାର ଶାସ୍ତ୍ରୀୟ ଅନୁପାତ ଥିଲା ଓ ସବୁ ମିଶି

ତା'ର ଚେହେରାକୁ ସଂପୂର୍ଣ୍ଣ ବଦଳାଇ ଦେଇଥିଲା ଅଥଚ ଆଗର ଚେହେରା ଦିଶୁଥିଲା କେମିତି ଏକ ପ୍ରକାର ବୋକାଳିଆ ଆଉ ଝିଣା ଝିଣା । ତା'ର ଦେହ ଦୁର୍ବଳ, ସ୍ୱାସ୍ଥ୍ୟହୀନ, ତା'ର ଆଖି, ନାକ, ପାଟି ଆପଣା ଆପଣା ବୈଶିଷ୍ଟ୍ୟତା ହରାଇ ଏକ ବିରକ୍ତ ଅପ୍ରସନ୍ନ ଭଙ୍ଗିରେ ହଜି ଯାଇଥିଲା ଓ ତା'ର ହାତ ଗୋଡ଼ ସବୁ ନାନା ପ୍ରକାର ଉଦ୍ଭଟ ମୁଦ୍ରାରେ ମୋଡ଼ିମାଡ଼ି ହେଉଥିଲା ।

ସେ ତାର ଚଷମାକୁ ଆଖି ଉପରେ ଦାବି ଦେଲା, ସତେ ଯେପରି ସେପରି କଲେ ସେ ଭଲ କରି ଆପଣା ମନକଥା ପ୍ରକାଶ କରିପାରିବ; ଆଉ କହିଲା, "ଏଁ କ'ଣ କୋଉଟିଏ ଭୂତକଥା କୁହାହେଉଛି ନାଁ କ'ଣ ?"

ଭାଇ କାଉଣ୍ଟ୍ ଏ ପ୍ରଶ୍ନ ଶୁଣି ଚମକି ପଡ଼ିଲେ । କାନ୍ଧକୁ ଝାଙ୍କି ଦେଇ ଉତ୍ତର ଦେଲେ, "ନାଁ ନାଁ ଭୂତ କଥା ଆଦୌ ନୁହେଁ ।" ହିପୋଲାଇଟ୍ କହିଲା, "ଆଃ ମୁଁ ସେଗୁଡ଼ାକୁ ଭାରି ଡରେ ।" ତାର ଢଙ୍ଗଡାଙ୍ଗରୁ ଜଣାଗଲା ଯେ କଥା କହିସାରିଲା ପରେ ହିଁ ସେ ବୁଝିପାରିଲା ଯେ ଆଗେ ଯାହା କହିଲା ତାର ଅର୍ଥ କ'ଣ, ତା ଆଗରୁ ନୁହେଁ । ତଥାପି ତା'ର ଆତ୍ମବିଶ୍ୱାସ ଏତେ ଟାଣ ଥିଲା ଯେ ଜାଣିବା କଷ୍ଟ ହେଉଥିଲା ଯେ ତା' କଥାଗୁଡ଼ାକ ଓଲଆଁସିଆନା ବୁଦ୍ଧିଆ । ସେ ପିନ୍ଧିଥିଲା ଗୋଟାଏ ଗାଢ଼ ଶାଗୁଆ ବର୍ଣ୍ଣର ଫ୍ରକ୍-କୋଟ୍ ଓ ଫିକା ଲାଲ ବର୍ଣ୍ଣର ଢିଲା ପାଇଜାମା, ସେହି ବର୍ଣ୍ଣ ଯାହାକୁ ସେ କହେ ଉତ୍ତେଜିତା କୁମାରୀଙ୍କ ମୁହଁର ବର୍ଣ୍ଣ । ସେ ମୋଜା ପିନ୍ଧିଥିଲା ଆଉ ଫିଟିବନ୍ଧା ଯୋତା ମାଡ଼ିଥିଲା ।

ଭାଇ କାଉଣ୍ଟ୍ ଖୁବ୍ ସୁରୁଚି ସହକାରେ କାହାଣୀଟି କହିଲେ । ଲୋକେ କହନ୍ତି, ଡିଉକ୍ ଡ଼ ଏନ୍ ଘିଏନ୍ ଲୁଚି କରି ପ୍ୟାରିସ୍ ଆସିଥିଲେ, ଶ୍ରୀମତୀ ଜର୍ଜେସ୍‌ଙ୍କୁ ଦେଖିବେ ବୋଲି । ଶ୍ରୀମତୀ ଜର୍ଜେସ୍ ଅତି ପ୍ରସିଦ୍ଧ ଅଭିନେତ୍ରୀ । ସେ ନେପୋଲିଅନଙ୍କୁ ଆପଣାର ସମସ୍ତ ରୂପ ଲାବଣ୍ୟ ସମର୍ପଣ କରି ଦେଇଥିଲେ । ଡିଉକ୍ ଡ ଏନ୍ ଘିଏନ୍ ପ୍ୟାରିସ୍ ଆସି ନେପୋଲିଅନଙ୍କ ହାବୁଡ଼େ ପଡ଼ିଲେ । ସେ ଏକ ଅଶୁଭ ଦୁର୍ଘଟଣା । ତା' ପରିଣାମରେ ନେପୋଲିଅନଙ୍କୁ ମୂର୍ଚ୍ଛାରୋଗ ମାରିଲା, ଯାହା ମଝିରେ ମଝିରେ ମାରେ, ବହୁତ ବେଳ ରହେ ଓ ଯେଉଁଥିପାଇଁ ସେପରି ସମୟରେ ନେପୋଲିଅନ ତାଙ୍କ ଶତ୍ରୁ କବଳରେ ପଡ଼ିଯାଆନ୍ତି । ତଥାପି

ଉଡ଼କ୍ ନେପୋଲିଅନ୍‌ଙ୍କ ସେ ଅବସ୍ଥାରୁ କୌଣସି ସୁଯୋଗ ଉଠାଇଲେ ନାହିଁ । ଡିଉକ୍‌ଙ୍କର ଏ ଉଦାରତାର ଫଳ ହେଲା ଯେ ତାଙ୍କର ଏ ଉଦାର ବ୍ୟବହାର ଉପରେ ଓଲଟି ଅକସ୍ ସାଧି ନେପୋଲିଅନ୍ ତାଙ୍କୁ ହାଣ ଖୁଆଇଲେ । କାହାଣୀଟି ଗୋଟିଏ ନାଟକ ପରି, ବିଶେଷତଃ ତା'ର ସେହି ଅଂଶଟିରେ ଯେଉଁଠି ସେଥିରେ ପଡ଼େ ପ୍ରତିଦ୍ୱନ୍ଦୀ ଦୁହେଁ ପରସ୍ପରକୁ ଯେତେବେଳେ ଚିହ୍ନି ପାରିଲେ, ସେତେବେଳେ ଯାହାହେଲା, କାହାଣୀ ଶୁଣି ସ୍ତ୍ରୀ ଲୋକମାନେ ଅଭିଭୂତା ହୋଇ ପଡ଼ିଲେ ।

ସାନ ପ୍ରିନ୍‌ସେସ୍‌ଙ୍କ ଆଖିରେ କି ଭାବନା ଖେଳୁଛି, ତାକୁ ପଢ଼ିବାକୁ ଚେଷ୍ଟା କରି ଆନ୍ନା ପାଲୋଭ୍ନା କହିଲେ, "ବାଃ ଭାରି ଚମତ୍କାର ।"

ସାନ ପ୍ରିନ୍‌ସେସ କହିଲେ, "ଅତି ଚମତ୍କାର, ଅତି ଚମତ୍କାର ।" ପୁଣି ହାତକାମକୁ ଉଠେଇ ନେଇ ନୂଆ ଉତ୍ସାହରେ ସେଥିରେ ଲାଗି-ପଡ଼ିଲେ, ଯେପରି କି ସେ ବୁଝାଇ ଦେବାକୁ ଚାହାନ୍ତି ଯେ କାହାଣୀର ଚମତ୍କାରତା ଯୋଗୁଁ ହାତକାମ କଥା ସେ ପାସୋରି ପକାଇ ଥିଲେ ।

ମର୍ତ୍ତେମାର୍ଟ ଏହି ପ୍ରଚ୍ଛନ୍ନ ପ୍ରଶଂସା ଠିକ୍ ଧରି ପାରିଲେ ନାହିଁ ଓ ତାଙ୍କ କାହାଣୀ କହି ଯାଉଥିଲେ । ଏତିକବେଳେ ଆନ୍ନା ପାଲୋଭ୍ନା ଦେଖିଲେ ଯେ ଯେଉଁ ପିଏରେକୁ ସେ ଆଖିଏ ଆଖିଏ ରଖିଥିଲେ, ସେ ମହନ୍ତ ମହାରାଜଙ୍କ ସଙ୍ଗେ ଗୋଟାଏ ତୁମୁଳ ବାଗ୍‌ଯୁଦ୍ଧରେ ଲାଗି ଗଲାଣି । କାଳେ କ'ଣ ଅନିଷ୍ଟ ହେବ ଏହି ଆଶଙ୍କାରେ ଆନ୍ନା ସେଠିକି ଉଠିଗଲେ । ରାଷ୍ଟ୍ରମାନଙ୍କ ଶକ୍ତିରେ ଭାରସାମ୍ୟ ପ୍ରତିଷ୍ଠା ବିଷୟରେ ପିଏରେ ଆବେମୋରିଓଙ୍କ ସଙ୍ଗେ ଲାଗି ଲାଗି ତାଙ୍କୁ କଥା କୁହାଇ ପାରିଥିଲା । ଶ୍ରୋତାର ମନ ଓ ଆଗ୍ରହରେ କିଣି ହୋଇଯାଇ ଆବେମୋରିଓ ରାଷ୍ଟ୍ର-ମାନଙ୍କ ଶକ୍ତିର ଭାରସାମ୍ୟ ବିଷୟରେ ତାଙ୍କ ନିଜର ଯେଉଁ ଅତି ପ୍ରିୟ ଯୋଜନା ଥିଲା ତାକୁ ଲମ୍ବାଇ ଲମ୍ବାଇ ବଖାଣିବାକୁ ଆରମ୍ଭ କରିଥିଲେ । ଉଭୟେ ଆବେଗ ଓ ଉତ୍ସାହରେ ଭାରି ବଡ଼ ପାଟିରେ କଥାବାର୍ତ୍ତା ଆରମ୍ଭ କରି ଦେଇଥିଲେ । ସାମ୍ରାଜ୍ଞୀଙ୍କ ସହଚରୀ ଆନ୍ନା ପାଲୋଭ୍ନାଙ୍କ କାନକୁ ସେଇଟା ଅଖାଡୁଆ ଲାଗୁଥିଲା ।

ଆବେ କହୁଥିଲେ, "କି ଉପାୟରେ ? କାହିଁକି ? ୟୁରୋପରେ ଶକ୍ତିର ଭାରସାମ୍ୟ ପ୍ରତିଷ୍ଠା ଦ୍ୱାରା ଓ ଜନସାଧାରଣଙ୍କ ଅଧିକାର ବଳରେ । ତାହାହିଁ ଉପାୟ । ଯଦି ରୁଷ୍ ଦେଶପରି ଗୋଟିଏ ଅଖଣ୍ଡ ଓ ମହାଶକ୍ତିଶାଳୀ

ରାଷ୍ଟ୍ର, ଯେ ଦୁର୍ଦ୍ଧର୍ଷ ଶକ୍ତି ସଂଯୋଗ କରି ନିଷ୍ଠୁରତା, ବର୍ବରତା ମଧ୍ୟ ବର୍ତ୍ତମାନ କରିପାରେ ବୋଲି ତାର ଅପଖ୍ୟାତି ଅଛି, ଏପରି ଗୋଟିଏ ରାଷ୍ଟ୍ର ଯଦି ୟୁରୋପରେ ବିଭିନ୍ନ ଦେଶମାନଙ୍କ ଶକ୍ତିର ଭାରସାମ୍ୟ ପ୍ରତିଷ୍ଠା କରିବା ନିମିତ୍ତ ବଦ୍ଧପରିକର ହୋଇ ସେଥିପାଇଁ ନାନା ଦେଶର ମେଣ୍ଟ ଗଢ଼ିବାକୁ ନେତୃତ୍ୱ ଦିଅନ୍ତା, ତେବେତ ସମଗ୍ର ପୃଥିବୀ ରକ୍ଷା ପାଇଯା'ନ୍ତା ।"

"କିନ୍ତୁ କି ଉପାୟରେ ଆପଣ ସେ ଭାରସାମ୍ୟ ପ୍ରତିଷ୍ଠା କରିବେ ବୋଲି ଭାବୁଛନ୍ତି", ପିଏରେ ଜିଦ ଧରିଲା । ଠିକ୍ ସେତିକିବେଳେ ଆମନ୍ତ୍ରଣକାରିଣୀ ଆନ୍ନା ପାଭ୍ଲୋଭ୍ନା ଆସି ପହଞ୍ଚିଗଲେ । ସେ ତୀବ୍ର ତିରସ୍କାରପୂର୍ଣ୍ଣ ଦୃଷ୍ଟିରେ ତାକୁ ଚାହିଁଦେଲେ ଓ ଇଟାଲି ଦେଶର ଲୋକ ସେହି ଆବେ ମୋରିଓଙ୍କୁ ପଚାରିଲେ ଯେ ଏ ଉତ୍ତର ଦେଶର ଜଳବାୟୁ ତାଙ୍କ ଦେହରେ କିପରି ଯାଉଛି । ସଙ୍ଗେ ସଙ୍ଗେ ଆବେ ମୋରିଓଙ୍କ ମୁହଁର ଛବି ବଦଳି ଗଲା । ମୁହଁରେ ସେ ସେହିପରି ଏକ ଭଙ୍ଗୀ ଖଞ୍ଜିଲେ, ଯାହା ଏଡ଼େ ମଧୁର ଓ ଲୋକ ଦେଖାଣିଆ ଯେ ତାକୁ ଦେଖିଲେ ଅପମାନ ପାଇଲାପରି ଲାଗେ । କୌଣସି ସ୍ତ୍ରୀଲୋକ ସଙ୍ଗେ କଥା କହିଲାବେଳେ ସାଧାରଣତଃ ସେ ସେହିପରି ଭଙ୍ଗୀଟିଏ ମୁହଁରେ ପିନ୍ଧନ୍ତି । ସେ କହିଲେ—

"ଜ୍ଞାନ ଓ ସଂସ୍କୃତିର ମୋହିନୀ ଦେଖିଲେ ମୁଁ ଏଡ଼େ ତୀବ୍ର ଆକର୍ଷଣ ଅନୁଭବ କରେଁ, ବିଶେଷତଃ ଯେଉଁ ସମାଜରେ ପ୍ରବେଶ କରିବା ସୌଭାଗ୍ୟ ପାଇଥାଏଁ, ସେଠି ନାରୀମାନଙ୍କଠାରେ ସେ ମାଧୁରୀ ଥିବାର ଦେଖିଲେ ଯେ, ଜଳବାୟୁ ବିଷୟରେ ଭାବିବାପାଇଁ ମୁଁ ଆଦୌ ସମୟ ପାଏନାହିଁ ।" ଆନ୍ନା ପାଭ୍ଲୋଭ୍ନା ତାଙ୍କୁ ଓ ପିଏରେଙ୍କୁ ଆଉ ସମସ୍ତେ ବସିଥିବା ସାଧାରଣ ମଣ୍ଡଳୀ ଭିତରକୁ ଅଡ଼େଇ ନେଇଗଲେ, ଯେପରିକି ସେମାନେ ଆଉ ତାଙ୍କ ଆଖିରୁ ଅନ୍ତର ହେବେନାହିଁ ।

# ଚାରି

ଏତିକବେଳେ ରଙ୍ଗଭୂମିରେ ଜଣେ ନୂଆ ଅଭିନେତା ଆସି ପହଞ୍ଚିଗଲେ, ସେ ହେଉଛନ୍ତି ସାନ୍ ପ୍ରିନ୍‌ସେସ୍‌ଙ୍କ ସ୍ୱାମୀ ପ୍ରିନ୍‌ସ୍ ଆନ୍ଦ୍ରେ ବଲ୍‌କନ୍‌ସ୍କି । ତାଙ୍କର ଚେହେରା ସୁନ୍ଦର, ଉଚ୍ଚତା ମଧ୍ୟଭଳିଆ, ଅବୟବମାନଙ୍କ ଆକୃତି କଠିନ ଓ ସୁସ୍ପଷ୍ଟ । ତାଙ୍କର ସବୁକଥା, କ୍ଳାନ୍ତ ଆଖି ଯୋଡ଼ିକଠୁଁ ଆରମ୍ଭ କରି ଦମ୍ଭିଲା ମପାଚୁପା ଚାଲିପର୍ଯ୍ୟନ୍ତ, ସବୁ ତାଙ୍କ ସ୍ତ୍ରୀଙ୍କର ଓଲ୍‌ଟା, ସ୍ତ୍ରୀ ତ ଖୁବ୍ ଜୀବନ ଛଳଛଳ, ଚଞ୍ଚଳ ଆଉ ଆଗିଆଣୀ । ଏ ଘରେ ଯେତେ ଲୋକ ସମସ୍ତେ ତାଙ୍କର ଜଣାଶୁଣା, ସେମାନଙ୍କୁ ପୁଣି ସେଠି ଦେଖି ତାଙ୍କୁ ବଡ଼ ଘଷରା ଓ ମାନ୍ଦା ଲାଗୁଥାଏ, ବିରକ୍ତି ଆସୁଥାଏ । ତାଙ୍କ ସ୍ତ୍ରୀଙ୍କ ସମେତ ଏ ସମସ୍ତଙ୍କୁ ପୁଣି କେବେ ନ ଦେଖି ପାରିଲେ ଭଲ ପଇସା ଦେଇ ଯଦି ବନ୍ଦୋବସ୍ତ କରିହୁଅନ୍ତା, ହୁଏତ ସେଥିପାଇଁ ବହୁତ ଟଙ୍କା ସେ ଖର୍ଚ୍ଚ କରନ୍ତେ । ବିଶେଷତଃ ତାଙ୍କୁ ତାଙ୍କ ସ୍ତ୍ରୀ ସବୁଠୁ ବେଶି ଅରୁଚି ଲାଗୁଥିଲେ ଓ ତାଙ୍କୁ ଦେଖିଲା ମାତ୍ରେ ସେ ଏମିତି ଭ୍ରୂକୁଟୀ କରି ମୁହଁ ବୁଲେଇ ଦେଲେ ଯେ ତହିଁରେ ତାଙ୍କ ସୁନ୍ଦର ଚେହେରା ଅସୁନ୍ଦର ଦିଶିଲା । ସେ ପ୍ରଥା ଅନୁସାରେ ଆନ୍ନା ପାଲୋଭ୍ନାଙ୍କ ପାପୁଲିରେ ଚୁମ୍ବନ ଦେଲେ ଓ ଭ୍ରୂକୁଟୀ ଦେଖାଇ ସମବେତ ଅତିଥିମାନଙ୍କ ଆଡ଼କୁ ଚାହିଁଲେ ।

"ତା ହେଲେ ଆପଣ ଯୁଦ୍ଧ କରିବେ ବୋଲି ସଜ ହେଉଛନ୍ତି ପ୍ରିନ୍‌ସ୍," ଆନ୍ନା କହିଲେ ।

"ସେନାଧ୍ୟକ୍ଷ କୁଟୁଜଭ୍ ଦୟାକରି ମନ କରିଛନ୍ତି ମତେ ତାଙ୍କ ପାଖେ ସହକାରୀ କରି ରଖିବେ ।"

"ଆଉ ଆପଣଙ୍କ ସ୍ତ୍ରୀ— ?

"ସେ ଗାଁକୁ ଚାଲିଯିବେ ।"

"ଏତେ ଚମତ୍କାର ସାନ ମାଇପିଟିଏ ସେ, ଆପଣ ଆମକୁ ସବୁ ତାଙ୍କ ସାଙ୍ଗସୁଖରୁ ଛଡ଼େଇ ନେବେ କହୁଚନ୍ତି, ଲଜ ମାଡୁନାହିଁ ?" ସମସ୍ତିଙ୍କ ପ୍ରତି ଯେମିତି ଗେହ୍ଲାଳିଆ ହୋଇ ତାଙ୍କ ସ୍ତ୍ରୀ କଥା କହନ୍ତି, ଆପଣା ସ୍ୱାମୀଙ୍କ ଉପରକୁ ବି ସେମିତି ଗେହ୍ଲାଳିଆ ହୋଇ ଲିସା ପାଟିକଲେ, "ଆନ୍ଦ୍ରେ, କୁଆଡ଼େ ରହିଗଲ ? ଭାଇକାଉଣ୍ଟ୍ ଆମକୁ ସବୁ ଯେଉଁ ଚମତ୍କାର କାହାଣୀ କହିଲେ ଅଇଗ୍ଣ ଶ୍ରୀମତୀ ଜର୍ଜ୍ଜେସ୍ ଓ ନେପୋଲିଅନଙ୍କ ବିଷୟରେ !"

ପ୍ରିନ୍ସ୍ ଆନ୍ଦ୍ରେ ପୁଣି ଭ୍ରୂକୁଟି କରି ଅନ୍ୟ ଜାଗାକୁ ଉଠି ଚାଲିଗଲେ । ସେ ଆସି ପହଞ୍ଚିଲାବେଳଠୁ ପିଏରେର ଆଖି ଦୋଟି ତାଙ୍କଠି ଲାଗୁ ଲଗାଇଥିଲା । ସେ ଆଖିରେ ଥିଲା ଆନନ୍ଦ ଓ ସହାନୁଭୂତି । ପିଏରେ ପାଖକୁ ଆସି ତାଙ୍କ ହାତ ଧରି ପକାଇଲା । ନୂଆ ଲୋକକୁ ଦେଖି ବି ପ୍ରିନ୍ସଙ୍କ ଭ୍ରୂକୁଟି ଗଲାନାହିଁ କିନ୍ତୁ ଟିକଏ ପରେ ଯେମିତି ସେ ସେହି ଅଖିଲା ମୁହଁଟିକି ଚିହ୍ନି ପାରିଲେ, ସଙ୍ଗେ ସଙ୍ଗେ ତାଙ୍କ ମୁହଁରେ ବି ଆନନ୍ଦର ହସ ଖେଳିଗଲା ।

"କି, ତମେ ଏଠି ? ଫେସନ୍ର ଜୁଆରରେ ଭାସୁଚ !" "ମୁଁ ଜାଣିଥିଲି ଯେ ଆପଣଙ୍କ ସଙ୍ଗେ ଏଇଠି ମୋର ଦେଖା ହୋଇପାରିବ, ଆପଣଙ୍କ ଅନୁମତି ହେଲେ, ଆଜି ରାତିରେ ଆପଣଙ୍କ ଘରେ ଖାଇବି ।" ପିଏରେ ଆସ୍ତେ କଥା କହିଲା, ଯେମିତି ମର୍ତ୍ତେମାର୍ଟ୍ଙ୍କ କଥାରେ ବାଧା ନ ପଡ଼ିବ । ମର୍ତ୍ତେମାର୍ଟ୍ କହି ଲାଗିଥାନ୍ତି ।

ଆନ୍ଦ୍ରେ ହସିଦେଇ କହିଲେ, "ନାହିଁ, ତା କେମିତି ହେବ", ଅନୁମତି ମାଗିବା ପ୍ରଶ୍ନଟା କେଡ଼େ ଅନାବଶ୍ୟକ, ସେତିକି ଜଣାଇ ଦେବାପାଇଁ ତ । ହାତଧରି ଝାଙ୍କିଦେଲେ । ସେ ଆଉ କିଛି କହିଥାନ୍ତେ କିନ୍ତୁ ଏତିକିବେଳେ ପ୍ରିନ୍ସ୍ ବେସିଲ୍ ଓ ତାଙ୍କ ଝିଅ ଯିବେ ବୋଲି ବାହାରିଲେ, ସମସ୍ତେ ତାଙ୍କୁ ବାଟ ଛାଡ଼ି ଦେଉ ଦେଉ ଘରେ ଚହଳ ପଡ଼ିଗଲା ।

ପ୍ରିନସ୍ ବେସିଲ୍ ଭାଇକାଉଣ୍ଟଙ୍କୁ ଉଠିବାକୁ ନ ଦେଇ କହିଲେ "କ୍ଷମା କରିବେ, ଆମେ ଚାଲିଯାଉଛୁ । ଇଂରେଜ ରାଜଦୂତଙ୍କ ଘରେ ସେ ଯେଉଁ ନାଚ ଭୋଜି ହେଉଛି, ଯେଉଁଠିକି ଗଲେ ମଣିଷ ଦିକ୍ ହୋଇଯିବ, ସେଠିକି ଆମକୁ ଯିବାକୁ ପଡ଼ିବ, ତେଣୁ ସେଥିଯୋଗୁଁ ଆମେ ଏ ଆନନ୍ଦରୁ ବାଧ୍ୟରେ ବଞ୍ଚିତ ହେଲୁଁ, ପୁଣି ଆପଣଙ୍କୁ ଆନନ୍ଦ ମଝିରେ

ବରକ୍ତ କଲୁଁ । କେଡ଼େ ଚମତ୍କାର ଆପଣଙ୍କର ଏ ବନ୍ଧୁମିଳନ, ଦେଖା ଆନ୍ନା ପାଲୋଭ୍ନା ! ବାଧ୍ୟରେ ପଡ଼ି ମତେ ଏଠୁ ଯିବାକୁ ହେଉଛି, ମୁଁ ଖୁବ ଦୁଃଖିତ ହେଉଛି ।"

ସଜାସଜ ଆସନମାନଙ୍କ ମଝିରେ ହେଲେନ୍ ବାଟ କାଟି ଚାଲିଗଲା । ଗୋଟିଏ ହାତରେ ଗାଉନ୍‌କୁ ଟେକ ଧରିଥାଏ, ହସ କେତେ-ବେଳେ ଯାଉ ନଥାଏ । ତାର ଚମକପ୍ରଦ ସୌନ୍ଦର୍ଯ୍ୟ ଆଡ଼କୁ ଏକ ଦୃଷ୍ଟିରେ ପିଏରେ ଅନାଇଁ ରହିଥିବାବେଳେ ତା ମନରେ ଉନ୍ମାଦନା ଆସୁଥାଏ କିନ୍ତୁ ତାକୁ ମାଡ଼ି ମାଡ଼ି ପଡ଼ୁଥାଏ ।

"ଅତି ସୁନ୍ଦର ସେ," ପ୍ରିନ୍ସ୍ ଆନ୍ଦ୍ରେ କହିଲେ । ପିଏରେ ଖାଲି କହିଲା "ହଁ" ।

ତା ପାଖଦେଇ ଗଲାବେଳେ ପ୍ରିନ୍ସ୍ ବେସିଲ୍ ତା ସଙ୍ଗେ ହାତ ମିଳେଇ ଗଲେ ।

ଆନ୍ନା ପାଲୋଭ୍ନା ଆଡ଼କୁ ବୁଲିପଡ଼ି କହିଦେଇ ଗଲେ, "ଏ ତରୁଣ ପିଲାଟିର ଭାର ନେଇ ତାକୁ ଆପଣ ମଣିଷ କରନ୍ତୁ । ସେ ମୋ ଘରେ ମାସ ମାସ ହେଲା ଅଛି ସିନା କିନ୍ତୁ ଏଇ ପହିଲଥର ମୁଁ ତାକୁ ସମାଜରେ ମିଶିବା ଦେଖୁଛି । ବୁଦ୍ଧିମତୀ ନାରୀମାନଙ୍କ ସଂସର୍ଗ ଯୁବକମାନଙ୍କୁ ଯେପରି-ଭାବେ ଗଠନ କରିପାରେ ଆଉ କିଛି ଏପରି କରିପାରେ ନାହିଁ ।"

## ପାଞ୍ଚ

ଭଦ୍ରମହିଳା ମୁରୁକି ମୁରୁକି ହସିଲେ ଓ କହିଲେ, ସେ ତାର ଖବର ନେବେ । ସେ ଜାଣିଥିଲେ ଯେ ତା ବାପା ଓ ପ୍ରିନ୍‌ସ୍ ବେସିଲ୍ ଏ ଦୁହେଁ ବନ୍ଧୁବାନ୍ଧବ ସଂପର୍କ । ଏହି ସମୟରେ ଯେଉଁ ବୁଢ଼ୀ ଜଣକ ମାଉସୀଙ୍କ ପାଖେ ବସିଥିଲେ, ସେ ଭୃସ୍‌କରି ଉଠିପଡ଼ି ପ୍ରିନ୍‌ସ୍ ବେସିଲଙ୍କୁ ଗୋଡ଼େଇ ଗୋଡ଼େଇ କଣଘରକୁ ଗଲେ । ତାଙ୍କର ସହାନୁଭୂତିମୟ ବିଷଣ୍ଣ ମୁହଁରେ ଏପର୍ଯ୍ୟନ୍ତ ଯେଉଁ ଆବିଷ୍ଟ ମନୋଯୋଗର ଭାବ ଲାଗି ରହିଥିଲା ସେ ହଜିଯାଇ ସେଠି ତା ବଦଳରେ ଘୋଟିଲା ଦୁଶ୍ଚିନ୍ତା ଓ ଆତଙ୍କର ଛବି ।

"ମୋ ବୋରିସ୍ କଥା କଣ ବୁଝିଲେ ପ୍ରିନସ ? (ବୋରିସ ନାଁଟି କହିଲାବେଳେ ସେ ଓ'କାର ଉପରେ ବେଶି ଜୋର୍ ଦେଲେ) ମୁଁ ତ ଆଉ ସେଣ୍ଟ୍ ପିଟର୍ସ୍‌ବର୍ଗରେ ବେଶିଦିନ ରହିପାରିବନାହିଁ । କହନ୍ତୁ ଆଜ୍ଞା, ମୁଁ ଆପଣଙ୍କୁ ନେହୁରା ହେଉଛି, ମୋ ଗରିବ ପିଲାଙ୍କ ପାଖକୁ ମୁଁ କି ଖବର ନେଇ ଦେବି ?"

ପ୍ରିନ୍‌ସ୍ ବେସିଲ୍‌ଙ୍କ ବିରକ୍ତି ସୁସ୍ପଷ୍ଟ, ତାଙ୍କ କଥାରେ ଧ୍ୟାନ ଦେଲାଭଳି ସାଧାରଣ ଶିଷ୍ଟାଚାର ବି ପ୍ରିନ୍‌ସ ବେସିଲ୍ ଦେଖାଇଲେ ନାହିଁ । ତଥାପି ତାଙ୍କ ମୁହଁକୁ ଅନାଇ ବୁଢ଼ୀ ହସିଦେଲେ ଓ ତାଙ୍କୁ ଅଟକାଇବାକୁ ତାଙ୍କ ହାତକୁ ମୁଠେଇ ଧରିଲେ । କହିଲେ, "ଟିକିଏ ଖାଲି ସମ୍ରାଟଙ୍କ ସାମ୍ନାରେ କହିଦେବାକୁ ଆପଣଙ୍କୁ କଣ ପରିଶ୍ରମ ବା ଲାଗନ୍ତା ? ଆପଣ ପଦେ କହିଲେ ତ ସଙ୍ଗେ ସଙ୍ଗେ ରକ୍ଷୀବାହିନୀ ଗାର୍ଡରେ ତାର ନିଯୁକ୍ତି ହୋଇଯାନ୍ତା—"

"ଶୁଣନ୍ତୁ ପ୍ରିନ୍‌ସେସ୍, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୋ ପାରୁ-ପର୍ଯ୍ୟନ୍ତେ ଯାହା କରିବାର ମୁଁ ତା କରିବି କିନ୍ତୁ ଏଭଳି ଏକ ଅନୁରୋଧ

ସମ୍ରାଟଙ୍କ ଛାମୁରେ ଜଣାଇ ହେବନାହିଁ, ନାନା ପ୍ରକାର ଅସୁବିଧା ହେବ । ବରଂ ମୁଁ ଆପଣଙ୍କୁ ପରାମର୍ଶ ଦେଉଛି, ଆପଣ ଗାଲିଜିନଙ୍କ ଜରିଆରେ ରୁମିଆଞ୍ଜୋକୁ ଯାଇ ଧରନ୍ତୁ, ସେଥିରେ ବେଶି କାମ ହେବ ।"

ବୁଢ଼ୀ ଜଣକ ଥିଲେ ଏକ ପ୍ରିନ୍ସେସ୍ ଡ୍ରୁବେଜ୍‌କୋଇ, ରୁଷ୍ ଦେଶର ଏକ ଅତି ପୁରୁଣା ଘରର ନାଁ ତାଙ୍କ ଘରର । କିନ୍ତୁ ଏତେବେଳକୁ ସେ ଦରିଦ୍ର, ଏ ସଂସାରରେ ବେଶି ଦିନ ବଞ୍ଚି ରହି ତାଙ୍କ ପୂର୍ବର ସମ୍ପର୍କ ସବୁବି ହରାଇ ବସିଛନ୍ତି । ଗୋଟିଏ ବୋଲି ପୁଅ, ତାକୁ କେମିତି ସମ୍ରାଟଙ୍କ ରକ୍ଷୀବାହିନୀ ଗୃକଷରେ ପୂରାଇ ଦେଇ ପାରିବେ, ସେତିକି ଉଦ୍ଦେଶ୍ୟ ଯେନ ତାଙ୍କର ସେଣ୍ଟ୍ ପିଟର୍ସ୍‌ବର୍ଗ୍ ଆସିବା କଥା । ଏଇଠି ପ୍ରିନ୍ସ୍ ବେସିଲ୍‌ଙ୍କ ସଙ୍ଗରେ ଦେଖା ମିଳିପାରିବ ଏହି ଆଶାରେ ଆପେ କହି ପୋଛି ସେ ଏଠିକି ଆପଣାପାଇଁ ନିମନ୍ତ୍ରଣ କରାଇଦେଇ ଆନ୍ନା ପାଲେଭ୍ନାଙ୍କ ନିମନ୍ତ୍ରଣକୁ ଚାଲିଆସିଥିଲେ । ପ୍ରିନ୍ସ୍ ବେସିଲ୍‌ଙ୍କ କଥା ଶୁଣି ତାଙ୍କୁ ଡରମାଡ଼ିଲା । ତାଙ୍କ ମୁହଁ ଆଗେ ସୁନ୍ଦର ଥିଲା, ସେ ମୁହଁରେ ବିରକ୍ତିର ଚିହ୍ନ ଫୁଟିଉଠିଲା, କିନ୍ତୁ ମୁହୂର୍ତ୍ତିକ ପାଇଁ । ପୁଣି ସେ ହସିଲେ ଆଉ ପ୍ରିନ୍ସ୍ ବେସିଲ୍‌ଙ୍କ ବାହା ଧରି ପକାଇଲେ ।

"ଶୁଣନ୍ତୁ ପ୍ରିନ୍ସ୍," ସେ କହିଲେ, "ଯା' ଆଗରୁ ଆପଣଙ୍କଠୁଁ ମୁଁ କିଛି ମାଗିନାହିଁ କି ଯା' ପରେ ଆଉ କେବେ ମାଗିବି ନାହିଁ । ପୂର୍ବେ ମୋ ବାପାଙ୍କ ସଙ୍ଗେ ଆପଣ ଯେଭଳି ବନ୍ଧୁତାରେ ବାନ୍ଧି ହୋଇଥିଲେ, ତାର ସୁବିଧା ମୁଁ କେବେ ଉଠାଇ ନାହିଁ, କିନ୍ତୁ ବର୍ତ୍ତମାନ, ଆପଣଙ୍କୁ ଭଗବାନଙ୍କ ରାଣ, ମୋ ପୁଅ ପାଇଁ ଏତିକି କରିଦିଅନ୍ତୁ, ଆଉ ଆପଣଙ୍କୁ ମୁଁ କହିବି ଆମ ଦୈବ ବିଧାତା ବୋଲି । ନାଇଁ, ଆପଣ ରାଗିଲେ ଚଳିବ ନାହିଁ, ପ୍ରତିଜ୍ଞା କରନ୍ତୁ । ମୁଁ ଗାଲିଜିନ୍‌ଙ୍କୁ ଯାଇ କହି ସାରିଛି, ସେ ମନାକଲେ । ଆପଣ ସବୁଦିନେ କେଡ଼େ ଭଲ ମଣିଷ ହୋଇଥିଲେ, ସେମିତି ଭଲପଣ ଦେଖାନ୍ତୁ ।" ତାଙ୍କ ଆଖିରେ ଲୁହ ଭର୍ତ୍ତି, ତଥାପି ସେ ହସିବାକୁ ଚେଷ୍ଟା କରୁଥାନ୍ତି ।

"ବାପା, ଆମର ଡେରି ହୋଇଯିବ ।" ହେଲେନ୍ ଡାକିଲା । ସେ କବାଟ ପାଖେ ଠିଆହୋଇ ଅପେକ୍ଷା କରିଥାଏ । ତା'ର ସୁନ୍ଦର ମୁହଁକୁ ସେ ତା ବାପାଙ୍କ ଆଡ଼କୁ ବୁଲାଇଦେଲା ।

କ୍ଷମତାହିଁ ଧନ, ତାକୁ ରଖି ଥୋଇ ଅଳ୍ପ ଅଳ୍ପ କରି ଖର୍ଚ୍ଚ କରିବା ଦରକାର । ଏକଥା ଯଦି କେହି ଜାଣିଥାଏ ତ ସେ ପ୍ରିନ୍ସ୍‌ବେସିଲ୍ !

ଅଲ୍ପ କେଇଦିନ ହେଲା ସେ ଶିଖିଥାନ୍ତି ଯେ ମଣିଷ ନିଜପାଇଁ ଯଦି କିଛି ନ ପାଇବାକୁ ମନ କରିବ, ତେବେ ସେଥିପାଇଁ ନିଶ୍ଚିତ ବାଟ ହେଉଛି ସମ୍ରାଟଙ୍କ ପାଖିଁ ଯାଇ ଗୁହାରି କରିବା । ତେଣୁ ସେ ଏସବୁ କାର୍ଯ୍ୟରେ ଆପଣା ଆସନର ସୁଯୋଗ ନେଇ କ୍ୱଚିତ୍ କୁହାପୋଛା କରନ୍ତି, କିନ୍ତୁ ପ୍ରିନ୍‌ସେସ୍ ଡ୍ରୁବେଜ୍‌କୋଇଙ୍କ ନେହୁରା ଅନୁଯୋଗ ତାଙ୍କ ବିବେକର ଅନ୍ତରତମ ପ୍ରଦେଶରେ ଏକ କ୍ଷୀଣ ଅନୁଶୋଚନା ଚିଆଁଇ ଦେଇଥିଲି । ସେ ତାଙ୍କୁ ସ୍ମରଣ କରାଇ ଦେଇଥିଲେ ଯେ ତାଙ୍କର ବାପାଙ୍କ ଯୋଗୁହିଁ ସେ ନିଜ ଜୀବନରେ ଏକ ସଫଳକାମ କର୍ମପନ୍ଥାରେ ପ୍ରବେଶ ପାଇ ପାରିଥିଲେ, ସେଥିପାଇଁ ସେ ତାଙ୍କର ଧାରୁଆ । ସେ ଏକଥା ବି ଲକ୍ଷ୍ୟ କରିଥିଲେ ଯେ ସ୍ତ୍ରୀ ସେମିତି ନାରୀମାନଙ୍କ ଭିତରୁ ଜଣେ,—ଅର୍ଥାତ୍ ସେମିତି ମା'ମାନଙ୍କ ଭିତରୁ ଜଣେ, ଯେ ତାଙ୍କ ମନସ୍କାମନା ପୂର୍ଣ୍ଣ ନହେବା ପର୍ଯ୍ୟନ୍ତ ଅଟକିନ୍ତି ନାହିଁ କି ବିଶ୍ରାମ ନିଅନ୍ତି ନାହିଁ । ଯଦି ପୁଣି ଦରକାର ପଡ଼ିବତ ଯେ କୌଣସି ସମୟରେ ପୁଣି ଅନୁନୟ କରିବା କି ଢ଼ଲୁଗୁଣା ଦେବାକୁ ସବୁବେଳେ ତିଆରି ଥାଆନ୍ତି । ଏହି ଶେଷକଥାଟା ଭାବି ସେ ତାଙ୍କ ମତ ବଦଳାଇଲେ ।

"ବୁଝିଲେ ଦେବୀ ଆନ୍ନା ମିଖାଇଲୋଭ୍ନା ।", ସେ ତାଙ୍କର ସେହି ସ୍ୱାଭାବିକ କ୍ଲାନ୍ତ ଅଳସ ସ୍ୱରରେ ଅତି ଚିହ୍ନାପରିଚ ଢଙ୍ଗରେ ଉତ୍ତର ଦେଲେ, "ଆପଣ ମତେ ଯାହା କରିବାକୁ କହୁଛନ୍ତି, ତା' ତ ଏକପ୍ରକାର ଅସମ୍ଭବ କହିଲେ ଚଳେ । ତଥାପି ଦେଖେଁ, ଚେଷ୍ଟା କରେଁ । ଆପଣଙ୍କ ବାପାଙ୍କ ସ୍ମୃତିକୁ ମୁଁ ଭାରି ଭକ୍ତି କରେ, ଆପଣଙ୍କ ପ୍ରତି ତ ସହଜେ ମୋର ବହୁତ ଖାତିର, ସେଥି ସକାଶେ ମୋ ଦେଇ ଯାହା ହେବ ତା ମୁଁ କରିବି । ମୁଁ ଜବାବ ଦେଉଛି, ଆପଣଙ୍କ ପୁଅ ରକ୍ଷୀବାହିନୀରେ ନିଶ୍ଚେ ଭର୍ତ୍ତି ହେବ । ହେଇ ମୁଁ ଆପଣଙ୍କ ଦେହ ଛୁଁଚି, ଯଦି ମୋ' କଥାକୁ ମିଛ ବୁଝୁଛନ୍ତି । କହନ୍ତୁ, ହେଲା ତ ଏଥର ?"

"ଆଜ୍ଞା, ଆପଣ ମତେ ବଞ୍ଚାଇଲେ । ଏତକ ଆପଣ କରିଦେବେ ତା ମୁଁ ଜାଣିଥିଲି । ଆପଣ କେଡ଼େ ଉପକାରୀ ତା କଣ ମୁଁ ଜାଣିନାହିଁ ?" ଦେଖିଲେ ଯେ ସେ ଚାଲିଯାଉଛନ୍ତି, ସେଉଠୁ ପାଟିକଲେ, "ରହନ୍ତୁ ଆଜ୍ଞା, ଟିକିଏ ରହନ୍ତୁ । ସେ ରକ୍ଷୀବାହିନୀ ଚାକିରିରେ ମୁକରର୍ ହେଲା ପରେ ..." ଲାଜରା ଲାଜରା ହୋଇ ସେ ଟିକିଏ ଅଟକି ଗଲେ, ପୁଣି କହିଲେ,

"କୁଡୁଜଭ୍‌ଙ୍କ ସାଙ୍ଗରେ ଆପଣଙ୍କର ଭାରି ଭଲପଡ଼େ । ମୁଁ ଜାଣିଚି । ବୋରିସକୁ ଆପଣ ସମ୍ରାଟଙ୍କ ଅଙ୍ଗରକ୍ଷୀ ହେବାକୁ ସୁପାରିସ୍ କରିବେ । ତା ଯଦି ହୁଅନ୍ତାଚି ମୁଁ ଭାରି ଖୁସି ହେବି ଓ ଜୀବନରେ କେବେ ହେଲେ···"

ପ୍ରିନ୍‌ସ୍ ବେସିଲ୍ ହସିଲେ ।

"ସେ କଥାରେ ମୁଁ ଜବାବ୍ ଦେଇପାରିବି ନାହିଁ । କୁଡୁଜଭ୍ ଯେମିତି ସୈନ୍ୟାଧ୍ୟକ୍ଷ ହୋଇଛନ୍ତି, ସେମିତି ତାଙ୍କ ଉପରେ ଦରଖାସ୍ତମାନ କୁଡ଼େଇ ହୋଇପଡ଼ୁଛି । ସେ ମତେ ନିଜେ କହୁଥିଲେ ଯେ ମସ୍କୋରେ ଯେତେ ଭଦ୍ରମହିଳା ଅଛନ୍ତି, ସେମାନେ ତାଙ୍କ ପୁଅମାନଙ୍କୁ ତାଙ୍କୁ ଯାଚୁଛନ୍ତି ସେହି ଅଙ୍ଗରକ୍ଷୀ କାମପାଇଁ—"

"ନାଇଁ ନାଇଁ, ସେମିତି କହିଲେ ଚଳିବ ନାଇଁ । ଆପଣ ମତେ ନିର୍ଭର ଜବାବ୍ ଦେଇଯାଆନ୍ତୁ । ଆପଣ ମୋ ବନ୍ଧୁ, ଆପଣ ଆମ ରକ୍ଷାକର୍ତ୍ତା, ମତେ ଜବାବ୍ ଦିଅନ୍ତୁ, ନ ହେଲେ ଆପଣଙ୍କୁ ମୁଁ ଛାଡ଼ିବି ନାଇଁ—"

"ବାପା", ସୁନ୍ଦରୀ ହେଲେନ୍ ସେହି ଆଗପରି ସେମିତି ଡାକ ପକାଇଲା, "ଆସ ନଇଲେ ଆମର ଡେରି ହେଇଯିବ ।"

"ନମସ୍କାର, ନମସ୍କାର, ଦେଖନ୍ତୁ ଏ ବିଷୟରେ ମୁଁ ଆପଣଙ୍କୁ ଜବାବ୍ ଦେଇ ପାରିବି ନାହିଁ ।"

"ତା ହେଲେ କାଲି ଆପଣ ମହାରାଜାଙ୍କୁ ଜଣାଇବେଟି ?"

"ସେଥିରେ କେବେ ଭୁଲ୍ ହେବ ? କିନ୍ତୁ କୁଡୁଜଭ୍‌ଙ୍କ କଥା ଯାହା ଆପଣ କହିଲେ, ସେ ବିଷୟରେ ମୁଁ କିଛି ପ୍ରତିଶ୍ରୁତି ଦେଇ ପାରୁନାହିଁ ।"

"ହଇହେ ବେସିଲ—"ଆନ୍ନା ମିଖାଇଲୋଭ୍ନା ଏକ ମନମୋହିନୀ ପରି ହସ ହସି ଅଳି କଲେ । ସେ ଭୁଲି ଯାଇଥିଲେ ଯେ ଅତୀତ ଯୁଗର ଏହି ସବୁ ଭଙ୍ଗୀ ବର୍ତ୍ତମାନର ଲୁଳିତ ଦେହରେ ଛବି ସହିତ ଆଉ ମାନୁ ନାହିଁ, ବେଖାପ ହୋଇଯାଉଛି । ତାଙ୍କ ବୟସର କଥା ସେତେବେଳେ ସେ ଭାବୁ ନ ଥିଲେ, ନଭବ ନ ବଗୁରି ସେ ଖାଲି ନାରୀସୁଲଭ ଉପାୟମାନଙ୍କ ଆଶ୍ରା ନେଇଥିଲେ । କିନ୍ତୁ ଯେମିତି ପ୍ରିନ୍‌ସ୍ ବେସିଲ୍ ତାଙ୍କ ଅଡ଼କୁ ପିଠି

ବୁଲେଇ ଦେଇ ଗ୍ଲଲଗଲେ ତାଙ୍କ ମୁହଁ ବିରସ ହୋଇଗଲା । ସେ ପୁଣି ଥରେ ଓଠାର କୁତୂହଳ ଦେଖାଇବା ଭଳି ମୁଖଭଙ୍ଗୀ କଲେ ।

ଲୋକେ ସେତେବେଳେ ଢ ଭାଇକାଉଣ୍ଟଙ୍କଠୁଁ କଥା ଶୁଣୁଥିଲେ । ଆନ୍ନା ମିଖାଇଲୋଭ୍ନାଙ୍କ କାମ ସରିଯାଇଥିଲା । ସେ ଯାଇ ସେ ଦଳରେ ବସିଥିଲେ । କେତେବେଳେ ଏ ରଙ୍ଗମଞ୍ଚରୁ ବିଦାୟ ନେଇ ହେବ କେବଳ ସେହି ସୁବିଧା ବେଳକୁ ଅପେକ୍ଷା କରିଥିଲେ ।

# ଛଅ

"ଏଇ ଏବେ ଯେଉଁ ସୁଆଙ୍ଗ ହେଲା ସେ ବିଷୟରେ ଆପଣଙ୍କ ମତାମତ କଣ ଆଜ୍ଞା ? ଏଇ ଯେଉଁ ହେଲା, ମିଲାନ୍ ସହରରେ ରାଜ-ଅଭିଷେକ ? ଜେନୋଆ ଆଉ ଲୁକା ନଗରର ଲୋକେ ଆସି ଶ୍ରୀଯୁକ୍ତ ବୋନାପାର୍ଟଙ୍କୁ ଅଭିନନ୍ଦନ ଜଣାଇଲେ । ବୋନାପାର୍ଟ ବାବୁ ଖାସ୍ ରାଜ-ସିଂହାସନରେ ବସିଥାନ୍ତି, ଗୋଟାଏ ଗୋଟାଏ ଦେଶର ଅଭିନନ୍ଦନ ଆଉ ଆନୁଗତ୍ୟ ନେଉଥାନ୍ତି, କମ୍ ମଜାର କଥା ! ଏସବୁ ଦେଖିଲେ ମଣିଷର ମୁଣ୍ଡ ପାଗଳ ହୋଇଯିବ । ଦୁନିଆଟା ଯାକ ଲୋକଙ୍କର ଏକାଠି ବୋଧହୁଏ ମୁଣ୍ଡ ବିଗିଡିଗଲା ନାଁ କଣ ?" ଆନ୍ନା ପାଲୋଭ୍ନା ପଚାରିଲେ ।

ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ଆଡ଼କୁ ଅନାଇଁ ମୁରୁକ ମୁରୁକ ହସିଲେ । କହିଲେ—

"ଭଗବାନ୍ ଯାକୁ ମତେ ଦେଇଛନ୍ତି, ହୁସିଆର୍ କେହି ଯେମିତି ଏଥିରେ ଟିପ ନ ଛୁଅଁନ୍ତି ।"

ନେପୋଲିଅନ୍ ଆପଣା ମୁଣ୍ଡରେ ରାଜ-ମୁକୁଟ ଲଗାଇଲାବେଳେ ଏହି କଥା କହିଥିଲେ । ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କର କଥାକୁ ଅଉଥରେ କହିଲେ । କହିଲେ—

"ଲୋକେ କହୁଛନ୍ତି, ଏକଥା ଭୁଣ୍ଡରେ କହିଲାବେଳକୁ ନେପୋଲିଅନ୍‌ଙ୍କୁ କୁଆଡ଼େ ବଡ଼ ସୁନ୍ଦର ମାନୁଥିଲା ।" ଫେର୍ ଆଉଥରେ ଇଟାଲି ଦେଶର ଭାଷାରେ ସେ ସେହି କଥାକୁ କହିଲେ ।

ଆନ୍ନା ପାଲୋଭ୍ନା କହିଲେ, "ମୁଁ ଖାଲି ଠାକୁରଙ୍କୁ ଡାକୁଛି, ତାର ଏଇ ଗ୍ରାସ୍‌ଟା ଶେଷ ଗ୍ରାସ ହୁଅନ୍ତା କି ! ପ୍ରକୃତରେ କହିବାକୁ ଗଲେ ୟୁରୋପ ମହାଦେଶରେ ଏ ଯେତେ ରାଜା ମହାରାଜା ଅଛନ୍ତି ସେମାନେ ସେ ଲୋକଟାକୁ ଆଉ ଦଣ୍ଡେ ବି ସହିବା ଫାବୁ ନାହିଁ । ସେ ଲୋକଟା ଥିବାଯାକେ ତାଙ୍କ ସମସ୍ତଙ୍କ ଏକ ଜୀଅନ୍ତା ବିପଦ ।"

ଭାଇ କାଉଣ୍ଟ୍ ପ୍ରତିଧ୍ୱନି ଦେଲା ପରି କହିଲେ, "ହଁ ! ରାଜା ମହାରାଜାମାନେ !" ତାଙ୍କ ସ୍ୱରରେ ଭଦ୍ରତା ଓ ନୈରାଶ୍ୟ ବାରି ହୋଇ ପଡ଼ୁଥିଲା । କହିଲେ, "ସେ ତାଲିକାରେ ମୁଁ ରୁଷ୍ ଦେଶକୁ ମିଶାଉ ନାହିଁ । ୟୁରୋପ୍‌ର ରାଜା ମହାରାଜାମାନେ ନା ! ଷୋଡ଼ଶ ଲୁଇଙ୍କ ପାଇଁ ସେମାନେ କଣ କରି ପକାଇଲେ ? କଣ କଲେ ମହାରାଣୀଙ୍କ ପାଇଁ ? ହେଲା ଏଲିଜାବେଥଙ୍କ ପାଇଁ ? କଣ କଲେ ? କିଛି ନାହିଁ । ମୋ କଥା ବିଶ୍ୱାସ କରନ୍ତୁ, ସେତେବେଳେ ଯେ ସେମାନେ ବର୍ବୋଁ ରାଜବଂଶ ବୁଡ଼ିଗଲା-ବେଳେ ଆଡ଼େଇ ହୋଇ ରହିଲେ, ସାହା ଭରସା ଦେଲେ ନାହିଁ, ଏବେ ତାରି ଫଳ ଭୋଗ କରୁଛନ୍ତି । ସ୍ୱେ ରାଜା ମହାରାଜାଏ ! ଏ କାହିଁ ଅଇଲା ଝାମ୍‌ମରା ଲୋକଟାକୁ ତାଙ୍କ ଅଭିନନ୍ଦନ ଜଣାଇବାକୁ ତା କତିକି ସେମାନେ ଦୂତ ବରଗୁଛନ୍ତି ଆଜ୍ଞା, କଣ କହୁଛନ୍ତି ତାଙ୍କ କଥା !"

ପ୍ରିନ୍‌ସ୍ ହିପୋଲାଇଟ୍ ଚଷମା ଉହାଡ଼ରୁ ମର୍ତେମାର୍ଟ୍‌ଙ୍କୁ ଏକା ଆଖିରେ ଅନାଇଁ ରହିଥିଲେ, ଏଥର ସେ ନାଠି ହୋଇ ସାନ ପ୍ରିନ୍‌ସେସ୍‌ଙ୍କ ଆଡ଼କୁ ବୁଲିପଡ଼ି ତାଙ୍କଠୁ ଗୋଟାଏ ଛୁଞ୍ଚି ମାଗିନେଲେ । ଛୁଞ୍ଚି ଅଗରେ କଣ୍ଡେ ବଂଶର ସନ୍ତକ ଚିହ୍ନକୁ ଗାରେଇ ବସିଲେ । ତାପରେ ଖୁବ୍ ଗମ୍ଭୀର ହୋଇ ସେ ସନ୍ତକ ଚିହ୍ନକୁ ଆଚ୍ଛାକରି ଆଙ୍କିଲେ, ସତେକି ପ୍ରିନ୍‌ସେସ୍ କହିଛନ୍ତି ତାଙ୍କୁ ତାକୁ ଆଙ୍କିବାକୁ । କହିଲେ—

"ଗୋଟିଏ ଦଣ୍ଡ ଓ ଢାଲ ଉପରେ ଥିବା ଧଡ଼ି ଓ ଅର୍ଦ୍ଧଚନ୍ଦ୍ରପରି ଚିହ୍ନଗୁଡ଼ିଏ ଆକାଶୀ ବର୍ଣ୍ଣ ଉପରେ ଠିଆ ଠିଆ ନାଲିଗାର ।"

ପ୍ରିନ୍‌ସେସ୍ ଚୁପ୍‌ଚାପ୍ ଶୁଣିଗଲେ ।

ଭାଇ କାଉଣ୍ଟ କଥା ଗପି ଚାଲିଥିଲେ, ଯେମିତି କି ସେ ଜଣେ ମଣିଷ ଯେ ଆପଣା ଭାବନାର ଖିଅ ଧରି ବକି ଚାଲିଯାଏ, ଗୋଟାଏ ମାମୁଲି ବିଷୟରେ ଏପରି ବକ୍ତୃତା ଦେଉଥିଲେ ଶୁଣିବା ଲୋକର ମନରେ ତା ପ୍ରତି କି ଧାରଣା ଆସେ, ସେଥିପ୍ରତି ତାର ଖାତିର ନାହିଁ । ସେ କହିଲେ—

"ଯଦି ବୋନାପାର୍ଟ ଫ୍ରାନ୍‌ସ୍‌ର ରାଜଗାଦିରେ ଆଉ ବର୍ଷେ ରହିବ, ତେବେ କଥା ବହୁତ ଦୂରକୁ ଗଡ଼ିଯିବ । ଫ୍ରାନ୍‌ସ୍ ଲୋକଙ୍କ ସମାଜ,—ମାନେ ମୁଁ ଭଲ ଖାନଦାନ ଲୋକଙ୍କ ସମାଜ କଥା କହୁଚି,—ଖାଲି ପେଞ୍ଚପାଞ୍ଚ, ହାଣକାଟ୍, ଦେଶାନ୍ତର, ନିର୍ବାସନ,—ଏଇଥିରେ ସବୁ

ଖଣ୍ଡ ଖଣ୍ଡ ହୋଇ ଫାଟି ଭୁଷୁଡ଼ି ପଡ଼ିବ, ସେଉଠୁ—", ନିଃସନ୍ଦେହାସୂଚକଭାବରେ କାନ୍ଧ ନଚେଇ ସେ ଦି'ହାତ ଟେକିଦେଲେ ।

ପିଏରେ କଥା କହିବାକୁ ବସିଲା (ଏ କଥାଭାଷାରେ ତା ମନ ମଜ୍ଜି ଯାଇଥିଲା) କିନ୍ତୁ ନିମନ୍ତ୍ରଣକାରିଣୀ ତାକୁ କିଛିସମୟ ପରି ଅନିଷ୍ଟା କରିଥିଲେ, ସେ କଥା କହିବା ଆଗରୁ ଆନ୍ନା ପାଲୋଭ୍ନା ଆଗଭଳି ପଡ଼ି କହିଲେ,

"ସମ୍ରାଟ୍ ଆଲେକ୍ଜାଣ୍ଡର ଘୋଷଣା କରିଛନ୍ତି ଯେ ଫ୍ରାନ୍ସ୍ ଦେଶର ଲୋକଙ୍କ ମନକୁ ଯେମିତିଆ ଶାସନ ପାଉଛି ସେମାନେ ସେଭଳି ଶାସନ ବାଛି ନିଅନ୍ତୁ ପଛେ, ସେଥିରେ ସେ ପାଟି ଫିଟାଇବେ ନାହିଁ, ଆଉ ମୋର ଷୋଳଅଣା ବିଶ୍ୱାସ ଯେ ଥରେ ଯଦି ସମଗ୍ର ଫରାସୀ ଜାତିଟା ସେ ଗାଦିଚୋରଟା ଲୋକଟା କବଳରୁ ମୁକ୍ତ ପାଇବ ତ ଆପେ ସେ ଜାତି ଗୋଟାକଯାକ ଯାଇ, ଯେ ତାର ନ୍ୟାୟତଃ ରାଜା ତାଙ୍କୁ କୁଣ୍ଢେଇ ଧରିବ ।"

ଏଥିରୁ ଜଣାଯିବ ଯେ ରାଜାପ୍ରେମୀ ଦେଶତ୍ୟାଗୀ ଭାଇକାଉଣ୍ଟଙ୍କ ମନଖୁସି କରିବାକୁ ତାଙ୍କର ବହୁତ ଆଗ୍ରହ ଥିଲା ।

"ତା ଆଉ ହେବା ସମ୍ଭବ ଦିଶୁନାହିଁ, "ପ୍ରିନ୍ସ୍ ଆନ୍ଦ୍ରେ କହିଲେ, "ଭାଇକାଉଣ୍ଟ୍ ଠିକ୍ କହୁଛନ୍ତି, କଥା ବହୁତ ବାଟ ବଳେଇ ଯାଇଛି । ପଛ ଅବସ୍ଥାକୁ ପୁଣି ଫେରେଇ ଆଣିବା ଭାରି କଷ୍ଟ ।"

ପିଏରେ ଆଗକୁ ଚାଲିଆସି ଗୋଟାସୁଦ୍ଧା ନାଲି ପଡ଼ିଯାଇ କହିଲା, "ମୁଁ ଶୁଣିଛି ରାଜବଂଶୀୟ ଅମୀର୍ ଜମିଦାରମାନଙ୍କ ଭିତରୁ ବେଶି ଭାଗ ନେପୋଲିଅନ୍‌ଙ୍କ ପକ୍ଷକୁ ଚାଲିଗଲେଣି ।"

ପିଏରେ ଆଡ଼କୁ ନ ଚାହିଁ ଭାଇକାଉଣ୍ଟ୍ କହିଲେ, "ବୋନାପାର୍ଟ୍ ଦଳର ଲୋକେ ସେମିତି କହିପାରନ୍ତି କିନ୍ତୁ ଫ୍ରାନ୍ସ ଦେଶରେ ଜନମତ ପ୍ରକୃତରେ କଣ ତା ଜାଣିବା ଅସମ୍ଭବ ।"

ଭାଇକାଉଣ୍ଟ୍‌ଙ୍କ କଥାଗୁଡ଼ାକ ପ୍ରିନ୍ସ ଆନ୍ଦ୍ରେଙ୍କୁ ଲକ୍ଷ୍ୟକରି କୁହା-ହେଉଥିଲା, ତେଣୁ ତାଙ୍କ କଥାଗୁଡ଼ାକ ପ୍ରିନ୍ସ ଆନ୍ଦ୍ରେଙ୍କୁ ମୋଟେ ଭଲ ଲାଗୁ ନଥିଲା । ବ୍ୟଙ୍ଗୋକ୍ତି କରି ସେ କହିଲେ—

"ଯାହା ପଛେ ହେଉ, ନେପୋଲିଅନ୍‌ହିଁ କହିଥିଲେ ଯେ, "କୀର୍ତ୍ତି ଅର୍ଜିବାକୁ ଯିବାକୁ ସଦର ରାସ୍ତା ତାଙ୍କୁ ମୁଁ ଦେଖେଇଥିଲି,

ସେମାନେ ସେବାଟ ମାଡ଼ଲେ ନାହିଁ ।" ଲୋକେ କହନ୍ତି ଅବିକଳ ଏଇ ଭାଷାରେ ସେ କହିଥିଲେ, କିଣ ନା "ଆଉ ମୁଁ ମୋ କଣ ଘରର ଗଳି କବାଟଟା ଯେମିତି ଫିଟେଇ ଦେଇଚି ତ ସେମାନେ ଖାଉଡ଼ ଖାଉଡ଼ ହୋଇ ସେବାଟେ ପଶି ଆସିଲେ ।" ମତେ ଜଣା ନାହିଁ ତାଙ୍କର କି ଅଧିକାର ଥିଲା ଏପରି କହିବାକୁ ।"

"କିଛି ଅଧିକାର ନଥିଲା,"ମର୍ଟେମାର୍ଟ ପାଟିକଲେ, "ସେ ଯେମିତି ଡଉକ୍ ଡ଼ ଏନ୍ ଘିଏନଙ୍କୁ ହତ୍ୟା କରିଦେଲା ସେମିତି ତାଙ୍କୁ ଯେଉଁମାନେ ସବୁଠୁ ବେଶି ମୁଣ୍ଡରେ ମୁଣ୍ଡେଇଥିଲେ ସେମାନେ ବି ତାଙ୍କୁ ଗୋଟାଏ ବୀର ବୋଲି ଆଉ ମନେକଲେ ନାହିଁ ।" ସେ ଆନ୍ନା ପାଲୋଭ୍ନାଙ୍କୁ କହିଲେ, "ତାପରେ, ଏ ପୃଥିବୀରେ ଯେତେ ବୀର ଅଛନ୍ତି, ସେଥିରୁ ଗୋଟିଏ ଊଣା ପଡ଼ିଗଲା, ଆଉ ସ୍ୱର୍ଗରେ ଯେତେ ଶହୀଦ୍ ଥିଲେ, ତାଙ୍କର ଗୋଟିଏ ସଂଖ୍ୟା ବଢ଼ିଲା, ଏତିକି ହେଲା ।"

ଏ ଶେଷ କଥାଟା ସରିଛି କି ନ ସରିଛି ଆଉ ତାର ପୁରସ୍କାର ସ୍ୱରୂପ ପ୍ରଶଂସାର ହସଟିଏ ଫୁଟିଛି କି ନାହିଁ, ପିଏରେ ଫୁଲ୍‌କାକୁ ଧାଇଁ ଆସିଲା । ଆନ୍ନା ପାଲୋଭ୍ନା ତ ଆଶଙ୍କା କରିଥିଲେ ଯେ ଗୋଟାଏ କିଛି ଅତି ଭୟଙ୍କର ଘଟନା ଘଟିବ ବୋଲି, କିନ୍ତୁ ତାଙ୍କୁ ରୋକିବାକୁ ତାଙ୍କୁ ଫୁରୁସତ୍ ନଦେଇ ପିଏରେ ଆରମ୍ଭ କରିଦେଲା,

"ଡଉକ୍ ଡ଼ି ଏନ୍ ଘିଏନଙ୍କ ମୃତ୍ୟୁଦଣ୍ଡ ଘଟିଲା ଏକ ରାଜନୈତିକ ପ୍ରୟୋଜନୀୟତା ଦୃଷ୍ଟିରୁ, ତାର ସମୁଦାୟ ଦାୟିତ୍ୱ ଆପଣା ମୁଣ୍ଡ ଉପରେ ନେଇ ନେପୋଲିଅନ୍ ଆପଣାର ଉଦାର ମହତ୍ତ୍ୱ ଦେଖାଇଲେ ।"

ଆନ୍ନା ପାଲୋଭ୍ନା କାତର ହୋଇ କହିଲେ, "ହେ ଭଗବାନ୍ ! ହେ ଭଗବାନ୍ !"

ସାନ ପ୍ରିନ୍‌ସେସ୍ ହାତରେ ସିଲେଇ କାମକୁ ଥୁଆଡ଼ିଦେଇ କହିଲେ, "ତେବେ କଣ କହୁଛନ୍ତି ଆଜ୍ଞା, ଶ୍ରୀଯୁକ୍ତ ପିଏର୍, ଗୋଟାଏ ଜଘନ୍ୟ ହତ୍ୟା-କାଣ୍ଡରୁ ଆପଣ କି ଉଦାର ମହତ୍ତ୍ୱ ପାଇଲେ ?"

କେତେ ଲୋକ କହିଉଠିଲେ "ବାପ୍‌ରେ ବାପ୍,ଆରେ ବାପ୍‌ରେ" ଆଣ୍ଠୁ ଉପରେ ପାପୁଲି ଆପୁଡ଼େଇ ଇଂରେଜି ଭାଷାରେ ପ୍ରିନ୍‌ସ୍ ହିପୋ-ଲାଇଟ୍ କହିଲେ "ଚମତ୍କାର ! ଚମତ୍କାର !" ।

ଭାଇକାଉଣ୍ଟ୍ ଖାଲି କାନ୍ଧ ନଚେଇଲେ ।

ପିଏରେ ସେମାନଙ୍କୁ ଚଷମା ଉପରଦେଇ ଚାହିଁ ଅନାଇଲା । କହିଲା, "ମୁଁ ଏକଥା କହୁଛି କାରଣ ବିପ୍ଳବ ଘୋଟିବା ସଙ୍ଗେ ସଙ୍ଗେ ବର୍ବେଁ ରାଜପରିବାର ଦେଶକୁ ଅରାଜକତା କବଳରେ ଶିକାର ହେବାକୁ ଛାଡ଼ିଦେଇ ପଳାଇ ଛୁ'କଲେ । ଏକା ନେପୋଲିଅନ୍ ବୁଝିଲେ ରାଷ୍ଟ୍ର-ବିପ୍ଳବର ତାତ୍ପର୍ଯ୍ୟ କଣ, ସେ ତାକୁ ଦମନ କଲେ । ସେଥିପାଇଁ, ଦେଶରେ ଶାନ୍ତି ଶୃଙ୍ଖଳା ଯେତେବେଳେ ବିପନ୍ନ ସେତେବେଳେ ସେ ଖାଲି ଗୋଟାଏ ଲୋକର ଜୀବନ ରକ୍ଷା କରିବାକୁ ଅଟକି ରହିପାରିଲେ ନାହିଁ ।"

"ଆସନ୍ତୁ ନାହିଁ ତୁମେ ଏ ଆର ଟେବୁଲ୍‌କୁ ?" ଆନା ପାଲୋଭ୍ନା ଡାକିଲେ, କିନ୍ତୁ ପିଏରେ ତାଙ୍କ କଥାରେ କାନ ନ ଦେଇ ଆହୁରି ଉତ୍ତେଜିତ ହୋଇ କହିଲାଗିଲା,

"ହଁ ନେପୋଲିଅନ୍ ଏକ ମହାପୁରୁଷ କାରଣ ସେ ରାଷ୍ଟ୍ରବିପ୍ଳବଠୁଁ ଆହୁରି ମହତ୍ତର ହୋଇ ଉପରକୁ ଉଠିଛନ୍ତି, ରାଷ୍ଟ୍ର ବିପ୍ଳବରେ ଯାହା କିଛି ଥିଲା ଦୂଷଣୀୟ ତାକୁ ସେ ସୁଧାରିଛନ୍ତି, ଯାହା ସେଥିରେ ଭଲ ଥିଲା ତାକୁ ସେ ସାଇତି ରଖିଛନ୍ତି, ନାଗରିକମାନଙ୍କର ସମାନ ଅଧିକାର, ଖବର କାଗଜ ଓ ଭୁଣ୍ଡ ବକ୍ତୃତାର ସ୍ୱାଧୀନତା ରକ୍ଷା କରିଛନ୍ତି, ଏହି କାରଣରୁ ସେ କ୍ଷମତା ପାଇପାରିଲେ ।"

ଭାଇକାଉଣ୍ଟ୍ କହିଲେ, "ସେ ଯଦି ଆପଣା କ୍ଷମତାର ସୁଯୋଗ ନେଇ ଗୋଟାଏ ଖୁନ୍ ନ କରିଥାନ୍ତେ, ଆଉ ଯେ ନ୍ୟାଯ୍ୟତଃ ରାଜା ହେବାକୁ ହକ୍‌ଦାର୍, ତାଙ୍କୁ ସିଂହାସନରେ ପୁଣି ନେଇ ବସେଇଥାନ୍ତେ, ତେବେ ମୁଁ ମାନିଥାନ୍ତି ଯେ ସେ ଜଣେ ମହାପୁରୁଷ ।"

"ତା ତାଙ୍କ କ୍ଷମତାର ବହିର୍ଭୂତ । ଦେଶ ତାଙ୍କୁ ତାର ରାଜ-ସିଂହାସନ ଦେଇଥିଲା ଏଇଥିପାଇଁ ଯେ ସେ ଦେଶକୁ ବର୍ବେଁ ବଂଶ କବଳରୁ ମୁକ୍ତ କରିବେ । ଦେଶ ସ୍ୱୀକାର କଲା ଯେ ସେ ଜଣେ ଅତି ପ୍ରତିଭାମନ୍ତ ମନୁଷ୍ୟ । ଫରାସୀ ରାଷ୍ଟ୍ରବିପ୍ଳବ ଏକ ବିରାଟ ଗୁରୁତ୍ୱପୂର୍ଣ୍ଣ ଘଟନା—"

କହି ଚାଲିଲା ପିଏରେ । ସେ ଯେ ବାରମ୍ବାର ଆପଣା ମତକୁ ବୁଝାଇବାକୁ ଚେଷ୍ଟା କରୁଥିଲା ଓ ଅତି ଉଗ୍ରମତ ବଖାଣୁଥିଲା ଓ ଲୋକଙ୍କୁ ଚିଡ଼ାଇଲାଭଳି ମତମାନ ଭୁଣ୍ଡରେ ଧରୁଥିଲା, ସେଇଥିରୁ ତାର ପିଲାଳିଆମି ବାରି ହୋଇ ପଡ଼ୁଥାଏ ।

"ରାଷ୍ଟ୍ର ବିପ୍ଳବ ଆଉ ରାଜହତ୍ୟା ! ଆଉ ତା ପଛେ ପଛେ—, ଛାଡ଼, ଯିବନାହିଁ ତେମେ ସେ ଟେବୁଲ୍‌ରୁ ଆର ଟେବୁଲ୍‌କୁ ? ଏଁ !"

ମର୍ତ୍ତେମାର୍ଟ ନିରୁପାୟଭାବେ ଅଳ୍ପ ହସି କହିଲେ, ରାଜ ଅଧିକାର ଏକ ସାମାଜିକ ଚୁକ୍ତି ।"

ପିଏରେ କହିଲା, "ମୁଁ ରାଜହତ୍ୟା ବିଷୟ ଜମା ଉଠାଇ ନାହିଁ, ମୁଁ ଖାଲି କହିଲି ବିଚାର ବିଷୟରେ" ।

କିଏ ଜଣେ ଶ୍ଳେଷୋକ୍ତି କଲା, "ହଁ ବିଚାର କଥା ନୁହେଁ ତ ଆଉ କଣ ? ଡକାୟତି, ଖୁଣୀ, ରାଜହତ୍ୟା, ଯାହା ବିଚାର ।"

"ସେସବୁ ହେଲା ଅତି ଦୂରର ଦୂରର କଥା କିନ୍ତୁ ସେ ବିଚାରର ମଞ୍ଜି ହେଉଛି କୁସଂସ୍କାରର ଜାଲରୁ ମୁକ୍ତି, ମଣିଷ ମଣିଷ ଭିତରେ ସମତା, ନେପୋଲିଅନ୍ ତାର ପ୍ରକୃତ ସ୍ୱରୂପକୁ ବଞ୍ଚାଇ ରଖିଥିଲେ ।"

ଭାଇକାଉଣ୍ଟ୍ ଠିକ୍ କରିଥିଲେ ସେ ଏ ଯୁବକ ଆଗରେ ପ୍ରମାଣ କରିଦେବେ ତା ଯୁକ୍ତିଗୁଡ଼ାକ କେଡ଼େ ଫମ୍ପା, ତେଣୁ ସେ ଅତି ହୀନମାନ-କରି କହିଲେ 'ହୁଁଃ ! ମୁକ୍ତି ଆଉ ସାମ୍ୟ ! ସେସବୁ ବଡ଼ ବଡ଼ ଶବ୍ଦଗୁଡ଼ାକ ଆଜି ଦି'କଡ଼ା ଯୋଗ୍ୟ ନୁହେଁ । ସତରେ ସେଗୁଡ଼ାକ ଘଟି ପାରୁଥିଲେ କାହାକୁ ଗଡ଼ାନ୍ତା ? ନିଜେ ଯୀଶୁଖ୍ରୀଷ୍ଟ ମୁକ୍ତି ଓ ସାମ୍ୟ ପ୍ରଚାର କରିଥିଲେ । ତେବେ ଏ ରାଷ୍ଟ୍ରବିପ୍ଳବ ହେଲାଦିନୁଁ ଆମେ ଆଗଠୁ କେଉଁଗୁଣରେ ବେଶି ସୁଖରେ ଅଛୁ ନା କଣ ? ଠିକ୍ ତା ଓଲଟା । ଆମେ ମାଗିଲୁ ମୁକ୍ତି, ନେପୋଲିଅନ୍ ମୁକ୍ତିକୁ ବ୍ୟାଜ୍ୟାପ୍ତି କରିନେଲେ ।"

ପ୍ରିନ୍ସ୍ ଆନ୍ଦ୍ରେ ଠିଆହୋଇ ହସୁଥିଲେ, ଅନାଉଁଥିଲେ ଆଗ ପିଏରେ ମୁହଁକୁ ତାପରେ ଭାଇକାଉଣ୍ଟ୍‌ଙ୍କ ମୁହଁକୁ, ତାପରେ ଯେ ତାଙ୍କୁ ସବୁ ନିମନ୍ତ୍ରଣ କରି ଏକାଠି କରିଥିଲେ, ସେହି ଆନ୍ନାପାଲୋଭ୍ନାଙ୍କ ମୁହଁକୁ, ସେ ବିଚାରୀଙ୍କର ଦୁନିଆଁ ବିଷୟରେ ଯାହା ଅଭିଜ୍ଞତା ଥିଲା, ସେଥିରେ ସେ ପିଏରେର ଏସବୁ ଲଟୁଆ ଯୁକ୍ତି ଶୁଣି କଞ୍ଚାପାଣି ହୋଇ ସାରିଲେଣି ନିସତେବେଳକୁ । ଆନ୍ନା ଯେତେବେଳେ ଦେଖିଲେ ଯେ ଏଡ଼େ ଭୟଙ୍କର ଅଶାଳୀନ ଯୁକ୍ତିଗୁଡ଼ାକ ସେ ଫରାସି ଭାଇକାଉଣ୍ଟ୍‌ଙ୍କୁ ରଗାଇ ପାରିଲା ନାହିଁ, ପୁଣି ସେ ଯୁକ୍ତିଗୁଡ଼ାକ ବନ୍ଦ କରିବା ବି ଅସମ୍ଭବ, ସେ ସେଉଠୁ ସେହି ନିର୍ବାସିତ ରାଜବଂଶଜ ଭଦ୍ରଲୋକଙ୍କ ପଟନେଇ ଉପରେ ପଡ଼ି ପିଏରେକୁ ଯୁକ୍ତିରେ ଆକ୍ରମଣ କଲେ, କହିଲେ—

"ଟିକିଏ ଶୁଣ ମହାଶୟ ପିଏର୍‌ଟର, ଯେଉଁ ଲୋକଟା କିଛି ଦୋଷ ନଥାଇ ଜଣେ ଡ଼ିଉକ୍‌ଙ୍କୁ କି ଧରି ଜଣେ ଅତି ସାଧାରଣ ଲୋକକୁ ମରେଇ ଦେଲା, ପୁଣି କୌଣସି ଅଦାଲତରେ ତାଙ୍କର ବିଚାର ବି କରା-

ହେଲା ନାହିଁ, ତୁମେ ସେଭଳି ଲୋକଟାକୁ ଜଣେ ମହାପୁରୁଷ ବୋଲି କେମିତି କହିବ ?"

ଭାଇକାଉଣ୍ଟ କହିଲେ, "ମୁଁ ବି ଆପଣଙ୍କୁ ପଚାରୁଛି, ଏ ଯେଉଁ ଅଷ୍ଟାଦଶ ବ୍ରୁମେଆର୍ ସେ କଲେ, ସେଇଟା କେମିତି ହେଲା ବୁଝେଇଲେ ମତେ ଟିକିଏ ? ସେ କାର୍ଯ୍ୟଟା କଣ ରାଜଦ୍ରୋହ ନୁହେଁ ? କି ଏକ ଠକାମିଟା କାମ ନୁହେଁ ? କୌଣସି ମହାପୁରୁଷଙ୍କର ଏମିତି ଗୋଟାଏ କାମ କରିବାକୁ ମନ ହୁଅନ୍ତା ?"

ସାନ ପ୍ରିନ୍‌ସେସ୍ କହିଲେ, "ଆଉ ଆଫ୍ରିକାରେ ସେ ଯେଉଁ ବନ୍ଦୀମାନଙ୍କୁ ହତ୍ୟା କରାଗଲା ! ଓଃ ! ବଡ଼ଭୟ !"

ହିପୋଲାଇଟ୍ କହିଲା, "ତୁମେ ଯାହା ମନ ତା କହ පଛେ, ସେ ଲୋକଟା ଗୋଟାଏ ଗ୍ରେଟ୍‌ମ୍ୟାନ୍"।

ପିଏରେ କିଛି ଜବାବ୍ ଦେଇ ନ ପାରି ସମସ୍ତିଙ୍କି ଅନାଇଁ ହସିଲା । ହସଟା ମହରଗିଆ ନୁହେଁ କି ମାହାଳିଆ ନୁହେଁ, ଗୋଟାଏ ମନଖୋଲା ନିଷ୍କପଟ ହସ । ତାର ସ୍ୱାଭାବିକ ଗମ୍ଭୀର ବିଷଣ୍ଣ ମୁହଁରେ ସେ ହସ ଏକ ଅଖିଳା ସ୍ନିଗ୍ଧତାର ଛବି ଫୁଟାଇଲା, ସେ ମୁହଁ ଦିଶିଲା ଗୋଟିଏ ପିଲା ମୁହଁପରି, ଯେତେବେଳେ ପିଲାଟିଏ ଆସି ଗୋଳେଇ-ପୋଳେଇ ହୁଏ, କହେ ମତେ କ୍ଷମାକର, ସେହିପରି ପିଲା ମୁହଁ ।

ଭାଇ କାଉଣ୍ଟ ତାକୁ ଆଗରୁ କେବେ ଦେଖି ନଥିଲେ । ସେ ସଙ୍ଗେ ସଙ୍ଗେ ବୁଝି ପାରିଲେ ଯେ ଏ ବିପ୍ଳବୀ ଜଣକର କଥାଗୁଡ଼ାକ ଶୁଣିବାକୁ ଯେଡ଼େ ଭୟାନକ, ଏ ମଣିଷଟା ସେପରି ଭୟାନକ ଆଦୌ ନୁହେଁ । ଟିକିଏ ବେଳ ତୁନି ତାନିରେ କଟିଲା ।

ହଠାତ୍ ପ୍ରିନ୍‌ସ୍ ଆନ୍ଦ୍ରେ କହିଲେ "ଆପଣମାନଙ୍କ ସମସ୍ତିଙ୍କ କଥାକୁ ସେ ଏକା ସଙ୍ଗରେ କେମିତି ଉତ୍ତର ଦେଇ ପାରିବ ? ଜଣେ ଲୋକ ଅଲଗା ଅଲଗା ସମୟରେ ଯାହା କରେ, କେତେବେଳେ ସେ ଏକ ସାଧାରଣ ଭଦ୍ରଲୋକ, କେତେବେଳେ ଏକ ରାଷ୍ଟ୍ରନାୟକ, କେତେବେଳେ ସେନାପତି, କେତେବେଳେ ଶାସକ, ଜଣେ ଲୋକର ଏତେ ଅବସ୍ଥାରେ କାର୍ଯ୍ୟରେ କଣ କିଛି ପ୍ରଭେଦ ନ ଥାଏ ? ମତେ ତ ଲାଗୁଛି, ସେଥିରେ ବହୁତ ପ୍ରଭେଦ ଥାଏ ।"

ଏଇ ଅପ୍ରତ୍ୟାଶିତ ସାହାଯ୍ୟ ପାଇପାଇ ପିଏରେ କହିଲା, "ନିଶ୍ଚୟ, ନିଶ୍ଚୟ ।"

ପିଏରେ ଯେଉଁ ଭୁଲ୍‌ଟା କରି ସାରିଛି ପ୍ରିନ୍‌ସ୍ ଆନ୍ଦ୍ରେ ତାକୁ ସୁଧାରିବାକୁ ଦୃଢ଼ ପ୍ରତିଜ୍ଞ । ସେ କହି ଲାଗିଲେ,

"ଆର୍‌କୋଲର ପୋଲ ଉପରେ ଠିଆ ହୋଇଥିବା ନେପୋଲିଅନ୍ କି ଜାଫା ସହରରେ ଡାକ୍ତର ଖାନାରେ ତାଙ୍କ ସୈନ୍ୟମାନେ ସାଂଘାତିକ ପ୍ଲେଗ୍ ରୋଗରେ ପଡ଼ିଥିବାବେଳେ ତାଙ୍କ ସଙ୍ଗେ ହାତରେ ହାତ ମିଳାଇବା ଅବସ୍ଥାରେ ନେପୋଲିଅନ୍ ମଣିଷ ହିସାବରେ ଅତି ମହତ୍, ଏ କଥାକୁ ଅସ୍ୱୀକାର କରିବା ଅସମ୍ଭବ । କିନ୍ତୁ ଏକଥା ବି ସତ ଯେ ଅନ୍ୟାନ୍ୟ ଏପରି ବିଷୟ ବି ସେ କରିଥିଲେ, ଯାହା ନ୍ୟାଯ୍ୟ ବୋଲି ଆଦୌ ସଫେଇ ଦେଇ ହେବନାହିଁ ।"

କଥା କହୁ କହୁ ପ୍ରିନ୍‌ସ୍ ଆନ୍ଦ୍ରେ ଠିଆ ହୋଇ ପଡ଼ିଲେ ଓ ତଦ୍ଦ୍ୱାରା ତାଙ୍କ ସ୍ତ୍ରୀଙ୍କୁ ସେ ଜଣାଇ ଦେଲେ ଯେ ଏଥର ବିଦା ହେବାକୁ ପଡ଼ିବ । ପ୍ରିନ୍‌ସ୍ ହିପୋଲାଇଟ୍ ବି ସେଇଆ କଲେ, କିନ୍ତୁ ହାତ ଗୁଡ଼ିଦେଇ ସେ ଅନ୍ୟମାନଙ୍କୁ ଅନୁରୋଧ କଲେ ଯେ ସେମାନେ ଥାଆନ୍ତୁ, ଯାଉନ୍ତୁ ନାହିଁ ।

ସେ ଖୁବ୍ ଆଗ୍ରହ ଦେଖାଇ କହିଲେ, "ହଁ, ସତ କଥା, ଆଜି ଗୋଟିଏ ସୁନ୍ଦର ରୁଷୀ ଗପ ଶୁଣିଲି । ନାଇଁ, ମୋର ଆପଣମାନଙ୍କୁ କହି ଦେବା ଉଚିତ । କ୍ଷମା କରିବେ ଭାଇକାଉଣ୍ଟ୍ ଆଜ୍ଞା, କାହାଣୀଟିକି ମତେ ରୁଷ୍ ଭାଷାରେ ହିଁ କହିବାକୁ ପଡ଼ିବ, ନ ହେଲେ ସେଥିରୁ ସବୁ ମଜା ଗୁଲିଯିବ ।" ତାପରେ ସେ ରୁଷ୍ ଦେଶର ଭାଷାରେହିଁ କାହାଣି କହିଲେ, ସେଥିରେ ଫରାସୀ ବୋଲିର ଟିକିଏ ଛିଟିକା ଲାଗିଥିଲା, ଯେପରିକି ଯେ କଥା କହୁଛି ସେ ଜଣେ ଫରାସୀ ଦେଶରହିଁ ଲୋକ, ରୁଷ୍‌ରେ ଖାଲି ବର୍ଷେ ହେଲା ରହିଛି ।

କାହାଣି କହିଲାବେଳେ ଶ୍ରୋତାମାନଙ୍କ ଚେଣିକି ଧ୍ୟାନ ଦିଅନ୍ତୁ ବୋଲି ହିପୋଲାଇଟ୍ ଏମିତି ଜଗରି ଧରିଲେ ଯେ ସମସ୍ତେ ଚୁପ ହୋଇଗଲେ ।

"ମସ୍କୋ ନଗରୀରେ ଜଣେ ଭାରି ଖାନ୍ଦାନ ଘରର ବୃଦ୍ଧା ମହିଳା ଥିଲେ ଯେ ସେ ଭାରି କୃପଣ, ତାଙ୍କର ଇଚ୍ଛା ହେଉଥିଲା ସେ ଆପେ ଘୋଡ଼ାଗାଡ଼ି ଚଳେଉ ଥାନ୍ତେ, ତାଙ୍କ ଗାଡ଼ି ପଛଆଡ଼େ ଦି'ଜଣ ଡେଙ୍ଗା ଚଡ଼େଙ୍ଗା ନୌକର ଥାଆନ୍ତେ । ଏମିତିଆ ତାଙ୍କ ଖିଆଲ୍ । ସେଇଠୁ କଣ ହେଲା ନା ତାଙ୍କର ଜଣେ ଡେଙ୍ଗୀ ଗୃହକରିଣୀ ବି ଥିଲା ।"

ଏତକ କହି ସେ ଅଟକେ ଯାଇ ଭାବିଲେ "ଆଉ କଣ କହିବି ?" ଯେମିତିକ ଯୁଆପରେ ଆଉ ଆଗକୁ ମାଡିବାକୁ ତାଙ୍କୁ କଷ୍ଟ ହେଉଛି । ସେଉଠୁ କହିଲେ, "ତା ପରେ ସେ ତାଙ୍କ ଗୃହକର୍ତ୍ତ୍ରୀକି କହିଲେ,—ହଁ ସେ ତାକୁ କହିଲେ କି ଝିଅ, ଚଞ୍ଚଳ ପୋଷାକଟାକୁ ଗଳେଇ ପକାଇ ଗାଡ଼ି ପଛ ଆଡ଼େ ଠିଆ ହୋଇପଡ଼, ମୁଁ ବାହାରିବି କେଇଘର ବୁଲିଯିବି ।"

ତା'ପରେ ଶୁଣିବା ଲୋକ ହସିବାର ବହୁତ ପୂର୍ବରୁ ପ୍ରିନ୍ସ୍ ହିପୋଲାଇଟ୍ ନିଜେ ହସି ଉଠିଲେ, ଏଥିରେ ତାଙ୍କ ପ୍ରତି ଲୋକଙ୍କ ଧାରଣା ଖରାପ ହେଲା । ତଥାପି କେତେ ଜଣ ଟିକିଏ ମୁରୁକି ମୁରୁକି ହସିଲେ, ସେଥି ଭିତରେ ଥିଲେ ସେ ବୁଢ଼ୀଜଣଙ୍କ, ଆଉ ଆନ୍ନା ପାଭ୍ଲୋଭ୍ନା ।

"ସେଉଠୁ ସେମାନେ ବାହାରିଲେ । କିନ୍ତୁ ଅକସ୍ମାତ ଏକ ତୋଫାନ ଘୋଟିଲା ଯେ ଗୃହକର୍ତ୍ତ୍ରୀର ମୁଣ୍ଡର ଟୋପିକି ଉଡ଼େଇ ନେଲା । ସେଉଠୁ ତାର ଲମ୍ବା ଲମ୍ବା ମୁଣ୍ଡବାଳଯାକ ତଳକୁ ଓହଳି ପଡ଼ିଲା ।" ଆପଣାକୁ ସମ୍ଭାଳି ନପାରି ସେ ଏମିତି ହସି ଉଠିଲେ ଯେ ଜଣାଗଲା ସତେକି ହସି ହସି ତାଙ୍କ ଦମ୍ ଅଟକି ଯିବ । ସେ ବସିଲା ଜାଗାରେ ଗଡ଼ି ଗଡ଼ିକା କହିଲେ "ହଁ ହଁ, ତା'ର ସବୁଯାକ ମୁଣ୍ଡବାଳ ତଳକୁ ଓହଳି ପଡ଼ିଲା ଆଉ ସହରଯାକ ସମସ୍ତେ ତା' ଜାଣିଲେ—"

କଥାଟି ଏଇଠି ସରିଲା । କେହି ସେ କଥାର ଆଦି ଅନ୍ତ ପାଇଲେ ନାହିଁ କି କେହି ଧାରଣା କରି ପାରିଲେ ନାହିଁ କାହିଁକି ଏ କଥାକୁ ରୁଷ୍ ଦେଶର ଭାଷାରେ କହିବାକୁ ପଡ଼ିଲା ।

କିନ୍ତୁ ପିଏରେ ଯେଉଁ ଲମ୍ବା କଥାଭାଷା ଲଗାଇ ଦେଇଥିଲା, ଯାହା ଶୁଣିବାକୁ ଯେମିତି ଅପ୍ରୀତିକର ଶୁଣିଲେ ସେମିତି ମଣିଷ ଘୋଳି ହୋଇପଡ଼େ, ପ୍ରିନ୍ସ୍ ହିପୋଲାଇଟଙ୍କ କାହାଣି କୁହାରେ ପିଏରେର ସେ ଗପ ବନ୍ଦ ହୋଇଗଲା ବୋଲି ଆନ୍ନା ପାଭ୍ଲୋଭ୍ନା ଓ ଆହୁରି କେତେଜଣ ତାଙ୍କ ପ୍ରତି କୃତଜ୍ଞ ହେଲେ । ଯା' ପରେ କଥାଭାଷା ଆହୁରି ସାନସାନ ବିଷୟରେ ଗଡ଼ି ଚାଲିଲା, ଯଥା ବଲ୍ ନାଚ ଉତ୍ସବ ବିଷୟରେ ଯେପରି ଉତ୍ସବ କେତେ ଘଟି ଯାଇଛି, ପୁଣି ଭବିଷ୍ୟତରେ ହେବାର ସମ୍ଭାବନା ଅଛି, ଆଉ ଥିଏଟରମାନଙ୍କ ବିଷୟରେ, ଇତ୍ୟାଦି । ଫେର୍ କେବେ କେଉଁଠି ସେମାନେ ଦେଖା ସାକ୍ଷାତ ହେବେ ସେ ବିଷୟରେ କାହିଁ ପରସ୍ପର ପ୍ରଶ୍ନ ପଚରା ହେଲା ।

## ସାତ

ଗୋଟିଏ ଚମତ୍କାର ସାନ୍ଧ୍ୟ-ମିଳନ ଆୟୋଜନ କରାଇଲେ ବୋଲି ଏହାପରେ ସେମାନେ ତାଙ୍କ ନିମନ୍ତ୍ରଣକାରିଣୀଙ୍କୁ ଧନ୍ୟବାଦ ଜଣାଇସାରି ଦଳ ଦଳ ହୋଇ ବିଦାହୋଇ ଚାଲିଗଲେ ।

ପିଏରେ ଯେ ଖାଲି ଅସାଧାରଣ ପ୍ରକାରେ ଢେଙ୍ଗା ଓସାରକାନ୍ଧ ଓ ବେଢଙ୍ଗ ହୋଇଥିଲା ସେତିକି ନୁହେଁ, ତା ଗଢ଼ଣରେ ଅନ୍ୟାନ୍ୟ ଖୁଣ ସଙ୍ଗେ ସଙ୍ଗେ ତାର ଥିଲା ମସ୍ତ ବଡ଼ ବଡ଼ ନାଲି ନାଲି ହାତପାପୁଲି ଯୋଡ଼ାଏ । କାହା ଘରକୁ ଗଲେ ଆଗେ ଘରେ ପଶୁ ପଶୁ ଶିଷ୍ଟାଚାର ଅନୁସାରେ କଣ କଣ କଥା କହିବା ଦରକାର, ତା ତାକୁ ଜଣାନଥିଲା । ଘରେ ପଶିବା ବାଗ ଯେମିତି ମାଲୁମ୍ ନଥିଲା, ଘରୁ ଚାଲିଯିବା କାଇଦା ବି ତାକୁ ଜଣାନଥିଲା ଯେ ଗଲାବେଳେ ଶିଷ୍ଟାଚାର ପ୍ରକାରେ କଣ କହିବାକୁ ହୁଏ । ସେ ଯେତେବେଳେ ଯିବାକୁ ବାହାରିଲା, ସେତେବେଳେ ଏଭଳି ଅନ୍ୟମନସ୍କ ଥିଲା ଯେ ଆପଣା ଟୋପିଟା ଉଠେଇ ନେବା କଣ ସୈନ୍ୟ ବିଭାଗର ଜଣେ ସେନାପତିଙ୍କର ପୋଷାକର ଢେଙ୍ଗା ପରଲଗା ଟୋପିଟାକୁ ଉଠେଇ ନେଇ ଠିଆହୋଇ ହାତରେ ଧରି ମୋଡ଼ୁଥାଏ, ତା ଦେଖି ଟୋପିର ମାଲିକ ଜୁନଆଁ ହୋଇ ଧାଇଁଆସି ତା ହାତରୁ ଟୋପିଟିକି ରକ୍ଷା କଲେ । ତେବେ ଏ କଥା କୁହାଯିବ ଯେ ତାର ସବୁ ଭୁଲ୍, ସବୁ ଅଖାଡ଼ୁଆମିକୁ ସୁଧାରି ନେଇଥିଲା ତାର ଅତି ସୁନ୍ଦର ସ୍ୱଭାବଟି, ପୁଣି ତାର ଅଖଳାପଣ, ଆଉ ତାର ବିନୟ ।

ଆନା ପାଭ୍ଲୋଭ୍ନା ତାକୁ ବିଦା ଦେଲାଭଳି ଏପରି ଢଙ୍ଗ ଦେଖାଇଲେ ଯେପରିକି ଖ୍ରୀଷ୍ଟାନ୍ ଧର୍ମଶାସ୍ତ୍ର ମାନୁଥିବା ଲୋକର କ୍ଷମାଶୀଳତା ତାଙ୍କଠିଁ ମୂର୍ତ୍ତିମନ୍ତ ।

କହିଲେ "ମୁଁ ଆଶା କରୁଛି ଫେର୍ ତୁମେ ଏଠି ପାଦ ପକାଇ ମତେ ଖୁସି କରିବ । କିନ୍ତୁ ଏଭଳି ବି ମୋର ଆଶା ହେଉଛି ଯେ ଆରଥରକୁ ତୁମେ ତୁମ ମତଗୁଡ଼ିକ ବି ବଦଳାଇ ପାରିଥିବ ।"

ସେ କିଛି ଉତ୍ତର ଦେଲା ନାହିଁ କିନ୍ତୁ ସେ ଯେତେବେଳେ ତାଙ୍କୁ ଦଣ୍ଡବତ ହେଲା, ତାର ସଙ୍କୋଚ ସାଧାସିଧା ହସ ଯେପରିକି କଥା କହୁଥାଏ, "ଯାହା କହନ୍ତୁ ମଣିଷର ମତଟା ଖାଲି ମତନ୍ହିଁ, ଦେଖୁଛନ୍ତି ତ ମୁଁ କେଡ଼େ ଭଲ ମଣିଷ।" ଏ କଥାଟା ଏଡ଼େ ସତ ଯେ ଆନ୍ନା ପାଲୋଭ୍ନା ଓ ଆଉ ସମସ୍ତେ ଆପେ ଆପେ ଏ କଥା ଅନୁଭବ କରି ପାରିଥିବେ।

ପାଖ ବଖରାରେ ପ୍ରିନ୍‌ସ୍ ଆନ୍ଦ୍ରେଙ୍କ ଚାକର ତାଙ୍କୁ କୋଟ୍ ପିନ୍ଧାଇ ଦେଉଥିଲା, ତାଙ୍କ କାନରେ ବାଜୁଥିଲା ତାଙ୍କ ସ୍ତ୍ରୀ ଆଉ ହିପୋଲାଇଟ୍ ଏ ଦୁହିଙ୍କର ଅନର୍ଗଳ ଗପ। ସେ ଗପ ଶୁଣି ତାଙ୍କ ମନରେ କୌଣସି ପ୍ରକାର ଭାବ ଆସିଲା ନାହିଁ। ସେଥି ପ୍ରତି ସେ ଉଦାସୀନ। ହିପୋଲାଇଟ୍ ତାଙ୍କୁ ଗୋଡ଼େଇ ଗୋଡ଼େଇ ଆସିଥାନ୍ତି।

ପ୍ରିନ୍‌ସ୍ ହିପୋଲାଇଟ୍ ସେହି ପରମାସୁନ୍ଦରୀ ଗର୍ଭିଣୀ ସ୍ତ୍ରୀଲୋକଟି ପାଖରେ ଠିଆହୋଇ ଚଷମା ପିନ୍ଧା ଆଖିରେ ତାଙ୍କୁ କଟମଟ କରି ଅନାଇଁ ଥାନ୍ତି।

ସେହି ଠିକ ମହିଳାଟି ଆନ୍ନାଙ୍କୁ କହିଲେ "ବୈଠକ୍‌ଖାନା ଘରକୁ ଯାଅ ଆନ୍ନା, ନ ହେଲେ ଦେହରେ ଥଣ୍ଡା ଲାଗିବ ଯେ······" ତାପରେ ତୁନି କରି କହିଦେଲେ, "ସେ କଥା ଆମର ରହିଲା।"

ତାଙ୍କ ନଣନ୍ଦଙ୍କ ସଙ୍ଗରେ ଆନାତୋଲ୍‌ର ବିବାହର ପ୍ରସଙ୍ଗ ପକାଇବାକୁ ଆନ୍ନା ପାଲୋଭ୍ନା ମନେ ମନେ ଯେଉଁ ଉପାୟ ପାଞ୍ଚୁଥିଲେ ସେ ବିଷୟରେ ଲିସାଙ୍କ ସଙ୍ଗରେ କଥାବାର୍ତ୍ତା ହେବାକୁ ଆନ୍ନା ପାଲୋଭ୍ନା ସୁବିଧା ପାଉ ନଥିଲେ।

ସେ ବି ଫୁସ୍ ଫାସ୍ ହୋଇ କହିଲେ, "ଦେଖ ମୁଁ ତମରି ଭରସାରେ ରହିଲି। ତୁମେ ତାଙ୍କୁ ଦି' ଧାଡ଼ି ଲେଖିଦେବ ଆଉ ଏ ବିଷୟରେ ତା ବାପାଙ୍କର କଣ ମତ ମତେ ସେ କଥା ତୁମେ ଚିଠି ଲେଖିବ। ହଉ ନମସ୍କାର।"

ସେ ଚାଲିଗଲେ।

ପ୍ରିନ୍‌ସ୍ ହିପୋଲାଇଟ୍ ପ୍ରିନ୍‌ସେସ୍‌ଙ୍କ କତିକି ଆସି ତାଙ୍କ ଉପରେ ନଇଁପଡ଼ି ଠିଆହୋଇ ତାଙ୍କ କାନ ପାଖେ କଣ ସବୁ ଗଡ଼ ଗଡ଼ ହୋଇ କହିଗଲେ। ଦିଜଣ ଚାକର ଠିଆହୋଇ ଅପେକ୍ଷା କରିଥାନ୍ତି କେତେବେଳେ ତାଙ୍କ କଥାବାର୍ତ୍ତା ସରିବ, ଜଣେ ପ୍ରିନ୍‌ସ୍ ହିପୋଲାଇଟ୍‌ଙ୍କ

ଚାକର, ସେ ତାଙ୍କ ପୋଷାକ କୋଟ ଧରିଥାଏ, ଆଉ ଜଣେ ପ୍ରିନ୍‌ସେସ୍‌ଙ୍କ ଚାକର ସେ ଧରି ଠିଆ ହୋଇଥାଏ ତାଙ୍କ ଶାଲଟା । ଏଣେ ଏମାନେ ଫରାସୀ ଭାଷାରେ କଥାବାର୍ତ୍ତା ହେଉଥାନ୍ତି ଯେ ଚାକରମାନେ ତାକୁ ବୁଝି ପାରୁନଥାନ୍ତି କିନ୍ତୁ ସେମାନେ ସେ କଥାଭାଷାକୁ କାନେଇଥାନ୍ତି ଓ ଲାଗୁଥାଏ ଯେପରିକି ସେମାନେ ତାକୁ ବୁଝୁଛନ୍ତି କିନ୍ତୁ ବୁଝୁଛନ୍ତି ବୋଲି ଜଣାଇ ଦେଉନାହାନ୍ତି । ସାନ ପ୍ରିନ୍‌ସେସ୍ କଥା କହୁଥାନ୍ତି, ମୁରୁକି ମୁରୁକି ହସୁଥାନ୍ତି । ବଡ଼ ପାଟିରେ ହସୁଥାନ୍ତି, ସବୁ ଏକାଠି ।

ହିପୋଲିଇଟ କହିଲେ "ଯାହାହେଉ, ଇଂରେଜ ରାଜଦୂତଙ୍କ ମେଳାକୁ ମୁଁ ନ ଗଲି ଭଲ କଲି । ସେଠିକି ଯାଇଥିଲେ କେଡ଼େ ଖରାପ ଲାଗିଥାନ୍ତା। ଅଥଚ ଏଠି ଆମର ସନ୍ଧ୍ୟାଟି କେଡ଼େ ସୁନ୍ଦର କଟିଲା । ଭାରି ଚମତ୍କାର ଲାଗିଲା, ନୁହେଁ ?"

ତାଙ୍କର ସେହି ଚଢ଼େଇ ରୁମ ମଖା ଓଠକୁ ବଙ୍କେଇ ପ୍ରିନ୍‌ସେସ୍ କହିଲେ, "ସେଠି ପରା ଏକ ଭାରି ଚମତ୍କାର ବଲ୍ ନାଚର ପଙ୍‌ଗତ ଲାଗିଛି । ପୁଣି ସେଣ୍ଟ୍ ପିଟର୍ସବର୍ଗ୍ ସହରର ଅସାମାନ୍ୟ ରୂପବତୀ ଯେତେ ସ୍ତ୍ରୀଲୋକ ସମସ୍ତେ ପରା ସେଠି ଏକାଠି ହୁଣ୍ଡିଛନ୍ତି ?"

ହସି ହସି ପ୍ରିନ୍‌ସ୍ ହିପୋଲିଇଟ୍ କହିଲେ, "ଆଦୌ ନୁହେଁ, ଆଦୌ ନୁହେଁ", ସେ ତାଙ୍କ ଚାକର ହାତରୁ ଶାଲଟାକୁ ଓଟାରି ନେଇ ଚାକରକୁ କଡ଼କୁ ପେଲିଦେଇ ଆପେ ପ୍ରିନ୍‌ସେସଙ୍କୁ ଶାଲଟି ଘୋଡ଼େଇ ଦେଲେ । ତାଙ୍କ ବେଣ୍ଟିପାଖେ ତାଙ୍କ ହାତଯୋଡ଼ିକ ଯେପରିକି କିଛି ସମୟ ଦେରିଣି ହେଲା, ଲାଗିଲା ସେ ଯେପରିକି ତାଙ୍କୁ ପ୍ରାୟ କୁଣ୍ଢେଇ ପକେଇଲେ । ଏକଣ ଜାଣି ଜାଣି କରି ନା ଅଜଣାରେ ଅବାଗିଆପଣ ? ପ୍ରିନ୍‌ସେସ୍ ସେମିତି ହସି ହସି ଅଳ୍ପେ ଘୁଞ୍ଚିଗଲେ ଓ ତାଙ୍କ ସ୍ୱାମୀଙ୍କ ଆଡ଼କୁ ଅନାଇଁଲେ । ସ୍ୱାମୀ ଆଖି ବୁଜିଥାନ୍ତି ଯେମିତିକି ସେ ଖୁବ୍ କ୍ଳାନ୍ତ ଆଉ ତାଙ୍କୁ ଅଧାନିଦ ଘୋଟି ଯାଇଛି ।

ସ୍ତ୍ରୀ ଆଡ଼କୁ ଏକ କଣୁଆଁ ଚାହାଣି ପୁଷ୍ଟିମାରି ସେ କହିଲେ "ଯିବା ଏଥର ?"

ପ୍ରିନ୍‌ସ୍ ହିପୋଲିଇଟ୍ ତରତରରେ କୋଟ୍ ଘୋଡ଼ହୋଇ ପଡ଼ିଲେ । କୋଟ୍‌ଟା ଏକ୍‌ଦମ୍ ନୂଆ ଫେସନରେ ତିଆରି, ତେଣୁ ଗୋଇଠିଲକୁ ବୋଲି ପଡ଼ିଲା । ତାରି ଭିତରେ ଠେଲାପେଲା ହୋଇ ଝୁଣ୍ଟି ମାଡ଼ି

ଆଗକୁ ସେ ଧାଇଁ ଗଲେ, ପ୍ରିନ୍‌ସେସ୍‌ଙ୍କୁ ଗାଡ଼ିରେ ବସାଇ ଦେବେ ବୋଲି ।

"ନମସ୍କାର ପ୍ରିନ୍‌ସେସ୍, ପୁଣି ଦେଖାହେବା"—ସେ କହିଲେ । ତାଙ୍କ ଚାଲି ଯେପରି ଟଳଟଳ, କଥା ବି ସେପରି । ପ୍ରିନ୍‌ସେସ୍ ଆପଣା ପୋଷାକ ଟେକିଧରି ଗାଡ଼ିର ଅନ୍ଧାରିକଣରେ ବସିପଡ଼ିଲେ । ତାଙ୍କ ସ୍ୱାମୀ ହାତରେ ତରବାରି ଉଠାଇ ଧରିଥାନ୍ତି । ପ୍ରିନ୍‌ସ୍ ହିପୋଲାଇଟ୍ ତାଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କରୁଥାନ୍ତି ସିନା କିନ୍ତୁ ପ୍ରକୃତରେ ତାଙ୍କ ବାଟ ବନ୍ଦ କରିଥାନ୍ତି ।

ପ୍ରିନ୍‌ସ୍ ଆନ୍ଦ୍ରେ ରୁକ୍ଷ ବୋଲିରେ ଦାନ୍ତ ଚିପି ଶୁଖିଲା ସ୍ୱରରେ କହିଲେ "ଆଜ୍ଞା, ଟିକିଏ ଦୟାକରି—"

କାରଣ ହିପୋଲାଇଟ୍ ତାଙ୍କ ବାଟରେ ଠିଆ ହୋଇଥାନ୍ତି । ସ୍ନେହରେ ପିଏରେଙ୍କୁ କହିଗଲେ, "ଯାଉଛୁଁ ପିଏରେ, ତେମେ ଆମ ପଛେ ପଛେ ଆସିବ ।"

ଘୋଡ଼ା ଚାଲିଲା, ପୁରୁଣା ଗାଡିଟି ଘଡ଼ଘଡ଼ ହୋଇ ଚାଲିଗଲା ।

ପାହାଚରେ ଠିଆ ହୋଇ ହିପୋଲାଇଟ୍ ଆରାମରେ ହସିଲେ, ସେ ଭାଇକାଉଣ୍ଟଙ୍କୁ ଅପେକ୍ଷା କରିଥିଲେ, ସେ କହିଥିଲେ ଭାଇକାଉଣ୍ଟଙ୍କୁ ତାଙ୍କ ସଙ୍ଗରେ ନେଇଯିବେ । ଭାଇକାଉଣ୍ଟ ମର୍ତ୍ତେମାର୍ ଗାଡ଼ିରେ ବସିପଡ଼ି କହିଲେ, "ଆଜ୍ଞା ! ଆପଣଙ୍କର ସେ କୁନି ପ୍ରିନ୍‌ସେସ୍ ଭାରି ଚମତ୍କାର, ଭାରି ଚମତ୍କାର, ଭାରି ଚମତ୍କାର ଆଜ୍ଞା ! ଆଉ ପୂରା ଫରାସୀ ।" ସେ ଆପଣା ଆଙ୍ଗୁଠି ଟିପକୁ ଚୁମ୍ବନ କଲେ ।

ହିପୋଲାଇଟ୍ ସ୍ୱସ୍ତିରେ ହସିଦେଲେ ।

ମର୍ତ୍ତେମାର୍ ପୁଣି କହିଗଲେ, "ଆଉ ଆପଣ ଜାଣନ୍ତି ? ଆପଣଙ୍କର ଏ ଯେଉଁ ସରଳିଆ ଢଙ୍ଗଢାଙ୍ଗ ସେଥିରେ ଆପଣ ନିଜେ ଏକ ବିପଜ୍ଜନକ ଲୋକ । ମୋର ତାଙ୍କ ସ୍ୱାମୀଙ୍କୁ ଦେଖି ଦୟା ଆସୁଛି । ଏକ ଲ୍ଲେଛିଆ କର୍ମଚାରୀ ଅଥଚ ଏତେ ଡମ ଏତେ ଛଇଛଟକ ସତେକି ଜଣେ ରାଜା ।"

ହିପୋଲାଇଟ୍ ହସି ହସି ଗଡ଼ିଲେ ।

"ଆପଣ ପରା କହୁଥିଲେ ଫରାସୀ ଦେଶର ସ୍ତ୍ରୀଲୋକମାନଙ୍କ ତୁଳନାରେ ରୁଷୀ ସ୍ତ୍ରୀଲୋକ କୁଆଡ଼େ ପାସଙ୍ଗରେ ପଡ଼ିବେ ନାହିଁ । ତାଙ୍କୁ ମନେଇବାକୁ ବାଗ ଜାଣିଲେଇଁ ହେଲା, ଖାଲି ସେତିକି", ସେ ଗଦଗଦ ହୋଇ କହିଲେ ।

ପିଏରେ ଯେମିତି ଯାଇ ପ୍ରିନ୍ସ୍ ଆନ୍ଦ୍ରେଙ୍କ ଘରେ ପହଞ୍ଚିଲା, ସେମିତି ସେ ଘରର ଆପଣାର ମଣିଷ ବୋଲି ପ୍ରିନ୍ସ୍ ଆନ୍ଦ୍ରେଙ୍କ ରହିବା ବଖରା ଭିତରକୁ ସିଧା ପଶିଯାଇ ସୋଫା ଉପରେ ଗୋଡ଼ହାତ ଲମ୍ବେଇ ଦେଇ ଗୋଟାଏ ବହି ସାଉଁଟି ନେଲା । ସେମିତି ତା ଅଭ୍ୟାସ । ବହିଖଣ୍ଡି 'ସିଜରଙ୍କର କମେଣ୍ଟାରିସ୍', ସେ ତାକୁ ମଝିରୁ କିନା ଖୋଲିଦେଲା ।

"ଆନ୍ନା ପାଭ୍ଲୋଭ୍ନାଙ୍କ ଘରେ ଯାଇ ତୁମେ କଣ କରୁଥିଲ" ପ୍ରିନ୍ସ୍ ଆନ୍ଦ୍ରେ ଭିତରକୁ ଆସି ପଚାରିଲେ । ସେ ହାତରେ ହାତ ଘଷୁଥାନ୍ତି, ଠିକ ଠିକ ଧୋବ ଧୋବ ହାତ । କହିଲେ "ସତରେ, ତୁମେ ତାଙ୍କୁ ବେମାର କରିଦେବ ।"

ପିଏରେ ହୁସ୍ କିନା କରି ଲେଉଟାଇଲା, ତା ଦେହ ଓଜନରେ ସୋଫାଟା କଟ୍ କଟ୍ ଡାକିଲା, ତାର ଟକ ଟକ ଉତ୍ସାହୀ ମୁହଁ ଟେକି ସେ ତାର ବନ୍ଧୁ ମୁହଁକୁ ଅନାଇଁଲା, ପୁଣି ଉଦାସୀଭାବେ କହିଲା, "ସେ ଯେଉଁ ଆବେ ମହାଶୟଙ୍କୁ ଦେଖିଲ—ଭଦ୍ରଲୋକ ଖୁବ୍ ମଜାର ଲୋକ । କିନ୍ତୁ ବିଷୟଟାକୁ ସେ ଠିକ୍ ଓଲ୍‌ଟାଆଡ଼ୁ ବୁଝିଛନ୍ତି । ଶାଶ୍ୱତ ଶାନ୍ତି ପ୍ରତିଷ୍ଠା କରିବା ଯେ ସମ୍ଭବ, ସେ ବିଷୟରେ ମୋର ଏତେ ଟିକିଏ ହେଲେ ସନ୍ଦେହ ନାହିଁ । କିନ୍ତୁ କେଉଁ ଉପାୟରେ ସେଇଟା ହୋଇ ପାରିବ ତା ମୋ ମୁଣ୍ଡରେ ପଶୁନାହିଁ । ଏ ଯେଉଁ ଆନ୍ତଃର୍ରାଷ୍ଟ୍ରୀୟ ଭାରସାମ୍ୟଦ୍ୱାରା ଶାନ୍ତି ପ୍ରତିଷ୍ଠା ହେବ କହୁଛନ୍ତି, ତାହା ସମ୍ପୂର୍ଣ୍ଣ ଅସମ୍ଭବ ।"

ପ୍ରିନ୍ସ୍ ଆନ୍ଦ୍ରେ ମୋଟେ ଖୋଜୁ ନଥିଲେ ଯେ ଜଣେ ମଣିଷ ଖାଲି ତାତ୍ତ୍ୱିକ ପ୍ରଶ୍ନ ଗୁଡ଼ାକର ଉତ୍ତର ଖୋଜି ଖୋଜି ଆପେ ହଇରାଣ ହେଉଥାଉ । ତେଣୁ ସେ ପିଏରେଙ୍କୁ ବାଧା ଦେଇ କହିଲେ—

"ବୁଝିଲ ବାବୁ, ଅସଲ ଅସମ୍ଭବ କଥା ହେଉଛି ଆମେ ନିଜେ ଯେଉଁଟା ଭାବୁଚୁ ଠିକ୍ ସେଇଟାକୁ ସବୁ ଜାଗାରେ ସବୁ ସମୟରେ କହି ବୁଲିବା । କହ, ଏଥର କଣ କରିବ ସେ ବିଷୟ ନିଷ୍ପତ୍ତି କଲ କି ନାହିଁ । ତୁମେ ଘୋଡ଼ସବାର ରକ୍ଷୀ ହେବ ନା କୂଟମୀତିଜ୍ଞ ହେବ ?"

'ଆପଣ ବିଶ୍ୱାସ କରିବେ ? ମୁଁ କଣ କରିବି ତା ମୁଁ ଏପର୍ଯ୍ୟନ୍ତ ଠିକ୍ କରି ପାରିନାହିଁ । ଏ ଦୁଇଟାରୁ ଗୋଟାଏ ବି ମୋ ମନକୁ ଆସୁ ନାହିଁ ।" ପିଏରେ ଠିଆ ବସା ବସିପଡ଼ି କହିଲା ।

"ଯାହାହଉ, ତମେ ଫେର୍ କିଛି ଗୋଟାଏ ନିଷ୍ପତ୍ତି କରିବ ତ ; ନେଲେ ତମ ବାପା ଅନେଇଁ ବସିଛନ୍ତି ଯେ ।"

ପିଏରେଙ୍କୁ ଯେତେବେଳେ ଦଶବର୍ଷ ବୟସ ସେତେବେଳେ ଜଣେ ମାଷ୍ଟର ସଙ୍ଗରେ ତାକୁ ବିଦେଶ ପଠାଇ ଦିଆ ହୋଇଥିଲା, ମାଷ୍ଟର ଜଣକ ଜଣେ 'ଆବେ' ଅର୍ଥାତ୍ ଧର୍ମପୁରୋହିତ । କୋଡିଏ ବର୍ଷ ହେବାଯାଏ ସେ ବିଦେଶରେ ରହିଥିଲା, ଘରକୁ ଆସିନାହିଁ । ସେ ଯେମିତି ଘରକୁ ଫେରିଲା, ତା ବାପା 'ଆବେ' ମାଷ୍ଟରଙ୍କୁ ବିଦା କରି-ଦେଇ ଡେଣ୍ଡା ପୁଅକୁ କହିଲେ, "ଏଥର ସେଣ୍ଟ୍ ପିଟର୍ସ୍ ବର୍ଗ ଯା, ନିଜେ ଖୋଜଖୋଜ କରି ଯାହାହେଲେ ଠିକଣା କର । ତୋର ଯାହା ମନେହେବ ମୁଁ ସେଥିକି ରାଜି । ପ୍ରିନ୍ସ୍ ବେସିଲ୍‌ଙ୍କ ପାଖକୁ ହେଇ ନେ ଏ ଚିଠି ଆଉ ହେଇତ ପଇସା ନେ । ମତେ ଚିଠି ଲେଖିବୁ, ମନେ ରଖିଥା, ତୋପାଇଁ ଯାହା ମୋ ଦେଇ ହେବ ମୁଁ ତା ନିଶ୍ଚୟ କରିବି ।"

ସେହିଦିନଠୁଁ ତିନିମାସ ହେଲା ପିଏରେ ଖାଲି ସହରଆଡେ଼ ଦେଖି ଦେଖିକା ବୁଲୁଛି, କିଛି କରୁନାହିଁ । ତାର ଏହି ଜୀବନର ପନ୍ଥା ବିଷୟରେ ହିଁ ପ୍ରିନ୍ସ୍ ଆନ୍ଦ୍ରେ ତାକୁ କହିଲେ ।

ସେ କପାଳ ଉପରେ ହାତ ବୁଲାଇ ଆଣିଲା । ଇଟାଲୀର 'ଆବେ' କଥା ପକାଇ କହିଲା, "ସେ ତାଙ୍କ ବସ୍ତିରଯୋଗୁଁ ନିଶ୍ଚୟ ଜଣେ ଫ୍ରିମେସନ୍ ଦଳିଆ ।"

"ଛେନାଗୁଡ଼," ପ୍ରିନ୍ସ ଆନ୍ଦ୍ରେ କହିଲେ, "ସେସବୁ ବାଜେକଥା ଛାଡ଼ । ତୁମ ଭଲମନ୍ଦ ବିଷୟରେ ମୁଁ କଥାଭାଷା ହେବାକୁ ଚାହେଁ । ଘୋଡ଼ସବାର ଦଳକୁ ଦେଖିବାକୁ ତୁମେ ଯାଇଥିଲ କି ନାହିଁ ?"

'ନାଇଁ, ମୁଁ ଗଲାନାହିଁ । ତେବେ ଗୋଟାଏ କଥା ମୁଁ ଭାବୁଥିଲି ଯେ ମନ ହଉଥିଲା ଆପଣଙ୍କୁ କହିବି ବୋଲି । ଆମର ଲଢେ଼ଇ ନେପୋଲିଅନଙ୍କ ସଙ୍ଗରେ । ଆମେ ଯଦି ସ୍ୱାଧୀନତା ପାଇଁ ଲଢୁଥାନ୍ତେ ମୁଁ ଏ ଯୁଦ୍ଧରେ ଆଗ ଯାଇ ମିଶନ୍ତି ; କିନ୍ତୁ ସେ ଯୁଦ୍ଧ ହେଉଛି ଏଇଁଥିପାଇଁ, ଯେ ଇଂଲଣ୍ଡ ଆଉ ଅଷ୍ଟ୍ରିଆ ସଙ୍ଗେ ମିଶି ବର୍ତ୍ତମାନ ଏ ପୃଥିବୀରେ ଯେତେ ଲୋକ ବଞ୍ଚିଛନ୍ତି ସେମାନଙ୍କ ଭିତରେ ସବୁଠୁ ଯେ ବଡ଼ିଆ ମଣିଷଟା, ସେଇଆକୁ ଏ ଯୁଦ୍ଧରେ ଜବତ କରିବା ଏ ଯୁଦ୍ଧର ଉଦ୍ଦେଶ୍ୟ । ତେଣୁ ଏ ଯୁଦ୍ଧରେ ମିଶିବାକୁ ମୋର ମନ ହେଉ ନାହିଁ "

ଏ ପିଲାଳିଆ ତର୍କ ଶୁଣି ପ୍ରିନ୍ସ୍ ଆନ୍ଦ୍ରେ ବିରକ୍ତିରେ କାନ୍ଧ ଟେକିଲେ, ଏଭଳି ତର୍କର ପୁଣି ଉତ୍ତର ଦେବାକୁ ପଡ଼ିବ ଏ କଥା ସେ ବେପସନ୍ଦ କଲାଭଳିଆ ଲାଗିଲା ; କିନ୍ତୁ ପ୍ରକୃତରେ ଦେଖିଲେ ଜଣାଯିବ ଯେ ପ୍ରିନ୍ସ୍ ଆନ୍ଦ୍ରେ ଏ ସରଳ ପ୍ରଶ୍ନର ଯେପରି ଭାବେ ଉତ୍ତର ଦେଲେ, ତାଛଡ଼ା ତାର ଅନ୍ୟ ପ୍ରକାର ଉତ୍ତର ଦେବା କଷ୍ଟ । ସେ କହିଲେ, "ଆମେ ସବୁ ଯଦି ଯେଉଁସବୁ ଈଶ୍ବରରେ ବିଶ୍ୱାସ କରୁଁ ତାରିପାଇଁ ଯୁଦ୍ଧ କରନ୍ତୁ, ତେବେ ଏ ସଂସାରରେ ଯୁଦ୍ଧ ଶେଷ ହୋଇଯାଆନ୍ତା ।"

"ସେହି ହୁଅନ୍ତା ସବୁଠୁ ଭଲ କଥା", ପିଏରେ କହିଲା ।

"ତା ହୋଇପାରେ ; କିନ୍ତୁ ଏପରି ହେବା ସମ୍ଭବ ନୁହେଁ ।"

"ଶୁଣନ୍ତୁ, କହିଲେ ମତେ କଣ ପାଇଁ ଆମେ ଏ ଯୁଦ୍ଧରେ ଲଢ଼ିବାକୁ ଯାଉଛୁଁ ।"

"ଆମେ କାହିଁକି ଲଢ଼ିବାକୁ ଯାଉଛୁଁ ମୋର ମୋଟେ ଧାରଣା ନାହିଁ । ଆମକୁ ଲଢ଼ିବାକୁ ହିଁ ପଡ଼ିବ । ଖାଲି ସେତିକି ନୁହେଁ, ମୁଁ ନିଜେ ଲଢ଼ିବାକୁ ଯାଉଛି, ଯେଉଁଠି ଲଢ଼େଇ ହେଉଛି ସେଠିକି ; କାରଣ ମୋର ଏଠିକାର ଜୀବନ···ମତେ ଆରୋଚ ନାହିଁ ।"

---

# ଆଠ

ପାଖ ବଖରାରେ ପୋଷାକର ଖସ ଖସ ଶୁଭିଲା । ସେ ଶବ୍ଦ ଶୁଣି ପ୍ରିନ୍ସ୍ ଆନ୍ଦ୍ରେ ଯେପରିକି ପ୍ରକୃତିସ୍ଥ ହେଲେ । ସେ ଗୁଁଠ୍ ହୋଇ ଠିଆ ହେଲେ ଓ ଆନ୍ନା ପାଭ୍ଲୋଭ୍ନାଙ୍କ ଘରେ ସଞ୍ଜଯାକ ତାଙ୍କ ମୁହଁରେ ଯେଉଁପରି ଠାଣିଥିଲା, ସେହି ମୁଖଭାବ ପିନ୍ଧିନେଲେ । ପିଏରେ ଶେଯ ଉପରୁ ପାଦ ଉଠାଇ ନେଲା ।

ପ୍ରିନ୍‌ସେସ୍ ସେ ବଖରାକୁ ଆସିଲେ । ସେ ଆଗେ ଯେଉଁ ପୋଷାକ ପିନ୍ଧିଥିଲେ ତାକୁ ପାଲଟି ପକାଇ ଏକ ଢିଲା ଗାଉନ୍ ପିନ୍ଧିଥାନ୍ତି, ସେ ପୋଷାକ ବି ସେମିତି ସଜ ସୁନ୍ଦର ଦିଶୁଥାଏ ।

ତାଙ୍କ ସ୍ୱାମୀ ଠିଆ ହୋଇପଡ଼ି ଭଦ୍ରତା ଦେଖାଇ ତାଙ୍କ ଆଡ଼କୁ ଗୋଟିଏ ଇଜି ଚେୟାର୍ ଠେଲିଦେଲେ ।

ଝଟ୍‌କିନା ବସିପଡ଼ି ପ୍ରିନ୍‌ସେସ୍ କହିଲେ, "ବେଳେବେଳେ ମତେ କାବା ଲାଗେ ଯେ ଆନ୍ନା କାହିଁକି ବାହା ହେଲାନାହିଁ । ତୁମେ ପୁରୁଷମାନେ ପ୍ରକୃତରେ ଭାରି ଓଲୁ ଯେ, ତେମେ କେହି ତାକୁ ବାହା ହେବାକୁ କହନାଁ । ଚଡ଼ିବ ନାହିଁ କହୁଚ ବୋଲି; କିନ୍ତୁ ତୁମେ ମାଇକିନିଆଙ୍କ ବିଷୟରେ କିଛି ଜାଣିନାହିଁ । କେଡ଼େ ବଡ଼ ତାର୍କିକ ଆପଣ, ଶ୍ରୀଯୁକ୍ତ ପିଏରେ !"

ଜଣେ ଯୁବକ ଜଣେ ଯୁବତୀଙ୍କ ସଙ୍ଗେ କଥାଭାଷା ହେଲେ ବେଳେ-ବେଳେ ଯେଉଁ ସଙ୍କୋଚ ଭାବଟି ଦେଖାଯାଏ, ସେଭଳି ସଙ୍କୋଚର ଚିହ୍ନମାତ୍ର ନ ଦେଖାଇ ପିଏରେ ତାଙ୍କ ସଙ୍ଗେ କଥା ଆରମ୍ଭ କରିଦେଇ କହିଲା, "ମୁଁ ଆପଣଙ୍କ ସ୍ୱାମୀଙ୍କ ସଙ୍ଗରେ ବି ଯୁକ୍ତି କରୁଛି । ମୁଁ ଆଦୌ ବୁଝିପାରୁନାହିଁ ସେ କି କାରଣ ଲାଗି ଯୁଦ୍ଧ କରିବାକୁ ଯାଉଛନ୍ତି ।"

"ଅବକଳ ସେହି କଥା ତ ମୁଁ ବି ତାଙ୍କୁ ପଚାରେଁ । ଲୋକେ କାହିଁକି ଲଢ଼େଇ ନ କରି ବଞ୍ଚି ପାରନ୍ତି ନାହିଁ, ମୁଁ ତ ସେ କଥା ଆଦୌ ବୁଝିପାରେ ନାହିଁ । ଆମେ ମାଇପିଲୋକ କାହିଁକି କେଉଁ କଥାକୁ ମନ ବଳାଉ ନାହିଁ, କିଛି ମାଗୁନାହିଁ ?

ଶୁଣନ୍ତୁ, ଆପଣ ବିଚାର କରନ୍ତୁ । ମୁଁ ଯୁଆଙ୍କୁ ବରାବର କହୁଚି ଯେ ମୋ ମାମୁଁଙ୍କ ପାର୍ଶ୍ୱରକ୍ଷୀ କାର୍ଯ୍ୟଟା ଯୁଆଙ୍କୁ ମିଳିଗଲେ ହିଁ ଯଥେଷ୍ଟ । ସମସ୍ତେ ଯୁଆଙ୍କୁ ଚିହ୍ନିଚନ୍ତି, ସମସ୍ତେ ଯୁଆଙ୍କୁ ଖାତିର କରନ୍ତି । ସେ ଦିନ ଆପ୍ରାକ୍‌ସିନେଙ୍କ ଘରେ ମୁଁ ଶୁଣିଲି—ଜାଣି ଅଛି ମୁଁ କହୁଚି ମୁଁ ଶୁଣିଲି ଜଣେ ଭଦ୍ରମହିଳା କହିଲେ, "ହେଇ ସେଠି ପ୍ରସିଦ୍ଧ ପ୍ରିନ୍‌ସ ଆନ୍ଦ୍ରେ ।" ସେ ହସିଲେ, କହିଲେ "ଯୁଏ ଯୁଆଉଡ଼ି ଗଲେ ସେହି କଥା । ଯୁଏ ଯେଉଁଦିନ ମନ କରିବେ ସେଦିନ ସ୍ୱୟଂ ସମ୍ରାଟଙ୍କ ପାର୍ଶ୍ୱରକ୍ଷୀ ହୋଇପାରିବେ । ସମ୍ରାଟ ନିଜେ ପରା ଯୁଆଙ୍କୁ ଭାରି ପ୍ରଶଂସା କରି କହି ସାରିଲେଣି ! ଏଇକ୍ଷିଣିକା ଆମେ ସେ ବିଷୟ ପକେଇ ଥିଲୁ । ମୁଁ ଅଉ ଆନ୍ନା । ଏତେ ସୁବିଧାରେ ହୋଇଯାଆନ୍ତା । ନାଁ କଣ ଆପଣଙ୍କ ମତ ?

ପିଏରେ ଆନ୍ଦ୍ରେଙ୍କ ମୁହଁକୁ ଚାହିଁ ଦେଖିଲା, ଦେଖିଲା ବନ୍ଧୁ ଭାରି ବିରକ୍ତ ଦିଶୁଛନ୍ତି । ସେ ଆଉ କିଛି ଉତ୍ତର ଦେଲା ନାହିଁ ।

"ଆପଣ କେବେ ଯାତ୍ରା କରିବେ ?" ସେ ପଚାରିଲା ।

"ତାଙ୍କ ଯାତ୍ରା ଫାତ୍ରା କଥା କହନ୍ତୁ ନାହିଁ, ମୁଁ ସେମିତି କଥା ପଦେ ବି ଶୁଣିବି ନାହିଁ" ପ୍ରିନ୍‌ସେସ୍ ଚିତ୍କାର କଲେ ।

ପ୍ରିନ୍‌ସ୍ ହିପୋଲାଇଟଙ୍କ ପ୍ରତି ସେ ଯେପରି ଭାବ ଦେଖାଇଥିଲେ, ଯେଉଁଥିନେ ହାଲୁକା ଫୁର୍ତ୍ତିପଣିଆଁ ସଙ୍ଗେ ଅବାଗିଆ ଅମଣଆମିର ଏକ ଆଶ୍ଚର୍ଯ୍ୟ ଗୋଳିଆ ମିଶା ଘଟିଥିଲା, ସେହିପରି ଥିଲା ତାଙ୍କ ବ୍ୟବହାର । ଆପଣା ଘରର ଅଖଳାପଣ ସଙ୍ଗେ ଦେଖିଲେ ତାଙ୍କର ସେ ଭାବ ଆଶ୍ଚର୍ଯ୍ୟ ପ୍ରକାରେ ବେସୁରା ଲାଗୁଥିଲା । ପିଏରେ ସତେକି ସେ ଘରର ଜଣେ ।

ପ୍ରିନ୍‌ସେସ୍ କହିଗଲେ, "ଆଜି ଯେତେବେଳେ ମୁଁ ଭାବୁଥିଲି ଯେ ଏହିସବୁ ପ୍ରିୟ ସମ୍ବନ୍ଧ ମତେ କାଟିଦେବାକୁ ପଡ଼ିବ—ତା'ଛଡ଼ା ଆନ୍ଦ୍ରେ, —" ସେ ତାଙ୍କ ସ୍ୱାମୀଙ୍କ ଆଡ଼କୁ ଏକ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଅନାଇଁ ଟିକିଏ ଶୀତେଇ ଶୀତେଇ ଥରିଯାଇ କହିଲେ, "ମତେ ଡର ମାଡ଼ୁଚି ।"

ପ୍ରିନ୍ସ୍ ଆନ୍ଦ୍ରେ ସେତିକବେଳେ ଜାଣିଲେ ଯେ ତାଙ୍କ ସ୍ତ୍ରୀ ସେଠି ଅଛନ୍ତି, ସେହିପରି ଭଙ୍ଗୀ ଦେଖାଇ ଆବାକାବା ହେଲପରି ତାଙ୍କ ଆଡ଼କୁ ଅନାଇଁଲେ । ସଚ୍ଚେଗ ନ ଥିବା ଶୀତଳ ଭଦ୍ରତାରେ ତାଙ୍କ କଥାର ଜବାବ୍ ଦେଇ ପ୍ରିନ୍ସ୍ ଆନ୍ଦ୍ରେ କହିଲେ, "କାହିଁକି ଡର ମାଡ଼ୁଚି ଲିସା ? ମୁଁ ତ ବୁଝିପାରୁ ନାହିଁ ।"

"ପୁରୁଷଙ୍କ କଥା ଏମିତିଆ ! ସ୍ୱାର୍ଥପର—ପୁରୁଷଗୁଡ଼ାକ ସମସ୍ତେ ସ୍ୱାର୍ଥପର !—ସ୍ତ୍ରୀଙ୍କ ମୁଣ୍ଡରେ ଏ ଖିଆଲ ଟା ପଶିଯାଇଛି ବୋଲିପରି ସେ ମତେ ଛାଡ଼ିଦେଇ ଚାଲିଯାଉଛନ୍ତି, କାହିଁକି ଯେ ଯାଉଛନ୍ତି ସେ କଥା ଭଗବାନଙ୍କୁ ଜଣା,—ଆଉ ମତେ ଏକୁଟିଆ କରି ମଫସଲରେ ଛାଡ଼ିଦେଇ ଘରେ ପୂରେଇ କବାଟ କିଳି ଦେଇ ଚାଲି-ଯିବାକୁ ବସିଛନ୍ତି ଦେଖ ।"

ପ୍ରିନ୍ସ୍ ଆନ୍ଦ୍ରେ ଶାନ୍ତ ହୋଇ କହିଲେ, "ଏକୁଟିଆ ନୁହେଁ ମୋ ବାପା ଆଉ ଭଉଣୀଙ୍କ ସଙ୍ଗରେ, ଏ କଥା ଭୁଲନା "

"ସେ ଏକା କଥା । ମୁଁ ତ ମୋ ଆପଣା ବନ୍ଧୁମାନଙ୍କଠୁ ସାଙ୍ଗଛଡ଼ା ହୋଇ ସେଠି ଏକୁଟିଆ ପଡ଼ିଥିବି, ତଥାପି ସେ ଆଶା କରୁଛନ୍ତି ଯେ ମୁଁ ଘରେ ସୁଖ ଶାନ୍ତିରେ ରହିବି !"

ଅସନ୍ତୁଷ୍ଟ ହୋଇ ଚିଡ଼ଚିଡ଼ ହେଲପରି ସେ କଥା କହିଲେ, ତାଙ୍କର ସାନ ଉପର ଓଠଟି ଆଉ ତାଙ୍କ ମୁହଁକୁ ହସିଲା ପରି ଭଙ୍ଗୀ ଦେଉନାହିଁ, ବରଂ ମୁହଁଟି ଏପରି ଦିଶିଲା, ଯେପରିକି ସେ ଗୋଟାଏ କ ମୁଡ଼ା ଟିକିମୂଷାର ମୁହଁ; କିନ୍ତୁ ସେ ଚୁପ୍ ହେଲେ, ପିଏରେ ଥିଲା ବୋଲି ତା' ଆଗରେ ସେ ତାଙ୍କ ପ୍ରକୃତ ଭୟର କାରଣ ଫିଟାଇ କହିଲେ ନାହିଁ ।

ତାଙ୍କ ଆଖିକି ନଠେଇ ଅନେଇ ରହି ତାଙ୍କ ସ୍ୱାମୀ କହିଲେ "କି କାରଣରୁ ଯେ ତୁମକୁ ଭୟ ଲାଗୁଛି, ମୁଁ ତ ତା କଳ୍ପନା କରି-ପାରୁନାହିଁ ।

ସେ ରଙ୍ଗା ପଡ଼ିଗଲେ, ନିରୁପାୟ ହୋଇ ଶେଷ ଚେଷ୍ଟା କଲାଭଳି ଭଙ୍ଗୀ କରି କାନ୍ଧ ଥରାଇ ସେ କହିଲେ, "ଆନ୍ଦ୍ରେ, ଆନ୍ଦ୍ରେ, କାହିଁକି ତୁମେ ଏଡ଼େ ବଦଳିଗଲ ?"

"ତୁମ ଡାକ୍ତର ପରା ତୁମକୁ କହିଛନ୍ତି ଯେ ତୁମେ ବେଶୀ ରାତିଯାଏ ଚେଇଁବ ନାହିଁ ? ତୁମେ ଶୋଇବାକୁ ଯିବା ଦରକାର ।"

ପ୍ରିନ୍‌ସେସ୍ ଉତ୍ତର ଦେଲେନାହିଁ କିନ୍ତୁ ତାଙ୍କ ଓଠ ଦୋଟି ଥରି ଉଠିଲା । ତାଙ୍କ ସ୍ୱାମୀ କାନ୍ଧ ଝାଙ୍କିଲେ, ଠିଆ ହୋଇ ପଡ଼ିଲେ, ଘର ଭିତରେ ଏପାଖରୁ ସେ ପାଖ ସେପାଖରୁ ଏପାଖ ହେଲେ । ପିଏରେ ଭାରି ଆଶ୍ଚର୍ଯ୍ୟ ହୋଇଗଲା, ପାଳି କଲାପରି ଥରେ ଜଣଙ୍କୁ ତ ଥରେ ଆଉ ଜଣଙ୍କୁ ଏହିପରି ଚଷମା ଉହାଡ଼ରୁ ଅନାଇଁ ଅନାଇଁ ଦେଖିଲା । ଶେଷରେ ସେ ଯିବାକୁ ବାହାରିଲା କିନ୍ତୁ ପୁଣି ଅଟକି ଗଲା ।

ସାନ ପିଲାଟିଏ କାନ୍ଦିଲା ଆଗରୁ ଯେମିତି ମୁହଁ ଫଟାଏ, ସେମିତି ମୁହଁକରି ଭ୍ରୂକ୍ଷକରି ଲିସା ପାଟି କରି ଉଠିଲା, "ପିଏରେ ମହାଶୟ ଏଠି ଥିଲେ କ'ଣ ହୋଇଗଲା ? ମୁଁ ବି କେଉଁକାଳୁ ହେଉଛି ତମୁକୁ ପଚାରିବି ପଚାରିବି । ମତେ କୁହ ଆନ୍ଦ୍ରେ, ତୁମର କ'ଣ ହେଲା ? ମୋ ପ୍ରତି ତୁମର ଆଗର ସ୍ନେହ ଶରଧା ଗଲା କୁଆଡ଼େ ? କାହିଁକି ତୁମେ ଏମିତି ବଦଳିଗଲ ? ମୁଁ ତୁମର କି ଅପରାଧ କରିଛି ! ତୁମେ ସୈନ୍ୟ-ବାହିନୀକୁ ଚାଲି ଯାଉଛ ! ମୋ ପ୍ରତି ତୁମର ଟିକିଏ ହେଲେ ଦୟା ମାୟା ନାହିଁ ! କାହିଁକି ?"

"ଲିସା" ପ୍ରିନ୍‌ସ୍ ଆନ୍ଦ୍ରେ କହିଲେ । ସେହି ପଦକରେ ଥିଲା ଗୋଟାଏ ଅନୁନୟ, ଗୋଟାଏ ଧମକ; ଯେପରି କି ସେ ସତର୍କ କରି ଦେଉଥିଲେ ଯେ ସେ ଯାହା କହିଗଲେ ସେଥିପାଇଁ ତାଙ୍କୁ ଶୀଘ୍ର ପସ୍ତେଇ-ବାକୁ ପଡ଼ିବ; କିନ୍ତୁ ସେ କଥାରେ କର୍ଣ୍ଣପାତ ନ କରି, ପରିଣାମକୁ ଖାତିରି ନ କରି ଲିସା କହି ଚାଲିଲା—"ତୁମେ ମୋ ସଙ୍ଗରେ ଏପରି ବ୍ୟବହାର କରୁଛ, ସତେ ଯେପରି ମୋର ଗୋଡ଼ହାତ ଚଳୁନାହିଁ, ମୁଁ ଗୋଟାଏ କତରାଲାଗି ରୋଗୀ, କି ନ ହେଲେ ସତେ ଯେପରି ମୁଁ ଗୋଟାଏ ନହାତି ସାନ ପିଲା । ମୁଁ ତ ସବୁ ବୁଝିପାରୁଛି······କାହିଁ ଛ'ମାସ ଆଗରୁ ତ ଏପରି ନ ଥିଲା··· !"

ସ୍ୱରକୁ ଚଡ଼ାଇ ଦେଇ ତାଙ୍କ ସ୍ୱାମୀ କହିଲେ, "ତୁନି ହ'ଲିସା ! ତୁମ ଗୋଡ଼ତଳେ ପଡ଼ୁଛି—"

ଏଇ କଥାବାର୍ତ୍ତା ଚାଲିଥିଲାବେଳେ ପିଏରେର ମନ ଭିତରେ ବେଦନାର୍ତ୍ତ ଉତ୍ତେଜନା ଧୀରେ ଧୀରେ ବଢ଼ି ଉଠିଥିଲା । ସେ ଉଠିପଡ଼ି ସେହି ତରୁଣୀର ପାଖକୁ ଚାଲିଗଲା । ସେ ତାଙ୍କ ଆଖିରେ ଲୁହ ଦେଖି ସହିପାରିଲା ନାହିଁ । ଲାଗିଲା ସେ ବି ଏତିକିବେଳେ କାନ୍ଦି ପକାଇବ ।

ସେ କହିଲା, "ଦୟା ଧରନ୍ତୁ ପ୍ରିନ୍‌ସେସ୍ । ଏଗୁଡ଼ାକ ସବୁ ମନର ଖିଆଲ୍—ମୁଁ ଜାଣିଛି, ଏଇ ଜିନିଷଟା ମୁଁ ଅନୁଭବ କରୁଛି । ମୋ କଥା ବିଶ୍ୱାସ କରନ୍ତୁ, ବୁଝିବାକୁ ଗଲେ ମୁଁ ତ ଆପଣଙ୍କର ଅପରିଚିତ, କ୍ଷମା କରିବେ । ତଥାପି କହୁଛି, ଶାନ୍ତ ହୁଅନ୍ତୁ, ବିଦାୟ ନେଉଛି, ନମସ୍କାର । ପ୍ରିନ୍‌ସ୍ ଆନ୍ଦ୍ରେ ତାଙ୍କୁ ଅଟକାଇ ଦେଲେ । କହିଲେ, "ନାଇଁ ନାଇଁ ତୁମେ ରହ । ପ୍ରିନ୍‌ସେସ୍‌ଙ୍କର ମୋ ପ୍ରତି ବହୁତ ଦୟା, ଆଜି ସଞ୍ଜରେ ତୁମର ସାଙ୍ଗସୁଖରୁ ସେ କେବେ ମୋତେ ବଞ୍ଚିତ କରିବେ ନାହିଁ ।"

ବିରକ୍ତ ହୋଇ ପ୍ରିନ୍‌ସେସ୍‌ଙ୍କୁ କାନ୍ଦ ମାଡ଼ୁଥିଲା, ସେ କାନ୍ଦଣା ବନ୍ଦ କରି ପାରିଲେ ନାହିଁ । "ହଁ ଖାଲି ଆପଣା କଥା ଛଡ଼ା ସେ ଆଉ କାହାର ଭଲମନ୍ଦ ବୁଝିପାରନ୍ତି ନାହିଁ ।

"ଲିସା," ପ୍ରିନ୍‌ସ ଆନ୍ଦ୍ରେ ଆଉଥରେ କହିଲେ । ତାଙ୍କର କଠୋର କଠିନ ସ୍ୱର ଶୁଣି ପରିଷ୍କାର ଜଣା ଯାଉଥାଏ ଯେପରିକି ତାଙ୍କର ଧୈର୍ଯ୍ୟ-କ୍ଷୟ ହୋଇ ଆସିଲାଣି, ଆଉ ଅଳ୍ପ ବାକି ଅଛି ।

ହଠାତ୍ ପ୍ରିନ୍‌ସେସ୍‌ଙ୍କ ସାନ ସୁନ୍ଦର ମୁହଁର ଭଙ୍ଗୀ ସମ୍ପୂର୍ଣ୍ଣ ବଦଳି ଗଲା । ସେ ମୁହଁଟି ସତେକି ରାଗରେ ଗରଗର ଗୋଟିଏ ଗୁଣ୍ଡୁଚି ମୂଷାର ମୁହଁପରି ଦିଶୁଥିଲା; କିନ୍ତୁ ବର୍ତ୍ତମାନ ଦିଶିଲା, ଡରାଇଦେଲେ କୁକୁରଟିଏ ଯେମିତି ଲାଙ୍ଗୁଡ଼କୁ ତଳକୁ କରି ଘର ଚଟାଣରେ ଏକର ସେକର ହିଶଡ଼ରେ ଲାଙ୍ଗୁଡ଼କୁ ଘୋଷାରେ, ସେମିତି ତାଙ୍କ ମୁହଁରେ ସେଭଳି କୁକୁର ମୁହଁର ଆବାକାବା ତରତର ଭଙ୍ଗୀ ।

ଦୀର୍ଘଶ୍ୱାସ ପକାଇ ପ୍ରିନ୍‌ସେସ୍ ଲିସା କହିଲେ, "ହେ ଭଗବାନ୍ ! ମୁଁ କି ବୁଦ୍ଧି କରିବି !" ତାପରେ ପୋଷାକକୁ ଟେକି ଧରି ସେ ତାଙ୍କ ସ୍ୱାମୀଙ୍କ ପାଖକୁ ଗଲେ ଓ ତାଙ୍କ କପାଳରେ ଚୁମ୍ବନ କଲେ ।

"ହଉ ଯାଅ, ନମସ୍କାର', ପ୍ରିନ୍‌ସ୍ ଆନ୍ଦ୍ରେ କହିଲେ । ସେ ଉଠି ପଡ଼ି ତାଙ୍କ ହାତରେ ଚୁମ୍ବନ କଲେ, ସତେ ଯେପରିକି ସେ କେହି ଅପରିଚିତା ଜଣେ ।

# ନଅ

ଦୁଇ ବନ୍ଧୁ ଚୁପ ହୋଇଥାନ୍ତି, କଥା କହିବେ କି ନାହିଁ ଦୁହିଁଙ୍କ ଭିତରୁ କେହି ଠିକ୍ କରି ପାରୁନଥାନ୍ତି । ପିଏରେ ପ୍ରିନ୍ସ୍ ଆନ୍ଦ୍ରେଙ୍କ ଆଡ଼କୁ ଟେରେଇ ଟେରେଇ ଅନାଇଁଲେ । ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ସରୁ ପାପୁଲିକୁ କପାଳରେ ଆସ୍ତେ ଆସ୍ତେ ଘଷୁଥାନ୍ତି ।

ଆଗେ ଆଗେ ବାଟ କଢ଼ାଇ ନେଇ ସେ କହିଲେ, "ଖାଇବାକୁ ଯିବ ଆସ ।" ସେମାନେ ଖାଇବା ଘରକୁ ଗଲେ । ଏକ ଅତି ସୁନ୍ଦର ଖାଇବା ଘର, ଅଳ୍ପଦିନ ହେଲା ପୁଣି ନୂଆହୋଇ ସେ ଘରେ ସାଜସଜ୍ଜା କରାହୋଇଛି । କାଚ ପାତ୍ର, ଚିନାବାସନ, ରେଶମ ପର୍ଦ୍ଦା, ସେଥିରେ ନାନା ଚିତ୍ର ବୁଣା ହୋଇଛି,—ଏସବୁ ଅତି ନୂଆ ବୋଲି ବାରି ହୋଇ ପଡ଼ୁଥାଏ,—ଏକ ନୂଆ ଘରକରଣାର ଚିହ୍ନ ।

ଖାଉ ଖାଉ ପ୍ରିନ୍ସ୍ ଆନ୍ଦ୍ରେ ଖାଇବା ଟେବୁଲ ଉପରେ କହୁଣି ମାଡ଼ି ଦେଇ କଥା କହିବା ଆରମ୍ଭ କରିଦେଲେ । ଦେହ କମଜୋର ହେଲେ ଯେମିତି ଚିଡ଼ ଚିଡ଼ ଲାଗେ, ସେମିତିଆ ଚିଡ଼ିଚିଡ଼ା ଥିଲା ତାଙ୍କ କଥା । ପିଏରେ ତାଙ୍କର ଏ ଭାବ କେବେ ଦେଖି ନଥିଲା, ଏ ସେହିପରି ମଣିଷର ଭାବ ଯାହା ମୁଣ୍ଡରେ ବହୁ ଦିନରୁ ଗୋଟାଏ କ'ଣ ଖେଳୁଥିଲା, ଶେଷରେ ସେ ନିଷ୍ପତ୍ତି କରିଛି ସବୁ ଖୋଲି କହିଦେବ ।

'ଶୁଣ ବାବୁ ! ତୁମେ ସେ ପର୍ଯ୍ୟନ୍ତ ଆଦୌ ବାହା ହେବନାହିଁ ଯେଉଁ ପର୍ଯ୍ୟନ୍ତ ତୁମେ ତୁମ ଜୀବନରେ ଯେତେ ଯେଉଁ କାର୍ଯ୍ୟ କରିବାକୁ ଭାବିଥିବ, ସେ ସବୁ କରିସାରି ନଥିବ । ଯେଉଁ ସ୍ତ୍ରୀ ଲୋକକୁ ବାହାହେବାକୁ ଇଚ୍ଛା କରିଥିବ, ତାହା ପ୍ରତି ଯେତେବେଳେଯାକେ ତୁମର ସବୁ ଅନୁରାଗ ସରିଯାଇ ନ ଥିବ, ଯେତେଦିନ ଯାକେ ତାକୁ ଭଲକରି ଚିହ୍ନି ସାରି ନଥିବ, ସେ ପର୍ଯ୍ୟନ୍ତ କଦାପି ବାହା ହେବନାହିଁ । ଯଦି ବାହାହେବ, ତେବେ ଜାଣିଥା ତୁମେ ଭୁଲ୍ କରିବ, ଆଉ ସେ ଭୁଲ ହେବ ମାରାତ୍ମକ, ତାକୁ

କେବେ ହେଲେ ସୁଧୀର ହେବନାହିଁ । ବରଂ ବଡ଼ ନ ହୋଇ ବୁଢ଼ା ହେବାଯାକେ ଅସୁଧର, ଯେତେବେଳେ ଆଉ କିଛି କରିବାକୁ ତୁମର ଶକ୍ତି ନଥିବ, ସେତେବେଳେ ବରଂ ବାହା ହେବ । ତା ହେଲେ ତୁମ ଅନ୍ତରାତ୍ମା ଭିତରେ ଯାହା କିଛି ଭଲପଣ ଆଉ ବଡ଼ପଣ ଅଛି, ସେତକ ନଷ୍ଟ ହେବ ବୋଲି ବିପଦ ନଥିବ । ହଁ, ଖୁଚୁରା ପଇସାକୁ ଉଡ଼େଇ ଦେଲାପରି ସେ ସବୁ କୁଆଡ଼େ ଖର୍ଚ୍ଚ ହୋଇଯାଏ । ଏମିତି ତ ହୁଏ, ମୁଁ ଯାହା କହୁଚି ସତ କହୁଚି, ଏମିତି କାବା ହୋଇ ମୋ ଆଡ଼କୁ କାହିଁକି ଅନେଇଁଚ ? ଯଦି ଜୀବନରେ କେବେ ହେଲେ ଆଶା କରିଥିଲ କି ବିଶ୍ୱାସ କରିଥିଲ ଯେ କିଲ୍‌ଭଲଆ କାମ କିଛି ତେମେ କରିବ, ତେବେ ବିଭା ହେଲେ ପଦେ ପଦେ ତୁମେ ଅନୁଭବ କରିବ ଯେ ସେ ସବୁ ଚୁଲିକି ଯାଇଛି, ବସାଉଠା କରିବା ବଖଘର କବାଟ ଛଡ଼ା ଆଉ ସବୁ କବାଟ ବନ୍ଦ ହୋଇଛି, ଆଉ ସେହି ବୈଠକଖାନା ଘରେ ତୁମ ଆସନ ଖାଲି ମୂର୍ଖଙ୍କ ସଙ୍ଗରେ ଆଉ ଗୁକର ବାକରଙ୍କ ସଙ୍ଗରେ, ତାଙ୍କର ସଙ୍ଗରେ ତୁମେ ଠିଆ ହେବ । ଗୁଡ଼୍, କହିଲେ କଣ ହେବ ?" ସେ ଦୁମ୍‌କିନା ଟେବୁଲ୍ ଉପରେ ହାତକୁ କଚାଡ଼ି ଦେଲେ ।

ପିଏରେ ତା ଚଷମା କାଢ଼ି ଦେଲା । ଚଷମା କାଢ଼ି ଦେବାରୁ ତା ମୁହଁର ଚେହେରା ସଂପୂର୍ଣ୍ଣ ଅଲଗା ଦିଶିଲା, ଆହୁରି ପରିଷ୍କାର ହୋଇ ବାରିହୋଇ ପଡ଼ିଲା ସେ କେଡ଼େ ମେଳାପୀ ମଣିଷ ଓ ସେ କେଡ଼େ ଆଶ୍ଚର୍ଯ୍ୟ ହୋଇଯାଇଛି ।

ପ୍ରିନ୍‌ସ ଆନ୍ଦ୍ରେ କହିଲେ, "ମୋ ସ୍ତ୍ରୀ ଗୋଟିଏ ଚମତ୍କାର ଝିଅ ଭାଗ୍ୟପାଇଁଏ, ତାର ସ୍ୱାମୀର ଇଜ୍ଜତକୁ ସେ ସଂପୂର୍ଣ୍ଣ ନିରାପଦରେ ରଖିବ । ତଥାପି ମୁଁ କହୁଚି, ମୋର ଅବିବାହିତ ଅବସ୍ଥାକୁ ଫେରି ପାଇବାର ବାଟ ଥିଲେ ସେ ଅବସ୍ଥାକୁ ଲେଉଟି ଯିବାପାଇଁ କି ମୂଲ୍ୟ ମୁଁ ନ ଦିଅନ୍ତି ।

ତୁମେ ପ୍ରଥମ ଲୋକ ଆଉ ଏକମାତ୍ର ଲୋକ ଯାହା ଆଗରେ ଏକଥା ମୁଁ ଖୋଲି କହିଲି, କାହିଁକି ଜାଣିଚ ? କାରଣ ମୁଁ ତୁମକୁ ଭାରି ଭଲ ପାଏ ।"

କଥା କହିଲା ବେଳେ ପ୍ରିନ୍‌ସ୍ ଆନ୍ଦ୍ରେ ମୋଟେ ଜଣା ପଡ଼ୁ ନ ଥିଲେ ସେହି ପ୍ରିନ୍‌ସ୍ ବଲ୍‌କନ୍‌ସ୍କିଙ୍କ ପରି ଯେଉଁ ମଣିଷଟି ଆନ୍ନା

ପାଲେଭ୍ନ୍‌ଙ୍କ ବୈଠକ ଖାନାରେ ଥିଲାବେଳେ ଚଉକିରେ ଆଉଜି ପଡ଼ି ଅଧାବୁଜା ଆଖି କରି ବସିଥିଲେ, ଆଉ ଖୁବ୍ ସାନ ପାଟିରେ ମଝିରେ ମଝିରେ ଲକ୍ଷକରି ବନ୍ଧୁକରୁ ଗୁଳି ମାରିଲା ପରି ଫରାସୀ ଭାଷାରେ ଶ୍ରେଷ୍ଠ ଶ୍ରେଷ୍ଠ ବାକ୍ୟମାନ ଛାଡ଼ି ଦେଉଥିଲେ । ତାଙ୍କର ଧାରି ପାତଳ ମୁହଁଟିରେ ପ୍ରତ୍ୟେକ ମାଂସପେଶୀ ଉତ୍ତେଜନାରେ ଥରି ଉଠୁଥିଲା, ତାଙ୍କର ଆଖି ଦିଓଟି, ଯେଉଁଥିରେ ନିଆଁ ନିଭିଯାଇଛି ବୋଲି ସବୁବେଳେ ଜଣାଯାଏ, —ସେ ଆଖି ପରିଷ୍କାର ଚକ୍ ଚକ୍ କରି ଉଠୁଥିଲା । ସହଜରେ ଅନୁମାନ କରି ହେଉଥିଲା ଯେ ମଝିରେ ମଝିରେ ଏହି ଯେଉଁ ଭାବ ଭାବିକା ସେ କେତେ କେତେବେଳେ ଚଢ଼ି ଉଠନ୍ତି, ସେତେବେଳେ ସେ ଭୟଙ୍କର ବକ୍ଷୁବ୍ଧ ହୋଇ ପାରିବେ; ତାଙ୍କର ସ୍ୱଭାବଗତ ନିରୁତ୍ସାହତା ଓ ମାନ୍ଦାପଣ ତୁଳନାରେ ଅତି ଅସ୍ୱାଭାବିକ ପ୍ରକାରେ ସେ ଉଦ୍ଦାମ ହୋଇ ବକ୍ଷୁବ୍ଧ ହୋଇ ପାରିବେ ।

ପିଏରେ ପଦେ ବି କିଛି ଉତ୍ତର ଦେଇ ନାହିଁ. ତଥାପି ସେ କହିଗଲେ, "ତୁମେ ବୁଝିପାରୁ ନାହଁ ପିଏରେ, ଅଥଚ ଏଇଟା ଗୋଟାଏ ସାରା ଜୀବନର କାହାଣୀ । ତୁମେ ବୋନାପାର୍ଟ୍ ଆଉ ତାଙ୍କ ଜୀବନୀ କଥା କହୁଛ, କିନ୍ତୁ ଯେତେବେଳେ ବୋନାପାର୍ଟ୍ ପରିଶ୍ରମ କରୁ-ଥିଲେ ସେତେବେଳେ ସେ ପାହୁଣ୍ଡ ପରେ ପାହୁଣ୍ଡ ପକାଇ ସିଧା ତାଙ୍କ ଲକ୍ଷ୍ୟ ଆଡ଼କୁ ମାଡ଼ି ଚାଲୁଥିଲେ, ସେ ଥିଲେ ମୁକ୍ତ, ତାଙ୍କର ଅଭୀଷ୍ଟ ଥିଲା ଗୋଟିଏ, ସେ ତାକୁ ପାଇଥିଲେ । କିନ୍ତୁ ଥରେ ନିଜକୁ ଏକ ମାଇକିନିଆ ସଙ୍ଗରେ ଗଁଠେଇ ଦିଅ, ତୁମେ ଦେଖିବ କଣା ଗୋଲାମ ପରି ତୁମେ ବାନ୍ଧି ହୋଇ ବସିଛ, ଆଉ ତୁମର ସ୍ୱାଧୀନତା ନାହିଁ । ଗୋଟି ଗୋଟି ହୋଇ ପ୍ରତ୍ୟେକ ଇଚ୍ଛା ଓ ଉଚ୍ଚ ଆଶା, ଏପରିକି ତୁମ ଭିତରେ ଯେଉଁ ଶକ୍ତି ରହିଛି, ସେ ସବୁ ଓଲଟି ପଡ଼ି ତମୁକୁ ମାଡ଼ି ଚକଟି ଗୁଣ୍ଡାକରି ପକାଇବ ଓ ତୁମ ମନକୁ ହତାଶରେ ଭରି ଦେବ । ତୁମେ ସେତେବେଳେ ଯେଉଁ ମନୁଷ୍ୟ ଗାର ମୁଣ୍ଡୁଳା ଭିତରେ ବାଡ଼ାବନ୍ଧ ଭିତରେ ରହିଲା ପରି ରହିଥିବ, ସେଥିରେ ଖାଲି ଥିବ ବୈଠକ ଖାନାରେ ବସି ପରଚର୍ଚ୍ଚା, ବଲ୍‌ନାଚ, ଦେଖେଇ ହେବା ପଣ, ଶ୍ରେଷ୍ଠଲୋକ । ମୁଁ ଯାଉଛି ଏ ଯୁଦ୍ଧରେ ସାହାଯ୍ୟ କରିବି । ଏଡ଼େ ଭୟଙ୍କର ଯୁଦ୍ଧ କେବେ ହୋଇ ନଥିଲା । ଅଥଚ ମତେ କେହି ଜଣା ନାହିଁ, କି ମୁଁ କୌଣସି କାମକୁ ଯୋଗ୍ୟ ନୁହେଁ । ମୋଠି ଏ ଅଭାବକୁ ପୂରଣ କରିବା ଲାଗି ଏତିକି ଅଛି ଯେ ମୁଁ ଭାରି ମେଳାପୀ, ମୁଁ ଖିଲ୍ଲ ସମାଲୋଚନା କରିପାରେ । ଆନ୍ନା ପାଲେଭ୍ନ୍‌ଙ୍କ

ଭୋଜନରେ ତ ସେ'ବି ମୋ ଗୁଣକୁ ଅନେଇଁଥାନ୍ତି । ତା ପରେ ପୁଣି ଭାବ ସେହି କାଉଦା ସମାଜ କଥା ଯାହାକୁ ଛାଡ଼ି ମୋ ଭାରିଯା କୁଆଡ଼େ ଦଣ୍ଡେ ରହିପାରିବ ନାହିଁ । ତୁମେ ଜାଣିଥାନ୍ତ ଭଲ ଝିଅଏ ଏଇ ଚମତ୍କାର ଭଦ୍ରମହିଳାମାନଙ୍କର,—ନାଇଁ, ସବୁ ମାଈକିନିଆଁଙ୍କର ମୂଲ୍ୟ କେତେ ! ମୋ ବାପା ଠିକ୍ କହନ୍ତି । ଖାଲି ଆତ୍ମାଭିମାନ, ଖାଲି ଫୁଲେଇପଣ, ମୂର୍ଖତା, ଅତି ତଳ ସ୍ତରର ବୁଦ୍ଧି—ନାରୀ ଯେତେବେଳେ ତା ପ୍ରକୃତ ରୂପ ଖୋଲି ଦେଖାଏ, ସେତେବେଳେ ଏତିକି ଜଣାପଡ଼େ ତାର ସାରତତ୍ତ୍ୱ ବୋଲି । ଏ ଦୁନିଆଁରେ ତୁମେ ତାଙ୍କୁ ଦେଖିଲାବେଳେ ଭାବିପାରି ତାଙ୍କଠିଁ କିଛି ଗୋଟାଏ ଭାରି ଚମତ୍କାର କିଣି ଅଛି, କିନ୍ତୁ ନାହିଁ, ଆଉ କିଛି ନାହିଁ, କିଛି ନାହିଁ । କେବେ ବାହା ହେବନାହିଁ, ଜାଣିଥା ।"

ଏତିକି କହି ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ କଥା ଶେଷ କଲେ ।

ପିଏରେ କହିଲା, "ମତେ ଖାଲି କାବା ଲାଗୁଛି ଯେ ଆପଣଙ୍କ ପରି ଲୋକ—ଆପଣ ପୁଣି ନିଜକୁ ଭାବୁଛନ୍ତି ଆପଣଙ୍କ ଦେଇ କିଛି ହେବ ନାହିଁ ଆଉ ଆପଣ ଅପଦାର୍ଥ ! ଏଁ ! ଅଥଚ ଆପଣଙ୍କ ଆଗରେ ସମଗ୍ର ଭବିଷ୍ୟତଟା ପଡ଼ିଛି – ଆଉ—"

ତା ସ୍ୱରରୁହିଁ ବାରି ହୋଇପଡ଼ୁଥିଲା ଯେ ସେ ତାର ସେ ବନ୍ଧୁଙ୍କୁ କେଡ଼େ ବଡ଼ ବୋଲି ଭାବୁଥିଲା, ଆଉ ସେ କେତେ ବଡ଼ ବଡ଼ କାମ କରିବେ ବୋଲି ସେ ଆଶା କରିଥିଲା ।

"ଏଭଳି କଥାଗୁଡ଼ାକ କହିବାକୁ ତାଙ୍କର କି ଅଧିକାର ଅଛି ?" ପିଏରେ ମନେ ମନେ ଭାବୁଥିଲା । ତା ଆଖିରେ ପ୍ରିନ୍ସ୍ ଆନ୍ଦ୍ରେ ଥିଲେ ସବୁ ଗୁଣରେ ପରିପୂର୍ଣ୍ଣ । ତାର ପ୍ରକୃତ କାରଣ ହେଉଛି ଯେ ପିଏରେ ଭାବୁଥିଲା ଯେ ତା ନିଜଠିଁ ଯେଉଁ ଗୁଣମାନ ନାହିଁ, ତା ଥିଲା ପ୍ରିନ୍ସ୍ ଆନ୍ଦ୍ରେଙ୍କଠିଁ—ଶକ୍ତି ଆଉ ମନର ଦୃଢ଼ପଣ । ସେ ସବୁବେଳେ ପ୍ରଶଂସା କରି ଆସିଥିଲା, କିପରି ତାର ବନ୍ଧୁ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଅନ୍ୟମାନଙ୍କ ସଙ୍ଗେ ବ୍ୟବହାର କଲାବେଳେ ସୌମ୍ୟ ସହଜ ବ୍ୟବହାର ଦେଖାନ୍ତି, ମନ ଏତେ ଟିକିଏ ବିଚଳିତ ହୁଏ ନାହିଁ, ଆଉ ପ୍ରଶଂସା କରି ଆସିଥିଲା ତାଙ୍କର ଅଦ୍ଭୁତ ସ୍ମରଣ ଶକ୍ତିକୁ, ତାଙ୍କର ବହୁତୋମୁଖୀ ଜ୍ଞାନକୁ —କାରଣ ସେ ଯାହା ଦେଖୁଥିଲେ ତାକୁ ଧ୍ୟାନ ଦେଇ ବୁଝୁଥିଲେ, ମନେ ରଖୁଥିଲେ,—କାର୍ଯ୍ୟ କରିବାପାଇଁ ଅନୁଧ୍ୟାନ କରିବାପାଇଁ ତାଙ୍କର

ଅସାଧାରଣ ଶକ୍ତି । ଯଦି କେବେ ପିଏରେ ଲକ୍ଷ୍ୟ କରୁଥିଲା ଯେ ଚିନ୍ତାଶୀଳ ଦାର୍ଶନିକ ଆଲୋଚନାରେ ମାତିବା ପାଇଁ ତାର ଏ ବନ୍ଧୁଙ୍କର ରୁଚି ନ ଥିଲା,—ଯାହାଥିଲା ତା ନିଜର ବିଶିଷ୍ଟ ଗୁଣ, ଏଇ ଅଭାବକୁ ସେ ତାଙ୍କର ଦୁର୍ବଳତା ବୋଲି ନ ଭାବି ଓଲଟି ଭାବୁଥିଲା ତାଙ୍କ ଦୃଢ଼ତାର ନିଦର୍ଶନ ବୋଲି । ଜୀବନରେ ପ୍ରତ୍ୟେକ ସମ୍ବନ୍ଧ ଓ ସଂପର୍କ ଭିତରେ, ତାହା ଯେତେ ଆପଣାର ହୋଇଥାଉ ପଛେ, ଯେତେ ସରଳ ଯେତେ ସୌହାର୍ଦ୍ଦ୍ୟମୟ ହୋଇଥାଉ ପଛେ, ଗୋଟାଏ କଳକୁ ସଫା କରିବାପାଇଁ ବା ଚଳେଇବା ପାଇଁ ତେଲ ଦେବା ଯେତିକି ଦରକାର, ପରର ଗୁଣ ବାଛିନବା ପରକୁ ପ୍ରଶଂସା କରିବା ବି ସେତିକି ଅପରିହାର୍ଯ୍ୟ ।

ଟିକିଏ ରହି ପ୍ରିନ୍ସ୍ ଆନ୍ଦ୍ରେ କହିଲେ—"ମୁଁ—ମୋର ସବୁ ସରିଯାଇଛି, ମୋ କଥା ଆଉ ପକାନା ପିଏରେ, ତୁମ ନିଜକଥା କହ,—" କଥାଟା ବୁଲେଇ ଦେବା ପାଇଁ ଗୋଟାଏ ନୂଆ ବିଷୟ ଖୋଜି ପାଇ ସେ ହସିଦେଲେ ।

"ମୋ କଥା ?" ତାର ବନ୍ଧୁଙ୍କର ହସକୁ ଆପଣାର ଏକ ସରଳ ପିଲାଳିଆ ମନଖୋଲା ହସରେ ଆପଣା ମୁହଁରେ ପ୍ରତିବିମ୍ବିତ କରି ପିଏରେ କହିଲା, "ମୋ କଥା ତ କିଛି ନାହିଁ କହିବାକୁ,—ଯେତେହେଲେ ବି ମୁଁ ଏମିତି କିଏଟାଏ କି ? ଗୋଟାଏ ଜାରଜ ସନ୍ତାନ !" କହିଦେଇ ସେ ଖୁବ୍ ନାଲି ପଡ଼ିଗଲା, ବହୁତ ପରିଶ୍ରମ କରି ସେହି ଶବ୍ଦଟା ସେ ତୁଣ୍ଡରେ ଧରିଥିଲା, କହିଲା "ଗୋଟାଏ ବଂଶଗତ ନାଁ ବି ନାହିଁ, ପଇସା ନାହିଁ, ତଥାପି ଅନ୍ତତଃ ବର୍ତ୍ତମାନ ତ ଅଛି ମୁକ୍ତ ଆଉ ସୁଖୀ । କେବଳ ମୋର ଗୋଟିଏ ଅଭାବ ଅଛି ମୁଁ ମନଖୋଲି ସ୍ୱୀକାର କରୁଛି, ସେଇଟା ହେଉଛି ଯେ ଆଗ କି କାମରେ ମୁଁ ହାତ ଦେବି ତା ମୁଁ ବୁଝିପାରୁନାହିଁ, ପ୍ରକୃତରେ ଏତିକି ବିଷୟରେ ଆପଣଙ୍କଠୁଁ ମୁଁ ଉପଦେଶ ପାଇବାକୁ ଲୋଡ଼ୁଛି ।"

ଆନ୍ଦ୍ରେ ତାକୁ ଅନେଇଲେ ଦୟାର୍ଦ୍ର ଉଦାର ସହାନୁଭୂତିରେ । କିନ୍ତୁ ସେ ଉଦାର ସହାନୁଭୂତିରେ ଆପଣାର ବଡ଼ପଣ ଦେଖାଇବା ପ୍ରବୃତ୍ତି ବି ଧରା ପଡୁଥିଲା ।

"ତୁମପ୍ରତି ମୋର ବହୁତ ସ୍ନେହ, କାରଣ ଆମ ଜଣାଶୁଣା ମହଲ ଭିତରେ ତୁମେହିଁ ଏକୁଟିଆ ଜଣେ ଜୀଅନ୍ତା ମଣିଷ । ତୁମେ କହୁଛ ତୁମେ ସୁଖୀ । ବେଶ୍ । କିଣ ବାଛିନେବ ବାଛିନିଅ । ଏ ବସ୍ତୁବିଛରେ କିଛି

ଯାଏ ଆସେ ନାହିଁ । ତୁମେ ଯାହା କରିବ ସେଥିରେ ତୁମର ଭଲ ହେବ । କିନ୍ତୁ ମୁଁ ତୁମକୁ ବହୁତ କରି କହୁଛି ସେ କୁରାଗ୍ନିନ୍ ପରିବାର ସଙ୍ଗେ ସଂପର୍କ ତୁଟେଇଦିଅ, ତୁମ ଜୀବନର ସେ ଦିଗଟା ଛାଡ଼ିଦିଅ ବିଲ୍‌କୁଲ୍ । ତୁମ ଭଳିଆ ଲୋକକୁ ଏମିତି ଦୁଷ୍ଟରିତ୍ର ଅପରିଣାମଦର୍ଶୀ ଜୀବନ ଶୋଭା ପାଉନାହିଁ ।"

ପିଏରେ କାନ୍ଧ ଟାକି ଥରାଇ ଥରାଇ କହିଲା—"ମୋର ଆଉ କ ଗୃରା ଆଜ୍ଞା,—ସେଇ ମାଇକିନିଆଗୁଡ଼ାକ,—ଆପଣ ତ ଜାଣିଛନ୍ତି,—ସେଇ ମାଇକିନିଆଗୁଡ଼ାକ—"

"ମୁଁ ସେକଥା ମାନିବାକୁ ରାଜିନୁହେଁ । ଭଦ୍ରଘରର ଝିଅ ହେଲେ ସେକଥା ଭିନେ କଥା, କିନ୍ତୁ କୁରାଗ୍ନିନ୍ ଯେମିତିଆ ମାଇକିନିଆ-ମାନଙ୍କ ସଙ୍ଗେ ମିଶେ, ସେମାନେ ଠିକଣା ମଣିଷ ନୁହନ୍ତି । ମାଇକିନିଆ ଆଉ ମଦ,—ଏ ଦୋଟି ଜିନିଷ ମୁଁ ବୁଝେନାଇଁ ।" ପିଏରେ ରହୁଥିଲା ପ୍ରିନ୍‌ସ୍ ବେସିଲ୍‌ଙ୍କ ଘରେ ଆଉ ତାଙ୍କ ସାନପୁଅ ଆନାତୋଲେ ସଙ୍ଗରେ ପଡ଼ି ମଦମାଇକିନିଆମୟ ଦୁଷ୍ଟରିତ୍ରତା ଭିତରେ ଜୀବନ ବିତୋଉଥିଲା । ସେହି ସେ ଆନାତୋଲେ, ଯାହାକୁ ଠିକ୍ ବାଟକୁ ଆଣିବାପାଇଁ ପ୍ରିନ୍‌ସ ଆନ୍ଦ୍ରେଙ୍କ ଭଉଣୀ ସଙ୍ଗରେ ତାର ବିବାହର କରିଦେବାକୁ ପ୍ରସ୍ତାବ ହେଉଥିଲା ।

"କଣ ଜାଣିଛନ୍ତି ନାଁ,—"ପିଏରେ ହଠାତ୍ କହିଲା ଯେପରିକି ହଠାତ୍ ସେ ଏକ ସତ୍ୟର ସନ୍ଧାନ ପାଇଛି, କହିଲା, "ବହୁଦିନୁଁ ମନଧ୍ୟାନ ଦେଇ ଏ ବିଷୟରେ ଭାବୁଥିଲି । ମୁଁ ଗୋଟାଏ ଏମିତିଆ ଜୀବନ ବିତୋଉଛି ବୋଲି ମୁଁ କୌଣସି କଥା ଠିକଣା କରି ଭାବିପାରୁନାହିଁ କି କିଛି ନିଷ୍ପତ୍ତି କରିପାରୁନାହିଁ । ସେଇଥିପାଇଁ ମୋ ମୁଣ୍ଡରେ ଏତେ ଦୁଶ୍ଚିନ୍ତା, ସେଇଥିପାଇଁ ମୋଠି ପଇସା ରହୁନାହିଁ । ଆଜି ସଞ୍ଜରେ ଫେରି୍ ସେ ମତେ ଡାକୁଥିଲା, କିନ୍ତୁ ମୁଁ ଯିବିନାଇଁ ।"

"ମତେ ଜବାବ୍ ଦେଉଛ ତୁମେ ଏସବୁ ଛାଡ଼ିଦେବ ?"

"ହିଁ । ମୁଁ ଜବାବ୍ ଦେଉଛି ।"

# ଦଶ

ପିଏରେ ତାର ବନ୍ଧୁଙ୍କ ପାଖରୁ ଆସିଲାବେଳକୁ ରାତି ଗୋଟାଏ ବାଜି ଯାଇଥାଏ । ଜୁନ୍ ମାସର ରାତି, ପୃଥିବୀର ଉତ୍ତର ପ୍ରାନ୍ତର ରାତି । ତେଣୁ ସେ ରାତି ଉଷା ଆଲୁଅରେ ଝଲ୍‌ଝଲ୍ । ମନ ଟାଣି କରି ଭାବିଲା ସେ ଘରକୁ ଫେରିଯିବ । ଗୋଟାଏ ଘୋଡ଼ାଗାଡ଼ିରେ ବସିଲା । କିନ୍ତୁ ଗାଡ଼ି ଯେତେବେଳେ ଚାଲିଲା ସେ ଭାବିଲା ଏଭଳି ରାତିରେ ନିଦ ହେବା ଅସମ୍ଭବ । ଏ ରାତି ସତେ ଯେପରି ଏକ ସଞ୍ଜ କି ଏକ ପରିଷ୍କାର ଦିନର ପାହାନ୍ତା ପରି । ନିର୍ଜନ ଲମ୍ବା ରାସ୍ତାଗୁଡ଼ାକୁ ସେ ଏମୁଣ୍ଡରୁ ସେମୁଣ୍ଡ ଅନାଇଁଗଲା । ତା ପରେ ତାର ମନେପଡ଼ିଗଲା ଯେ ଆଜି ରାତିରେ ଜୁଆଖେଳାଳୀ ସମିତିର ଅଧିବେଶନଟା ବସିବାର ଥିଲା ଆନାତୋଲେ କୁରାଗିନ୍‌ର ଘରଠିଁ । ତାସ ଖେଳସାରି ସେମାନେ ମଦ ପିଅନ୍ତି, ତାପରେ ସବା ଶେଷରେ ହୁଏ ଗୋଟାଏ ମଉଜ ଯାହାକୁ ପିଏରେ ଭାରି ଭଲପାଏ ।

"ଧରି ଯଦି ମୁଁ ଯିବି—" ସେ ଆପଣାକୁ ଆପେ କହିଲା । ପୁଣି ମନେ ପଡ଼ିଗଲା ପ୍ରିନ୍‌ସ୍ ଆନ୍ଦ୍ରେଙ୍କ ଆଗରେ ସେ ଯେଉଁ ପ୍ରତିଜ୍ଞା କରି ଆସିଲା ।

ସଙ୍ଗେ ସଙ୍ଗେ ଏକ ଅରଣା କାମନା ତାକୁ କବଳିତ କରିନେଲା, ଯେଉଁ ଲୋକମାନଙ୍କର ମନର ଦମ୍ଭ ଆଦୌ ନଥାଏ ତାଙ୍କର ଯେମିତି ହୁଏ ଠିକ୍ ସେମିତି,—ଯେ ତାର ସେହି ଅତି ଚହଲା ମଉଜ୍ ମଜ୍‌ଲିସ୍‌ର ଜୀବନକୁ ଆଉଥରେ ସେ ଉପଭୋଗ କରିବ, ଥରଟିଏ ଆଉ । ସଙ୍ଗେ ସଙ୍ଗେ ସେ ମନେ ମନେ ନିଷ୍ପତ୍ତି କରିନେଲା ଯେ ଆନାତୋଲେ ଘରକୁ ସେ ଯିବ । ସେ ଆପଣାକୁ ବୁଝାଇ ଦେଲା ଯେ ସେ ଯାହା ଜବାବ୍ ଦେଇଛି ସେଥିରେ ସେ ବନ୍ଧା ନୁହେଁ କାରଣ ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ଗୋଟିଏ ଜବାବ୍ ଦେବା ଆଗରୁ ସେତ ପୁଣି ଆନାତୋଲେଙ୍କୁ ଆଉ ଗୋଟାଏ ଜବାବ୍

ଦେଇ ସାରିଥିଲି । ସେ ସବୁଯାକ ଜବାବ୍‌କୁ ଏକାଠି କରି ଦେଖିଲେ ଏତିକ ଜଣାପିବ ଯେ ସେ ଜବାବ୍‌ଗୁଡ଼ାକ ଖାଲି ଏମିତିଆ ମାମୁଲି, ସେଥିରେ କିଛି ଅର୍ଥନାହିଁ । କାଲି କଣ ହେବ ସେ କଥା କେହି ଠିକଣା କରି କହି ପାରିବେ ନାହିଁ, କିଏ ଜାଣିଛି କାଲି ଏମିତି ଏକ ଅପ୍ରତ୍ୟାଶିତ ଦୁର୍ଘଟନା ନ ଘଟିବ, ଯେଉଁଥିରେ ସମ୍ମାନ ଆଉ ଲଜ୍ଜା ସବୁ ଏକାଠି ଓଳେଇ ପୋଳେଇ ହୋଇ ମଣିଷର ଜୀବନ ସଙ୍ଗରେ ଚାଲିପିବ କବରି ଖାନାକୁ । ଅନେକ ଥର ତାରି ଏପରି ହୁଏ ଯେ ଆପଣା ସଙ୍ଗେ ଆପେ ଯୁକ୍ତିତର୍କ କରି କରି ଯେଉଁଟା ତାରି ଅତି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ସେଇଟା ଓଲଟି ପଡ଼େ ।

ପିଏରେ ହାରିଗଲା । ଚାଲିଲା କୁରାଗ୍ନିନ୍‌ ଘରକୁ । ଘୋଡ଼ସଓ୍ୱାର୍‌ ସୈନ୍ୟ ଯେଉଁଠି ରହନ୍ତି, ଠିକ୍‌ ତା ପାଖରେ ଗୋଟାଏ ବଡ଼ ଘରର ଆଗ ପାହାଚ ସାମ୍ନାରେ ସେ ଗାଡ଼ି ଅଟେକେଇଲା । ଦାଣ୍ଡ କବାଟ ଠିଆ ମେଲା ଥିଲା, ସେ ଭିତରକୁ ପଶିଲା । ଦାଣ୍ଡର ବଡ଼ ବଖରାରେ କେହି ନଥିଲେ । ସେ ଜାଗାଟା ମଦ ମଦ ଗନ୍ଧାଉଥିଲା । ଫମ୍ପା ବୋତଲ, କୋଟ୍‌, ଯୋତା ଉପରେ ପିନ୍ଧିବା ଖୋଳ ଏଇଗୁଡ଼ାକ ସେଠି ଏଣେ ତେଣେ ବିଛେଇ ହୋଇ ପଡ଼ିଥିଲା । ଉପର ମହାଲର କୌଣସି ଗୋଟିଏ ବଖରାରୁ ଗୋଲମାଲ ଆଉ ବଡ଼ ପାଟି ଶୁଭୁଥିଲା ।

ତାସ ଖେଳ ଆଉ ଭୋଜି ସରିଥିଲା କିନ୍ତୁ ଦଳ ଭାଙ୍ଗି ନଥିଲା । କୋଟ୍‌ ଉତାରି ଫୋପାଡ଼ି ଦେଇ ପିଏରେ ପ୍ରଥମ ବଖରା ଭିତରକୁ ଗଲା । ଭୋଜିର ଅଇଣ୍ଠା ପଡ଼ିଥିଲା । ଜଣେ ଚାକର ଗିଲାସମାନଙ୍କରେ ଯେଉଁ ଟିକିଏ ଟିକିଏ ମଦ ରହି ଯାଉଥିଲା ତାକୁ ପିଇ ଦେଉଥିଲା, ଭାବୁଥିଲା ତାକୁ କେହି ଦେଖୁ ନାହାନ୍ତି । ଆଉ ଖଣ୍ଡେ ଆଗକୁ ଗଲାରୁ ହସ ପାଟିର ହୋ ହା ମଝିରେ ଆଉ ଗୋଟାଏ ଘରୁ ଗୋଟାଏ ଭାଲୁର ଗର୍ଜନ ଶୁଭୁଥିଲା । ଗୋଟାଏ ଖୋଲା ଝରକା ଆଗରେ ଆଠଜଣ ଯୁବକ ଭିଡ଼ ଲଗେଇଥିଲେ, ତହିଁରୁ ତିନିଜଣ ଖେଳୁଥିଲେ ଗୋଟାଏ ଭାଲୁ ଛୁଆ ସଙ୍ଗରେ, ତହିଁରୁ ଜଣେ ସେ ଭାଲୁ ଛୁଆଟାକୁ ଗୋଟିଏ ଶିଂକୁଳିରେ ଓଟାରୁ ଥିଲା ଆଉ କେଣ୍ଟୁଥିଲା ଯେମିତିକି ତା ସାଙ୍ଗମାନେସବୁ ଡରିବେ ।

ଜଣେ ପାଟିକଲା, "ଷ୍ଟିଭେନ୍‌ସ୍‌ ଜିତିବ, ମୁଁ ଏଥିପାଇଁ ଶହେ ଟଙ୍କା ବାଜି ପକାଉଛି ।"

ଆଉ ଜଣେ କହିଲା, "ତା ବୋଲି ତୁମେ ତାକୁ ସାହାଯ୍ୟ କରି ପାରିବ ନାହିଁ ।"

ଆଉ ଜଣେ କହିଲା "ଦୋଲୋହଭ୍ କହିବ, ମୁଁ ବାଜି ରଖିଛି"

"କୁରାଗ୍ଗିନ୍ ଆଇଲି ଟିକିଏ ଏମାନଙ୍କୁ ଅଲଗା ଅଲଗା କରିଦିଅ।"

"ନାହିଁ ମିସ୍କା, ଛାଡ଼ିଦିଅ, ସେ ଭାଲୁଟା ସଙ୍ଗରେ ଲାଗି ନାହିଁ, ହେଇ ନିଅ ଟଙ୍କା ।"

"ସେ ଏକା ଥରକେ ଓଟାରି ନେଉନ୍ତୁ ନଇଲେ ଧରା ହେବନାହିଁ, ଜାଣି ହାରିଲ" ଆଉ ଜଣେ କହିଲେ ।

ଘରର ମାଲିକ ଏକ ରଡ଼ି ଛାଡ଼ିଲେ, "ଜେମ୍ସ୍ ବୋତଲଟା ଆଣିଲ" ସୁନ୍ଦର ଚେହେରାର ଏକ ଡେଙ୍ଗା ଭେଣ୍ଡିଆ ସେ । କୋଟ୍ ଉତାରି ଦେଇଥିଲେ, ତାଙ୍କ ଛାତି ପାଖେ କାମିଜ୍‌ଟା ଖୋଲା ଥିଲା । ସେ ପାଟି କଲେ—

"ରହନ୍ତୁ, ଟିକିଏ ରହନ୍ତୁ ଆପଣମାନେ । ଏଇ ଆସିଲେ ଆମର ଅତି ପ୍ରିୟତମ ସାଙ୍ଗ ପେଟ୍ରୁଶା ।" ସେ ପିଏରେ ଆଡ଼କୁ ବୁଲି ପଡ଼ିଲେ ।

ଝରକା ପାଖରୁ ପିଏରେଙ୍କୁ ଆଉ ଜଣେ ଡାକିଲେ, ମଝି ଉଚ୍ଚିଆ ଉଞ୍ଚ, ଆଖି ଯୋଡ଼ିକ ଫିକା ନେଳି । ଦଳର ଅନ୍ୟମାନଙ୍କର ମଦୁଆ ପାଟି ସଙ୍ଗରେ ତାଙ୍କର ଶାନ୍ତ ଥଣ୍ଡା ସ୍ୱର ଅଦ୍ଭୁତ ପ୍ରକାରେ ବେସୁରା ଶୁଭୁଥାଏ ।

"ଆସ ଏଠିକି, ହାତ ଖୋଲ ।" ଏ କଥା କହିଲା ଦୋଲୋହଭ, ସେ ସେନାପତି ସେମେନୋଭ୍‌ସ୍କିଙ୍କ ସୈନ୍ୟ ଦଳରେ ଜଣେ କର୍ମଚାରୀ । ଷଣ୍ଡାଲଡ଼େଇ ଆଉ ଜୁଆଖେଳରେ ଜଣେ ଓସ୍ତାଦ୍ ବୋଲି ତାକୁ ସମସ୍ତେ ଜାଣନ୍ତି । ସେ ଆନାତୋଲେ ସଙ୍ଗରେ ରହୁଥିଲା । ପିଏରେ ଖୁଦ୍ ଡେଙ୍ଗା ହସ ହସି ଚାରିଆଡ଼କୁ ଅନାଇଁଗଲା ।

"କଣ ହେଉଛି କହ ତ, ମୁଁ ବୁଝିପାରୁନାହିଁ ।"

"ରଇଥା ରଇଥା, ତାକୁ ନିଶା ହୋଇନାହିଁ," ଆନାତୋଲେ କହିଲା, "ମଦ ଆଣିବଟି ହୋ, ଝଅଟି ଆଣ ।" ଟେବୁଲ୍‌ରୁ ଗୋଟାଏ ଗିଲାସ ଉଠେଇ ନେଇ ସେ ପିଏରେ ପାଖକୁ ଗଲା, କହିଲା, "ଆଗ ତମକୁ ମଦ ପିଇବାକୁ ପଡ଼ିବ ।"

ପିଏରେ ଗିଲାସେ ଉପରୁ ଗିଲାସେ ଲେଖାଁ ମଦ ଢେଳି ପକାଇଲା, କିନ୍ତୁ ତେଣେ କଣ କଏ କହୁଛି ସେ କଥାରେ କାନଦେବା ତାର ଅଟକଳା ନାହିଁ

ଙ୍କ ଦଳଟାଯାକଙ୍କୁ କଣେଇଁ କଣେଇଁ ଅନେଇଁବା ବ ତାର ଅଟକଲ ନାହିଁ । ସେମାନେ ସମସ୍ତେ ମଦ ପିଇ ଟର୍‌ର୍ ହୋଇଥାନ୍ତି, ଆଉ ଝରକା କଡରେ ଭିଡ଼ କରିଥାନ୍ତି । ଆନାତୋଲେ ପିଏରେ ପିଇବ ବୋଲି ମଦ ଢାଳି ଦେଉଥାଏ, ଆଉ କହୁଥାଏ ଯେ ଦୋଲୋହଭ୍‌ର ଓ ଷ୍ଟିଭେନ୍‌ସର କଣ ବାଜି ପଡ଼ିଛି । ଷ୍ଟିଭେନ୍‌ସ୍ ଜଣେ ଇଂରେଜ୍, ସେ ନୌବାହିନୀରେ କାମ କରେ । ରଷୀ ଦୋଲୋହଭ୍ ବାଜି ପକାଇ ଥିଲା ଯେ, ସେ ସେହି ତିନମହଲା କୋଠାରେ ସେହି ଝରକା ଦୁଆରବନ୍ଧ ଉପରେ ବସିପଡ଼ି ଝରକା ବାଟେ ପଦାକୁ ଗୋଡ଼ଦିଟା ଝୁଲେଇ ଦେଇ ଗୋଟାଏ ମଦ ବୋତଲରେ ମୁହଁ ଲଗାଇ ଦେଇ ବୋତଲ ଯାକ ଟାଣୁଆ ମଦ ପିଇଦେବ ।

ପିଏରେଙ୍କୁ ଶେଷଥର ଗିଲାସେ ମଦ ଯାଚି ଆନାତୋଲେ କହିଲା, "ନଅ, ସାରିଦିଅ ସିଆକୁ, ନଇଲେ ତୁମକୁ ମୁଁ ଆଜି ଛାଡ଼ୁନାହିଁ ।

ପିଏରେ ତାର ସେ ବନ୍ଧୁଟିକୁ ପେଲି ଆଡ଼େଇ ଦେଇ ଝରକା ପାଖକୁ ଯାଇ କହିଲା, "ନାହିଁ ନାହିଁ, ଅଉ ମୋର ଦରକାର ନାହିଁ ।"

ଦୋଲୋହଭ୍ ସେ ଇଂରେଜ୍‌ର ହାତ ଧରି ବେଶି ଆନାତୋଲେତ ପିଏରେଙ୍କୁ କଥା କହି ବାଜିର ସବୁ ସର୍ତ୍ତ ଗୋଟି ଗୋଟି କରି ପରିଷ୍କାର ଭାବରେ ଆଉଥରେ କହିଗଲା ।

ଦୋଲୋହଭ୍ ପଚିଶି ବର୍ଷ ବୟସର ଯୁବକ, ତାର ମଧ୍ୟଭଳିଆ ଉଚ୍ଚତା, ମୁଣ୍ଡ ବାଳ କୁଞ୍ଚୁକୁଞ୍ଚିଆ, ଆଖି ନେଳିଆ । ସେ କାଳର ଆଉ ସବୁ ପଦାତିକ ସୈନ୍ୟଙ୍କ ପରି ଦାଢ଼ି ରଖି ନ ଥିଲା, ତେଣୁ ତାର ଚେହେରା ହିଁ ତାର ଚେହେରା ଭିତରେ ବିଶେଷତ୍ୱ । ଧାର ମୁହଁ, ଅତି ସୁନ୍ଦର ତାର ଗଢ଼ଣ । ଉପରଓଠ ତଳଓଠ ଉପରେ ରୂପି ବସିଥାଏ । ଓଠ କଣରେ ସବୁବେଳେ ହସ । ସତେ ଯେମିତି ଓଠର ଦ କୋଣରେ ଦୋଓଟି ହସ ସବୁବେଳେ ଲାଗି ରହିଛି । ତାର ବୁଦ୍ଧିମାନ୍ ଓ ଦୁର୍ଦ୍ଦାନ୍ତ ଚାହାଣି ସହିତ ଏତକ ମିଶି ଯିବାରୁ ସମସ୍ତେ ତାକୁ ଆପେ ଆପେ ଖାତିର କରୁଥିଲେ । ତାର ସମ୍ପତ୍ତି ବାଡ ନଥିଲା କ ତାର କେହି ବଡ଼ଲୋକ ବନ୍ଧୁବାନ୍ଧବ ନଥିଲେ । ସେ ଆନାତୋଲେ କୁରାଗ୍ୱିନ୍ ସଙ୍ଗରେ ଏକାଠି ରହୁଥିଲା । କୁରାଗ୍ୱିନ୍ ଲକ୍ଷ ଲକ୍ଷ ରୁବଲ୍ ପାଣିପରି ଖର୍ଚ୍ଚ କରୁଥିଲା । ଯାହା ଘଟୁଛି ହେଉ, ସେ ଦୁହେଁ ଚାହାଁ ପରିଚ ହୋଇଥିଲେ ବୋଲି ତହିଁରୁ

ଆନାତୋଲେଙ୍କୁ ଯାହା ସମ୍ମାନ ମିଳୁଥିଲା । ଦୋଲୋହଭ୍‌ଙ୍କୁ ଆହୁରି ବେଶି ସମ୍ମାନ ମିଳୁଥିଲା, ସେଥିପାଇଁ ଦୋଲୋହଭ୍ ନିଜେ ଉପାୟ କରିଥିଲା । ପ୍ରତ୍ୟେକ ପ୍ରକାର ଜୁଆ ଖେଳ ସେ ଖେଳେ । ସବୁ ଖେଳରେ ସେ ଜିତେ, ସେ ଯେତେ ମଦ ପିଉ କେବେ ହେଲେ ତା ମୁଣ୍ଡ ବିଗିଡ଼େ ନାହିଁ । ସେଣ୍ଟ ପିଟର୍ସବର୍ଗ ସହରରେ ସେତେବେଳେ ଯେତେ ଚରିତ୍ରହୀନ, ଫୂର୍ତ୍ତି କରିବା ଲୋକ, ପଇସା ଉଡ଼େଇବା ଲୋକ ଥିଲେ, ସେମାନଙ୍କ ଭିତରେ ଯେଉଁମାନେ ନାଁ ଡାକ୍, ଆନାତୋଲେ ଓ ଦୋଲୋହଭ୍‌ଙ୍କ ସ୍ଥାନ ତାଙ୍କର ତାଲିକାରେ ।

ବୋତଲେ ଭରି କଡ଼ା ରମ୍ ମଦ ଅଣାହେଲା । ଦିଜଣ ଚାକର ତରତର ହୋଇ ଝରକାର କାଚଲଗା ଫ୍ରେମକୁ ଭାଙ୍ଗିବାକୁ ଧାଇଁଲେ, ନହେଲେ ସେ ଝରକାର ଉଞ୍ଚ ବାହାରପଟ ବନ୍ଧ ଉପରେ ଜଣେ ମଣିଷ ବସି ପାରିବ ନାହିଁ । ତାଙ୍କ ଚାରିପଟୁ ହେକା ବର୍ଷିଲା ପରି ତାଙ୍କ ଉପରେ ଯେତେ ଗଜନ ତର୍ଜନ ଆଉ ହୁକୁମ୍ ବର୍ଷୁଥିଲା ସେଥିରେ ସେ ଚାକର ଦୁହେଁ ଡରିଯାଇଥିବା ପରି ମନେହେଲା । ଆନାତୋଲେ ଛାତି ଫୁଲେଇ ତାର ସ୍ୱାଭାବିକ ଦର୍ପିଷ୍ଟ ଚାଲି ଚାଲି ଝରକା ପାଖକୁ ଚାଲିଆସିଲା, ଗୋଟାଏ କିଛି ଭାଙ୍ଗିବାକୁ ତାର ଭାରି ମନ ହେଉଥିଲା । ଚାକରମାନଙ୍କୁ ଠେଲି ପେଲି ଦେଇ ସେ ଝରକାର କାଚଲଗା ଫ୍ରେମ୍‌କୁ ଭିତର ପଟକୁ ଓଟାରିଲା, ସେ ବହୁତ ଟାଣ ଥିଲା, ଭାଙ୍ଗିଲା ନାହିଁ, କିନ୍ତୁ କାଚଗୁଡ଼ାକ ଭାଙ୍ଗିଯାଇ ଏଣେ ତେଣେ ଛିଟିକି ପଡ଼ିଲା ।

ସେ ପିଏରେଙ୍କୁ କହିଲା, "ଏଥର ତମର ପାଳି" । ପିଏରେ ସେ ଫ୍ରେମ୍‌ଟାକୁ ଧରି ଗୋଟାଏ ଓଟରା ଦେଲା, ଆଉ ସେ ଟାଣ ଓକ୍ କାଠର ଝରକା ଫ୍ରେମ୍‌ଟା ସେଣ୍ଟ ଝାଂକରେ ଭାଙ୍ଗି ତଳେ ପଡ଼ିଲା ଦୁମ୍‌କିରି ।

ଦୋଲୋହଭ୍ କହିଲା, "ସବୁଯାକ ଭାଙ୍ଗିଦିଅ, ନଇଲେ ଲୋକମାନେ ଭାବିବେ ଏପରି ଏକ ଖିଆଲ୍ ହେବ, ମୁଁ ତାକୁ ଧରି ଓହଳି ଥିଲିବୋଲି, ହଁ ।"

ଆନାତୋଲେ କହିଲା, "ଇଂରେଜ ଭଦ୍ରଲୋକ ମିଛରେ ଖାଲି ଗାଲୁ ଭୁରୁଡ଼ି ମାରୁଛନ୍ତି ।"

ପିଏରେ ଦୋଲୋହଭ୍ ଉପରେ ଆଖି ରଖିଥାଏ । ଦୋଲୋହଭ୍ ବୋତଲେ ମଦ ହାତରେ ଧରି ଝରକା ପାଖକୁ ଗଲା । ଝରକା ସେପଟେ

ସେତେବେଳେ ସକାଳର ଆଲୁଅ ସହର ଆଲୁଅ ଭେଟାଭେଟି ହେଉ-ଥାନ୍ତି । ବୋତଲଟାକୁ ଗୋଟାଏ ହାତରେ ଧରି ସେ ଅଳ୍ପ ଉଚ୍ଚ ଝରକା ମେଜିଆ ଉପରକୁ ଡେଇଁ ପଡ଼ିଲା । ପିଏରେ କହିଲା, "ସାବାସ୍" । ଘର ଭିତର ଆଡ଼କୁ ମୁହଁ କରି ଝରକାଟା ଉପରେ ଠିଆ ହୋଇ ଦୋଲୋହଭ କହିଲା, "ଶୁଣନ୍ତୁ ସମସ୍ତେ ।" ସମସ୍ତେ ଚୁପ ପଡ଼ିଲେ । ସେ କହିଲା, "ମୁଁ ଏଇଆ ବାଜି ରଖୁଚି— ।" ଇଂରେଜ ଜଣକ ଯେପରି ତା କଥା ବୁଝି ପାରିବ, ସେଥି ସକାଶେ ସେ ଫରାସୀ ଭାଷାରେ କଥା କହିଲା, ଯଦିଚ ଖୁବ୍ ଅଶୁଦ୍ଧ ଫରାସୀ ଭାଷାରେ । ସେ ଇଂରେଜ୍‌କୁ କହିଲା, "ମୁଁ ପଚାଶ ଇମ୍ପିରିଏଲ୍ ବାଜି ରଖିଲି,—ନା ନାଇଁ କହିବି ଶହେ ଇମ୍ପିରିଏଲ୍ ?"

ଇଂରେଜ୍ କହିଲା, "ନାହିଁ ପଚାଶ ।"

"ଭଲ କଥା, ପଚାଶ ଇମ୍ପିରିଏଲ୍ ବାଜି ରହିଲା, ଯେ ମୁଁ ସମୁଦାୟ ଗୋଟେ ବୋତଲଯାକ ରମ୍ ପିଇଦେବି, ବୋତଲରେ ମୁହଁ ଲଗେଇ ପିଇବି, ବୋତଲରୁ ଓଠ ଛାଡ଼ିବି ନାଇଁ, ଫେର୍ ହଁ, ହେଇ ସେଠି ବସି ପିଇବି", ପଥର ତିଆରି ଗଡ଼ାଣିଆ ଝରକା ଦୁଆର ମୁହଁ ଆଡ଼କୁ ହାତ ଦେଖାଇ କହିଲା "ହେଇ ସେଇଠି ବସି ମଦ ପିଇବି, କୌଣସି ଆଶ୍ରାକୁ ଧରିବି ନାହିଁ "

"ଠିକ୍ ସେଇକଥା", ଇଂରେଜ୍ ଜଣକ କହିଲା ।

ଆନାତୋଲେ ଷ୍ଟିଭେନ୍‌ସ୍‌ର ଏକ ବୋତାମ ଧରି ତାକୁ ଉପରୁ ତଳକୁ ଅନାଇଲା,—କାରଣ ଷ୍ଟିଭେନ୍‌ସ୍ ଆକୃତିରେ ସାନ ଥିଲା । ତା ପରେ ଇଂରେଜୀ ଭାଷାରେ ସେହି ବାଜିର ସର୍ତ୍ତଗୁଡ଼ାକ ଆଉଥରେ ଗାଇଗଲା ।

ସମସ୍ତିଙ୍କ ଦୃଷ୍ଟି ଆକର୍ଷଣ କରିବ ବୋଲି ଝରକାର କାଠରେ ବୋତଲଟାକୁ ଠକ୍ ଠକ୍ କରି ବାଡ଼େଇ ବାଡ଼େଇ ଦୋଲୋହଭ୍ କହିଲା, "ଖାଲି ସେତିକି ନୁହେଁ । ଶୁଣ କୁରାଗ୍ଭିନ । ଅନ୍ୟ ଯେ କେହି ଏମିତି କରି-ଦେବ, ମୁଁ ତାକୁ ବି ଶହେ ଇମ୍ପିରିଏଲ୍ ଦେବି, ବୁଝିଲ ?"

ଇଂରେଜ୍ ଶିଷ୍ଟାଚାର ଦେଖାଇ ମୁଣ୍ଡକୁ ନୁଆଇଁଲା, ଏ ଦ୍ୱିତୀୟ ବାଜିଟା ସେ ଗ୍ରହଣ କଲା କି ନାହିଁ ସେକଥା ବୁଝାଇଲା ନାହିଁ । ଆନାତୋଲେ ତାକୁ ସେପର୍ଯ୍ୟନ୍ତ ବି ତା ବୋତାମ ଧରି ଟାଣକରି ଧରି ରଖିଥାଏ । ଷ୍ଟିଭେନ୍‌ସ୍ ଦୋଲୋହଭ୍‌ର କଥା ବୁଝିପାରିଛି ବୋଲି ଯେତେ

ମୁଣ୍ଡ ହଲେଇ ହଲେଇ ଜଣାଇ ଦେଉଥାଏ, ସେତେବେଳେ ତଥାପି ଆନାତୋଲେ ଲାଗିପଡ଼ି ତାକୁ ଦୋଲୋହଭ୍‌ର କଥାକୁ ବୁଝାଇ ଲାଗିଥାଏ । ଜଣେ ତରୁଣ ଅଶ୍ୱାରୋହୀ ସୈନିକ ସଞ୍ଜରୁ ଏଯାକେ ଖାଲି ଜୁଆଖେଳ ହାରି ହାରି ବୁଲୁଛି, ସେ ସେହି ଉଞ୍ଚ ଝରକା ପାଖେ ତା ଘୋଡ଼ାକୁ ଠିଆ କରି ନଇଁପଡ଼ି ତଳକୁ ଅନାଇଁଲା, ସଡ଼କ ଉପରୁ ଝରକାଟା କେତେ ଉଚ୍ଚ ତାହା ତା ଆଖିରେ ଅନ୍ଦାଜ କରିନେଇ ସେ ଅବିଶ୍ୱାସରେ ଭ୍ରୂକୁଞ୍ଚିତ ହୋଇ କହିଲା "ଆରେ ବାପ୍‌ରେ—"

"ତୁନି ହୁଅନ୍ତୁ", ଦୋଲୋହଭ୍ କହିଲା ଆଉ ସେ ଟୋକା କର୍ମଚାରୀକୁ ଘୋଡ଼ା ଉପରୁ ଝରକା ବାଟେ ଘର ଭିତରକୁ ଟାଣିଲା । କର୍ମଚାରୀର ଗୋଡ଼ରେ ଘୋଡ଼ାଚଢ଼ା କେଞ୍ଚା ବନ୍ଧା ହୋଇଥାଏ, ସେହି ଅସୁବିଧାରେ ଅଖାଡୁଆରେ ପଡ଼ି ସେ ବିଚରା ଘର ଭିତରକୁ ଡେଇଁ ପଡ଼ିଲା ।

ମଦ ବୋତଲଟାକୁ ହାତ ପାଆନ୍ତିରେ ରଖାଗଲା । ଦୋଲୋହଭ୍ ଧୀରେ ଧୀରେ ହୁସିଆର୍‌ରେ ଝରକା ଦୁଆରବନ୍ଧ ଉପରେ ଠିଆ ହୋଇ ପଡ଼ିଲା, ଦୁଆରବନ୍ଧ ଦିପଟେ ଦିହାତ ଥୋଇ ସେ ଯେପରିକି ଦୁଆରବନ୍ଧ ଓସାରଟା ମାପିନେଲା । ତା'ପରେ ସେ ଆସ୍ତେ ବସି ପଡ଼ିଲା, ଦିହାତ ଛାଡ଼ିଦେଲା, ଟିକିଏ ଏପାଖ ସେପାଖ ଆଉଜି ପଡ଼ିଲା, ସେଉଠୁ ବୋତଲଟାକୁ ଉଠେଇ ନେଲା । ସେତେବେଳକୁ ଦିନ ଆଲୁଅ ଦାଉ ଦାଉ ପଡ଼ୁଥିଲେ ବି ଆନାତୋଲେ ଦିଟା ଜଳନ୍ତା ମହମବତି ଆଣି ଝରକା ଦୁଆର ମୁହଁରେ ଥୋଇଲା । ଦୋଲୋହଭ୍ କାମିଜ୍ ପିନ୍ଧି ବସିଥିଲା, ତାର ପିଠି ପାଖ ଆଉ ତାର ମଇଳା ମୁଣ୍ଡବାଳ ଉପରେ ଦି ପାଖରୁ ଆଲୁଅ ପଡ଼ୁଥାଏ । ସେମାନେ ସମସ୍ତେ ଝରକାକୁ ଘେରି ଠିଆ ହୋଇଥାନ୍ତି, ଆଗରେ ଇଂରେଜ ଜଣକ ଆଉ ପିଏରେ । ପିଏରେ ତୁନିତାନି ଠିଆ ହୋଇ ହସୁଥାଏ । ହଠାତ୍ ସେ ଦଳ ଭିତରୁ ଜଣେ ଛୁନିଆଁ ହୋଇ ଚମକି ଉଠି ସାମ୍ନାଆଡ଼କୁ ଝୁଙ୍କି ପଡ଼ିଲା, ତା ଉଦ୍ଦେଶ୍ୟ ସେ ଦୋଲୋହଭ୍‌ର କାମିଜ୍‌କୁ ଧରି ପକାଇବ ।

"ପାଗଳ ନା କଣ ? ଏତ ଆତ୍ମହତ୍ୟା କଲାଭଳି !" ସେ ଜଣକ କହିଲା । ସେ ଯେ ତା ସାଙ୍ଗମାନଙ୍କଠୁଁ ବେଶି ବୁଦ୍ଧିଆ ଏଥିରେ ସନ୍ଦେହ ନ ଥିଲା ।

ଆନାତୋଲେ ତାକୁ ଅଟକାଇଲା ।

"ହୁସିଆର୍, ଛୁଅଁ ନାହିଁ ତାକୁ ! ତୁମେ ତାକୁ ଚମକେଇ ଦେଲେ ସେ ପଡ଼ିଯିବ ଯେ ! ସେଇଠୁ କଣ ହେବ ? ହୋ, ଶୁଣୁଚ ?"

ଦୋଲୋହଭ୍ ତା ହାତ ଉପରେ ଭରଦେଇ ବସି ତା ଦେହର ଭାରସାମ୍ୟ ପରଖି ଥିଲା । ସେ ପଛକୁ ଅନାଇଁ ଦେଲା ।

"ଫେର୍ କେହି ମୋ ସଙ୍ଗେ ଲଗିଚନ୍ତି ? ଜାଣିଥା, ମୁଁ ଯାଇ ସଙ୍ଗେ ସଙ୍ଗେ ତାକୁ ଶତ୍ରୁଚଟାଂ କରିଦେବି", ସେ ଆସ୍ତେ କହିଦେଲା, ଟାଣ କରି ବି ଓଠକୁ ଚାପିଦେଲା । ସେଉଠୁ ସେ ସିଧା ହୋଇ ବସିଲା, ବୋତଲଟାକୁ ଗୋଟାଏ ହାତରେ ଧରି ପାଟିରେ ଲଗାଇଦେଲା, ମୁଣ୍ଡକୁ ପିଠି ଆଡ଼କୁ ଭଙ୍ଗିଦେଇ ଭାରସାମ୍ୟ ଠିକଣା ରଖିବ ବୋଲି ଆରହାତକୁ ଉପରକୁ ଟେକିଲା ।

ତାର ଜଣେ ଚାକର ଭଙ୍ଗା କାଚଗୁଡ଼ାକ ଉଠାଇ ନେଉଥିଲା, ସେ ହଲ୍‌ଚଲ୍ ବି ହେଲାନାହିଁ, ସ୍ଥିରହୋଇ ଠିଆହେଲା, ଦୋଲୋହଭ୍‌ର ମୁଣ୍ଡକୁ ଅନାଇଁ ରହିଲା ଯେ ଆଉ ତା ଆଖି ବୁଲେଇ ନେଲାନାହିଁ ।

ପାଟିକି ଟାଣ କରି ବୁଢା ଇଂରେଜ ଜଣକ ଅନ୍ୟଆଡ଼େ ମୁହଁ ବୁଲାଇ ଅନାଇଲା । ଏଇ ପାଗଳ ମୂର୍ଖାମିକି ଯେଉଁ ରୁଷ୍ ଲୋକଟି ବନ୍ଦ କରିବାକୁ ଚେଷ୍ଟା କରିଥିଲା, ସେ ଘରକଣରେ ଗୋଟିଏ ବସିବା ଆସନରେ ବସିପଡ଼ି କାନ୍ଥ ଆଡ଼କୁ ମୁହଁ କଲା ।

ପିଏରେ ତା ହାତରେ ଆଖିକି ଘୋଡ଼ାଇ ପକାଇଲା, ଭୟ ଓ ଆତଙ୍କର ଏକ ଅତି ଅସ୍ୱାଭାବିକ ଆଧିଭୌତିକ ହସରେ ତାର ବି ଓଠ ମେଲା ହୋଇ ରହିଥାଏ । ଦୋଲୋହଭ୍ ଠିକ୍ ସେମିତି ସେଇଠି ବସିଥାଏ, ଖାଲି ତା ମୁଣ୍ଡଟା ପିଠିଆଡ଼କୁ ଏତେ ତଳକୁ ଭାଙ୍ଗି ପଡ଼ିଥାଏ ଯେ ତା କାମିଜ୍‌ର ଅଣଓସାର କଲର ଉପରେ ତା ମୁଣ୍ଡବାଳ ଗୁଡ଼ାକ ପଡ଼ିଥାଏ । ଏଣେ ତାର ଡାହାଣ ହାତଟା ବୋତଲଟାକୁ ଧରି ଆହୁରି ଉପରକୁ ଉପରକୁ ଉଠୁଥାଏ, ଏତେ ଚାପ ପଡ଼ିବାରୁ ଟିକିଏ ଥରୁଥାଏ ବି । ବୋତଲଟା ପ୍ରାୟ ଖାଲି ହୋଇଯାଇଥାଏ ।

"କେତେ ବେଳ ନେଉଛି !" ପିଏରେ ଭାବୁଥାଏ ଅଧଘଣ୍ଟାଏ ହୋଇଗଲାଣି ଲଗୁଥାଏ । ହଠାତ୍ ଦୋଲୋହଭ୍ ଆହୁରି ପଛଆଡ଼କୁ ଘୁଞ୍ଚିହେଲା ଆଉ ତା ବାହୁ ଆହୁରି ଥରିଲା । ସେ ତ ଗୋଟାଏ ଢାଲୁ ଉପରେ ବସିଥିଲା ଏଇ ଥରଥରରେ ତ ତା'ର ଖସି ପଡ଼ିବା କଥା, ପ୍ରକୃତରେ ବି ଲାଗିଲା ଯେ ସେ ଖସିଯାଉଛି, ତା ହାତ ଆଉ ମୁଣ୍ଡ ଆହୁରି ଜୋର୍‌ରେ ଥରିଲା, ଝରକା ଦୁଆରବନ୍ଧକୁ ଧରିବ ବୋଲି

ତାର ଆର ହାତଟା ବି ଆପେ ଆପେ ଉଠିଗଲା କିନ୍ତୁ ସେ କାଠକୁ ଛୁଇଁଲା ବି ନାହିଁ । ପିଏରେ ଆଖି ବୁଜି ପକାଇଲା, ଗଣି ପକାଇଲା ସେ ଆଉ ଆଖି ଖୋଲିବ ନାହିଁ । କିନ୍ତୁ ଟିକିଏ ପରେ ଗୃହଆଡ଼େ ଚହଳ ପଡ଼ିଯିବାରୁ ସେ ଆଖିଫିଟାଇ ଅନାଇଁଲା, ସେ ଦେଖିଲା ଦୋଲୋହଭ୍ ଝରକା ଦୁଆର ମୁହଁରେ ଠିଆ ହୋଇଛି, ଶୁଖିଲାଟା ଦିଶୁଛି କିନ୍ତୁ ବିଜୟୀ ପରି ତା ଠାଣି ।

"ଏଇଟା ଖାଲି ହୋଇଗଲା", କହି ଦୋଲୋହଭ୍ ଷ୍ଟିଭେନ୍ସ୍ ଉପରକୁ ବୋତଲଟା ଫୋପାଡ଼ିଲା, ଷ୍ଟିଭେନ୍ସ୍ ସେଇଟାକୁ ଶୂନ୍ୟେଶୂନ୍ୟେ ଧରିପକାଇଲା । ଦୋଲୋହଭ୍ ଏକା କୁଦାକେ ଯାଇ ଘର ଭିତରେ, ତାଠିଁ ଘାରି କଡ଼ା ମଦଗନ୍ଧ ।

"ବାହାଦୁର୍ ! ଭାରି ବଢ଼ିଆ ହେଲା । ସାବାସ୍ ସାବାସ୍ । ଯାହାକୁ ଯେ କହିବ ବାଜି ଜିତା ।" ସମସ୍ତେ ଏକାସାଙ୍ଗରେ ପାଟିକରି ଉଠିଲେ ।

ଇଂରେଜ ଭଦ୍ରଲୋକଟି ଟଙ୍କା ଥଳି କାଢ଼ି ଦୋଲୋହଭ୍‌କୁ ବାଜିରଖା ଟଙ୍କା ଗଣି ଦେଉଥାଏ, ଦୋଲୋହଭ୍ ତୁନି ହୋଇ ଯାଇଥାଏ, ତା ମୁହଁରେ ଗମ୍ଭୀର ବିରକ୍ତିର ଭଙ୍ଗୀ ।

ପିଏରେ ଝରକାଆଡ଼କୁ ଧାଇଁଗଲା ।

କହିଲା, "ଆସ କିଏସେ ବାଜି ପକାଇବ ପକା ଯେ ମତେ ବି ତା କରି ଆସିବ ନାହିଁ ? କି ବାଜି ନ ପକାଇ କରି ଆସିବ । ଜଲ୍‌ଦି କର—ଆଣ ଏକ ବୋତଲ୍, ମୁଁ ବି ସେଇଆ କରିବି—"

ଦୋଲୋହଭ୍ ଅବଜ୍ଞାରେ କହିଲା "ଓଃ ।"

"କହୋ ତମକୁ ବାଇ ଲାଗିଗଲା କି ? ନା କଣ ? ତେମେ ଏକାମ କରିନାହିଁ । ଶୁଣୁଚ, ଗୋଟାଏ ସିଡ଼ି ଉପରେ ଠିଆହେଲେ ଯାହାଙ୍କ ମୁଣ୍ଡ ଚକ୍‌କର ମାରେ, ସେ କୁଆଡ଼େ ଏ କାମ କରିବେ ।" ଅନେକେ ଏକଥା କହିଲେ ।

"ମୁଁ କରିବି କରିବି, ଚଞ୍ଚଳ ମଦ ବୋତଲ୍ ଆଣ ।" ମାତାଲି ଭଳି ଟେବୁଲ୍ ଉପରେ ଜୋର୍‌ରେ ବାଡ଼େଇ ପିଏରେ୍ ପାଟିକଲା, ଆଉ କୁଦାମାରି ଝରକା ଉପରେ ଯାଇ ବସି ପଡ଼ିଲା । ତାର ଜଣେ

ସାଙ୍ଗ ତା ହାତକୁ ଧରି ପକାଇଲା କିନ୍ତୁ ପିଏରେ ଦେହରେ ଏତେ ବଳ ଯେ ସେ ତାକୁ ଦୂରକୁ ପେଲିଦେଲା ।

"ନାଇଁ ତୁମେ ସେମିତିରେ ପାରିବନାହିଁ," ଆନାତୋଲେ କହିଲା, "ରହ, ମୁଁ ତାକୁ ଠିକ୍ କରିଦେବି । ମୋ କଥା ଶୁଣ, ମୁଁ ବାଜି ପକାଉଛି, ତେବେ କାଲି ଆଗରୁ ନୁହେଁ, ଚାଲିଆସ ଏଥର, ଆମେ ପିବା ।"

"ହଉ, ପିବା ଚାଲ; ଆଗେ ମୁଁ ଆଉ ମିସ୍କା" ପିଏରେ ଭାଲୁ ଛୁଆକୁ କୁଣ୍ଢେଇ ଧରି ଭୂଇଁରୁ ଟେକିନେଇ ଘରସାକ ତାକୁ ଘେନି ଘୂରିଘୂରି ନାଚିଲା ।

# ଏକାଦଶ

ଆନ୍ନା ଶେଆରେରଙ୍କ ଭୋଜିଦିନ ସନ୍ଧ୍ୟାରେ ପ୍ରିନ୍ସ ବେସିଲ୍ ପ୍ରିନ୍ସେସ୍ ଡ୍ରୁବେତ୍ସ୍କୋଇଙ୍କ ଆଗରେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ସେକଥା ଭୁଲି ନଥିଲେ । ତାଙ୍କ ଅନୁରୋଧଟି ସ୍ୱୟଂ ସମ୍ରାଟଙ୍କ କାନରେ ପକା ଯାଇଥିଲା ଓ ବୋରିସ୍‌ର କପାଳ ଫିଟିଲା ଯେ ସେ ସେନାପତି ସେମେନଭ୍‌ସ୍କିଙ୍କ ସୈନ୍ୟବାହିନୀରେ ସବ୍ ଲେଫ୍‌ଟ୍‌ନେଣ୍ଟ ପଦପାଇ ରାଜକୀୟ ସୈନ୍ୟବାହିନୀରେ ପ୍ରବେଶଲାଭ କଲା, କିନ୍ତୁ ଯେତେ ଚେଷ୍ଟା କଲେ ବି ସେ ଆଉ କୁତୁଜଭଙ୍କ ଏଡ୍‌ଜିକଂ ପଦ ପାଇପାରିଲା ନାହିଁ । ଦିନାକେତେ ପରେ ପ୍ରିନ୍ସେସ୍ ମସ୍କୋ ଆସିଥିଲେ । ତାଙ୍କର ଧନୀ ବନ୍ଧୁବାନ୍ଧବ ଯେଉଁ ରୋସ୍ତଭ ପରିବାର, ସେଇଆଙ୍କୁ ଦେଖିବା ଲାଗି ସେ ଆସିଥିଲେ । ସେ ଆସିଲେ ସେଇ ରୋସ୍ତଭ ପରିବାରଙ୍କ ସଙ୍ଗେ ସେମାନଙ୍କ ଘରେ ରହନ୍ତି, ତାଙ୍କ ଗେହ୍ଲାପୁଅ ବୋରିସ୍ ତା ପିଲାଦିନର ବେଶିଭାଗ ସେଇଠି କଟାଇଛି । ସେ ଅଳ୍ପଦିନ ହେଲା ସାଧାରଣ ସୈନ୍ୟବିଭାଗରେ ସବ୍ ଲେଫ୍‌ଟେନେଣ୍ଟ ହୋଇ ପଦୋନ୍ନତି ପାଇ ସଙ୍ଗେ ସଙ୍ଗେ ରକ୍ଷୀ ବିଭାଗକୁ ବଦଳି ହୋଇ ଯାଇଥାଏ । ଅଗଷ୍ଟ ୧୦ ତାରିଖ ଦିନଠୁଁ ରକ୍ଷୀବିଭାଗର ସୈନ୍ୟମାନେ ସେଣ୍ଟ ପିଟର୍ସ୍‌ବର୍ଗ ସହରରୁ ଚାଲିଗଲେଣି, ବୋରିସ୍‌ର ପୋଷାକପତ୍ର ତିଆରି ହେଉ ହେଉ ସେ ମସ୍କୋରେ ଅଟକି ଯାଇଥିଲା, ସେ ଯାଇ ରାଜିଭିଲ୍‌ଓ ସହରରେ ରକ୍ଷୀବିଭାଗରେ ଯୋଗ ଦେବା କଥା ।

ରୋସ୍ତଭ୍ ପରିବାରଙ୍କ ଘରେ ଉତ୍ସବ ଲାଗିଥାଏ । ମା' ଓ ସାନଝିଅ ଦିହିଁଙ୍କ ନାଁ ନାତାଲିଆ । ସେଦିନ ତାଙ୍କର ନାଁ ଦିଆଯିବା ଦିନର ବାର୍ଷିକୀ ଉତ୍ସବ ହେଉଥାଏ, ପୋଭାର୍‌ସ୍କାୟା ସଡ଼କରେ ତାଙ୍କର ମସ୍ତବଡ଼ ଘର । ଦିନସାରା ସେହି ଘର ଆଗରେ ଘୋଡ଼ାଗାଡ଼ିମାନଙ୍କ ସୁଅ ଚାଲିଥାଏ, ଦଳ ଦଳ ହୋଇ ବନ୍ଧୁମାନେ ଓହ୍ଲାଉଥାନ୍ତି । ସେମାନେ ବହୁତ ଆଗ୍ରହୀ ଯେ ସେମାନେ ଶୁଭେଚ୍ଛା ଓ ସମ୍ବର୍ଦ୍ଧନା ଜଣାଇବେ । ବୈଠକ୍‌ଖାନାରେ

କାଉଣ୍ଟଙ୍କ ସ୍ତ୍ରୀ ଓ ତାଙ୍କ ବଡ଼ଝିଅ ତାଙ୍କୁ ପାଖେ୍ରଟି ନେଉଥାନ୍ତି । ବଡ଼ ଝିଅଟି ଭାରି ସୁନ୍ଦର ଝିଅଟିଏ, ଯୁବତୀ । ସେ ଘରକୁ ନୂଆ ନୂଆ ଲୋକ ବାରମ୍ବାର ଆସି ପହଞ୍ଚୁଥାନ୍ତି ।

କାଉଣ୍ଟେଙ୍କ ସ୍ତ୍ରୀଙ୍କ ବୟସ ପ୍ରାୟ ପଇଁତାଳିଶ ହେବ । ଚେହେରାଟି ପ୍ରାୟ ପୂର୍ବ ଦେଶୀୟ ଲୋକଙ୍କ ଭଳି, ପାତଳ ମୁହଁ, ବାରଟି ଛୁଆଙ୍କ ମା ହେଲେ ମୁହଁ ଯେମିତି କ୍ଳାନ୍ତ ଦିଶେ, ସେମିତି କ୍ଳାନ୍ତିର ଚିହ୍ନ ସେ ମୁହଁରେ । ତାଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ଯୋଗୁଁ ତାଙ୍କ କଥାଭାଷା ଓ ଚାଲିଚଳନ ଏପରି ଲାଗୁଥାଏ ଯେପରି ସେସବୁ ଜାଣି ଜାଣି ମପାଚୂପା । କିନ୍ତୁ ତହିଁରେ ତାଙ୍କଠି ଗୋଟିଏ ମର୍ଯ୍ୟାଦାବନ୍ତ ଠାଣି ବାରିହୋଇ ପଡୁଥିଲା ଯେଉଁଥିପାଇଁ ବଳେ ସେ ସମ୍ମାନ ପାଉଥିଲେ । ତାଙ୍କ ସଙ୍ଗରେ ଥିଲେ ପ୍ରିନ୍‌ସେସ ଡ୍ରୁବେଜକୋଇ, ସେ ତାଙ୍କ ପରିବାରର ଜଣେ । ସେ ଆଗନ୍ତୁକମାନଙ୍କୁ ଅଭ୍ୟର୍ଥନା କରିବାରେ ସାହାଯ୍ୟ କରୁଥିଲେ ଓ ଗପ ଜମେଇ ରଖୁଥିଲେ ।

ଏ ହସାଖିଆ ମପାଚୂପା ଅଭ୍ୟର୍ଥନାରେ ପରିବାରର ସାନ-ସାନମାନଙ୍କର ମନ ନଥିଲା, ସେମାନେ ସବୁ ଅନ୍ୟାନ୍ୟ ବଖରାରେ ଥିଲେ । କାଉଣ୍ଟ ତାଙ୍କ ବନ୍ଧୁମାନଙ୍କୁ ଅଭ୍ୟର୍ଥନା କରିବାକୁ ଆଗେଇ ଯାଉଥିଲେ ଆଉ ପୁଣି ଯାଉଥିଲେ ସେମାନଙ୍କୁ ଗାଡ଼ିରେ ବସେଇଦେବା-ପାଇଁ । ସେ ସମସ୍ତିଙ୍କି ଗୋଟି ଗୋଟି କରି ଅନୁନୟ କରୁଥିଲେ ରାତିରେ ଭୋଜିକି ଆସିବାକୁ ।

ବଡ଼ ସାନ ସମସ୍ତିଙ୍କି ସେ ଜଣ ଜଣ କରି କହୁଥିଲେ, "ବନ୍ଧୁ, ଆପଣ ଆସିଲେ ବୋଲି ମୁଁ କୃତାର୍ଥ ହେଲି ।

ମୋର ପ୍ରିୟତମା ପତ୍ନୀଙ୍କ ତରଫରୁ ଆପଣଙ୍କୁ ଅଶେଷ ଧନ୍ୟବାଦ । ଆପଣ ନିଶ୍ଚୟ ରାତି ଭୋଜିକି ଆସିବେଟି ? ନ ଆସିଲେ ମୁଁ ଭାରି ମନଦୁଃଖ କରିବି । ମୋର ସମଗ୍ର ପରିବାରବର୍ଗଙ୍କ ତରଫରୁ ମୋର ଆପଣଙ୍କୁ ଏକାନ୍ତ ଅନୁରୋଧ ଆପଣ ନିଶ୍ଚୟ ଆଜି ରାତିକି ଭୋଜିକି ଆସିବେ··· ।"

ତାଙ୍କର ଗୋଲଗାଲ ପ୍ରସନ୍ନ ଓ ପରିଷ୍କାରକରି ଖିଅରି ହୋଇଥିବା ମୁହଁରେ ସେହି ଏକା ଆନ୍ତରିକତାର ଭଙ୍ଗୀ ଖେଳାଇ ଖେଳାଇ, ସମସ୍ତିଙ୍କ ହାତରେ ହାତ ଘଷି ଘଷି, ପୁଣି ଶିଷ୍ଟାଚାର ଅନୁସାରେ ମୁଣ୍ଡ ନୁଆଁଇ ନୁଆଁଇ ବାରମ୍ବାର ସେହି ଏକା ବନ୍ଧା ଶବ୍ଦଗୁଡ଼ିକ ସେ ସମସ୍ତିଙ୍କୁ କହୁଥାନ୍ତି । ଯିବା ଲୋକଙ୍କୁ ତାଙ୍କ ଗାଡ଼ି ପାଖେ

ପହଞ୍ଚାଇ ଦେଇ ବଦା ହୋଇ ଆସି, ଗୃହଁପାଇ ନଥିବା ଲୋକଙ୍କ ପାଖକୁ ଯାଇ ଗୋଟାଏ ଚଉକ ଓଟାର ନେଇ ବସିପଡ଼ି, ଗୋଡ଼ ଦୋଟି ଆଗକୁ ଡେରିଦେଇ ଦମ୍ଭ କରି ପାଦ ମାଡ଼ି ରଖି, ଆଣ୍ଠୁ ଉପରେ ହାତ ଥୋଇ, ସେ ଏକର ସେକର ଦୋହଲୁଥାନ୍ତି ଓ କେତେବେଳେ ରୁଷ୍ ଭାଷାରେ, କେତେବେଳେ ଭଙ୍ଗା ଭଙ୍ଗା ଫରାସୀ ଭାଷାରେ ପାଗ ବିଷୟରେ, ସ୍ୱାସ୍ଥ୍ୟ ବିଷୟରେ, ଚଳନ୍ତି ଘଟନା ବିଷୟରେ ସେ ଆପଣା ମତାମତ କହୁଥାନ୍ତି । ସେ ବଳେଇ ବୁଝେଇ କହି ନ ପାରିଲେ ବି ସଂସାର ଅଭିଜ୍ଞ ଲୋକ ଯେମିତି ତତ୍ପରତା ସହିତ କଥା କହନ୍ତି, ସେମିତି କଥା କହୁଥାନ୍ତି । ସେ ଯେତେ କ୍ଳାନ୍ତ ହେଲେ ବି ବନ୍ଧୁମାନେ ଗଲାବେଳେ ତାଙ୍କୁ ନଇଁଚଢ଼ି ଦସ୍ତୁର କରିବେ ଏ ବିଷୟରେ ସେ ସବୁବେଳେ କ୍ଷିପ୍ର, ଯେପରିକ ଏକ ଦୃଢ଼ପ୍ରତିଜ୍ଞ ଲୋକ ଆପଣା ପାରୁ ପର୍ଯ୍ୟନ୍ତ କର୍ତ୍ତବ୍ୟ ସମ୍ପାଦନ କରିବାକୁ ବଦ୍ଧ ପରିକର । ସେ ବାରମ୍ବାର ଭୁରୁରେ ନିମନ୍ତ୍ରଣ ଜଣାଇଁ ଲଗିଥାନ୍ତି, ଆଉ ସବୁବେଳେ ତାଙ୍କ ଚନ୍ଦା ମୁଣ୍ଡରେ ରହିଯାଇଥିବା ବାଳଗୁଡ଼ିକୁ ହାତରେ ସାଉଁଳୁଥାନ୍ତି । ବେଳେବେଳେ ବୈଠକ୍‌ଖାନାକୁ ଆସିବା ବାଟରେ ସେ ବଡ଼ ଘରବାଟେ ଯାଇ ପୁଣି ଭଣ୍ଡାର ଘରବାଟେ ପଶି ଆଉ ଗୋଟିଏ ବଡ଼ ବଖରାକୁ ଯାଉଥାନ୍ତି, ସେଇଠାରେ ଖୋବ ଚକଚକ୍‌କାନ୍ଥ ଆଉ ସେଠି ଅଶୀଜଣ ଲୋକ ଖାଇ ବସିଲାଭଳି ଟେବୁଲ ପଡ଼ିଥାଏ । ଯେଉଁ ଗୃହକରମାନେ ଦାମୀ ଦାମୀ ଚନାବାସନମାନ ଆଣୁଥାନ୍ତି, ଫୁଲପକା ରେଶମ ଗାମୁଛା ଚଉଡେଇ ରଖୁଥାନ୍ତି, ସେମାନଙ୍କଆଡ଼କୁ ଟିକଏ ଟିକଏ ଚାହିଁ ଦେଇ ସେ ତାଙ୍କ ଘରର କାରପରଦାରଙ୍କୁ ଡାକପକାନ୍ତି । କାରପରଦାର ନାଁ ମିଛି ଭାସିଲଏଭିଚ୍, ସେ ଜଣେ ସଦ୍‌ବଂଶଜ ବ୍ୟକ୍ତି । ତାକ ନାଁ ମିତେଂକା ।

"ହେଇ ଶୁଣ ମିତେଙ୍କା, ଟିକଏ ସବୁ ଭଲ କରି କର, ହଁ ସେ ଠିକ୍ ହେଲା । ସେ ଠିକ୍ ହେଲା ।" ସେଇ ପ୍ରକାଣ୍ଡ ଟେବୁଲ ଉପରେ ଯେତେବେଳେ କିଛି ନୂଆ ଜିନିଷ ଆଣି ଥୁଆ ହେଉଥାଏ, ସେଥି ଆଡ଼କୁ ପରମ ପରିତୃପ୍ତିରେ ଅନାଇଁ ଅନାଇଁ କହୁଥାନ୍ତି—

"ଅସଲ ହେଉଚି ପରଷିବାଟା, ବୁଝିଲ ନାଁ, ପରଷିବାଟା ଅସଲ ବୁଝିଲ;—" କହିଦେଇ ଖୁସିହୋଇ ସେ ବୈଠକଖାନାକୁ ଲେଉଟି ଯାଆନ୍ତି ।

କବାଟ ଖୋଲି ଦେଇ ଗମ୍ଭୀର ସ୍ୱରରେ ଚାକର ଡାକିଲା "ମେରଆ ଲୁଓଭ୍ନା କାରାଗ୍ଭିନା ଓ ତାଙ୍କ ଝିଅ—"

"ହେ ଭଗବାନ୍, ମଲି ମୁଁ । ଆଉ ପାର ହେବନାହିଁ, ଯେଉଁ ଛଇଛଟକ ! ହଉ ଆଣ ତାଙ୍କୁ," କ୍ଳାନ୍ତ ସ୍ୱରରେ କାଉଣ୍ଟଙ୍କ ସ୍ତ୍ରୀ କହିଲେ, ଗୋଟାଏ ସୁନାର ନାସଦାନୀ ଭିତରୁ ନାସ ଟିପେ ନେଲେ, ସେ ନାସଦାନୀ ଉପରେ ତାଙ୍କ ସ୍ୱାମୀଙ୍କ ଛବି ଅଙ୍କା ହୋଇଥିଲା ।

ସେ ଘର ଭିତରକୁ ଆସିଲେ ଜଣେ ଡେଙ୍ଗୀ ମୋଟୀ ସ୍ତ୍ରୀଲୋକ, ଭାରି ଗର୍ବିଛ ଠାଣି । ତାଙ୍କ ପଛେ ପଛେ ଗୋଟିଏ ଗୋଲମୁହାଁ ହସ ହସ ଝିଅଟିଏ । ସେମାନେ ଆସୁ ଆସୁ ତାଙ୍କ ଆଗେ ଆଗେ ତାଙ୍କ ପିନ୍ଧା ପୋଷାକର ଖସ ଖସ ଶୁଭୁଯାଉଥାଏ ।

"ଆଃ । ପ୍ରିୟ କାଉଣ୍ଟେସ୍······କେତେ ଯୁଗ ହେଲା ଯେ ଦେଖା ହୋଇନାହିଁ······ଛୁଆଟି ବଡ଼ର ବେମାର ପଡ଼ିଥିଲା······ସେଥର ରାଜୁମୋଭସିଙ୍କ ବଲ୍‌ନାଚ ଭୋଜିଟି, ପୁଣି କାଉଣ୍ଟେସ୍ ଆପ୍ରାକସିନଙ୍କ ଘରେ······ମତେ ଏତେ ଭଲ ଲାଗିଥିଲା କହିଲେ ନସରେ······।"

ରେଶମ ପୋଷାକମାନଙ୍କର ଖସ୍ ଖସ୍ ଓ ଚଉକି ଓଟର ଓଟର ଶବ୍ଦରେ ଏଭଳି ଛିଣ୍ଡା ଛିଣ୍ଡା ପଦେ ପଦେ କଥା କାହିଁ ବୁଡ଼ିଯାଉଥିଲା । ତା' ପରେ ପୁଣି ଅଟକବାଯାକେ କୌଣସି ମତେ କଥାଭାଷା ଚାଲୁ ରଖା ହେଉଥିଲା । ଟିକିଏ କଥାଭାଷା ବନ୍ଦ ହେଲେ କଏ ହେଲେ ମେଲାଣି ନେବାକୁ ସୁବିଧା ପାଏ । ସେଉଠୁ ଭଦ୍ର ମହିଳାମାନେ ଉଠିପଡ଼ି ବିଦାୟ ମାଗନ୍ତି, ସେତେବେଳେ ବାରମ୍ବାର ସେହି ଧରାବନ୍ଧା କଥା କହନ୍ତି "ମୁଁ ଭାରି ଖୁସି ହେଲି······ମୋ ମା'ଙ୍କ ଦେହଟା ······କାଉଣ୍ଟେସ୍ ଆପ୍ରାକ୍‌ସିନା···" ଇତ୍ୟାଦି ଇତ୍ୟାଦି । ତାପରେ ଭଦ୍ର ମହିଳାମାନେ ପାଖ କୋଠରୀକି ଯାଇ ତାଙ୍କ କୋଟ ପେଲିସ୍ ଆଦି ପିନ୍ଧି ପକାନ୍ତି ଆଉ ବିଦା ହୋଇ ଚାଲିଯାଆନ୍ତି ।

ମହାରାଣୀ କାଥାରିନାଙ୍କ ଦରବାରରେ ସବୁଠୁ ଭଲ ଚେହେରାବାଲା ପୁରୁଷ ଥିଲେ କାଉଣ୍ଟ ବେଜୁହଭ । ସେତେବେଳକୁ ସେ ରୋଗ-ଶଯ୍ୟାରେ । ତାଙ୍କର ଅସୁସ୍ଥତା ଏଠି କଥାବାର୍ତ୍ତାର ଏକ ପ୍ରଧାନ ବିଷୟ ହୋଇଥାଏ ଓ ତା ସହିତ ତାଙ୍କ ଅନ୍ତର ପୁଅ ପିଏରେ କଥା ବି,

ଆନ୍ନା ସେଆରର୍ଙ୍କ ଘରେ କେମିତି [ସେ ସେଥର ସଞ୍ଜ ଗୋଟାକଯାକ ଅଭଦ୍ର ପରି ବକୁଥିଲା ସେଇ କଥା ।

"ସେ କାଉଣ୍ଟ୍‌ଙ୍କ ପ୍ରତି ମୋର ଭାରି ଦୟା ହୁଏ, ଏକେ ତ ସ୍ୱାସ୍ଥ୍ୟ ଏତେ ଖରାପ, ତହିଁରେ ଫେର୍ ଏମିତିଆ ପୁଅ ଯେ କି ସବୁବେଳେ ତାଙ୍କ ଦୁଶ୍ଚିନ୍ତାର କାରଣ ହୋଇଛି ।"

ନଜାଣିଲା ପରି ବାଁରେଇ ହୋଇ କାଉଣ୍ଟ୍ ସ୍ତ୍ରୀ କହିଲେ, କାହିଁକି ତାଙ୍କୁ ସେ ଦୁଶ୍ଚିନ୍ତାରେ ପକାଉଛି ?" ଘଟନାଟା ଅନ୍ତତଃ ପନ୍ଦର ଥର ସେ ଶୁଣି ସାରିଥିବେ ।

"ଆଜିକାଲି ପାଠ ପଢ଼େଇବାର ଏ ଯେଉଁ ନୂଆ ଢଙ୍ଗ ସବୁ ହୋଇଛି ନା, ତାର ଫଳ ଏୟେ । ଯେତେବେଳେ ଟୋକାଟା ବିଦେଶରେ ଥିଲା, ସେତେବେଳେ ଆପଣା ଉପରେ ଆପେ କର୍ତ୍ତା ହେବାକୁ ତାକୁ ଛାଡ଼ି ଦିଆ ହୋଇଥିଲା । ଆଉ ଏବେ କଣ ଶୁଣାଯାଉଛି ଯେ ସେ ଏମିତି ସବୁ କାଣ୍ଡ କରୁଛି ଯେ ପୁଲିସ ତାକୁ ହୁକୁମ୍ ଦେଇଛନ୍ତି ସେଣ୍ଟ୍ ପିଟର୍ସ୍‌ବର୍ଗ୍ ସହର ଛାଡ଼ି ଚାଲିଯିବାକୁ ।"

"ସତେ ?" କାଉଣ୍ଟ୍‌ଙ୍କ ସ୍ତ୍ରୀ କହିଲେ ।

ପ୍ରିନ୍‌ସେସ ଡ୍ରୁବେଜ୍‌କୋଇ କହିଲେ, "ସେ ପଡ଼ିଗଲା କୁସଙ୍ଗରେ । ପ୍ରିନ୍‌ସ ବେସିଲ୍‌ଙ୍କ ପୁଅ ଓ ଦୋଲୋହଭ୍ ବୋଲି ଜଣେ ଲୋକ ସଙ୍ଗରେ ପଡ଼ି ସେ ନାନା ଅସଭ୍ୟ ଖେଳ ସବୁ ଖେଳୁଛି । ଦୋଲହଭ୍‌କୁ ସାନ ଚାକିରିକି ଅବନତି କରିଦେଇ ପ୍ରାଇଭେଟ ପଦରେ ରଖା ହୋଇଛି, ବେଜୁହଭ୍‌ଙ୍କ ପୁଅକୁ ପଠାହୋଇଛି ମସ୍କୋ । ଆଉ ସେ ଯେଉଁ-ଆନାଟୋଲେ, ତା ବାପା କୌଣସିମତେ ଘଟନାଟାକୁ ଚାପି ଦେଇଛନ୍ତି, ତଥାପି ସେ ରାଜଧାନୀ ଛାଡ଼ି ଚାଲିଯାଉ ବୋଲି କୁଆଡ଼େ ତାଙ୍କୁ ବି କୁହାହୋଇଛି ।"

'ହେଲା ଯେ, କଣ ତାଙ୍କର ଅପରାଧ ?' କାଉଣ୍ଟ୍‌ଙ୍କ ସ୍ତ୍ରୀ ପଚାରିଲେ ।

"ସେଗୁଡ଼ାକ ପକ୍‌କା ଗୁଣ୍ଡାଗୁଡ଼ାକ, ବିଶେଷତଃ ସେ ଦୋଲୋହଭ୍ ଲୋକଟା । ଅଥଚ ସେ ମେରିଆ ଦୋଲହଭ୍‌ଙ୍କ ପୁଅ, ସେ ଏଡ଼େ ଚମତ୍କାର ଭଦ୍ରମହିଳା ! ଆପଣ ବିଶ୍ୱାସ କରିବେ ଯେ ତିନିହେଁ ମିଶି କୁଆଡ଼ୁ ଗୋଟାଏ ଭାଲୁ ଛୁଆ ଆଣି—ମୁଁ ଜାଣିନାହିଁ କୋଉଠୁ ସେଇଟାକୁ ଆଣିଲେ—ସେ ଭାଲୁ ଛୁଆଟାକୁ ଗୋଟାଏ ଘୋଡ଼ା ଗାଡ଼ିରେ ଚଢ଼େଇ ନେଇକରି ଗଲେ

ଜଣେ ଅଭିନେତ୍ରୀ ଘରକୁ ! ପୁଲିସ୍ ତାଙ୍କୁ ଗିରଫ କରିବାକୁ ଗ୍ଲହିଁଲ, ସେଉଠୁ ତାଙ୍କ ମୁଣ୍ଡରେ କଣ ପଶିଲା ଜାଣନ୍ତି ? ସେମାନେ ସେ ପୁଲିସ୍ କର୍ମଚ୍ଚାରୀଙ୍କୁ ଧରିପକାଇ ଭାଲୁ ପିଠିରେ ତାଙ୍କୁ ବାନ୍ଧିଦେଇ ଦେଲେ ଫୋପାଡ଼ି ମଇକା ନଈ ଭିତରେ, ମଣିଷଟା ଭାଲୁ ପିଠିରେ ବସିଥାଏ, ଭାଲୁଟା ପାଣିରେ ପହଁରୁଥାଏ ।"

କାଉଣ୍ଟ୍ ହସି ହସି ଗଡ଼ି ଗଲେ, କହିଲେ, "ହେ ଭଗବାନ୍ ମଣିଷଟା କେମିତି ଭୂତ ପରି ଦିଶୁଥିବ !"

"କିନ୍ତୁ ଏଇଟା ତ, ଭୟାନକ କଥା, ଏଥିରେ ହସିବା କଥା କିଛି ନାହିଁ," ଶ୍ରୀମତୀ କୁରାଗ୍ଭିନା କହିଲେ, ହସ ରୋକିବାକୁ ଯଦିଚ ଯେତେ ଚେଷ୍ଟାକଲେ ବି ସେ ନିଜେ ହସି ହସି ଫାଟି ପଡ଼ୁଥିଲେ ।

"ସେ ବିଚରାଟିକି ସେଥିରୁ ଉଦ୍ଧାର କରିବା ଭାରି କଷ୍ଟ ହୋଇଥିଲା ଆଉ କେଡ଼େ ଆଶ୍ଚର୍ଯ୍ୟ କଥା ଦେଖନ୍ତୁତ, କାଉଣ୍ଟ୍ ବେଜୁହଭଙ୍କ ପୁଅ ହୋଇ ଏମିତି ସବୁ ପାଗଳ ଖେଳରେ ସେ ମଜଜ ପାଉଛି ନା ! ଲୋକେ କହନ୍ତି କୁଆଡ଼େ ସେ ବହୁତ ପାଠ ପଢ଼ିଚି, ଭାରି ବୁଦ୍ଧିଆ ପିଲା । ବିଦେଶୀ ପାଠ ପଢ଼ିବା ଲାଭ ଏଇଆ । ତାର ଏତେ ସମ୍ପତ୍ତିବାଡ଼ି ସତ୍ତ୍ୱେ କେହି ତାକୁ ଆଖିରେ ଦେଖିପାରନ୍ତେ କି ଭଲହେଲା ! ଲୋକେ ଗ୍ଲହିଁଥିଲେ, ତାକୁ ମୋ ଘରକୁ ବୁଲେଇ ଆଣିବେ, ମୁଁ ମନାକଲି, ମୋ ଘରେ ବଡ଼ିଲଝିଅ ଅଛନ୍ତି ଲୋ ମା ।"

"କିଏ କହୁଚି ତାର ଏତେ ଧନସମ୍ପତ୍ତି ଅଛି ବୋଲି ?" ଶ୍ରୀମତୀ କୁରାଗ୍ଭିନାଙ୍କ ଆଡ଼କୁ ଆଉଜି ପଡ଼ି ଅଭିଆଡ଼ୀ ଝିଅମାନଙ୍କ ଆଡ଼କୁ ପିଠି ବୁଲେଇ ଦେଇ କାଉଣ୍ଟ୍ଙ୍କ ସ୍ତ୍ରୀ ପଚାରିଲେ, ଯୁବତୀ ଝିଅମାନେ ସଙ୍ଗେ ସଙ୍ଗେ ଏମିତି ଛଟା ଗାଳିଲେ, ଯେମିତି ତାଙ୍କ କାନରେ ଏସବୁ କିଛି ପଡ଼ୁନାହିଁ । କାଉଣ୍ଟ୍ଙ୍କ ସ୍ତ୍ରୀ କହିଗଲେ, "ବୁଢ଼ା କାଉଣ୍ଟଙ୍କର ଆଉ ତ କେହି ନାହାନ୍ତି ଖାଲି ତାଙ୍କ ଅଳିର ପୁଅମାନେ, ମୋ ଜାଣିବାରେ ପିଏରେ ତାଙ୍କର ଭିତରୁ ଜଣେ ।"

ପ୍ରିନ୍ସେସ୍ ଡ୍ରୁବେଟ୍ସ୍କୋଇ ଛଟପଟ ହେଉଥିଲେ ଯେ ସମସ୍ତଙ୍କ ଜୀବନର ସବୁ ଟିକି ନିଖି କଥା ତାଙ୍କୁ କେଡ଼େ ଭଲ ଜଣା, ସେଇଆ କେମିତି ସେ ସମସ୍ତଙ୍କୁ ଜଣାଇ ଦିଅନ୍ତେ, ଏଥର ଗୁମର ଫିଟେଇ ଦେଲେ । ଶାନ୍ତ ଦୃଢ଼ ସ୍ୱରରେ ସେ କହିଲେ,

"ଭିତର କଥାଟା ହେଉଛି ଯେ ବେଜୁହଭଙ୍କ ଦୁଷ୍ଟାମିପଣ ଜଣେଅଁଜଣା, ତାଙ୍କର ଏତେଟି ଅଛନ୍ତି ଯେ ସେ ତାଙ୍କ ସଂଖ୍ୟା ସୁମାର

ରଖି ପାରୁନାହାନ୍ତି, ତେବେ ପିଏରେ ତାଙ୍କର ସବୁଠୁ ବେଶୀ ଗେହ୍ଲା ।’’

‘‘ବେଶିଦିନ ନୁହେଁ ହେଲା ଗତ ବର୍ଷ ବ ସେ ବୁଢ଼ାଙ୍କର କ ଚମତ୍କାର ଚେହେରା ଥିଲା, ମୋ ଦେଖନ୍ତରେ ତାଙ୍କର ସବୁଠୁ ସୁନ୍ଦର ଚେହେରା ।’’ କାଉଣ୍ଟଙ୍କ ସ୍ତ୍ରୀ କହିଲେ ।

‘‘ଆଃ, ଆଜି କ’ଣ ସେ ଚେହେରା ଅଛି ! କେତେ ବଦଳି ଗଲଣି ତାଙ୍କ ରୂପ । ହଁ, ମନେ ପଡ଼ିଲା, ମୁଁ ଆପଣଙ୍କୁ କହିବାକୁ ବସିଥିଲି ଯେ ତାଙ୍କର ସବୁଯାକ ସମ୍ପତ୍ତିର ଉତ୍ତରାଧିକାରୀ ହେଉଛନ୍ତି ପ୍ରିନ୍ସ୍ ବେସିଲ୍, ତାଙ୍କ ଜୋଇଁ । ପ୍ରିନ୍ସ୍ ବେସିଲ୍ ତାଙ୍କ ଭାରିଜାଙ୍କ ବାଟେ ସେ ସବୁ ସମ୍ପତ୍ତିର ଉତ୍ତରାଧିକାରୀ କିନ୍ତୁ ବୁଢ଼ା ପିଏରେଙ୍କୁ ଭାରି ଭଲ ପାଆନ୍ତି । ସେ ପିଏରେର ପାଠପଢ଼ାରେ ବହୁତ ପଇସା ଖର୍ଚ୍ଚ କରିଛନ୍ତି, ଆଜି ତା ବିଷୟରେ ସମ୍ରାଟଙ୍କ ପାଖକୁ ଚିଠି ପଠାଇଛନ୍ତି । ତାଙ୍କ ଭିତରୁ କେଉଁ ଜଣଙ୍କ ତାଙ୍କର ସବୁ ଟଙ୍କା ପଇସା ପାଇବ, ସେ ବିଷୟ କାହାରିକି ଜଣା ନାହିଁ, ଏଣେ ବୁଢ଼ା ଯେ କୌଣସି ସମୟରେ ଆଖି ବୁଜିବେ । ଡାକ୍ତର ଲରେନ୍ ବି ସେଣ୍ଟ୍ ପିଟର୍ସବର୍ଗ୍ ସହରରୁ ଆସି ପହଞ୍ଚିଛନ୍ତି । କାଉଣ୍ଟଙ୍କ ସମ୍ପତ୍ତି ତ ଅକଳନ, ଚାଳିଶି ହଜାର ଚାଷୀ ତାଙ୍କର, ନଗଦ ଟଙ୍କାତ କୋଟି କୋଟି । ମୁଁ ଜାଣେ ଏଇଟା ସତ କଥା; ପ୍ରିନ୍ସ୍ ବେସିଲ୍ ନିଜେ ମତେ କହୁଥିଲେ । ବୁଢ଼ା ବେଜୁନୋଭଙ୍କ ବୋଉଙ୍କ ବାଟେ ମୁଁ ତାଙ୍କର ଦୂରର ବନ୍ଧୁ ବାନ୍ଧବ ସମ୍ପର୍କ, ବୋରିସ୍ ତ ତାଙ୍କ ଧରମ ପୁଅ ।’’ କଥା କହୁ କହୁ ଏତକ ବି ସେ ଯୋଡ଼ିଦେଲେ, ଜଣା ପଡୁଥିଲା ଯେପରି କି ଏତକ ଖବର ବି ଭାରି ଗୁରୁତ୍ୱପୂର୍ଣ୍ଣ ବୋଲି ସେ ଭାବୁଥିଲେ ।

ଶ୍ରୀମତୀ କୁରାଗିନ୍ କହିଲେ, ‘‘କାଲି ସଞ୍ଜରେ ପ୍ରିନ୍ସ୍ ବେସିଲ୍ ମସ୍କୋ ଆସିଛନ୍ତି, ମତେ ଲାଗୁଛି କଣ ସରକାରୀ ପରିଦର୍ଶନ କାମରେ ସେ ଆସିଛନ୍ତି ।’’

ପ୍ରିନ୍ସେସ୍ କହିଲେ, ଆଉ କାହାକୁ କହିବେ ନାହିଁ ଏଇ ଆପଣଙ୍କ ଆମ ଭିତରେ ମୁଁ କହୁଛି, ସେ ପରିଦର୍ଶନ କଥାଟା ଖାଲି ଗୋଟିଏ ପତିଆରା । ତାଙ୍କର କେବଳ ଆସିବା ଉଦ୍ଦେଶ୍ୟ କାଉଣ୍ଟ୍ ସିରିଲ୍ ଭ୍ଲାଡ଼ିମିରୋଭିଚ୍‌ଙ୍କୁ ଦେଖିବା, କାହିଁକି ନା ସେ ଖବର ପାଇଛନ୍ତି ଯେ କାଉଣ୍ଟ୍ ମରିଯିବେ ।’’ କାଉଣ୍ଟ୍ ଦେଖିଲେ ସେ ବୟସ୍କା ମହିଳାମାନେ

ତାଙ୍କ ଆଡ଼କୁ ନଜର ଦେଲେନାହିଁ, ସେଇଠୁ ସେ ସ୍ତ୍ରୀଅମାନଙ୍କ ସଙ୍ଗେ କଥାଭାଷା ହେଉଥାନ୍ତି । କହୁଲେ, "ଯାହା କହ ବଡ଼ ମଜାଦାର୍ କାହାଣୀଟା । ସେ ଲୋକଟା କେମିତି ଭୂତପରି ଦିଶୁଥିବ ! " ପୁଲିସ କର୍ମ-ଚାରୀଟି କେମିତି ହାତଗୋଡ଼ ଛାଟି ମୁଖଭଙ୍ଗୀ କରିଥିବ, ସେଇଆକୁ ସେ ଅଭିନୟ କଲେ ଆଉ ତାଙ୍କ ଗମ୍ଭୀର ସ୍ୱରରେ ହସି ହସି ଗଡ଼ିଲେ, ଯେଉଁ ଲୋକର ସବୁବେଳେ ଭଲ ଖାଇବାକୁ ଖୁବ୍ ମଦପିଇବାକୁ ଭାରି ସଉକ ବିଶେଷତଃ ଖୁବ୍ ମଦ ପିଇବାକୁ, ସେଭଳି ଲୋକ ଯେମିତି ଭାରି ବଡ଼ ପାଟିରେ ହୋ ହୋ ହୋଇ ହସେ ତାଙ୍କ ହସ ସେମିତି । ତାଙ୍କର ପ୍ରକାଣ୍ଡ ଦେହଟା ହସରେ ଥରି ଉଠିଲା ।

ଶ୍ରୀମତୀ କୁରାଗିନ୍ଙ୍କି ସେ ପଚାରିଲେ, "ଆପଣ ଫେର୍ ଖାଇବାକୁ ଆସିବେଟି ?"



# ଦ୍ୱାଦଶ

ତାଙ୍କ ପ୍ରଶ୍ନ ଉତ୍ତରରୁ କେହି ପାଟି ଫିଟେଇଲେ ନାହିଁ । କାଉଣ୍ଟେସ୍ ତାଙ୍କ କୁଣିଆଙ୍କ ଆଡ଼କୁ ଅନାଇଁ ମୁରୁକି ମୁରୁକି ହସିଲେ । କୁଣିଆ ପିବାକୁ ବାହାରିଲେ ତାଙ୍କୁ କେତେ ସନ୍ତୋଷ ଲାଗିବ, ସେ କଥା ସେ ଲୁଚେଇଲେ ନାହିଁ । ଝିଅଟି ପଚାରିଲା ପରେ ବୃଦ୍ଧାଣିରେ ତା ମା ମୁହଁକୁ ଅନାଇଁଲା, ଆଉ ତା ପୋଷାକର ଭାଙ୍ଗ ସଜାଡ଼ିଲା । ହଠାତ୍ ଶୁଭିଲା, ପାଖ ଘରବାଟେ ଯେମିତିକି ବହୁତ ଲୋକ ଏକାଠି ଦୌଡ଼ ଦୌଡ଼ ଗଲେ । ତାପରେ ଗୋଟାଏ ଚଉକି ଓଲଟି ପଡ଼ିଲା । ସାଙ୍ଗେ ସାଙ୍ଗେ ତେରବର୍ଷର ଝିଅଟିଏ ମସ୍ଲିନ୍ କନାର ଫ୍ରକ୍‌ର ଧଡ଼ିକି ଟେକିଧରି ଭୁସ୍‌କରି ସେ ଘରଭିତରକୁ ପଶି ଆସିଲା ଫ୍ରକ୍‌ରେ ସେ କଣ ଲୁଚେଇଥିଲା । ସେ ପଶିଆସି ଅଟକିଗଲା ; ଲାଗିଲା ଯେପରି ସେ ଦୌଡ଼ ଦୌଡ଼ ଯେଉଁଠିକି ଯାଇଥାନ୍ତା, ତାଠୁ ଆହୁରି ଦୂରକୁ ଚାଲିଆସିଛି । ତା ପଛେ ପଛେ ସେହିକ୍ଷଣି ଆସି ପହଞ୍ଚିଲେ ଜଣେ କଲେଜ ଛାତ୍ର, ତା କୋଟକଲର୍ ଗୋଲାପୀ ରଙ୍ଗର, ଜଣେ ରକ୍ଷୀବାହିନୀର ସୈନ୍ୟ, ପନ୍ଦର ବର୍ଷର ଝିଅଟିଏ, ଆଉ ଗୋଲ୍ ଫ୍ରକ୍ ପିନ୍ଧା ଗୋଟିଏ ସାନପିଲା, ତାର ଝକଝକ ଗୋଲାପି ମୁହଁ ।

କାଉଣ୍ଟ୍ ଠିଆ ହୋଇପଡ଼ି ଆଗ ଆସିଥିବା ଝିଅକୁ କୁଣ୍ଢେଇ ପକାଇଲେ । କହିଲେ, "ଆହା—ହେଇଟିତ, ଯାର ପାଇଁ ଆଜ ଏ ଭୋଜ ନିମନ୍ତ୍ରଣ—ଆଜ ଯାର ଭୋଜ ।"

କାଉଣ୍ଟେସ୍‌ଙ୍କ ସ୍ତ୍ରୀ ଗମ୍ଭୀର ହେବାକୁ ଚେଷ୍ଟାକରି କହିଲେ "ସବୁକଥା ପାଇଁ ଗୋଟାଏ ସମୟ ଅଛି । ତୁମେ ସବୁବେଳେ ତା ମୁହଁ ବଢ଼େଇ ଦଉଚ ଏଲିଆସ୍ ।" ଶ୍ରୀମତୀ ଯୁବରାଣୀ ତା ମା ଆଡ଼କୁ ବୁଲିପଡ଼ି କହିଲେ, "କେମିତି ଅଛନ୍ତି ମା ?···ବହୁତ ଆପୁଷ ହୋଇଥାଉ ।

ସାନ ଝିଅଟିର ଆଖି ଯୋଡ଼ିକ କଳାକଳା, ପାଟିଟା ଓସାରିଆ ତା ଗଢ଼ଣକୁ ସାଧାରଣ କୁହାଯିବ, ସୁନ୍ଦର ନୁହେଁ । ରୂପର ଅଭାବକୁ ପୂରଣ କରିଥିଲା ତାର ଆଶ୍ଚର୍ଯ୍ୟ ପ୍ରାଣପ୍ରାଚୁର୍ଯ୍ୟ । ଅଣନିଶ୍ୱାସୀ ହୋଇ ଧାଇଁ ଆସିଥିବାରୁ ଏ ପର୍ଯ୍ୟନ୍ତ ତା କାନ୍ଧ ଥରୁଥିଲା । ତଳକୁ ହୋଇ କଟା ହୋଇଥିବା ଫ୍ରକ୍‌ବାଟେ ବାହାରି ଦେଉଥିଲା । ତାର କୁଞ୍ଚୁକୁଞ୍ଚୁ ମୁଣ୍ଡବାଳ ଅର୍ଦ୍ଧ ଓଳିଆ ହୋଇ ମୁହଁଯାକ ବିଞ୍ଛି ହୋଇଥିଲା । ତାର ଖୋଲା ବାହା ଦୋଟି ସରୁ ସରୁ । ସେ ଏପର୍ଯ୍ୟନ୍ତ ମଧ୍ୟ ଲମ୍ବା ପାଇଜାମା ପିନ୍ଧିଥିଲା, ସେଥିରେ ଲେସ୍ ବନ୍ଧା । ତାର ସାନ ସାନ ପାଦରେ ସେ ଅଧା-ଯୋତା ପିନ୍ଧିଥିଲା । ଅର୍ଥାତ୍ ତାର ସେହି ବୟସ, ଯେତେବେଳେ ଝିଅଟିଏ ଆଉ ସାନ ପିଲା ନଥାଏ, ଅଥଚ ସେ ବଡ଼ିଯାଇଛି ବୋଲି ତାର ଜ୍ଞାନ ଆସି ନଥାଏ । ସେ ବାପା ହାତରୁ ଖସି ପଳାଇ ମା ଉପରେ ଅଜାଡ଼ି ହେଲା, ମା ଆକଟ କରୁଥାନ୍ତି ଶୁଣୁ ନଥାଏ । ମୁହଁ ନାଲି ପଡ଼ିଯାଇଥାଏ । କାଉଣ୍ଟେସ୍‌ଙ୍କ ଘୋରି ହେଲାର ଜରି ଝାଲରି ଭିତରେ ମୁହଁ ଲୁଚେଇ ସେ ହସି ହସି ଗଡ଼ିଲା । ଫକ୍ କାନଭିତରୁ ତା କଣ୍ଢେଇକି ବାହାର କରି କଣ୍ଢେଇ ବିଷୟରେ ଏକ ଅଛିଣ୍ଡା ଗପ ଆରମ୍ଭ କରିଦେଲା ଯେ ସେକଥାରେ ବାଇଶ ନଥାଏ ।

"ଦେଖୁଚ, ଏଇ ଖାଲି କଣ୍ଢେଇଟିଏ— ଏଇ ପରି ମିମି···" କହିଦେଇ ନାତାଶା ତା ମା ଆଣ୍ଠୁରେ ଆଉଜି ପଡ଼ି ଏମିତି ହସିଲା ଯେ ଶ୍ରୀମତୀ କାରାଗିନା ବି ନ ହସି ରହି ପାରିଲେ ନାହିଁ ।

କାଉଣ୍ଟ୍‌ଙ୍କ ସ୍ତ୍ରୀ କହିଲେ, "ହଉ ହଉ, ସେ କଦର୍ଯ୍ୟ ଜିନିଷଟାକୁ ନେଇ ପଳା" କହି ତାକୁ ଆସ୍ତେ ଠେଲିଦେଲେ, ଆଗନ୍ତୁକାଙ୍କୁ ବୁଝାଇଲେ, "ଏଇ ମୋ ସବା ସାନ ଝିଅ ।"

ନାତାଶା ହସି ହସି ତା ଆଖିରେ ଲୁହ ଭର୍ତ୍ତି ହୋଇ ଯାଇଥାଏ । ସେ ତା ମା ପୋଷାକତଳୁ ମୁହୂର୍ତ୍ତେ ଉପରକୁ ଆଗନ୍ତୁକାଙ୍କୁ ଅନାଇଦେଇ ପୁଣି ମୁହଁ ଲୁଚାଇଦେଲା । ଶ୍ରୀମତୀ କାରାଗିନାଙ୍କୁ ଲାଗୁଥାଏ ଯେ ସେ ପାରିବାରିକ ଦୃଶ୍ୟକୁ ପ୍ରଶଂସା କରିବା ଉଚିତ ହେବ, ସେ ତହିଁରେ ମିଶିବାକୁ ଚେଷ୍ଟା କରି ପଚାରିଲେ, ମିମି କିଏ କଲେ ସୁନା ? କହ ବା । ସେ କଣ ତୋ ଟିକି ଝିଅ ?" କିନ୍ତୁ ତାଙ୍କ ସ୍ୱର ଶୁଭୁଥାଏ ସାନ ମଣିଷକୁ

ଦୟା ଦେଖାଇଲା ଭଳି, ନାତାଶାକୁ ଭଲଲାଗିଲା ନାହିଁ, ସେ ହଠାତ ଗମ୍ଭୀର ହୋଇଯାଇ ତୁଣ୍ଡ ନ ଫିଟେଇ ତାଙ୍କୁ ଖାଲି ଅନାଇଁ ରହିଲା ।

ଅତିଥିମାନଙ୍କ ଭିତରେ ବୟସରେ ସାନସାନମାନେ ବି ଥିଲେ, ଯଥା ପ୍ରିନ୍‌ସେସ୍ ଡ୍ରୁବେଟ୍‌ସ୍କଇଙ୍କ ପୁଅ । ବୋରିସ୍, ସେ ସୈନ୍ୟବିଭାଗରେ ଜଣେ ତରୁଣ କର୍ମଚାରୀ, ନିକୋଲାସ, ସେ ଜଣେ ଛାତ୍ର; ସେ ରୋଷ୍ଟୋଭଙ୍କ ବଡ଼ପୁଅ; ପନ୍ଦର ବର୍ଷର ଝିଅ ସୋନିଆ, ସେ କାଉଣ୍ଟଙ୍କ ଝିଆରୀ ପେଟ୍ରୁଶା,—ସେ ପରିବାର ଭିତରେ ସବା ସାନ । ବଡ଼ ବଡ଼ମାନେ କଥାଭାଷା ହେଉଥିଲାବେଳେ ସେ ସାନ ସାନମାନେ ଗୋଟିଏ ଦଳହୋଇ ଏକାଠି ହୋଇଥାନ୍ତି । ସେମାନେ ତାଙ୍କ ଆହ୍ଲାଦ ଓ ଉନ୍ମାଦନାକୁ ଶିଷ୍ଟତାର ସୀମାଭିତରେ ନିୟନ୍ତ୍ରିତ କରି ରଖିବାପାଇଁ ଯେଉଁ ଉଦ୍ୟମ କରୁଥାନ୍ତି, ତା ବାରିହୋଇ ପଡୁଥାଏ । ସେମାନେ ବୈଠକ୍‌ଖାନା ପଛଆଡ଼େ ଅନ୍ୟାନ୍ୟ ବଖୁରିରେ ଥିଲେ, ସେଠୁ ବୈଠକଖାନାକୁ କିଛି ନ ଭାବି ନଚିନ୍ତି ହଠାତ୍ ଚାଲି ଆସିଥାନ୍ତି ସିନା, କିନ୍ତୁ ତାଙ୍କୁ ଅନାଇଁ ଦେଲା ମାତ୍ରେ ଜଣାପଡ଼ି ଯାଉଥିଲା ଯେ ବୈଠକ୍‌ଖାନାରେ ଥିବା ବଡ଼ବଡ଼ମାନେ ଯେଉଁ-ଭଳି ଚିତ୍ତବିନୋଦନ କରିଥିଲେ, ସେ ସାନସାନ ମାନେ ତାଠୁଁ ଆହୁରି ଚିତ୍ତାକର୍ଷକ ଉପାୟରେ ଚିତ୍ତବିନୋଦନ କରିଥିଲେ ଓ ସେମାନେ ନିଜ ନିଜ ଭିତରେ ଯେଉଁ ଯେଉଁ ବିଷୟରେ କଥାଭାଷା ହୋଇଥିଲେ, ସେସବୁ ବିଷୟ ଖାଲି ସହରର ଚଳନ୍ତି ଖବର, ପାଗ, ଆଉ କାଉଣ୍ଟେସ୍ ଆପ୍ରାକ୍‌ସିନ୍‌ଙ୍କ କଥା । ଏତିକ ଖାଲି ନୁହେଁ, ଯା ଛଡ଼ା ଅନ୍ୟାନ୍ୟ କଥା ବି ସେମାନେ ଗପିଥିଲେ । ସେମାନେ ପରସ୍ପରକୁ ଅନାଉଥାନ୍ତି, ସେ ଚାହାଣୀରେ ଉପଭୋଗ୍ୟ ଅର୍ଥର ଇଙ୍ଗିତ ଥାଏ, ସେମାନଙ୍କୁ ବହୁତ ହସ ମାଡ଼ୁଥାଏ, ତାକୁ ରୋକିବା ସେମାନଙ୍କ ପକ୍ଷରେ କଷ୍ଟସାଧ୍ୟ ହେଉଥାଏ ।

ଯେଉଁ ତରୁଣ ଯୋଡ଼ିକଙ୍କ ଭିତରୁ ଜଣେ ଛାତ୍ର ଓ ଆଉ ଜଣେ କର୍ମଚାରୀ, ସେ ଦୁହେଁ ଜୀବନଯାକ ପରସ୍ପରର ସଙ୍ଗୀ, ଦୁହେଁ ଏକାବୟସର, ଦୁହିଙ୍କ ଚେହେରା ସୁନ୍ଦର ଯଦିଓ ପରସ୍ପରଠୁଁ ବହୁତ ଭିନ୍ନ । ବୋରିସ୍ ଡେଙ୍ଗା, ଗୋରା, ତା ମୁହଁର ଓ ଦେହର ଗଢ଼ଣ ସୁଷମ । ନିକୋଲାସ୍‌ର ମୁଣ୍ଡବାଳ କୁଞ୍ଚୁକୁଞ୍ଚିଆ, ସେ ଟିକିଏ ବାଙ୍ଗର, ତା ମୁହଁର ଭାବ ସରଳ ଓ ଅକପଟ । ତା ଉପର ଓଠରେ ନୂଆ ନୂଆ ନିଶ ଗଜୁରୁଥିବାବେଳର କାଳିଚୁ ବର୍ଣ୍ଣ ଦିଶୁଥାଏ । ତାର ପ୍ରତି ଚାହାଣି, ପ୍ରତି ମୁଦ୍ରାରେ ଥିଲା

ବ୍ୟଗ୍ରତା ଓ ଉତ୍ସାହ । ସେ ଯେମିତି ଦେଖିଲା ଯେ ସେ ଯାଇ ବୈଠକଖାନା ବଖରା ଭିତରେ, ସେମିତି ସେ ଲଜ୍ଜିତ ହୋଇ ନାଲି ପଡ଼ିଗଲା । ସେଠି ସେ କଣ କହିବ କିଛି ତାର ମନେ ପଡ଼ିଲା ନାହିଁ । କିନ୍ତୁ ବୋରିସ୍ ସେପରି ହେଲାନାହିଁ, ହଠାତ୍ ସେଠି ପହଞ୍ଚିଯାଇ ତାକୁ ଯେମିତିକି ଅପ୍ରସ୍ତୁତ ଲାଗିଲା । ସଙ୍ଗେ ସଙ୍ଗେ ସେ ଅପ୍ରସ୍ତୁତ ଭାବ ବି ତାର କଟିଗଲା । ସେ ଟିକିଏ ହସେଇବାକୁ ଚେଷ୍ଟା କରି କହିଲା ଯେ ଶ୍ରୀମତୀ ମିମିଙ୍କ ସଙ୍ଗେ ପରିଚିତ ହେବାର ସମ୍ମାନ ତାକୁ ପାଞ୍ଚବର୍ଷ ହେଲା ମିଳି ସାରିଛି କିନ୍ତୁ ସେ ଦେଖୁଛି ଯେ ଅଳ୍ପଦିନ ହେଲା ଶ୍ରୀମତୀ ମିମି ଖୁବ୍ ବୁଢ଼ୀ ହୋଇଯାଇଛନ୍ତି ଓ ଏଥିରେ ସନ୍ଦେହ ନାହିଁ ଯେ ତାଙ୍କ ଦେହରେ ଫାଟ ହୋଇଗଲାଣି । ସେ ଏଭଳି କହୁ କହୁ ଟେରେଇ ଟେରେଇ ନାତାଶା ଆଡ଼କୁ ଅନାଇ ଦେଲା । ନାତାଶା ତା ସାନଭାଇ ପେଟ୍ରୁଶା ଆଡ଼କୁ ଅନାଇଁଥାଏ । ପେଟ୍ରୁଶା ହସି ହସି ଫାଟିପଡ଼ୁଥାଏ କିନ୍ତୁ ସେ ଶବ୍ଦ ନକରି ହସୁଥାଏ, ଆଖିକୁ ପ୍ରାୟ ବୁଜି ଦେଇ ଠିଆ ହୋଇ ଶବ୍ଦହୀନ ହସରେ ଥରୁଥାଏ । ନାତାଶାକୁ ଲାଗିଲା ଯେ ସେ ଆଉ ହସ ରୋକି ପାରିବ ନାହିଁ । ସେ ଚମକି ପଡ଼ି ଉଠି ତା ସାନ ସାନ ପାଦ ଯୋଡ଼ିକରେ ଯେତେ ଶୀଘ୍ର ପାରେ ସେତେ ଶୀଘ୍ର ସେ ଘରୁ ଦୌଡ଼ି ପଳେଇଲା ।

ବୋରିସ୍ ଉଠିଲା ନାହିଁ । ମୁରୁଙ୍କି ହସି କହିଲା, "ବୋଉ, ଗାଡ଼ିକି କହିଦେବି ଯେ ଆସିବ, ଆମେ ଯିବା ?"

"ହଁ ଯାଇ କହିଦେ", ତା ବୋଉ କହିଲା । ବୋରିସ୍ ତରତର ନ ହୋଇ ସେ ଘରୁ ନାତାଶା ପଛେ ପଛେ ଗଲା । ସାନ ପିଲାଟି ଯେମିତି ଦେଖିଲା ଯେ ସେ ବଡ଼େଁ ଚାଲିଗଲେ, ତାକୁ ଭଲ ଲାଗିଲା ନାହିଁ, ସେ ବି ସେମାନଙ୍କ ପଛେ ପଛେ ଡଗ ଡଗ ହୋଇ ଚାଲିଗଲା ।



# ତ୍ରୟୋଦଶ

ସାନ ସାନଙ୍କ ଭିତରୁ ଆଉ ରହିଲେ ନିକୋଲାସ୍ ଓ ସୋନିଆ । ତାଙ୍କ ସଙ୍ଗେ କାଉଣ୍ଟେସଙ୍କ ଝିଅ, ଓ ନାତାଶାଠୁଁ ଚାରିବର୍ଷ ବଡ଼ ଓ ବଡ଼ ବଡ଼ଙ୍କ ଭିତରେ ସୁମାର ହେଉଥିବା ରେସ୍ତଭ୍‌ଙ୍କ ବଡ଼ ଝିଅଟି ।

ସୋନିଆର ଆକାର ସାନ, ସୁଶ୍ରୀ ଝିଅଟିଏ, ମୁଣ୍ଡବାଳ କଳା, ଆଖି ଯୋଡ଼ିକ ଭାବପ୍ରବଣ ଓ ତଳତଳ, ଆଖିପତା ବାଳ ଲମ୍ବା ଓ କଳା । ତା ଦେହ ଅଳ୍ପ ଗହମ ବର୍ଣ୍ଣ—ଅଲଭ୍ ଫଳର ବର୍ଣ୍ଣ, ତା ତଣ୍ଟି ପାଖରେ ଓ ସରୁ ସରୁ ହାତରେ ବେଶି ବାରି ହୋଇ ପଡ଼ୁଥାଏ । କଳା ବାଳର ମୋଟା ବେଣୀଟିଏ ତା ମୁଣ୍ଡରେ ଦୁଇ ଫେର ହୋଇ ଗଣ୍ଠି ପଡ଼ିଥାଏ । ତାର ହାତ ହଲା, ପାଦ ହଲା, ଚାଲି, ସବୁଥିରେ ଗୋଟିଏ ସ୍ୱଚ୍ଛନ୍ଦ ଲାଳିତ୍ୟ ଥାଏ, ସେ ସବୁ ଦେଖିଲେ ଓ ତାର ଗୋଲ୍‌ଗାଲ୍ ନରମ ଦେହ ଓ ତା ସହିତ ତାର ଲାଜ ଲାଜ ଭଙ୍ଗୀକୁ ଦେଖିଲେ ମନେ ପଡ଼ି ଯାଉଥିଲା ଗୋଟିଏ ବିଲେଇ ଛୁଆଟିଏ, ଯେ ଗୋଟିଏ ସୁନ୍ଦର ବିଲେଇ ହୋଇ ବଢ଼ି ଉଠୁଛି । ବୈଠକ ଖାନାରେ ଚାଲିଥିବା କଥାଭାଷା ତାକୁ ଭଲ ଲାଗୁଛି ସତେକି ଏଇଆ ଜଣାଇ ଦେବାକୁ ସେ ହସୁଥାଏ । କିନ୍ତୁ ତାର ରେଶମି ଆଖି ପତାର ବାଳ ତଳୁ ସବୁବେଳେ ତା ଆଖି ଫେରେଇ ଫେରେଇ ନିକୋଲାସ୍ ଆଡ଼କୁ ଅନାଇଁ ଥାଏ । ସେ ସମ୍ପର୍କରେ ତାର ଭାଇ ହେବ । ବର୍ତ୍ତମାନ ଛାତ୍ର, କିନ୍ତୁ ଶୀଘ୍ର ସେ ଯିବ ସୈନ୍ୟ-ବାହିନୀରେ ମିଶିବା ପାଇଁ । ତା ପ୍ରତି ସୋନିଆର ଗାଢ଼ ଅନୁରକ୍ତିପୂର୍ଣ୍ଣ ପ୍ରଶଂସମାନ ଦୃଷ୍ଟି ବାରି ହୋଇ ପଡ଼ୁଥାଏ, ଲୁଚି ପାରୁ ନଥାଏ, ସାନ ସାନ ଝିଅମାନଙ୍କର ଏଭଳି ଅନୁରକ୍ତି ଓ ପ୍ରଶଂସା ଉପୁଜିବା ବିଶେଷତ୍ୱ । ଜଣା ପଡ଼ୁଥାଏ ଯେ ବିଲେଇ ଛୁଆଟି ଅଳ୍ପ ସମୟ ପାଇଁ ମୋଡ଼ି ହୋଇ ଥିରି ହୋଇ ରହି ଯାଇଛି ସିନା, ବୋରିସ୍ ଓ ନାତାଶାଙ୍କ ପଛେ ପଛେ

ସେ ଏ ବୈଠକ୍ ଖାନାରୁ ଯେମିତି ଚାଲିଯିବ, ସେମିତି ସେହି ଚମତ୍କାର ସମ୍ପର୍କୀୟ-ଭାଇ ସଙ୍ଗରେ ଡଆଁ ଡେଇଁ କରି ଖେଳ ଆରମ୍ଭ କରିଦେବ ।

କାଉଣ୍ଟ୍ ନିକୋଲାସ୍ ଆଡ଼କୁ ହାତ ଦେଖାଇଲେ । କହିଲେ, "ହେଁ ହେଁ, ତା ବନ୍ଧୁ ବୋରିସ୍ ତ ରକ୍ଷିବାହିନୀରେ ନିଯୁକ୍ତ ପାଇଛି, ସେ ବି ଜିଦ ଧରିଲାଣି ତା ସଙ୍ଗରେ ଯାଇ ସୈନ୍ୟବାହିନୀରେ ମିଶିବ । ସେ ମତେ ଛାଡ଼ି ଚାଲିଯିବ, ସୈନିକଟିଏ ହେବ, କଲେଜ ଛାଡ଼ିଦେବ, ଅଥଚ ଦେଖ, ଏଣେ ପ୍ରତ୍ନତତ୍ତ୍ୱ ବିଭାଗରେ ତା ପାଇଁ ନିଯୁକ୍ତିଟିଏ ରହିଛି । ଯାହାକୁ ଇ ମୁଁ କହେ ନିଜର ଅନୁରକ୍ତି ।"

"ଲୋକେ କଣ କହୁଛନ୍ତି । ଯୁଦ୍ଧ ଘୋଷଣା ହୋଇ ଗଲାଣି ବୋଲି ।"

"ଲୋକେ ତ କେବେଠୁଁ କହୁଛନ୍ତି, ଆହୁରି ଆହୁରି କହୁଥିବେ, ସେଇଠୁ ଆଉ ଏକଥା ଶୁଭିବ ନାହିଁ । ହଁ, ଯାହା କହୁଥିଲି, ପ୍ରକୃତ ଅନୁରକ୍ତି ଏଇଆ, ବନ୍ଧୁତା ହେଲେ ଏପରି ହୁଏ ମୁଁ ଜାଣେ । ସେ ଯାଉଛି ହସାର୍ ବାହିନୀକୁ ।"

ଶ୍ରୀମତୀ କାରାଗିନା କଣ କହିବେ କିଛି ଭାବି ପାରିଲେ ନାହିଁ, ଖାଲି ମୁଣ୍ଡ ହଲେଇଲେ ।

ନିକୋଲାସ୍ ନାଲି ପଡ଼ିଗଲା, ତାକୁ ଲାଗିଲା ସତେ ଯେମିତି କିଏ ସେ ଅପରାଧ କରି ଦେଇଛି ବୋଲି କିଏ ତା ବିରୁଦ୍ଧରେ ଅଭିଯୋଗ କରୁଛି, ନିଜର ସଫେଇ ଦେଲାଭଳି ସେ କହିଲା "ଆରେ ! ବନ୍ଧୁତା ଲାଗି କାହିଁକି ଯାଏ୍ମ ? ସୈନ୍ୟବିଭାଗରେ କାମ କରିବ ବୋଲି ମୋର ଭାରି ଇଚ୍ଛା ହେଲା, ସେହି ବୃତ୍ତି ମୁଁ ବାଛି ନେଲି; ସେଇଥି ପାଇଁତ ଯାଉଛି ।"

ସେ ସୋନିଆ ଆଡ଼କୁ ଓ ଆଉ ଝିଅଟି ଆଡ଼କୁ ଅନାଇଁଲା, ଦୁଇ ଝିଅଙ୍କ ଚାହାଣିରେ ତା କଥା ପ୍ରତି ସମର୍ଥନ ଫୁଟି ଉଠିଲା

କାଉଣ୍ଟ୍ କହିଲେ, "ପାଭ୍ଲୋଗ୍ରାଡ୍ ହସାର୍ ରେଜିମେଣ୍ଟ୍ର କର୍ଣ୍ଣେଲ ଅଛନ୍ତି ମୁନାଠ୍ । ସେ ଏଠି ଛୁଟିରେ ଅଛନ୍ତି । ଆଜି ରାତିରେ ଆମ ଘରେ ଖାଇବେ । ସେ ଛୁଟିରୁ ଫେରିଲାବେଳେ ନିକୋଲାସ୍କୁ ସଙ୍ଗରେ ନେଇ ଚାଲିଯିବେ ! ମୁଁ ଆଉ କଣ କହିବି ?" ସେ ନିଶ୍ଚିନ୍ତ ଭାବେ କାନ୍ଧ ଥରାଇଲେ । କଥାଟିକୁ ହାଲୁକା କରି ନେବାକୁ ସେ

ଚେଷ୍ଟା କଲେ କିନ୍ତୁ ପ୍ରକୃତରେ ସେଥିଲାଗି ତାଙ୍କ ମନରେ ଖୁବ୍ କଷ୍ଟ ହୋଇଥିଲା ।

"ବାପା, ମୁଁ ତ ଆପଣଙ୍କୁ ବାରମ୍ବାର କହୁଛି, ଆପଣ ମନାକଲେ ମୁଁ ସୈନ୍ୟବାହିନୀକୁ ଯିବ ନାହିଁ, ରହିବ । କିନ୍ତୁ ମୁଁ ନିଜେ ବୁଝୁଛି ଯେ ସୈନ୍ୟ ହେବା ଛଡ଼ା ମୋ ଦେଇ ଆଉ କିଛି ହେବନାହିଁ । କୂଟନୀତିଜ୍ଞଙ୍କ କର୍ମଚାରୀ ଯେ ହୁଏ, ତାକୁ ନିଜ ମନ କଥା ନିଜ ମତାମତ ଲୁଚାଇ ରଖିବାକୁ ପଡ଼େ । ମତେ ସେ ବିଦ୍ୟା ଜଣା ନାହିଁ......" କହିଦେଇ ନିକୋଲାସ୍ ସେ ଦୁଇ ଝିଅଙ୍କ ଆଡ଼କୁ ଗୋଟାଏ ମାରାତ୍ମକ ଚାହାଣୀ ଛାଟି ଦେଲା । ବିଲେଇ ଛୁଆଟି ଏକ ଦୃଷ୍ଟିରେ ତା ଆଖିକୁ ଅନାଇଁ ଥାଏ, ଲାଗୁଥାଏ ସତେ ଯେମିତି ସେ ଓର ଉଣ୍ଡୁଛି, କେମିତି ସୁଯୋଗ ପାଇଲା ମାତ୍ରେ ସେ ତାର ଖେଳ କଉତୁକରେ ଲାଗିଯିବ ।

"ଭଲ । ଭଲ ।" କାଉଣ୍ଟ କହିଲେ "କେମିତି ସଙ୍ଗେ ସଙ୍ଗେ ନିଆଁକ ଉଠୁଛି ଦେଖ । ବୋନାପାର୍ଟ ପରା ସେମାନଙ୍କ ମୁଣ୍ଡ ବିଗାଡ଼ୁଛି । ସେତ ଥିଲା ସୈନ୍ୟ ବିଭାଗର ସାଧାରଣ ଲେଫ୍‌ଟେନାଣ୍ଟଟାଏ, ସେଉଠୁ ଉଠି ଉଠି ହୋଇଗଲା ସ୍ୱୟଂ ସମ୍ରାଟ୍ । କେମିତି ତା ସମ୍ଭବ ହୁଏ ସେଇଆ ଜାଣିବାକୁ ଚାହେଁ ସମସ୍ତଙ୍କର ମନ । ହଉ ହଉ । ଭଗବାନ ତାଙ୍କର ମଙ୍ଗଳ କରନ୍ତୁ ।"

ଶ୍ରୀମତୀ କାରାଗୀନା ବିଦ୍ରୂପରେ ସ୍ମିତ ହସ ହସୁଥିଲେ, କାଉଣ୍ଟ ତା ନଜର କଲେନାହିଁ । ସେଇଠୁ ସେମାନେ ନେପୋଲିଅନ୍‌ଙ୍କ ବିଷୟରେ କଥାଭାଷା ହେଲେ । କାରାଗୀନାଙ୍କ ଝିଅ ଜୁଲିଆ ନିକୋଲାସ୍ ଆଡ଼କୁ ବୁଲିପଡ଼ି କହିଲା "ଆର୍‌ଖାରଭ୍‌ଙ୍କ ଘରେ ଯେଉଁ ଭୋଜି ହେଲା ଆପଣ ସେଠି ନଥିଲେ ବୋଲି ମୁଁ ଭାରି ଦୁଃଖିତ ହେଲି, ଆପଣ ନଥିଲେ ବୋଲି ମତେ କିଛି ଭଲ ଲାଗୁ ନଥାଏ ।" ସେ କିଳେଇ କିଳେଇ ସାନ ପାଟିରେ କହୁଥାଏ ।

ଯୁବକଟିର ମନ କୁଣ୍ଢେ ମୋଟ ହୋଇଗଲା, ସେ ତା ପାଖକୁ ଘୁଞ୍ଚିଗଲା; ସେମାନେ ଆଗ୍ରହୀ ହୋଇ ପରସ୍ପର ସଙ୍ଗେ ଶରଧାର ଘେନା ଘେନି କଲାଭଳି କଥାଭାଷା ଚଳେଇଲେ । ନିକୋଲାସ୍ତ ସୋନିଆ କଥା ଏକଦମ୍ ଭୁଲି ଯାଇଥାଏ, ସେ ବିଚାରୀ ଈର୍ଷାରେ ଜଳୁଥାଏ, ନାଲି ପଡ଼ିଯାଇ ଥରୁଥାଏ । ଥାଣି ଓଠାର ମୁରୁକି ହସିବାକୁ ଚେଷ୍ଟା କରୁଥାଏ ।

କଥା ମଝିରେ ସେ ବୁଲିପଡ଼ି ତା ଆଡ଼କୁ ଅନାଇଁଲା । ସୋନିଆର କଳା ଆଖିରୁ ପ୍ରେମ ଓ କ୍ରୋଧର ଚାହାଣିଟିଏ ତା ଆଡ଼କୁ ଝଲକି ଗଲା, ସୋନିଆ ଅତି କଷ୍ଟରେ ଲୁହ ଅଟକାଇ ସେ ଘରୁ ବାହାରି ଚାଲିଗଲା ।

ନିକୋଲାସ୍ ମନ ଖୁସିରେ ଯେଉଁ ମଉଜ ପ୍ରେମାଳାପରେ ଲାଗି ପଡ଼ିଥିଲା, ହଠାତ୍ ତାକୁ ବନ୍ଦ କରିଦେଲା । କଥାଭାଷା ବନ୍ଦ କରିବାକୁ ପ୍ରଥମ ସୁଯୋଗ ଆସିଯିବା ମାତ୍ରେ ସେ ସୋନିଆକୁ ଖୋଜିବାକୁ ଚାଲିଗଲା, ତା ଉଦ୍‌ବିଗ୍ନତା ପରିଷ୍କାର ହୋଇ ଦିଶୁଥାଏ ।

ସେମାନଙ୍କ ପଛକୁ ଅନାଇଁ ପ୍ରିନ୍‌ସେସ୍ ଦ୍ରୁବେଟ୍‌ସ୍କୋଇ କହିଲେ, 'ଟୋକା ଟୋକୀଙ୍କ ଗୁପ୍ତ କଥା ଗୁଡ଼ାକ କାଚ ପାତ୍ର ଭିତରେ ଲୁଚି ହୋଇ ରଖାହୋଇଥାଏ । ଯେଉଁମାନେ ଖାଲି ସମ୍ପର୍କରେ ଭାଇ ଭଉଣୀ, ସେମାନେ ପାଖକୁ ପାଖ ହେବା ଭାରି ବିପଦ ।"

କାଉଣ୍ଟଙ୍କ ସ୍ତ୍ରୀ କହିଲେ 'ହଁ'

ସେ ପଲକରେ ସବୁ ଆଲୁଅ ଓ ଜୀବନ ସତେଜତା ହଠାତ୍ ଅନ୍ତର୍ହିତ ହୋଇଗଲା । ତା ପରେ କାଉଣ୍ଟଙ୍କ ସ୍ତ୍ରୀ ଗୋଟାଏ ପ୍ରଶ୍ନର ଉତ୍ତର ଦେବାକୁ ଲାଗିଲେ, ଯେଉଁଟା ତାଙ୍କୁ କେହି ପଚାରି ନାହିଁ ଅଥଚ ସବୁ ବେଳେ ପ୍ରଶ୍ନଟା ତାଙ୍କ ମନରେ ରହିଛି । କହିଲେ, "ଏମାନେ ସୁଖରେ ରହିବେ, ଏଇଆ ଘଟିବ ଆମେ ଦେଖିବୁ ବୋଲି ତା ଆଗରୁ କେତେ କେତେ ମନସ୍ତାପ କେତେ ଦୁଃଖ କଷ୍ଟ ଆମକୁ ଭୋଗିବାକୁ ନ ହୁଏ ! ...ବର୍ତ୍ତମାନ ବି ମୋ ମନରେ ଆନନ୍ଦ ଯେତେ ଆଶଙ୍କା ତହିଁରୁ ବଳି । ଏ ବୟସଟା ପୁଅ ଝିଅଙ୍କ ଜୀବନରେ ଗୋଟାଏ ବିପଦ୍‌ଜନକ ଘାଟି ବେଳ ।"

"ପାଠପଢ଼ା, ଶିକ୍ଷା ଉପରେ ସବୁ ନିର୍ଭର କରେ ।"

"ଆପଣ ଠିକ୍ କହିଲେ । ଭଗବାନଙ୍କ ଦୟାରୁ ମୁଁ ସବୁଦିନ ମୋ ଛୁଆଙ୍କ ସଙ୍ଗେ ବନ୍ଧୁପରି ବ୍ୟବହାର କରିଛି" କାଉଣ୍ଟଙ୍କ ସ୍ତ୍ରୀ କହିଲେ । ଅନ୍ୟାନ୍ୟ ଅନେକଙ୍କ ପରି ତାଙ୍କର ବି ଏଇ ଭ୍ରମଥିଲା ଓ ସେ ଭାବିଥିଲେ ଯେ ସେ ତାଙ୍କ ପିଲାଙ୍କର ସବୁ ଗୁପ୍ତ କଥା ଜାଣନ୍ତି ।

କହିଲେ, "ମୁଁ ଜାଣେ, ମୋ ଝିଅମାନେ ମୋ ଆଗରେ ସବୁକଥା କହି ଦିଅନ୍ତି । ଆଉ ନିକୋଲାସ ଯଦି ବା କିଛି ଭୁଲ କରେ,—ପ୍ରତି ପୁଅପିଲା ଉଣା ଅଧିକେ କରନ୍ତି ତ,— ତା ହେଲେ ବି ସେଣ୍ଟ୍‌ପିଟର୍ସବର୍ଗରେ

ଟୋକାମାନେ ଯାହା ଯାହା କରୁଛନ୍ତି. ସେ କେବେ ସେତେ ଦୂରକୁ ଯିବନାହିଁ ।"

ଯେ କୌଣସି ଜଟିଳ ସମସ୍ୟାକୁ ସମାଧାନ କରିବାକୁ ହେଲେ କାଉଣ୍ଟ୍ ଖାଲି ଗୋଟିଏ ବାଗ ଜାଣନ୍ତି, ସେ ଭାବନ୍ତି ସବୁ ଠିକ୍ ଅଛି । ସେ କହିଲେ,

"ସେ' ପିଲାଏ ଖୁବ୍ ଭଲ ପିଲା । କଣ କରଯାଏ ? ସେତ ସୈନିକ ହେବ ବୋଲି ଜିଦ୍ ଧରିଛି,...ତମୁକୁ କଣ ଟିକଏ ପିଇବାକୁ ଦିଏଁ—"

ଶ୍ରୀମତୀ କାରଗିନା କହିଲେ, "ଆପଣଙ୍କ ନାତାଶାଟି କେଡ଼େ ଚମତ୍କାର ହୁଅଛିଏ !"

କାଉଣ୍ଟ୍ ନିଶ୍ଚିନ୍ତ ଭାବେ କହିଲେ "ହଁ, ସେ ଅବିକଳ ମୋର ପରି । ଆଉ କି ସୁନ୍ଦର ସ୍ୱର ! ସେ ମୋ ଝିଅ ହେଲେ ବି ମୁଁ କହୁଛି, ତାର ଅତି ଚମତ୍କାର ଗଳା, ସତେ ଯେମିତି ନିଜେ ଗାୟିକା ସାଲୋମୋନୀ । ଜଣେ ଇଟାଲୀୟ ସଙ୍ଗୀତ ଗୁରୁ ତାକୁ ଶିଖାଉଛନ୍ତି ।"

"କିନ୍ତୁ ଏଇଟା ଟିକଏ ଅତି ତରତରିଆ ହେଉନାହିଁ ? ତା ସ୍ୱର ଖରାପ ହୋଇଯିବ ଯେ ।"

"ତରତରିଆ କାହିଁକି ? ଆମ ମା ମାନେ ତ ବାର ତେର ବର୍ଷ ହେଲାବେଳେ ବାହା ହେଉଥିଲେ ।"

କାଉଣ୍ଟ୍‌ଙ୍କ ସ୍ତ୍ରୀ ଆନ୍ନା ମିଖାଇଲୋଭ୍ନାଙ୍କ ଆଡ଼କୁ ଅର୍ଥପୂର୍ଣ୍ଣ ସ୍ମିତ ହସ ହସି ଅନାଇଁ କହିଲେ "ଆଉ ଜାଣନ୍ତି ? ବୋରିସ୍‌କୁ ସେ ପ୍ରେମ କରେ, ପ୍ରେମରେ ପାଗଳ । ଆପଣଙ୍କୁ କେମିତି ଲାଗୁଛି ?" ପୁଣି ନିଜ ସଙ୍ଗେ ଯୁକ୍ତି କଲାପରି କହିଗଲେ, 'ମୁଁ ଯଦି ତା ଉପରେ ତୀବ୍ର କଟକଣା ଜାରି କରନ୍ତି, ଯଦି ମନା କରନ୍ତି ତାକୁ ତୁ ଦେଖିବୁନି ନାହିଁ, ତେବେ ଭଗବାନ ଜାଣନ୍ତି କଣ ହ'ନ୍ତା ତା ଫଳ (ସେ ବୋଧହୁଏ ଏଇଆ ବୁଝାଇବାକୁ ଚାହିଁଲେ ଯେ ଏମାନେ ଲୁଚି ଲୁଚି ଭେଟା ଭେଟି ହେବା ଗେଲ କରାକରି ହେବା ସମ୍ଭବ) କିନ୍ତୁ ମୁଁତ ସବୁ ଜାଣେ, ମତେ କିଛି ଅଛପା ନାହିଁ, ସେ ମତେ ସବୁ କହିଦିଏ । ମୁଁ ତା ମୁହଁ ବଡ଼େଇଛି ବୋଧହୁଏ, କିନ୍ତୁ ସେଇଟାହିଁ ସବୁଠୁଁ ଭଲ । ସତେ, ବିଶ୍ୱାସ କରନ୍ତୁ । ମୋ ବଡ଼ ଝିଅତ ବହୁତ କଟକଣାରେ ବଢ଼ିଥିଲା ।"

ଭେରା, ତାଙ୍କ ବଡ଼ଝିଅ, ସେ ବି ଜଣେ କାଉଣ୍ଟଙ୍କ ସ୍ତ୍ରୀ । ହସି ଦେଇ କହିଲା; "ପ୍ରକୃତରେ, ମତେ ଭିନ୍ନ ପ୍ରକାର ଶିକ୍ଷା ଦିଆ ହୋଇଥିଲା ।" କିନ୍ତୁ ତା ଚେହେରାକୁ ତା ହସ ଆଉ ବେଶୀ ସୁନ୍ଦର କରି ପାରିଲା ନାହିଁ, ତା ମୁହଁର ଭାବ ଦିଶିଲା ଅସୁନ୍ଦର, କୃତ୍ରିମ । ସେ ସୁନ୍ଦରୀ, ସାଧାରଣ ପ୍ରକାରେ ବୁଦ୍ଧିମତୀ, ଭଲ ଶିକ୍ଷା ବି ପାଇଥିଲା । ତା ସ୍ୱର ସୁନ୍ଦର । ସେ ଯାହା କହିଲା ସବୁ ସତ । ତଥାପି ତା କଥା ଶୁଣି ସେଠି ଥିବା ଲୋକେ ଆଶ୍ଚର୍ଯ୍ୟ ହୋଇ ଜଣେ ଆଉ ଜଣକ ମୁହଁକୁ ଅନାଇଁଲେ ।

ଶ୍ରୀମତୀ କାରାଗ୍ୱିନା କହିଲେ, "ଆମେ ସବୁବେଳେ ଗୃହୁଁ ଆମ ବଡ଼ ପୁଅ କି ବଡ଼ ଝିଅମାନଙ୍କୁ ଆମେ ଯେମିତି କଣ ଗୋଟାଏ ଆଶ୍ଚର୍ଯ୍ୟ ପ୍ରକାରେ ନାଁ ଡାକ୍ କରିଦେଉ ।"

କାଉଣ୍ଟ କହିଲେ, "ଭେରା ଗୋଟାଏ ଆଶ୍ଚର୍ଯ୍ୟ ପ୍ରକାରେ କଣ କରୁଛୁ ହେଉ ବୋଲି ମୋ ସ୍ତ୍ରୀ ଗୃହୁଁଥିଲେ, ଏଇଟା ମୁଁ ମାନୁଛୁ—ଯାହା ହେଉ, ଶେଷରେ ସେ କୃତକାର୍ଯ୍ୟ ହେଲେ ।" କହିଦେଇ କାଉଣ୍ଟ ପ୍ରଶଂସମାନ ଦୃଷ୍ଟିରେ ତାଙ୍କ ବଡ଼ ଝିଅକୁ ଅନାଇଁଲେ ।

ଶେଷରେ ଶ୍ରୀମତୀ କାରାଗ୍ୱିନା ଭାବିଲେ ସେ ଯିବେ, କହିଲେ ଯେ ଭୋଜି ବେଳକୁ ପୁଣି ଆସିବେ । ତାଙ୍କୁ କବାଟ ପାଖେ ଛାଡ଼ି ଦେଇ ଆସି କାଉଣ୍ଟଙ୍କ ସ୍ତ୍ରୀ କହିଲେ "ଓଃ ! କେଡ଼େ ଜଞ୍ଜାଳଟାଏ ମ ସେ ! ଭାବୁଥାଏ ସତେକି ଆଉ ଏଠୁ ଯିବନାହିଁ ।"



# ଚତୁର୍ଦ୍ଦଶ

ନାତାଶା ଧାଇଁ ପଳାଇ ପଳାଇ ବଗିଗୃହର ଦୁଆରମୁହଁରେ ଅଟକିଯାଇ ବୋରିସ୍ ଆସିବ ବୋଲି ଅପେକ୍ଷା କରିଥାଏ । ତେଣେ ବୈଠକ୍‌ଖାନାରେ କି କଥାବାର୍ତ୍ତା ଚାଲିଛି ତାକୁ ଶୁଣିବବୋଲି କାନ ଡେରିଥାଏ । ଶେଷରେ ସେ ଆଉ ଧୈର୍ଯ୍ୟଧରି ରହିପାରିଲା ନାହିଁ, ତଳେ ପାଦ କଚାଡ଼ି ଦୁମ୍ ଦୁମ୍‌କଲା, ତା ଅବସ୍ଥା କାନ୍ଦପକାଇଲା ଭଳି । ସେ ଭିତରୁ ଭିତରୁ ବୋରିସ୍‌ର ପାଦଶବ୍ଦ ଶୁଣିଲା । ବୋରିସ ଆଦୌ ତରି ତରି ନହୋଇ ଧୀରେ ସୁସ୍ଥେ ଚାଲି ଚାଲି ସେ କକ୍ଷର ଭିତରେ ପଶି ଆସୁଥାଏ । ନାତାଶା ସେ ଆସିବା ଆଗରୁ ଝଟକିନା ଗଛ ଲାଗିଥିବା କୁଣ୍ଡମାନଙ୍କ ପଛଆଡ଼େ ଲୁଚିଗଲା । ବୋରିସ୍ ବଗିଗୃହରେ ପଶି ଚାରିଆଡ଼କୁ ଅନାଇଲା, ଦେଖିଲା କେହି ନାହିଁ, ତା କୋଟ୍ ଅସ୍ତିନ୍‌ରେ ଧୂଳି ଲାଗିଥାଏ ସେ ଧୂଳିକୁ ଝାଡ଼ି ଦେଲା, ତାପରେ ସୁନ୍ଦର ମୁହଁଟିକୁ ଦେଖିବା ସକାଶେ ଗୋଟିଏ ଆଇନା ସାମନାରେ ଠିଆ ହେଲା ।

ନାତାଶା ଖୁବ୍ କୁତୂହଳୀ ହୋଇ ତାକୁ ଚାହିଁ ଦେଖୁଥାଏ, ଦେଖିଲା ବୋରିସ୍ ମୁରୁକି ମୁରୁକି ହସି ଦେଲା, ସେଉଠୁ ଆରପାଖ କବାଟ ଆଡ଼କୁ ଚାହିଁ, ନାତାଶା ଭାବିଲା ତାକୁ ଡାକିବ, ପୁଣି ଭାବିଲା, "ନାଇଁ ଥାଉ, ସେ ମତେ ଖୋଜୁ ଆଗ ।"

ସେ ଠିକ୍ ଆଖିରୁ ଅନ୍ତର ହେଉ ହେଉ ସୋନିଆ ସେ ବଗିଗୃହର ଭିତରକୁ ଧାଇଁ ଆସିଲା, ତା ଗାଲ ନାଲି ପଡ଼ିଥାଏ, ତା ଆଖିରୁ କେତେ କେତେ ଲୁହ ବୋହୁଥାଏ । ନାତାଶାର ମନ ହେଉଥାଏ, ସେ ତା ଉପରକୁ ଡେଇଁ ପଡ଼ନ୍ତା, କିନ୍ତୁ ଭାବିଲା, ଆଇମା କାହାଣୀରେ ଯେମିତି ଶୁଣିଛି— ଜଣେ ନିଜେ ଅଦୃଶ୍ୟ ହୋଇ ରହିଥିବ, ଅନ୍ୟମାନଙ୍କୁ ଦେଖୁଥିବ, ସେଇଆ ଭଲ, ସେ ତୁନି ହୋଇ ରହିଲା । ସୋନିଆ ବୈଠକଖାନା ଦୁଆରମୁହଁ

ଆଡ଼କୁ ସ୍ଥିର ଦୃଷ୍ଟିରେ ଅନାଇଁ ରହି ମନକୁ ମନ ସାନ ପାଟିରେ କଥା କହୁଥାଏ । ଧୀରେ ଧୀରେ ନିକୋଲାସ୍ ତା ପାଖକୁ ଆସିଲା ।

"ସୋନିଆ ! କଣ ହେଲା ! କାହିଁକି ତୁମେ…" ନିକୋଲାସ୍ କହିଲା ।

"କିଛି ନାହିଁ ।" ସେ କାନ୍ଦିପକାଇ କହିଲା "ମୋ ସଙ୍ଗରେ ଲାଗ ନାହିଁ, ପିଲେଟି !"

"ନାଇଁ କଣ ହୋଇଛି ମୁଁ ଜାଣେ ।"

"ଜାଣିଲେ ଜାଣିଲ, ଭଲ ହେଲା । ତୁମେ ତା ପାଖକୁ ଯାଅ ।"

"ଶୁଣ ସୋନିଆ, ପଦେ କଥା । ତୁଚ୍ଛାଟାରେ ଏଣୁ ତେଣୁ ଖିଆଲ୍ କରି ନେଇ ତୁମେ କାହିଁକି ନିଜକୁ ଆଉ ମତେ ହଇରାଣ କରୁଛ ?" ସେ ତା' ହାତ ଧରି ପକାଇଲା । ସୋନିଆଁର କାନ୍ଦ ବନ୍ଦ ହେଲା କିନ୍ତୁ ସେ ହାତ ଛଡ଼େଇ ନେଲାନାହିଁ । ନାତାଶା କାଠ ପରି ଠିଆହୋଇଥାଏ । ନିଶ୍ୱାସ ବନ୍ଦ କରିଥାଏ, ତା' ଆଖି ଜକ ଜକ କରୁଥାଏ । "କଣ ହେବକି ?" ସେ ଭାବୁଥାଏ ।

"ସୋନିଆଁ, ଏ ସାରା ଦୁନିଆଁ ମୋ ଆଗରେ ତୁଚ୍ଛ, ମୋ ଆଖିରେ ତୁମେହିଁ ସବୁ, ମୁଁ ତା' ପ୍ରମାଣ କରିଦେବି ସୋନିଆଁ ।"

"ତୁମେ ସେମିତି କଥା କହିଲେ ମୋ ମନ କଷ୍ଟ ହେଉଛି—"

"ହଉ, ନ କହିବି ତେବେ । ଖାଲି, ମତେ କ୍ଷମାକର," ନିକୋଲାସ୍ ତାକୁ ଭିଡ଼ିନେଇ ତା' ଓଠରେ ଚୁମ୍ବନ କଲା ।

"ବାଃ, ଭାରି ବଢ଼ିଆ" ନାତାଶା ମନକୁ ମନ କହୁଥାଏ । ନିକୋଲାସ୍ ଓ ସୋନିଆଁ ଚାଲିଗଲେ, ତାଙ୍କ ପଛେ ପଛେ ଖଣ୍ଡେଦୂରରେ ଥାଇ ଦୁଆରମୁହଁଯାକେ ନାତାଶା ଗଲା, ବୋରିସ୍‌କୁ ଡାକିଲା । ତା' ଆଖିରେ ରହସ୍ୟମୟ ଦୁଷ୍ଟାମି ଫୁଟି ଉଠିଥାଏ, ସେ ଡାକିଲା "ଆଇଲ ଏଠିକି ଟିକଏ ବୋରିସ୍, ତୁମକୁ ଗୋଟାଏ କଥା କହିବି, ଏଇଠିକି ଆସ —ଏଇଟି ଠିଆ ହୁଅ ।" ସେ ବୋରିସ୍‌କୁ ସେହିଠିକି ନେଇଗଲା ଯେଉଁଠି କୁଣ୍ଡର ଗଛମାନଙ୍କ ଉହାଡ଼ରେ ଲୁଚି ରହିବାକୁ ସେ ସ୍ଥାନ ପାଇଥିଲା । ବୋରିସ୍ ହସି ହସି ତା ପଛେ ପଛେ ଗଲା ।

"ମତେ କଣ କହିବ କହ ।"

ନାତାଶା ନାଲି ପଡିଗଲା, ଉଦ୍‌ବିଗ୍ନ ହୋଇ ଘରଆଡ଼କୁ ଅନାଇଁଲା । ତା କଣ୍ଢେଇଟି ଗୋଟିଏ କୁଣ୍ଡରେ ପଡ଼ିଥାଏ, ତାକୁ ଦେଖି ତାକୁ ଉଠେଇ ନେଇ ବୋରସ୍ ଆଡ଼କୁ ବଢ଼ାଇ ଦେଇ କହିଲା, "ମୋ କଣ୍ଢେଇକ ଚୁମା ଦିଅ ।"

ତାର ଉତ୍ସୁକ ଟିକି ମୁହଁଟି ଆଡ଼କୁ ବୋରସ୍ ଅନାଇଁ ରହିଲା ।

"କଣ୍ଢେଇକି ଚୁମା ଦେବ ନାହିଁତ ? ତା ହେଲେ ଆସ ଏଣିକି—"
"ସେ ବୋରସ୍‌କୁ ଓଟାରି ଓଟାରି ଯେଉଁଠି ଗଛ ଗୁଡ଼ାକ ଅଧିକ ଗହଳ ହୋଇଥିଲା, ସେଠିକି ନେଇ କଣ୍ଢେଇଟିକୁ ଫୋପାଡ଼ି ଦେଇ କହିଲା, "ଆହୁରି ପାଖକୁ ଲାଗି ଆସ, ଆହୁରି ପାଖକୁ·····" ସେ ବୋରସ୍‌ର କୋଟ୍‌କୁ ମୁଠେଇ ଓଟାରିଲା, ତାପରେ ଉତ୍ତେଜନାରେ ନାଲି ପଡ଼ିଯାଇ କାନ୍ଦ କାନ୍ଦ ହୋଇ ଖୁବ୍ ଧୀର ଗଳାରେ କହିଲା

"ଏଥର, ମତେ ଚୁମା ଦେବ ?"

ବୋରସ୍ ନାଲି ପଡ଼ିଗଲା । "କେଡ଼େ ବିଚିତ୍ର ପିଲାଟିଏ ତୁମେ", ତା ଉପରକୁ ନଇଁପଡ଼ି ବୋରସ୍ କହିଲା; କିନ୍ତୁ ସେ କଣ କରିବ ଠିକଣା କରି ନଥାଏ ।

ଗୋଟାଏ ଡିଆଁ ମାରି ସେ ଗୋଟାଏ କୁଣ୍ଡର ଦାଢ଼ ଉପରେ ଠିଆ ହୋଇଗଲା, ତାର ସାନ ସାନ ଫୁଙ୍ଗା ବାହା ଯୋଡ଼ିକ ସେ ବୋରସ୍‌ର ବେକରେ ଗୁଡ଼ାଇ ଦେଲା, ମୁଣ୍ଡକୁ ପଛକୁ ଝାଙ୍କି ବାଳକୁ ପଛକୁ ଘୁଞ୍ଚିଦେଇ ସେ ବୋରସ୍‌ର ଓଠରେ ଚୁମା ଦେଲା, ତାପରେ ଚଞ୍ଚଳ ତଳକୁ ଓହ୍ଲେଇ ପଡ଼ି ସେ ଶୀଘ୍ର ପଳାଇଯାଇ କାଠ କୁଣ୍ଡର ଆର ପଟେ ଠିଆ ହୋଇ ପଡିଲା, ମୁଣ୍ଡକୁ ତଳକୁ ଝୁଲାଇଥାଏ ।

"ନାତାଶା, ମୁଁ ତମକୁ ଭଲ ପାଏ, ତୁମେ ତ ଜାଣିଛ । କିନ୍ତୁ·····"

"ତୁମେ ମତେ ଭଲ ପାଅ ?"

"ହଁ, କନ୍ତୁ ଦେଖ, ସେମିତି ଆଉ କହିବ ନାହିଁ। ଗ୍ଚାରିବର୍ଷ ଗଲେ, ହଁ ସେଇଠୁ ତୁମୁକୁ ବଡ଼ ହେବ ବୋଲି ମୁଁ ତୁମ ବାପ ମାଙ୍କୁ ତୁମକୁ ମାଗିବି……"

ନାତାଶା ଠିଆ ହୋଇ ଭାବୁଥାଏ। ଆଙ୍ଗୁଠିରେ ଗଣି ଗଣି କହିଲା, "ତେର ବର୍ଷ, ଚଉଦ ବର୍ଷ, ପନ୍ଦର ବର୍ଷ, ଷୋଳ ବର୍ଷ। ବେଶ୍। ଜାଣିଥା, ପ୍ରତିଜ୍ଞା କଲ!" ଆନନ୍ଦକର ବିଶ୍ୱାସରେ ତା ମୁହଁଟି ଉଜ୍ଜ୍ୱଳ ହୋଇ ଉଠିଲା

"ହଁ, ପ୍ରତିଜ୍ଞା କଲି।" ବୋରିସ୍ କହିଲା।

"ଚିରକାଳକୁ—ଚିରକାଳକୁ—ଇହକାଳ ଆଉ ପରକାଳ ସବୁ କାଳକୁ—" ପିଲାଟି କହି ଯାଉଥାଏ। ସେ ବୋରିସ୍‌ର ହାତ ଧରି ତାକୁ ବୈଠକ ଖାନାକୁ ନେଇଗଲା। ସେ ଖୁବ୍ ସୁଖୀ ଓ ସନ୍ତୁଷ୍ଟ ଥାଏ।



# ପଞ୍ଚଦଶ

କାଉଣ୍ଟଙ୍କ ସ୍ତ୍ରୀ କ୍ଳାନ୍ତ ହୋଇ ପଡ଼ିଥାନ୍ତି, ଆଉ ଶେଷରେ କହି ଦେଇଥାନ୍ତି ଯେ ସେ ଆଉ କାହାରି ସଙ୍ଗେ ଦେଖା କରି ପାରିବେ ନାହିଁ । ସେ ତାଙ୍କ ଚାକରକୁ କହିଥାନ୍ତି ଯେ, ଯେ ତାଙ୍କ ପାଖକୁ ଆସିବ, ତାକୁ ସେ କହି ଦେବ ଭୋଜିଖାଇ ଆସିବ ବୋଲି । ସେ ଚାହୁଁଥିଲେ ଯେ ପ୍ରିନ୍‌ସେସ୍ ଡ୍ରୁବେଟସ୍କୋଇଙ୍କ ସଙ୍ଗେ କେତୋଟି ମିନିଟ ହେଲେ କଥାଭାଷା ହୁଅନ୍ତେ କାରଣ ପ୍ରିନ୍‌ସେସ୍ ଅଳ୍ପଦିନ ହେଲା ସେଣ୍ଟ ପିଟସ୍‌ବର୍ଗରୁ ଫେରିଥାନ୍ତି, ସେଠିକା ଖବର କହିବେ, ପୁଣି ସେତ ତାଙ୍କର ପିଲାଦିନର ସାଙ୍ଗ ।

କାଉଣ୍ଟେସଙ୍କ କଡ଼କ ଆପଣା ଚୌକିଟି ଆହୁରି ପାଖକୁ ଟାଣି ନେଇ ପ୍ରିନ୍‌ସେସ୍ କହିଲେ, "ତୁମକୁ କିଛି ଲୁଚେଇବି ନାହିଁ । ଆମ ପୁରୁଣା ସାଙ୍ଗମାନଙ୍କ ଭିତରୁତ ଆଉ ବେଶି ଲୋକ ଏ ସଂସାରରେ ନାହାନ୍ତି, ତେଣୁ ମୋ ପ୍ରତି ତୁମର ଶ୍ରଦ୍ଧା ମୋ ପକ୍ଷରେ ଆହୁରି ମୂଲ୍ୟବାନ୍ ।" ସେଇଠୁ, କାଉଣ୍ଟେସ୍‌ଙ୍କ ଝିଅ ଭେରା ଆଡ଼କୁ ଅନାଇଁ ଦେଇ ପ୍ରିନ୍‌ସେସ୍ ଚୁପ ହୋଇଗଲେ । କାଉଣ୍ଟେସ୍ ତାଙ୍କ ସାପୁଲିକୁ ଚିପି ଦେଲେ ।

କହିଲେ, "ଭେରା ଲୋ, ତୋର ବୁଝିବା ଦରକାର ମୁଁ ଭାବୁଛି ।" ଜଣା ପଡ଼ୁଥାଏ ଯେ ସେ ତାଙ୍କ ବଡ଼ ଝିଅକୁ ସୁଖ ପାଉ ନଥାନ୍ତି, କହିଲେ "ଆଲେ ବୁଝୁନୁ, ତୁ ଏଠି ରହିବାଟା ମୁଁ ପସନ୍ଦ କରୁନାହିଁ, ଯା ଅନ୍ୟମାନେ ଯେଉଁଠି ଅଛନ୍ତି, ତାଙ୍କର ପାଖକୁ ଯା ।"

"ମତେ ଯଦି ଏତିକି ଆଗରୁ କହିଥାନ୍ତୁ ନା ବୋଉ, ଏତେ ବେଳକୁ ମୁଁ ଯାଇ ସାରନ୍ତିଣି" ଭେରା କହିଲା, ସେ ବିରକ୍ତ ହେଲା ବୋଲି ଦେଖାଇ ହେଉ ନଥାଏ ସିନା, ତା ସ୍ୱରରୁ ତାଚ୍ଛିଲ୍ୟ ବାରି ହୋଇ ପଡ଼ୁଥାଏ ।

ସେ ଆଉ ବଖଣ୍ଡକୁ ଚାଲିଗଲା । ସେଠି ଦେଖିଲା ଯୋଡ଼ାଏ ଝରକା ପାଖେ ପୁଅ ଝିଅ ହୋଇ ଯୋଡ଼ାଏ ଯୋଡ଼ାଏ ବସିଛନ୍ତି, ଗୋଟିକ ଠିକ୍ ଆଉ ଯୋଡ଼ିଟି ଭଳି । ସେମାନଙ୍କ ଆଡ଼କୁ ବ୍ୟଙ୍ଗ ଭଦ୍ର ପ୍ରସନ୍ନ ଭଙ୍ଗୀରେ ଅନାଇଁ ଅନାଇଁ ସେ ଅଟକି ଗଲା । ନିକୋଲାସ ସୋନିଆ କଡ଼ରେ ବସି ପଦ୍ୟ ରଚନା କରୁଥାଏ, ଜୀବନରେ ସେଇ ତାର ପଦ୍ୟ ଲେଖିବାକୁ ପ୍ରଥମ ଚେଷ୍ଟା । ବୋରିସ୍ ନାତାଶା ଫୁସୁରୁ ଫାସୁରୁ ହେଉଥିଲେ, ଭେରାକୁ ଦେଖି ତୁନି ହୋଇଗଲେ । ଯୋଡ଼ିକ ଯାକ ସାନ ସାନ ଝିଅଙ୍କ ଚାହାଣି ଖୁସିରେ ଝଲ ଝଲ ଦିଶୁଥାଏ, ଜାଣିଲା ଜାଣିଲା ଭଳି ଦିଶୁଥାଏ, ତାହାର ଯୋଗୁଁ ତାଙ୍କ ମନୋଭାବ ପଦାରେ ପଡ଼ି ଯାଉଥାଏ, ତାଙ୍କ ମୁହଁର ଭଙ୍ଗୀ ସୁନ୍ଦର ଦିଶୁଥାଏ, ଅଥଚ ଏଭଳି ଯେ ଦେଖିଲେ ହସ ମାଡ଼ିବ । କିନ୍ତୁ ଭେରାକୁ ସେପରି ଆଦୌ ଜଣାଗଲା ନାହିଁ ।

ନିକୋଲାସ୍‌ଙ୍କ ଦୁଆତଟା ଛଡ଼େଇ ନେଉ ନେଉ ଭେରା କହିଲା,

“ମୋ ଜିନିଷ କେହି ଛୁଇଁବ ନାହିଁ ବୋଲି ମୁଁ କେତେଥର ତୁମକୁ ସବୁ କହିଛି ? ତୁମପାଇଁତ ଅଲଗା ହୋଇ ବଖୁରିଟିଏ ଅଛି ।”

କଲମ ବୁଡ଼େଇ ନେଇ ନିକୋଲାସ୍ କହିଲା, “ରଇଥା ଟିକିଏ, ମିନିଟିଏ—”

“ସବୁବେଳ ତୁମେମାନେ ଭୁଲ୍ କଥାଟା ହିଁ କର, ଅଇଗ୍ଲୁ ଠିକ୍ ପାଗଳା ଜନ୍ତୁଗୁଡ଼ାଏ ଭଳି ତୁମେ ସବୁ ବୈଠକଖାନା ଭିତରକୁ ହୋ-ହା ହୋଇ ପଶି ଆସିଲ । ସମସ୍ତେ ଚମକି ପଡ଼ିଲେ, ସମସ୍ତେ ଗୁନଆଁ ହେଲେ ।”

ଭେରା ଯାହା କହିଲା ତା ସତ କି ମିଛ ବୋଲି, ସେଠି ଥିବା କେହି ପଦେ ହେଲେ ପାଟି ଫିଟାଇଲେ ନାହିଁ, ଚାରିଟିଯାକ ଦୋଷୀ ମୁହଁ ଚାହାଁଚୁହିଁ ହେଲେ । ଭେରା ଦୁଆତଟା ଧରି ଠିଆ ହୋଇଥାଏ, ଗଲାନାହିଁ ।

“ଏତେ ସାନ ସାନ ପିଲା, ଏ ବୟସରେ ତମର ସବୁ ଫେର୍ ଗୁପ୍ତକଥା କଣ ଥାଇପାରେ ? ଏଗୁଡ଼ାକ ହସିବା କଥା, ଛୁଞ୍ଚା ବାଜେ କଥା ।”

ନାତାଶା ଶାନ୍ତ ପ୍ରତିସ୍ଥୁଶୀ ହୋଇ ଧୀରେ କହିଲା, “ତହିଁରେ ତୋର କି ଯାଏ ?”

“ଲଜ ମାଡ଼ୁନାହିଁ ଆହୁରି କହୁଚୁ ? ଛିଃ ! ଆଚ୍ଛା କହିଲୁ ଭଲା ତୋର କି କି ଗୁପ୍ତ କଥା ଅଛି ?”

"ସମସ୍ତିଙ୍କର ଥାଏ, ଆମେ ତୋର ଆଉ ବର୍ଗ୍‌ର କଥାରେ କେବେ ମୁଣ୍ଡ ଖେଳାଉ ନାହିଁ, ନାତାସା ରାଗିଯାଇ କହିଲା ।

"ନଖେଳେଇବା କଥା ତ, ଆମେ ଏମିତି କିଛି କରୁନାହିଁ ଯେଉଁଥି-ପାଇଁ ଆମୁକୁ ଲାଜ ମାଡ଼ିବ । ଆଉ ତୁମେ ! ରହ ବୋରସ୍ ସଙ୍ଗରେ ତୋର କେମିତି ଢଙ୍ଗ ଢାଙ୍ଗ ଚାଲିଛି ମୁଁ ବୋଉ ଆଗରେ କହେଁ ।"

"ନାତାଶା ମୋ ସଙ୍ଗରେ ଖୁବ୍ ଭଲ ବ୍ୟବହାର କରନ୍ତି, ମୋର କୌଣସି ଅଭିଯୋଗ ନାହିଁ ।"

ନାତାଶାକୁ ଛଳ ପଶିଥିଲା, ସେ ରାଗିଯାଇଥିଲା, କହିଲା, "ତୁମେ ତୁନି ହ' ବୋରସ୍, ତୁମେ ତ ପୂରା 'ଜୁଟମାଭଙ୍କ'ଟିଏ ('ଜୁଟମାଭଙ୍କ' ଶବ୍ଦଟାକୁ ପିଲାଏ ବେଶି ବ୍ୟବହାର କରୁଥିଲେ; ସେମାନେ ତାର ଗୋଟିଏ ବଡ଼ସ ଅର୍ଥ ଅଛି ବୋଲି ଭାବୁଥିଲେ ) । ଏତ ଅସହ୍ୟ ! କାହିଁକି ସେ ମୋ ସଙ୍ଗରେ ଲାଗୁଛି ? ତୁ କେବେ ବୁଝିପାରିବୁ ନାହିଁଲେ, କାରଣ ତୁ ତୋ ଜୀବନରେ କାହାରିକି ପ୍ରେମ କରିନାହୁଁ, ତୋର ହୃଦୟହିଁ ନାହିଁ, ତୁ ଶ୍ରୀମତୀ ଗେନ୍‌ଲିସ୍ ( ଭେରାକୁ ଶ୍ରୀମତୀ ଗେନ୍‌ଲିସ୍ ବୋଲି ନାଁ ଟାଏ ନିକୋଲାସ୍ ଦେଇଥିଲା, ସେଇଟା କହିଲେ ତାକୁ ଭାରି ଗାଳିଦେଲା ପରି ହେବ ବୋଲି ସେମାନେ ଭାବୁଥିଲେ), ତତେ ଖାଲି ଖୁସି ଲାଗେ ଅନ୍ୟମାନଙ୍କୁ ରାଗେଇବା । ବର୍ଗ୍ ସଙ୍ଗରେ ମନ ଇଚ୍ଛା ଯାଇ ଢଳାଢଳି କରୁଥାଉଟି—"

"ମୁଁ ଆଉ ଯାହା କରେଁ, ଯେଉଁ ବଖରାରେ ମଣିଷ ଭର୍ତ୍ତି ହୋଇଥିବେ, ଗୋଟାଏ ପୁରୁଷ ପଛରେ ଧାଇଁ ଧାଇଁ ସେମିତି ବଖରା ଭିତରକୁ ପଶିଯାଏ ନାହିଁ ।"

ନିକୋଲାସ ପାଟିକଲା, "ହଉ ହଉ, ତୁ ଯାହା କରିବାକୁ ଚାହିଁ-ଥିଲୁ ତା ତୁ କରି ସାରିଲୁଣି, ତୋର ଏ ବାଜେ କଥାଗୁଡ଼ାକ ଶୁଣି ଆମ ସବୁଗ ଉଭେଇ ଗଲାଣି, ଚାଲ ଏଥର ଇସ୍କୁଲ ଘରକୁ ଯିବା ।"

ହୁରୁଡ଼ିଥିବା ଚଢ଼େଇଗୁଡ଼ିଏ ଭଳି ସେମାନେ ସେଠୁ ଛୁ'କଲେ ।

ପଦାରୁ ଚାରିଜଣିଯାକ ପାଟି ଏକାଠି ଗୀତ ଗାଉଥାଏ, "ଶ୍ରୀମତୀ ଗେନ୍‌ଲିସ୍ ! ଶ୍ରୀମତୀ ଗେନ୍‌ଲିସ୍ !" ଭେରା ପାଟିକଲା "ବାଜେକଥା କହୁଥିଲ ତୁମେ ସବୁ, ନାଁ ମୁଁ ?"

ଭେରା ସମସ୍ତିଙ୍କୁ ଚଡ଼େଇ ଦେଇ ପାରିଥିଲା । ସମସ୍ତିଙ୍କ ମନରେ ତା ପ୍ରତି ଗୋଟାଏ ଅପ୍ରୀତିକର ଧାରଣା ଜନ୍ମାଇ ଦେଇଥିଲା । ତାଙ୍କ

"ଆଚ୍ଛା ବୋରସ୍ ପାଇଁ କାହାପାଖକୁ ଦରଖାସ୍ତ ଦେଇଥିଲ ? ସେ ତ ଏଠି ସମ୍ରାଟଙ୍କ ରକ୍ଷୀବାହିନୀରେ ଜଣେ କର୍ମଚାରୀ ହୋଇଛି; ଅଥଚ ନିକୋଲାସ୍ ତ ଖାଲି ଜଣେ ସାଧାରଣ ସୈନିକ, ତା ପାଇଁ କେହି ତ କିଛି କରିନାହିଁ କାହା କତିକି ତୁମେ ଯାଇଥିଲ ?"

"ପ୍ରିନ୍ସ୍ ବେସିଲ୍‌ଙ୍କ ପାଖକୁ । ସେ ଭାରି ଦୟା କଲେ । ସାଙ୍ଗେ ସାଙ୍ଗେ କହିଲେ ଯେ ସମ୍ରାଟଙ୍କୁ ଜଣାଇବେ", ଖୁବ୍ ଆଗ୍ରହରେ ସେ କହିଗଲେ; କିନ୍ତୁ ପ୍ରିନ୍ସ ବେସିଲ୍ ତାଙ୍କୁ ତୁଣ୍ଡେ ତୁଣ୍ଡେ କେମିତି ଦାବନ ଦେଇଥିଲେ, ସେ କଥା ସେ ଭୁଲିଗଲେ ।

"ପ୍ରିନ୍ସ୍ ବେସିଲ୍ କଣ ଆଗଠୁଁ ବେଶି ବୁଢ଼ା ଦିଶିଲେଣି ? ରୁମିଆନ୍‌ଜଭଙ୍କ୍ ଘରେ ଯେତେବେଳେ ଥିଏଟର ହେଉଥିଲା, ତା ଉତ୍ତାରୁ ମୁଁ ଆଉ ତାଙ୍କୁ ଦେଖିନାହିଁ । ସେ ମତେ ଭୁଲି ଯିବେଣି । ସେତେବେଳେ ତ ମୋ ପାଖରେ ସେ ଖୁବ୍ ମନଭୁଲା ବ୍ୟବହାର କରୁଥିଲେ ।"

"ସେ ସବୁ ଦିନେ ଯେମିତି, ଏବେ ବି ଅବିକଳ ସେମିତି ପରା ! ତାଙ୍କଠି ଯେମିତି ଭଦ୍ରତା, ସେମିତି ମର୍ଯ୍ୟାଦା । ଏଡ଼େ ବଡ଼ ଲୋକ ହୋଇ ସୁଦ୍ଧା ତାଙ୍କ ମୁଣ୍ଡ ବିଗିଡ଼ି ନାହିଁ । ମତେ କହିଲେ, "ପ୍ରିନ୍‌ସେସ୍, ଆପଣ ଖାଲି ହୁକୁମ୍ ଦେଲେ ହେଲା । ମୋ ମନରେ ଏତିକି ଦୁଃଖ ଯେ ଆପଣ ଯେଉଁ କାମଟି କରୁଛନ୍ତି, ସେଇଟି କରିବାକୁ ମତେ ଏତେ ଅଳ୍ପ କଷ୍ଟ କରିବାକୁ ପଡ଼ିବ ।" ପ୍ରକୃତରେ ମଣିଷ ହିସାବରେ ସେ ଯେମିତି ଦୟାଳୁ, ବନ୍ଧୁବାନ୍ଧବ ହିସାବରେ ବି ସେମିତି ବଡ଼ିଆ । ତୁମେ ତ ଜାଣିଛ, ମୁଁ ମୋ ପୁଅଟିକୁ କେଡ଼େ ଭଲ ପାଏଁ, ତାକୁ ସୁଖୀ କରାଇବାଲାଗି ଯେତେ ଯାହା କରିବାକୁ ପଡ଼ିବ ସବୁ ମୁଁ କରିବାକୁ ପ୍ରସ୍ତୁତ, ନ କରିବି ବୋଲି କିଛି ନାହିଁ; କିନ୍ତୁ ମୁଁ ଯେଉଁ ଅବସ୍ଥାରେ ପଡ଼ିଛି, ସେ ଅତି ଶୋଚନୀୟ, ଅତି ଦୁଃଖପ୍ରଦ ଅବସ୍ଥା । ଦିନୁଦିନ ତାହା ଆହୁରି ଆହୁରି ଖରାପ ହୋଇ ହୋଇ ଯାଉଛି ।" ସେ ଆହୁରି ଧୀର ସ୍ୱରରେ କହିଗଲେ, "ସେ ହାଇରାଣିଆ

ମକଦ୍ଦମାଟା ଖାଲି ପଡ଼ି ରହିଛି, ଛିଣ୍ଡିବାକୁ ନାହିଁ, ସେଇଥିରେ ମୁଁ ହବସ୍ତାନ୍ତ ହୋଇଯାଉଛି । ମୋ ପାଖରେ ଦଶଟା ଟଙ୍କା ବି ନାହିଁ, ଏଡ଼େ ଅଥାଭାବ । ବୋରିସ୍ ପାଇଁ ପୋଷାକ କିଣିବାକୁ ପଡ଼ିବ, କେମିତି କୁଆଡ଼ୁ ଯେ ତା କରିପାରିବି, ସତ କହୁଛି,—ମୁଁ ଜାଣେ ନାହିଁ ।" ସେ ରୁମାଲ କାଢ଼ି ଆଣି କାନ୍ଦିଲେ । "ମୋର ତ ଦରକାର ପାଞ୍ଚଶ 'ରୁବ୍ଲ; ଅଥଚ ଏ ସଂସାରରେ ମୋ ପାଖେ ପଚିଶି ରୁବଲ୍ ନୋଟଟିଏ ଅଛି, ସେତିକି । ମୁଁ ଅତି ଶୋଚନୀୟ ଅବସ୍ଥାରେ ପଡ଼ିଛି, ମୋର ଏକମାତ୍ର ଆଶା କାଉଣ୍ଟ୍ ବେଜୁହୋଭ୍‌ଙ୍କଠି, ସେ ଯଦି ତାଙ୍କ ନାତିକୁ ସାହାଯ୍ୟ କରିବାକୁ ଆଗଭର ନ ହେବେ, ତେବେ ମୋର ଏତେ କଷ୍ଟ କରିବା ସବୁ ମାଟି ହୋଇଯିବ ।"

କାଉଣ୍ଟେସ୍‌ଙ୍କ ଆଖି ଯୋଡ଼ିକ ବନ୍ଧୁ ସଙ୍ଗେ ସହାନୁଭୂତି ଜଣାଇ ଓଦା ହୋଇ ଯାଇଥାଏ । ସେ କଣ ଚିନ୍ତାରେ ବୁଡ଼ିଥାନ୍ତି ।

ପ୍ରିନ୍‌ସେସ୍ କହିଗଲେ, "କାଉଣ୍ଟ୍ ବେଜୁହୋଭ୍ ଆଉ ତାଙ୍କର ନଚ୍ଛୁଟିଆ ଜୀବନ ବିଷୟରେ ମୁଁ କେତେ ଥର ଭାବେଁ, ଆଜି ତାଙ୍କର ବିରାଟ ସମ୍ପତ୍ତି ବିଷୟରେ, ଆଜି,—ବୋଧହୁଏ ଏଭଳି ଭାବିବା ପାପ,—କିନ୍ତୁ ନ ଭାବି ରହିପାରେ ନାହିଁ ଯେ କାହିଁକି ଆଜି ତାଙ୍କୁ ବଞ୍ଚେଇ ରଖା-ହୋଇଛି । ତାଙ୍କୁ ତ ଜୀବନଟା ବୋଝ, ଅଥଚ ବୋରିସ୍ ଟୋକାଟାଏ···।"

କାଉଣ୍ଟେସ୍ କହିଲେ, "ବୋରିସ୍ ପାଇଁ କିଛି ସେ ନିଶ୍ଚୟ ଦେଇ ଯିବେ ଯେ ?"

"ମତେ ତ ସନ୍ଦେହ ଲାଗୁଛି ସଖି । ଏ ଯେଉଁ ବିରାଟ ଧନୀମାନେ ନା, ସେମାନେ ଭାରି ଆତ୍ମମ୍ଭରୀ । ଯାହାହେଉ, ମୁଁ ଭାବୁଛି, ସେଠିକି ଯାଇ କାଉଣ୍ଟ୍‌ଙ୍କୁ ଆମ ଅବସ୍ଥା କଥା ବୁଝାଇ କହିବି । ଲୋକେ ମତେ ଯାହା ଭାବିବେ ଭାବନ୍ତୁ । ବର୍ତ୍ତମାନ ଦୁଇଟା ବାଜିଲାଣି ।" ସେ ଉଠି ପଡ଼ିଲେ । କହିଲେ, "ତୁମେ ତ ଛଅଟାବେଳେ ଖାଅ, ମୋ ହାତରେ ବହୁତ ବେଳ ଅଛି ।"

ପ୍ରିନ୍‌ସେସ୍ ତାଙ୍କ ପୁଅକୁ ଡକାଇଲେ । ପୁଅ ନ ଶୁଣିଲା ପରି ଫୁସ୍‌ଫୁସ୍ କରି କହିଲେ, "ହଉ ତେବେ ଆସେଁ, ପୁଣି ଅଳ୍ପ ସମୟ ପରେ ତ ଆସିବ । ମୋ ପାଇଁ ଠାକୁରଙ୍କୁ ଡାକବ ।"

ରୋଷେଇ ଘରୁ ବାହାରି ଆସୁ ଆସୁ କାଉଣ୍ଟ୍ ପାଚି କଲେ, "ଆପଣ କାଉଣ୍ଟ୍ ସିରିଲ୍ ଭ୍ଲାଡ଼ିମିରୋଭିଚ୍ ବେଜୁହୋଭଙ୍କୁ ଦେଖିବାକୁ ଯାଉଛନ୍ତି ? ତାଙ୍କ ଦେହ ଭଲ ଥିଲେ ପିଏରେକୁ କହିବେ, ରାତିରେ ଖାଇବାକୁ ଆସିବ । ଆଗେ ତ ବହୁତ ଆସୁଥିଲା, ଝିଅଙ୍କ ସାଙ୍ଗେ ନାଚୁଥିଲା । ତାକୁ ବହୁତ ବହୁତ କରି କହିବେ ଯେମିତି ସେ ଆସିବ ଟି । ଦେଖିବା, ରୋଷେୟା ତାରାସ୍ ଯଦି ତା ନାଁ ରଖିବ । ସେ ମତେ କହିଛି, ଆଜ ସଞ୍ଜ ଭୋଜ ପାଇଁ ସେ ଏମିତିଆ ରୋଷେଇଟାଏ କରିଛି ଯେ ନଜେ କାଉଣ୍ଟ୍ ଅର୍‌ଲୋଭ ସେଭଳି ଭୋଜ କେବେ ଦେଇ ନ ଥିବେ ।

# ଷୋଡ଼ଶ

ପ୍ରିନ୍‌ସେସ୍ ତାଙ୍କ ପୁଅ ବୋରସ୍ ସଙ୍ଗରେ ଗାଡ଼ିରେ ବସି କାଉଣ୍ଟ୍ ବେଜୁହଭ୍‌ଙ୍କ ଘରକୁ ଯାଉଥାନ୍ତି । କାଉଣ୍ଟେସ୍ ତାଙ୍କ ପାଇଁ ସେ ଗାଡ଼ିଟି ଛାଡ଼ି ଦେଇଥାନ୍ତି । ସଡ଼କ ଉପରେ ନଡ଼ା ପଡ଼ି ପଡ଼ି ଯାଇଥାଏ । ତା ଉପରେ ଗାଡ଼ିଟା ଚାଲିଗଲା କାଉଣ୍ଟ୍ ବେଜୁହଭ୍‌ଙ୍କ ପ୍ରାସାଦର ଅଗଣା ଭିତରକୁ ।

ପ୍ରିନ୍‌ସେସ୍ ବାରମ୍ବାର କହୁଥାନ୍ତି, "ଆରେ ବାପ ବୋରସ— ଆରେ ବାପ ବୋରସ୍ !" ସେ ତାଙ୍କର ନୋଚକୋଚ ଘୋରହେଲା ଚମ୍ପ ହାତଟି କାଢ଼ି ତାଙ୍କ ପୁଅର ହାତ ପାପୁଲିକୁ ଧୀରେ ଆଉଁଷି ଦେଇ ତା ହାତ ଉପରେ ଥୋଇଦେଲେ; କହିଲେ, "ମିଠା କଥା, କହିବୁ ଖାତିରନ୍ତ କରିବୁ, ସେ ତୋ ଧରମ ବାପ, ତାଙ୍କର ଉପରେ ତୋ ଭବିଷ୍ୟତ ନିର୍ଭର କରୁଛି, ସେକଥା ଭୁଲିବୁ ନାହିଁ ଟି ! ତୋର ମନ ହୋଇଥିଲେ ଲୋକଙ୍କ ସ ଙ୍ଗ ରୁ କେଡ଼େ ଚମତ୍କାର ବ୍ୟବହାର ତ କରଥାଉ, ସେମିତିଆ ବ୍ୟବହାର କରିବୁଟି ବାପା—"

"ସତ କହୁଚ,—ଅପଦସ୍ତ ହେବା ଛଡ଼ା ଏଥିରୁ ମତେ ଆଉ କଛି ମିଳିବ, ଯୁ। ଯଦି ମୁଁ ଯଥାର୍ଥଭାବେ ଜାଣିଥାନ୍ତି, ତେବେ ଖୁସି ହେ ଇଥାନ୍ତି । ଯାହାହେଉ, ତତେ ଜବାବ୍ ଦେଇଥିଲି, ଖାସ୍ ତୋର ଖାତିରରେ ମୁଁ ସେଇଆ କରିବି ।" ବୋରସ୍‌ର ସ୍ୱରରେ ଉତ୍ସାହ ନ ଥିଲା ।

ସେମାନେ ଆସିଛନ୍ତି ବୋଲି ଆଗ ଚାକରଟିଏ ଯାଇ ଜଣାଇଦେବ, ତା ପରେ ସେମାନେ ଯିବେ, ପ୍ରିନ୍‌ସେସ୍ ଏଥିରେ ରାଜି ହେଲେ ନାହିଁ । ସେ ଆଉ ବୋରସ୍ ପ୍ରକାଣ୍ଡ ପ୍ରବେଶକକ୍ଷ ଭିତରକୁ ଗଲେ । ସେ କକ୍ଷରେ ଧଡ଼ାଧଡ଼ ହୋଇ ଠଣାମାନଙ୍କରେ ମୂର୍ତ୍ତିଗୁଡ଼ିଏ ଠିଆ ହୋଇଥାଏ ।

ଚୌକିଦାର୍ ସେ ମା-ପୁଅଙ୍କୁ ତାଙ୍କରୁ ତଳକୁ ପାକେ ଖୁନ୍ଦି ଦେଖିଲା, ଭଦ୍ରମହିଳାଙ୍କ ବୋଲିହେଲନି କିଶରଗଲଣି, ଏ କଥା ବି ସେ ନଧା କଲା। ତା ପରେ ସେ ପଚାରିଲା, ସେମାନେ କାଉଣ୍ଟଙ୍କ ସଙ୍ଗେ ଦେଖାକରିବେ ନା ତାଙ୍କ ଝିଅମାନଙ୍କ ସଙ୍ଗେ । ପ୍ରିନ୍‌ସେସ୍ କହିଲେ, "କାଉଣ୍ଟଙ୍କ ସଙ୍ଗେ।" ସେଇଠୁ ସେ ସେମାନଙ୍କୁ କହିଲା ଯେ କାଉଣ୍ଟଙ୍କ ଦେହ ଖୁବ୍ ଖରାପ, ସେ କାହାରିକୁ ଦେଖା ଦେଉନାହାନ୍ତି ।

ବୋରିସ୍ ଫରାସୀ ଭାଷାରେ କହିଲା, "ତା ହେଲେ ଆମେ ଚାଲିଯିବା ।"

"ବାବୁରେ,—" ତା ବୋଉ କହିଲେ, ଆସ୍ତେ ତାହା ବାହାକୁ ଛୁଇଁଦେଲେ, ସତେ ଯେପରି ତାଙ୍କ ସ୍ପର୍ଶରେ କଣ କମିଆଁ ଅଛି ଯେ, ସେ ତାକୁ ଛୁଇଁଲେ ତାକୁ ଚେତଜଦେବେ, ଆଉ ତାକୁ ଶାନ୍ତ କରିଦେବେ । ବୋରିସ୍ ଚୁପ୍ ହେଲା । ତା ମା' ସେ ଚାକରକୁ ଖୁବ୍ ବିକଳ ସ୍ୱରରେ କହିଲେ—

"ମୁଁ ଜାଣିଛି କାଉଣ୍ଟ ଭାରି ବେମାର୍ । ସେଇଥିପାଇଁ ତ ମୁଁ ତାଙ୍କୁ ଦେଖିବି ବୋଲି ଆସିଛି । ମୁଁ ତାଙ୍କ ବନ୍ଧୁବାନ୍ଧବ ଲୋକ, ତେବେ ଥାଉ,—ତାଙ୍କୁ ହରବର କରିବି ନାହିଁ, ମୁଁ ଖାଲି ପ୍ରିନ୍‌ସ୍ ବେସିଲଙ୍କୁ ଟିକିଏ ଦେଖିବି । ସେ ଏଠି ଅଛନ୍ତି ମୁଁ ଜାଣେ, ଟିକିଏ ବାବୁ କେମିତି ମୋ ନାଁଟା ତାଙ୍କ ପାଖକୁ ଉପରକୁ ପଠେଇ ଦିଅନ୍ତୁ ।"

ଚୌକିଦାର ରାଗିଯାଇ ଘଣ୍ଟା ଦଉଡ଼ିକୁ ଜୋର୍‌ରେ ଓଟାରିଲା । ସିଡ଼ି ବାଡ଼ା ଉପରେ ଜଣେ ଚପରାସି ମୁଣ୍ଡ ଦେଖାଇଲା । ଚୌକିଦାର ଚପରାସିକୁ ପାଟିକରି କହିଲା, "ପ୍ରିନ୍‌ସ୍ ବେସିଲ୍‌ଙ୍କୁ ଦେଖାକରିବାକୁ ପ୍ରିନ୍‌ସେସ୍ ଡ୍ରୁବେକୋଇ ଆସିଛନ୍ତି ।"

କାନ୍ଥରେ ମରା ହୋଇଥିଲା ଭେନିସ୍ ଦେଶର ଗୋଟାଏ ବଡ଼ ଦର୍ପଣ । ସେ ବାଟେ ଗଲାବେଳେ ପ୍ରିନ୍‌ସେସ୍ ତହିଁରେ ନିଜ ଦେହକୁ ଦେଖିନେଇ ତାଙ୍କର ରଙ୍ଗଉଠା ସିଲ୍‌କ୍ ଗାଉନ୍‌ର ଭାଙ୍ଗକୁ ଝାଡ଼ିଦେଇ ଠିକଣା କରିନେଲେ । ପାହାଚ ଉପରେ ଗାଲିଚା ବିଛା ହୋଇଥିଲା । ଖୁବ୍ ସାହସରେ ତା ଉପରେ ତାଙ୍କର ଧଡଡା ଯୋତାପିନ୍ଧା ପାଦକୁ ଥୋଇଲେ । ପୁଅକୁ ଉତ୍ସାହ ଦେବାକୁ ଆସ୍ତେ ଆସ୍ତେ ତା ହାତ ଆଉଁଷି ଦେଇ କହିଲେ, "ମନେ ରଖିଥିବୁଟି, ତୁ ମତେ ଜବାବ୍ ଦେଇଛୁ ।"

ଆନ୍ନିଙ୍କ ଚାଲକୁ ନପାଇ ବୋରସ୍ ଶାନ୍ତ ହୋଇ ତାଙ୍କ ପଛେ ପଛେ ଗଲା । ତାଙ୍କୁ ଗୋଟିଏ ବଖରାକୁ ବାଟ କଢ଼େଇ ନିଆ ହେଲା । ପ୍ରିନ୍ସ ବେସିଲ୍ ଯେଉଁ ବଖରାରେ ଥିଲେ, ସେଠିକି ଯିବାକୁ ହେଲେ ସେଇ ବଖରା ବାଟେ ଯିବାର କଥା । ଜଣେ ମୁହଁଖା ଚାକର ତାଙ୍କୁ ଅଭ୍ୟର୍ଥନା ଜଣାଇବାକୁ ଠିଆହେଲା । ସେମାନେ କୁଆଡ଼େ ଆସିଛନ୍ତି ବୋଲି କହିବାକୁ ଯାଉଛନ୍ତି, ଏତିକିବେଳେ ପ୍ରିନ୍ସ ବେସିଲ୍ ପଦାକୁ ଆସିଲେ । ସେ ମଖମଲର ଗୋଟାଏ ଦୁଗୁଲା କୋଟ୍ ଗଳେଇ ପକେଇଥାନ୍ତି, ସେଥିରେ ନରମ ରୁମରୁମିଆ ଚମଡ଼ା ଲଗା ହୋଇଥାଏ । ତାଙ୍କର ରାଜପଦଗାର ଚିହ୍ନମାନଙ୍କ ଭିତରୁ ସେ କୋଟରେ ମୋଟେ ଗୋଟିଏ ଶଙ୍କୁ ଲଗା ହୋଇଥାଏ । ସେଥିରୁ ଜଣାପଡ଼ୁଥାଏ ଯେ ସେ ତରତର କରି ତାକୁ ଗଳେଇ ପକେଇ ଆସିଛନ୍ତି । ସେ ଜଣେ ସୁନ୍ଦର ଯୁବକଙ୍କ ସଙ୍ଗରେ ଘର ଭିତରୁ ପଦାକୁ ବାହାରିଥା'ନ୍ତି । ଯୁବକ ବିଦାହେଉଥାନ୍ତି ଯେ ସେ ତାଙ୍କୁ ବାଟେଇଦେବା ଲାଗି ଆସିଥାଆନ୍ତି । ଯୁବକଙ୍କ ମୁଣ୍ଡବାଳ ଖୁବ୍ କଳା । ଏହି ଯୁବକ ସେଣ୍ଟ୍ ପିଟରସବର୍ଗ୍‌ର ଅତି ପ୍ରସିଦ୍ଧ ଡାକ୍ତର ଲରେନ୍ ।

ପ୍ରିନ୍ସ୍ ତାଙ୍କୁ କହିଲେ, "ତା ହେଲେ କଣ ସେଇଆ ଶେଷକଥା ?"

"ମନୁଷ୍ୟର ଭୁଲ ବି ହୁଏ ପ୍ରିନ୍ସ୍ !" ଡାକ୍ତର ଲରେନ୍, ଲାଟିନ୍ ଭାଷାରେ କହିଲେ । ତାଙ୍କ ଲାଟିନ୍ ଭାଷା ଉଚ୍ଚାରଣରେ ଫରାସୀ ଭାଷାର ଖୁବ୍ ଟାଣୁଆ ପ୍ରଭାବ ବାରି ହେଉଥାଏ ।

ପ୍ରିନ୍ସ୍ ବେସିଲ୍ ପ୍ରିନ୍ସେସ୍ ଓ ତାଙ୍କ ପୁଅକୁ ଦେଖିପକାଇ ଡାକ୍ତରଙ୍କୁ ତରତର ହୋଇ ବିଦାକରି କହିଲେ, "ଧନ୍ୟବାଦ ଆଜ୍ଞା, ଆପଣଙ୍କୁ ଧନ୍ୟବାଦ ।" ତା ପରେ ଗୋଟିଏ ପ୍ରଶ୍ନବାଚକ ଦୃଷ୍ଟିରେ ଅନାଇଁ ଏ ଦୁହିଁଙ୍କୁ ଭେଟିବାକୁ ଚାଲି ଆସିଲେ । ବୋରସ୍ ଦେଖିଲା ଯେ ତା ବୋଉର ମୁହଁରେ ହଠାତ୍ ଟାଣି ଓଟାରି ହୋଇ ଗୋଟିଏ ଗଭୀର ଦୁଃଖର ଭାବ ଫୁଟିଉଠିଲା । ତାକୁ ହସ ମାଡ଼ୁଥାଏ, ସେ ହସ ଲୁଚେଇବାକୁ ମୁହଁ ବୁଲେଇଦେଲା । ପ୍ରିନ୍ସ୍ ବେସିଲ୍ ପ୍ରିନ୍ସେସ ଆଡ଼କୁ ଗୋଟାଏ ଆଗ୍ରହଶୂନ୍ୟ ବିରକ୍ତ ଭଙ୍ଗୀରେ ଅନାଇଁଥାନ୍ତି, ତାକୁ ଭ୍ରୂକ୍ଷେପ ନ କରି ପ୍ରିନ୍ସେସ୍ କହିଗଲେ—

"ଅତି ଦୁଃଖପ୍ରଦ ପରିସ୍ଥିତିରେ ପୁଣି ଆମର ଦେଖାହେଲା, ଆମର ପ୍ରିୟ ବନ୍ଧୁ ଅଚଳ ହୋଇ ବିଛଣାରେ ପଡ଼ିଥିଲେ, ବର୍ତ୍ତମାନ କେମିତି ଅଛନ୍ତି ?"

ପ୍ରିନ୍ସ୍ ବେସିଲ୍ ତାଙ୍କୁ ଓ ତାଙ୍କ ପୁଅକୁ ମିରବରେ ଅନାଇଁଲେ, ସେମାନେ ସେଠିକି ଆସିଛନ୍ତି ଦେଖି ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥାଏ । ସେ ତାଙ୍କ ମନୋଭାବ ଲୁଚାଇବାକୁ ବି ଚେଷ୍ଟା କଲେନାହିଁ । ବୋରିସ୍ ତାଙ୍କୁ ଦଣ୍ଡବତ ହେଲା ଯେ ସେ ପ୍ରତିନମସ୍କାର ବି କଲେ ନାହିଁ । ପ୍ରିନ୍ସେସ୍ ଯାହା ପଚାରିଲେ ସେ ତାର ଉତ୍ତର କଥାରେ ନ ଦେଇ ଓଠକୁ ଚିପି ମୁଣ୍ଡ ହଲେଇ ଜଣେଇଦେଲେ ଯେ କାଉଣ୍ଟ୍ ଆଉ ବଞ୍ଚିବା ଆଶା ନାହିଁ ।

ପ୍ରିନ୍ସେସ୍ କହିଲେ, "ତା ହେଲେ କଣ ଯାହା ଶୁଣିଥିଲି ସତ ହେଲା ? ଉଃ ! କି ଭୟାନକ ! କି ଭୟାନକ ! ଭାବି ହେଉନାହିଁ । ଏଇଟି ମୋ ପୁଅ । ତାର ଭାରି ମନ ହେଲା ନିଜେ ଆସି ଆପଣଙ୍କୁ କୃତଜ୍ଞତା ଜଣାଇବ ।" ବୋରିସ୍ ପୁଣି ତାଙ୍କୁ ଦଣ୍ଡବତ ହେଲା । "ବିଶ୍ବାସ କରନ୍ତୁ, ମା ମନ ପରି ! ପୁଅ ପାଇଁ ଆପଣ ଯାହା କରିଛନ୍ତି, ତା ମା ମନ କେମିତି ଭୁଲିବ ?"

"ଆପଣଙ୍କର ଉପକାର କରିପାରିଲି ବୋଲି ମତେ ଭାରି ଖୁସି ଲାଗୁଛି ଆଜ୍ଞା, ପ୍ରିନ୍ସ କହିଲେ; ତାଙ୍କ କାମିଜ୍‌ର ଭାଙ୍ଗ ଝାଡ଼ିଦେଲେ । କିନ୍ତୁ ଆନ୍ନା ଶେୟରାର୍‌ଙ୍କ ଘରେ ଭୋଜିବେଳେ ସେ ଯେମିତି ଦୟା ଦେଖାଇଲାପରି ବ୍ୟବହାର ଦେଖାଉଥିଲେ, ଏଥରକ ତାଙ୍କ ବ୍ୟବହାର ତାଠୁଁ ବଳି ଅଭିମାନଆଁ । କହିଲେ "ଦେଖ ବାବୁ, ଆପଣା ପାଟୁ ପର୍ଯ୍ୟନ୍ତ ଆପଣ କର୍ତ୍ତବ୍ୟ ତୁଲାଉଥାଅ । ଯେମିତି ଆହୁରି ଉନ୍ନତି କରି ପାରିବ ସେଥିଲାଗି ନିଜର ଯୋଗ୍ୟତା ପ୍ରମାଣ କର । ଭାରି ଖୁସି ହେଲି—ଭାରି ଖୁସି—ଛୁଟିରେ ଅଛ ?

ଏ ସବୁ କଥା କହିଲାବେଳେ ତାଙ୍କ ଭଙ୍ଗୀରେ ଜଣାପଡୁଥାଏ ବେଖାତିର ଉଦାସୀନତା ।

"ମଣିମା, ମୁଁ ଅପେକ୍ଷା କରିଛି ଆଦେଶ ପାଇଲେ ମୋ ରେଜିମେଣ୍ଟ୍‌ରେ କାର୍ଯ୍ୟରେ ଯୋଗ ଦେବି" ବୋରିସ୍ କହିଲା । ତାଙ୍କର ମିରସ ଅନାଗ୍ରହୀ ସ୍ୱର ଶୁଣି ସେ ଆଦୌ ବି ବିରକ୍ତ ହେଲାବୋଲି ଜଣାଇ ଦେଲା ନାହିଁ କି ଆଉ ବେଶି କଥା ଲମ୍ବାଇବାକୁ ଚାହିଁ, ଏଭଳି ବି

ଜଣାଇଦେଲା ନାହିଁ । ସେ ଯେ ଜଣେ ଚୁପଚାପ ଅଳ୍ପକଥାର ଲୋକ, ଏ କଥା ପ୍ରିନ୍‌ସ ଲକ୍ଷ୍ୟ କଲେ ଓ ଅଧିକ ନଜର ଦେଇ ତାଙ୍କୁ ଅନାଇଁଲେ । କହିଲେ, "କ'ଣ ତମ ମା'ଙ୍କ ପାଖରେ ରହୁଛ !"

"ମୁଁ କାଉଣ୍ଟେସ୍ ରୋସ୍ତଭ୍‌ଙ୍କ ପାଖରେ ରହୁଛି ମଉସା !"

"ଇଲିଆସ୍ ରୋସ୍ତଭ୍‌ଙ୍କ ସଙ୍ଗେ ସେ ରହେ । ତାଙ୍କ ଘରଯା ନାତାଶା ସିନ୍ ସିନ୍ ।" ଆନ୍ନା ମିଖାଇଲୋଭ୍‌ନା ବୁଝାଇ ଦେଲେ ।

"ମୁଁ ତାଙ୍କୁ ଚହ୍ନିଛି, ଚହ୍ନିଛି, ନଷ୍ଟ ହୃଦ ନୀରସ ସ୍ୱରରେ ପ୍ରିନ୍‌ସ ବେସିଲ୍ କହିଲେ, "ମୁଁ ସେ ନାତାଶାଙ୍କ ଢଙ୍ଗଢାଙ୍ଗ ଜମା ବୁଝିପାରିଲି ନାହିଁ । କେମିତି ଯେ ସେ ଗୋଟାଏ ଅଡ଼ୁଆ ଭାଲୁକୁ ବାହାହେଲେ ମତେ ତ କାବା ଲାଗେ । ନବୁଦ୍ଧିଆ, ମାନ୍ଦା, ଅବାଗିଆ ଲୋକଟାଏ, ଆଉ ଶୁଣୁଚ ଜୁଆଡ଼ିଟାଏ ବି ।"

"ତା ସତ ଯେ, ତେବେ ସେ ଭାରି ସ୍ନେହୀ, ଦୟାଳୁ ମଣିଷଟିଏ ପ୍ରିନ୍‌ସ", ପ୍ରିନ୍‌ସେସ୍ କହିଲେ । ସେ ହସିଦେଲେ, ତଦ୍ୱାରା ଜଣାଇ ଦେଲେ ଯେ, ସେ ତାଙ୍କ ମତ ସଙ୍ଗେ ଏକମତ; କିନ୍ତୁ ତଥାପି ସେ ବିଚରା କାଉଣ୍ଟ୍ ରୋସ୍ତଭ୍‌ଙ୍କ ପକ୍ଷନେଇ କଥା କହୁଛନ୍ତି ।

ଆହୁରି ଥରେ ଗମ୍ଭୀର ବିଷାଦର ଭଙ୍ଗୀ ଦେଖାଇ ସେ କହିଲେ, "ଡାକ୍ତରମାନେ କ'ଣ କହୁଛନ୍ତି ?"

"ଆଶା ଅତି ଅଳ୍ପ ।"

"ମୋର ଭାରି ମନ ହେଉଥିଲା ମୋ ମଉସାଙ୍କୁ ଆଉ ଥରେ ଦେଖନ୍ତି କି ! ମୋ ବୋରିସ୍‌କୁ ସେ ଏତେ ଦୟା କରୁଥିଲେ ଯେ ସେଥିପାଇଁ ତାଙ୍କୁ ଯାଇ ଧନ୍ୟବାଦ ଜଣାନ୍ତି । ବୋରିସ୍ ତାଙ୍କ ଧରମ ପୁଅ ।"

ଭାବିଥିଲେ ଏ କଥା ଶୁଣିଲେ ପ୍ରିନ୍‌ସ ବେସିଲ୍‌ଙ୍କ ମନରେ କିଛି ପ୍ରଭାବ ପଡ଼ିବ ! କିନ୍ତୁ ପ୍ରିନ୍‌ସ୍ ବେସିଲ୍ କିଛି କହିଲେ ନାହିଁ । ଖାଲି ବିରକ୍ତି ଦେଖାଇ ଭ୍ରୂକୁଟୀ କଲେ । ପ୍ରିନ୍‌ସେସ୍ ସଙ୍ଗେ ସଙ୍ଗେ ବୁଝିପାରିଲେ ଯେ ପ୍ରିନ୍‌ସ୍ ବେସିଲ୍ ଯେ କାଉଣ୍ଟ୍‌ଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହେବେ ବୋଲି ଆଶା ରଖିଛନ୍ତି, ସେଥିରେ ବୋରିସ୍‌କୁ ଜଣେ ବିପଜ୍ଜନକ ପ୍ରତିଦ୍ୱନ୍ଦ୍ୱୀ ବୋଲି ସେ ଭାବିଲେଣି । ସଙ୍ଗେସଙ୍ଗେ ସେ ପ୍ରିନ୍‌ସ୍‌ଙ୍କୁ ଆଶ୍ୱସ୍ତ କରିବାକୁ ଚେଷ୍ଟାକଲେ । କହିଲେ, "ମୋ ମଉସାଙ୍କୁ ମୁଁ ଯେତିକି ଭଲପାଏ, ସେତିକି ଭକ୍ତି କରେ ବୋଲି ସିନା— ।"

"ମଉସା" ଶବ୍ଦଟା ସେ ସତେ ଅବା ନ ଭାବ ନ ଚିନ୍ତା ଅଣଦୃସିଆର ହୋଇ ପାଟିରୁ ଖସାଇ ପକାଇଲେ । କହିଲେ, "ତାଙ୍କ ଉଦାର ସ୍ୱଭାବ କଥା ମୁଁ ଜାଣେ । ଖାଲି ପ୍ରିନ୍‌ସେସ୍‌ମାନଙ୍କ ଛଡ଼ା କଣ ତାଙ୍କ କତରେ ଆଉ କେହି ନାହାନ୍ତି ? ସେମାନେ ବ ସାନ ସାନ"—ତଳକୁ ଅନାଇଁ କହିଲେ, ଅନୁଷ୍ଠାନ ପ୍ରକାରେ ଏପରି ସମୟରେ ଯେତେ ଯାହା କ୍ରିୟା କର୍ମ ହୁଏ, ସେ ସବୁ ସେ କଲେଣି କ ନାହିଁ ? ସେ ତ ଆସି ଶେଷ ଅବସ୍ଥା, ତେଣୁ ଆଉ ଡେରି କାହିଁକି ? ପ୍ରତି ମୁହୂର୍ତ୍ତ ବର୍ତ୍ତମାନ ମୂଲ୍ୟବାନ୍, ତାକୁ ପ୍ରସ୍ତୁତ ରହିବାକୁ ପଡ଼ିବ ।" ଖୁବ୍ ମିଠା ହସ ହସି ସେ କହିଗଲେ, "ଆମେ ମାଇକିନିଆମାନେ ସିନା ଜାଣୁଁ ଯେ ଏସବୁ କାମ ସବୁଠୁ ଭଲକରି କେମିତି ତୁଲାନ୍ତି । ମୁଁ ତାଙ୍କୁ ନିଶ୍ଚୟ ଦେଖିବି ଦେଖାହେଲେ ମୋ ମନରେ ବହୁତ ଦୁଃଖ ହେବ, ହଉ ପଛେ । ତେବେ, ଦୁଃଖ ଶୋକ ତ ମୋର ଦେହ ସହା ।"

ପ୍ରିନ୍‌ସ୍ ବେସିଲ୍ ବୁଝିପାରିଲେ । ସେଥରକ ସନ୍ଧ୍ୟାରେ ଆନ୍ନା ସେଆରର୍‌ଙ୍କ ଘରେ ସେ ଯାହା ଦେଖିଥିଲେ ପୁଣି ସେ ସେଇଆ ଦେଖିଲେ, ଯେ ଯେତେ ଯାହା କଲେ ସେ ଭଦ୍ରମହିଳାଙ୍କଠୁଁ ନିସ୍ତାର ନାହିଁ, ସେ ଘୁଞ୍ଚିବେ ନାହିଁ ।

କହିଲେ, "ଶୁଣନ୍ତୁ ଆନ୍ନା ପ୍ରିନ୍‌ସେସ ! ମୋର ଆଶଙ୍କା ଯେ ଆପଣ ତାଙ୍କର ଏ ଅବସ୍ଥାରେ ତାଙ୍କ ସଙ୍ଗେ ଦେଖାକଲେ ତାଙ୍କର ଅନିଷ୍ଟ ହେବ । ଯାହାହେଉ, ସଞ୍ଜଯାକେ ଅପେକ୍ଷା କରନ୍ତୁ, ଡାକ୍ତରମାନେ କହୁଛନ୍ତି । ଆଜି ଗୋଟାଏ ଘାଟିବେଳ ଆସିଯାଇପାରେ ।"

"ଅପେକ୍ଷା ! ତାଙ୍କ ଯିବାବେଳ ତ ଆସି ଅତି ପାଖ ହେଲା; ଆଉ କେଇଟା ଘଣ୍ଟା ମୋଟେ ! ଆଉ ଡେରି କଲେ ତାଙ୍କ ଆତ୍ମା ଆଉ ମୋକ୍ଷ ହେବ ନାହିଁ ଯେ । ଖ୍ରୀଷ୍ଟିଆନ୍ ମଣିଷର ଆତ୍ମାର ମୋକ୍ଷ ପାଇଁ ଏ ଶେଷକ୍ରିୟା ଗୋଟାଏ ଭୟଙ୍କର ଅଗ୍ନିପରୀକ୍ଷା ।" ଏତିକବେଳେ ଆଉ ଗୋଟାଏ ଖଞ୍ଜାକୁ ଲାଗିଥିବା ମଝି କବାଟ ଖୋଲିଗଲା ଓ ପ୍ରିନ୍‌ସେସ୍‌ମାନଙ୍କ ଭିତରୁ ଜଣେ ପଦାକୁ ଆସିଲେ । ତାଙ୍କ ମୁହଁଟା କେମିତିଆ ଶୁଖିଲା ସେମେଟା ହୋଇ ବୁଢ଼ୀ ଧୋକଡ଼ୀ ମୁହଁ ପରି ଦିଶୁଥାଏ, ଆଉ ଅଣ୍ଟାଟା ଏଡ଼େ ଲମ୍ବା ଯେ ଦେହକୁ କଣରେ ମୋଟେ ଖାପୁ ନ ଥାଏ ।

"କଣ ହେଲା ? କେମିତି ଅଛନ୍ତି ?" ପ୍ରିନ୍‌ସ୍ ବେସିଲ୍ ପଚାରିଲେ । ଯେମିତି ଥିଲେ ସେମିତି । ଏତେ ପାଟିତୁଣ୍ଡ ଗୋଳମାଳରେ

ଆଜ କେମିତି ଅବା ସେ ଥାଆନ୍ତେ ଯେ !", ସେ କହିଲେ । ଆନ୍ନା ମିଖାଇଲୋଭ୍ନାଙ୍କ ଆଡ଼କୁ ଏକ ଦୃଷ୍ଟିରେ ଅନାଇ ରହିଲେ ସତେକି ସେ ଜଣେ ଅଚହ୍ନା ମଣିଷ ।

"ଆଲୋ ଆଲୋ, ମୁଁ ତତେ ଚହ୍ନି ପାରିଲି ନାହିଁ ଲୋ ଝିଅ—", ପ୍ରିନ୍ସେସ୍ ଡ୍ରୁବେତ୍ସ୍କୋଇ ଡେଇଁ ଡେଇଁକା ଆଗକୁ ମାଡ଼ିଯାଇ ପାଟିକଲେ, "ମୁଁ ସବୁ ସେଣ୍ଟ ପିଟର୍ସବର୍ଗରୁ ଅଇଲା ଆସି ପହଞ୍ଚୁଚି, ସାଙ୍ଗେ ସାଙ୍ଗେ ଏଠିକି ଚାଲି ଆସିଲି ତମ ଦାଦଙ୍କ ଖବର ଅନ୍ତର ବୁଝିବାରେ ତମୁକୁ ଟିକିଏ ସାହାଯ୍ୟ କରିବି ବୋଲି । ଆହା ତେମେ ସବୁ କେତେ ହଇରାଣ ନ ହଉଥିବଟି !" ସେ ଆକାଶକୁ ମୁହଁ ଟେକିଲେ । ସାନ ପ୍ରିନ୍ସେସ୍‌ଟି ଫଟ୍‌କିନା ତାଙ୍କ ଆଡ଼କୁ ପିଠି ବୁଲେଇଦେଇ ବୁଲିପଡ଼ି ପଦେ ପାଟି ନ ଫିଟାଇ ସେ ଘରୁ ଚାଲିଗଲେ ।

ଆନ୍ନା ମିଖାଇଲୋଭ୍ନା ତାଙ୍କ ହାତ ପାପୁଲିରୁ ଗରମ ହାତମୋଜା କାଢ଼ି ପକାଇ ଗୋଟାଏ ଆରାମ ଚଉକିରେ ଏମିତି ବସିପଡ଼ିଲେ, ଯେମିତି ଗୋଟାଏ ଗଡ଼ ଜିତିଛନ୍ତି ଆଉ ପ୍ରିନ୍ସ୍ ବେସିଲ୍‌ଙ୍କୁ ହାତ ଠାରିଲେ ତାଙ୍କ କଡ଼ରେ ଆସି ବସିବାକୁ । ପୁଅକୁ କହିଲେ—

"ବୋରିସ୍ ! ମୁଁ ଯାଉଛି କାଉଣ୍ଟଙ୍କୁ, ମାନେ ମୋ ମଉସାଙ୍କୁ ଦେଖିଆସେଁ । ତୁ ପିଏରେ ପାଖକୁ ଯିବୁ, ତାକୁ ରୋଷ୍ଟଭ୍ ଘର ନିମନ୍ତ୍ରଣ କଥା କହିଦେବୁ, ତୁତ ଜାଣିଛୁ ସେମାନେ ଆଜ ରାତିରେ ସେଠି ଖାଇବାକୁ ତାକୁ ଡାକିଚନ୍ତି, ତେବେ ମତେ ସାହା ଲାଗୁଛି ସେ ତ ଯିବ ନାହିଁ—" ସେ ପ୍ରିନ୍ସ୍ ବେସିଲ୍‌ଙ୍କ ଆଡ଼କୁ ବୁଲିପଡ଼ି କହିଲେ ।

ପ୍ରିନ୍ସ୍ ଭାରି ବିରକ୍ତ ହୋଇ କହିଲେ, "କାହିଁକି ଯିବ ନାହିଁ ? ସେଇଟା ଭଲ ଏଠୁ ଚାଲିଯାଆନ୍ତା ଯେ ମୁଁ ବଞ୍ଚି ପାଆନ୍ତି । ଦେଖୁନ, ସେ ଏଠିକି ବଳେ ବଳେ ଆସିଚି ସତେକି କିଏ ତାକୁ ନିମନ୍ତ୍ରଣ କରି ଆଣିଚି, ସେମିତି ଆସି ଏଠି ଆସନ ମାଡ଼ି ବସିଛି, ଅଥଚ କାଉଣ୍ଟ୍ ଥରେ ବି ତାକୁ ଦେଖିବାକୁ ଡାକିନାହାନ୍ତି ।

ତାଚ୍ଛିଲ୍ୟ ଭଙ୍ଗୀରେ ସେ କାନ୍ଧକୁ ଟାକିଦେଇ ଥରାଇଲେ, ଆଉ ଘଣ୍ଟି ବଜାଇଲେ । ଜଣେ ଚାକର ଆସିଲା । ଘରର ଆଉ ଗୋଟାଏ ବାଟରେ ପିଏରେ କିରିଲୋଭିଚ୍ ପାଖକୁ ବୋରିସକୁ ନେଇଯିବାକୁ ତାକୁ କୁହାହେଲା ।

---

# ସପ୍ତଦଶ

ପିଏରେଙ୍କୁ ତାର ଉଚ୍ଛୃଙ୍ଖଳ ଉଦ୍‌ଭଟ କାର୍ଯ୍ୟକଳାପ ଲାଗି ସେଣ୍ଟ୍ ପିଟର୍ସବର୍ଗ ସହରର ଗ୍ରହଣ୍ଡ ଚାଲିଯିବାକୁ ଯେତେବେଳେ ତାକତ୍ କରି ଆଦେଶ ଜଣାଇ ଦିଆଗଲା, ସେତେବେଳେ କଣ ସେ କରିବ ତା ଭାବି ଶକ୍ତ ଠିକଣା କରିବାକୁ ସମୟ ପାଇଲା ନାହିଁ । ରୋଷ୍ଟଭ୍ ଘର ଭୋଜିରେ ଯେଉଁ ଘଟନା ବର୍ଣ୍ଣନା କରାହେଲା, ତା ସଂପୂର୍ଣ୍ଣ ସତ, ସେ ଓ ତାର ପାଗଳ ସାଙ୍ଗ ଡଓଲୋଭ ଜଣେ ପୁଲିସ କର୍ମଚାରୀଙ୍କୁ ଭାଲୁ ପିଠିରେ ପ୍ରକୃତରେ ବାନ୍ଧି ଦେଇଥିଲେ ।

ସେ କେତେଦିନ ହେଲା ମସ୍କୋ ସହରରେ ରହୁଛି ଓ ଅନ୍ୟ ସବୁଥର ପରି ତା ବାପାଙ୍କ ଘରେ ଅଛି । ସେ ଜାଣିଥିଲା ଯେ ତା ଦୁଃସାହସିକ କାଣ୍ଡ କଥା ପ୍ରକଟ ହୋଇ ସାରିଥିବ ଓ ଏ ଘରେ ଯେଉଁ ସ୍ତ୍ରୀଲୋକମାନେ ଅଛନ୍ତି, ଯେ ସବୁଦିନେ ତା ପ୍ରତି ଭଗାରିପଣ ଦେଖାନ୍ତି, ସେମାନେ ଆହୁରି ବେଶୀ ଶତ୍ରୁତା କରିବେ । ଏ କଥା ଜାଣି ତଥାପି ଘରେ ପହଞ୍ଚିଲା ଦିନ ଆଗ ସେ ତା ବାପାଙ୍କୁ ଦେଖିବାକୁ ଯାଉ ଯାଉ ବାଟରେ ଅଟକିଗଲା, ତିନୋଟିଯାକ ପ୍ରିନ୍‌ସେସ୍‌ଙ୍କୁ ଦଣ୍ଡବତ ହୋଇଯିବ ବୋଲି । ଦୁଇଜଣ ବସି ଗୋଟିଏ ବଡ଼ କନା ଉପରେ ଛୁଞ୍ଚିରେ ଫୁଲ ପକାଉଥାନ୍ତି । କନାଟା ଫ୍ରେମ୍‌ରେ ଟଣା ହୋଇ ରହିଥାଏ । ତିନିଙ୍କ ମଧ୍ୟରୁ ଜଣକ ସବା ବଡ଼ ଭଉଣୀ, ସେ ବଡ଼ ପାଟିରେ ବହି ପଢ଼ୁଥାନ୍ତି । ଗୋଟାଏ ବେଢ଼ଙ୍ଗ ଲମ୍ବା ଅଣ୍ଟା ସମେତ ତାଙ୍କ ଚେହେରା ଦିଶୁଥାଏ କଠୋରଭାବେ ସୁରୁଚି ଓ ପରିଚ୍ଛନ୍ନ । ସାନ ଦିହେଁ ପରମା ସୁନ୍ଦରୀ ଓ ଆଶ୍ଚର୍ଯ୍ୟ ପ୍ରକାର ଦିହେଁ ଏକା ପରି, ଖାଲି ପ୍ରଭେଦ ଭିତରେ ଏତିକି ଯେ ଜଣକର ଉପର ଓଠରେ ଠିକ୍ ଉପରପଟେ ଗୋଟିଏ ଜାଇ ଥିଲା ବୋଲି ଲୋକେ ତାଙ୍କ ମୁହଁକୁ ବିଶେଷ ଆକର୍ଷଣୀୟ ବୋଲି ଭାବୁଥିଲେ ।

ପିଏରେ ପ୍ରତି ଅଭ୍ୟର୍ଥନା ସେହିପରି ହେଲା, ଯେପରି ହୁଏ ଗୋଟାଏ କୁଷ୍ଠରୋଗୀ ଆସିଲେ । ବଡ଼ ଭଉଣୀ ପଢ଼ା ବନ୍ଦକରି ଘୃଣାରେ ଆଉ କାବା ହୋଇ ତାକୁ ଅନାଇଁ ରହିଲେ । ସେହିପରି ଆଉ ଭଉଣୀ ଜଣକ ବି, ଯାହାଙ୍କ ଓଠରେ ଜାଇ ନ ଥିଲା । ତୃତୀୟ ଜଣକ ଟିକିଏ କୌତୁକ ଭଲ ପାନ୍ତି, ବର୍ତ୍ତମାନ ଯେଉଁ ମଜା ଘଟନା ଘଟିବ, ସେହିକଥା ଭାବି ତାଙ୍କୁ ହସ ମାଡିଲା ଯେ ସେ ହସ ରୋକିବାକୁ ତାଙ୍କ ସିଲେଇ କାମ ଉପରେ ନଇଁ ପଡ଼ିଲେ । ସେ କନାରେ ଛୁଞ୍ଚି ଗେଞ୍ଜିଦେଇ ପ୍ରାଣପଣେ ହସ ରୋକିବାକୁ ଚେଷ୍ଟା କଲାବେଳେ ସାମ୍ନାରେ ଥିବା ସିଲେଇ ଚିତ୍ରକୁ ଭଲକରି ବୁଝିବାକୁ ଅନାଇଁ ଦେଖୁଛନ୍ତି ବୋଲି ଛଟା ଗାଳିଲେ ।

"ନମସ୍କାର ଭଉଣି," ପିଏରେ କହିଲା, "ମତେ ବୋଧହୁଏ ତୁମେ ଚହ୍ନିପାରୁ ନା ।"

"ଖୁବ୍ ଭଲକରି ଚହ୍ନେ—ଖୁବ୍ ଭଲକରି !"

"କାଉଣ୍ଟ୍ କେମିତି ଅଛନ୍ତି ? ମୁଁ ତାଙ୍କୁ ଦେଖନ୍ତି ନାହିଁ ?" ପିଏରେ ତାର ସ୍ୱଭାବସୁଲଭ ସିଧାସଳଖ ଭଙ୍ଗୀରେ ଭ୍ରୂକ୍ଷେପକରି ପଚାରିଲା । ସେ ଆଦୌ ତାଙ୍କ ବ୍ୟବହାରରେ ବିବ୍ରତ ହେଲାନାହିଁ ।

"ତାଙ୍କର ତ ଦେହ ଆଉ ମନ ଉଭୟ ଅସୁସ୍ଥ, ଆଉ ତାଙ୍କ ମାନସିକ ଅସ୍ୱସ୍ତି ବଢ଼ାଇଦେବାକୁ ତୁମେ ବି ତ କମ୍‌ଚେଷ୍ଟା କରିନାହଁ" ।

"ମୁଁ ତାଙ୍କୁ ଦେଖିବାକୁ ଯିବି ?" ପିଏରେ ପୁଣି ପଚାରିଲା ।

"ଯଦି ତାଙ୍କୁ ମାରିଦେବାକୁ ତୁମର ଇଚ୍ଛା ତେବେ ଦେଖାକର —ଯଦି ତାଙ୍କୁ ପ୍ରାଣରେ ମାରିଦେବାକୁ ଚାହଁ, ଯାଅ ଦେଖ । ଓଲ୍‌ଗା ! ମଉସାଙ୍କ ଖାଇବାବେଳ ହେଲା, ଗଲୁ ଦେଖିବୁ ସୋରୁଆ ହେଲାଣି ?"

ସେ ଏତକ କହିବା କାରଣ, ସେ ପିଏରେକୁ ବୁଝାଇ ଦେବାକୁ ଚାହୁଁଥିଲେ ଯେ ମଉସାଙ୍କ କଥା ଛଡ଼ା ଅନ୍ୟ ଚିନ୍ତା ତାଙ୍କ ମନରେ ନାହିଁ ଅଥଚ ସେ ଆସିଛି ତାଙ୍କ ମନରେ କଷ୍ଟଦେବାକୁ । ଓଲ୍‌ଗା ଗଲା । ପିଏରେ ମିନିଟିଏ ରହିଲା, ସେଇଠୁ ବଡ ଭଉଣୀଙ୍କ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଅନାଇଁ ସେ କହିଲା, "ହଉ ତା ହେଲେ ମୁଁ ମୋ ବଖରାକୁ ଚାଲିଯାଏଁ, ତାଙ୍କ ସଙ୍ଗେ କେତେବେଳେ ଦେଖାହେବ, ତୁମେ ମୋତେ ଖବର ଦେବ ।"

ସେ ଚାଲିଗଲା । ସବା ସାନ ପ୍ରିନ୍‌ସେସ୍ ହସୁଥାନ୍ତି । ତାଙ୍କ ହସ ବେଶି ବଡ଼ ପାଟିରେ ଶୁଭୁ ନ ଥାଏ । ତଥାପି କିନ୍ତୁ ଖିଲ ଖିଲ ହସ । ତହିଁଆର ଦିନ ପ୍ରିନ୍‌ସ୍ ବେସିଲ୍ ପହଞ୍ଚିଲେ ଓ ସେହି ଘରେ ରହିଲେ । ସେ ପିଏରେଙ୍କୁ ଡକାଇଲେ । କହିଲେ—

"ଶୁଣ ବାବୁ, ସେଣ୍ଟ ପିଟର୍‌ସ୍‌ବର୍ଗ୍‌ରେ ତୁମେ ଯେଉଁ ସବୁ କାଣ୍ଡ କରୁଥିଲ, ଏଠି ଯଦି ସେପରି କରିବ ତ ତୁମ ଅବସ୍ଥା ଅତି ଖରାପ ହେବ । ମୋର ତୁମକୁ ସେତିକି କହିବାର ଥିଲା । କାଉଣ୍ଟ ଭୟଙ୍କର ବେମାର, ତୁମେ ତାଙ୍କୁ ଦେଖା କରିବା ଆଦୌ ଦରକାର ନାହିଁ ।"

ସେହି ମୁହୂର୍ତ୍ତରୁ ପିଏରେଙ୍କୁ ସମସ୍ତେ ଭୁଲିଗଲେ, ଦୋ'ମାହାଲା ଉପରେ ତା ରହିବା ଘରେ ସେ ଏକୁଟିଆ ଚଳିଲା ।

ବୋରିସ୍ ତା ପାଖେ ପହଞ୍ଚିଲାବେଳେ ପିଏରେ ସେ ଘରଯାକ ଏମୁଣ୍ଡ ସେମୁଣ୍ଡ ବୁଲୁଥାଏ । ଘରଟା ଆଚ୍ଛା ଫରଚ୍ଛ । ପିଏରେ ଘର କଣରେ ଠିଆହୋଇ ଯାଉଥାଏ । ହାତକୁ ମୁଠା କରି କାନ୍ଥ ଆଡ଼କୁ ଦେଖାଇ ମୁଠା ହଲେଉଥାଏ ଯେମିତି କେହି ଅଦୃଶ୍ୟ ଶତ୍ରୁ ସେଠି ଅଛି ଆଉ ସେ ସେହି ଶତ୍ରୁ ଦେହରେ ଖଣ୍ଡାରେ ଭୁଷି କଣା କରିବାକୁ ମନ କରୁଛି । ଚଷମା ଉହାଡ଼ରୁ ରାଗରେ ଚାହାଣି ଛୁଟି ମାରୁଥାଏ, ଫେର୍ ଘରଯାକ ବୁଲୁଥାଏ, କାନ୍ଧ ଟାକୁଥାଏ, ହାତ ଘୁଞ୍ଚୁଥାଏ, ଆଉ ନିଜ ଫାଗରେ କଥାଭାଷା ହେଉଥାଏ ।

ଗୋଟାଏ ଭୟଙ୍କର ଭ୍ରୁକୁଟି କରି ସତେ ଯେପରି ଜଣେ କଳ୍ପିତ ଶ୍ରୋତା ଆଡ଼କୁ ଆଙ୍ଗୁଠି ଦେଖାଇ ସେ କହିଲା—

"ଇଂଲଣ୍ଡର ଦିନ ସରିଯାଇଛି, ମିଷ୍ଟର ପିଟ୍ ଗୋଟାଏ ଦେଶଦ୍ରୋହୀ, ସେ ଇଂଲଣ୍ଡ ପ୍ରତି ଦ୍ରୋହୀ ପୁଣି ସମଗ୍ର ମାନବ ଜାତିର ଅଧିକାର ପ୍ରତି ଦ୍ରୋହୀ, ତାଙ୍କୁ ଏହି ଦଣ୍ଡ ଦିଆଯାଇଛି ଯେ—"

କିନ୍ତୁ ନିଜେ ନେପୋଲିଅନ୍‌ଙ୍କ କା' ହୋଇ କଥା କହି ସେ ଯେଉଁ ଦଣ୍ଡ ଆଦେଶ ଶୁଣାଉଥିଲା, ଆପଣା କଥା ଶେଷ କରିବାକୁ ତାକୁ ଆଉ ବେଳ ମିଳିଲା ନାହିଁ । ସେ ମନେ ମନେ ଇଂଲିଶ୍ ଚ୍ୟାନେଲ୍ ପାରିହୋଇ ହଠାତ୍ ତୋଫାନ ଆକ୍ରମଣ କରି ଲଣ୍ଡନ ଅଧିକାର କରି ସାରିଥିଲା । ଏତିକିବେଳେ ଜଣେ ସୁନ୍ଦରିଆ ଚେହେରାବାଲା ଭଲ ପୋଷାକ ପିନ୍ଧା ଯୁବକ

ସାମରିକ କର୍ମଗୃହଣ ସେ ଘରେ ପଶିଲା । ପିଏରେ ହଠାତ୍ ଅଟକି ଠିଆହେଲା । ପିଏରେ ତା'ଆଗ ଥର ବୋରିସ୍‌କୁ ଦେଖିଲାବେଳକୁ ବୋରିସ୍‌ର ବୟସ ହୋଇଥିଲା ଚଉଦ । ସେ ତାକୁ ଚିହ୍ନିପାରିଲା ନାହିଁ, କିନ୍ତୁ ବୋରିସ୍‌ର ମୁହଁରେ ବନ୍ଧୁଭାବ ବଳେ ତାକୁ ବାଟ କଢ଼ାଇଲା । ସେ ହାତ ବଢ଼ାଇ ଦେଇ ଖୁସି ହୋଇ ହସିଦେଲା ।

ବୋରିସ୍ ବି ହସିଦେଇ କହିଲା—"ଯାହାହେଉ, ଆପଣ ତା ହେଲେ ମତେ ଭୁଲିଯାଇ ନାହାନ୍ତି । କାଉଣ୍ଟ୍‌ଙ୍କୁ ଦେଖିବି ବୋଲି ମୁଁ ମୋ ବୋଉଙ୍କ ସଙ୍ଗରେ ଆସିଥିଲି ଯେ ତା ହେଉ ଶୁଣୁଚି, ସେ କୁଆଡ଼େ ଖୁବ୍ ବେମାର ଅଛନ୍ତି ।"

"ହଁ, ଲୋକେ ତ କହୁଛନ୍ତି—ଅଥଚ ଲୋକେ ତାଙ୍କୁ ମୁହୂର୍ତ୍ତେ ଶାନ୍ତି ଦେଉନାହାନ୍ତି," ପିଏରେ କହିଲା । ଏଣେ ମନେ ମନେ ଧନ୍ଦ ହେଲା ଯେ ଆଗନ୍ତୁକ କିଏ ବୋଲି ।

ବୋରିସ୍ ବୁଝିପାରିଲା ଯେ ପିଏରେ ତାକୁ ଚିହ୍ନିପାରୁ ନାହିଁ, କିନ୍ତୁ ଆପଣା ପରିଚୟ ଦେବା ଆଦୌ ଆବଶ୍ୟକ ବୋଲି ସେ ଜମା ଭାବିଲା ନାହିଁ ଟିକିଏ ବି ଅପ୍ରସ୍ତୁତ ନ ହୋଇ ସେ ତା ମୁହଁକୁ ସିଧା ଅନାଇଁ ରହିଲା ।

ବହୁତ ବେଳ ଭୁନଚାନରେ କଟିଗଲା । ପିଏରେକୁ ଖୁବ୍ ଅନ୍ତୁଆ ଲାଗୁଥାଏ । ବୋରିସ୍ କହିଲା, "କାଉଣ୍ଟ୍ ରୋସ୍ତଭ୍ କହି ପଠାଇଛନ୍ତି ଆପଣ ଆଜି ତାଙ୍କ ସଙ୍ଗରେ ଖାଇବେ ।"

"ଓହୋ, କାଉଣ୍ଟ୍ ରୋସ୍ତଭ୍ !" ପିଏରେ ହସଟାଏ ହସି ପାଟିକଲା, "ତା ହେଲେ ତୁମେ ତାଙ୍କ ପୁଅ ଇଲିଆସ୍ । ତେମେ ବିଶ୍ୱାସ କରିବ ମୁଁ ତମୁକୁ ମୋଟେ ଚିହ୍ନିପାରିଲି ନାହିଁ ? ମନେଅଛି ନା, ମାଦାମ୍ ଜାକଟଙ୍କ ସଙ୍ଗରେ ଆମେ ଦୁହେଁ କେମିତି ଏକାଠି ବୁଲି ଯାଉଥିଲୁଁ ? ଓଃ ! କେତେ ଯୁଗ ହେଇଗଲାଣି ?"

ଗୋଟାଏ ଶୀତଳ ବିଦ୍ରୁପର ହସ ହସି ବୋରିସ୍ କହିଲା, "ଆପଣ ମତେ ଭୁଲ୍ ଭାବିଛନ୍ତି, ମୁଁ ବୋରିସ୍, ପ୍ରିନ୍‌ସେସ୍ ଡ୍ରୁବେଟ୍‌ସ୍କୋଇଙ୍କ ପୁଅ । କାଉଣ୍ଟ୍ ରୋସ୍ତଭଙ୍କ ନିଜ ନାଁ ଇଲିଆସ, ତାଙ୍କ ପୁଅ ନାଁ ତ ନିକୋଲାସ୍ । ମୁଁ ମାଦାମ୍ ଜାକଟଙ୍କୁ କେବେ ଦେଖି ବି ନାହିଁ ।"

ପିଏରେ ମୁଣ୍ଡ ହଲେଇଲା, ହାତକୁ ଜୋର୍‌ରେ ଘୁଞ୍ଚିଲା, ଯେମିତି ସେ ଦଳେ ଡାଆଁଶ କି ମହୁମାଛିଙ୍କି ହୁରୁଡ଼ାଉଛି । କହିଲା, "ହେ ଭଗବାନ୍ ! ଯା' କି କଣ ହୁଏ ! ମୋ ମୁଣ୍ଡ ଭିତରେ ସବୁ ଗୋଳମାଳ ହୋଇଯାଇଛି । ମସ୍କୋରେ ମୋର ଏତେ ବନ୍ଧୁବାନ୍ଧବ । ତୁମେ ବୋରିସ ! ହଁ ସତେ ତ ! ଆଚ୍ଛା ନେପୋଲିଅନଙ୍କ ବୁଲୋନ୍ ଅଭିଯାନ ବିଷୟରେ ତୁମର କଣ ମତ ? ନେପୋଲିଅନ୍ ଖାଲି ଥରେ ଇଂଲଣ୍ଡ ଚ୍ୟାନେଲଟା ପାରିହୋଇ ଚାଲିଯାଆନ୍ତୁ ଏ ଇଂରେଜମାନଙ୍କ ଅକଲ ଗୁଡ଼ୁମ୍ ହୋଇଯିବ । ମତେ ତ ଲାଗୁଛି ଏ ଖୁବ୍ ସମ୍ଭବ, ଅବଶ୍ୟ କେବଳ ଭିଲେନୋଭଙ୍କ ଉପରେ ଯଦି ନିର୍ଭର କରିହେବ ତେବେ ।"

ବୋରିସ୍ କେବେ ଖବର କାଗଜ ପଢ଼େ ନାହିଁ । ସେ ଅଭିଯାନ କଥା ଆଦୌ ଜାଣି ନ ଥିଲା କି ଭିଲେନୋଭ୍ ନାଁ ଟା ବି ଶୁଣି ନ ଥିଲା । ସେ ତାର ଅଭ୍ୟସ୍ତ ବ୍ୟଙ୍ଗ ହସ ହସି କହିଲା, "ରାଜନୀତି ଅପେକ୍ଷା ଭୋଜି ଓ ଫୁସୁରୁ ଫାସୁରୁ ଜନରବ ବିଷୟରେ ଆମେ ମସ୍କୋବାଲେ ବେଶି ଚିନ୍ତା କରୁଁ । ସେସବୁ କଥା ମୁଁ କିଛି ଜାଣେ ନାହିଁ କି ମୁଁ ଭାବେଁ ବି ନାହିଁ । ଆମ ଆଲୋଚନାର ଏକମାତ୍ର ବିଷୟବସ୍ତୁ ହେଲେ ଆପଣ ଓ କାଉଣ୍ଟ୍ ।"

ପିଏରେର ମୁହଁ ତାର ସ୍ୱଭାବସୁଲଭ ଅକପଟ ସ୍ନେହୀ ହସରେ ଉଜ୍ଜ୍ୱଳ ଦିଶିଲା ଯଦିଓ ତାର ଆଶଙ୍କା ଥାଏ କାଳେ ଯେ ଆଗନ୍ତୁକ କୌଣସି ଅକଥା କହିଦେବ କି କେଉଁ ଅପ୍ରୀତିକର କଥା କହି ପକାଇବ । କିନ୍ତୁ ବୋରିସ୍ ପିଏରେ ମୁହଁକୁ ଅନାଇଁ ଶାନ୍ତ ହୋଇ ନୀରସ ସ୍ୱରରେ କଥା କହୁଥାଏ । କହିଲା, "ମସ୍କୋରେ ଅନ୍ୟ କଥା ଚିନ୍ତା କଲା ଭଳି ନାହିଁ । ସମସ୍ତେ ଧନ୍ଦି ହେଉଛନ୍ତି ଯେ କାଉଣ୍ଟଙ୍କ ସଂପତ୍ତିର ଉତ୍ତରାଧିକାରୀ କିଏ ହେବ; ଅଥଚ କିଏ ଜାଣିଛି, ଆମେ ସମସ୍ତେ ମରି ପୋଡ଼ା ହେଲା ପରେ ବି ହୁଏତ ସେ ବଞ୍ଚିଥିବେ ? ମୁଁ ତ ପ୍ରାଣପଣେ ଡାକୁଛି ସେ ସେମିତି ବଂଚିଥାନ୍ତୁ କି ।"

ପିଏରେ ତଥାପି ଅନୁଭବ କରୁଥାଏ ଯେ ବିଷୟଟା ଅଖାଡ଼ୁଆ, ଖନେଇ ଖନେଇ କହିଲା, "ହଁ, ଭାରି ଦୁଃଖର କଥା, ଭାରି ଦୁଃଖର କଥା ।"

ଟିକିଏ ନାଲି ପଡ଼ିଯାଇ କିନ୍ତୁ ବିବ୍ରତ ନ ହୋଇ ବୋରିସ୍ କହିଲା, "ଆପଣ ତ ନିଶ୍ଚୟ ଭାବୁଥିବେ ଯେ ସମସ୍ତେ ଏକା ଭଳିଆ ଭାବୁଥିବେ

କେମିତି ଏ କୋଟିପତିଙ୍କଠୁଁ ମୁଠାଏ ଲେଖାଁ ସୁନା ତାଙ୍କୁ ମିଳିଯାନ୍ତା କି !"

"ବାହାରିଲା ଏଥର !" ପିଏରେ ଭାବିଲା ।

"ଆଜି ଆପଣଙ୍କୁ ମୁଁ ବୁଝେଇଦେବାକୁ ଅତି ବ୍ୟାକୁଳ ଯେ ଆପଣ ଆମ ଉଦ୍ଦେଶ୍ୟ ବି ଜାଣିଥିବା ଭଲ, କାରଣ ଯଦି ଆପଣ ମତେ ଓ ମୋ ବୋଉକୁ ସେଭଳି ଲୋକଙ୍କ ତାଲିକାର ବୋଲି ଭାବି ନେବେ, ତେବେ ଆପଣଙ୍କର ଭାରି ଭୁଲ୍ ହେବ । ଆପଣଙ୍କ ବାପା ଖୁବ୍ ଧନୀ ଆଉ ଆମେ ଖୁବ୍ ଗରିବ; ଖାସ୍ ସେହି କାରଣରୁ ଆପଣଙ୍କ ବାପା ଆମ ବନ୍ଧୁବାନ୍ଧବ ବୋଲି ମୁଁ କେବେ ହେଲେ ଭାବି ନାହିଁ । ମୁଁ କି ମୋ ବୋଉ ତାଙ୍କୁ କିଛି ମାଗିବୁ ନାହିଁ କି ତାଙ୍କଠୁଁ କିଛି ନେବୁନାହିଁ ।

ଏକଥାଗୁଡ଼ାକ ପିଏରେ ହଠାତ୍ ବୁଝି ପାରିଲା ନାହିଁ, କିନ୍ତୁ ହଠାତ୍ ଆବେଗ ସହକାରେ ଅଖାଡ଼ୁଆ କରି ସେ ବୋରିସ୍‌ର ହାତକୁ ଧରି ପକାଇ ଲାଜରେ ନାଲି ପଡ଼ିଗଲା, କହିଲା "ସେ କେବେ ସମ୍ଭବ ! ଏଭଳି କେହି ଭାବିପାରେ ଯେ ମୁଁ···କି କେହି··· ।"

"ଆପଣଙ୍କୁ କହିଦେଇ ମତେ ଖୁସି ଲାଗିଲା, ମତେ କ୍ଷମା କରିବେ", ସାଉଁଳେଇଲା ସ୍ୱରରେ ବୋରିସ୍ କହିଲା, "ଆପଣଙ୍କୁ ଚଡ଼େଇବାକୁ ମୁଁ ଆଦୌ ଚାହୁଁନାହିଁ । ମୋର ନୀତି ହେଉଛି ଖୋଲା-ଖୋଲି ସିଧାସଳଖ ମନକଥା କହିଦେବା—ଛାଡ଼ନ୍ତୁ । କିନ୍ତୁ ଯେଉଁ ଖବର ଦେଇଥିଲି —କି ଉତ୍ତର ଯାଇ କହିବି ? ଆପଣ ରାତିରେ ତାଙ୍କ ଘରେ ଭୋଜିକୁ ଆସିବେ ?"

ଏପରି କହିଦେଇ ବୋରିସ୍ ଗୋଟାଏ ଅଖାଡ଼ୁଆ ଅବସ୍ଥାର ଦାୟିତ୍ୱ ଓ ବୋଝ ପରି ମୁଣ୍ଡକୁ ଖସାଇ ଦେଇସାରି ପୁଣି ଆଗପରି ଖୁବ୍ ସରସ ଓ ମେଳାପୀ ହୋଇଗଲା ।

ପିଏରେର ଉଦ୍‌ବେଗ ଶୀତଳ ହୋଇଗଲା । କହିଲା—"ଜାଣନ୍ତି ? ଆପଣ ଭାରି ଚମତ୍କାର ମଣିଷ । ଅପଣ ଯାହା ବର୍ତ୍ତମାନ କଲେ, ତା' ବଡ଼ ମହତ୍ କାର୍ଯ୍ୟ । ଆପଣ ତ ମତେ ଚିହ୍ନି ନାହାନ୍ତି—କେମିତି ବା ଜାଣନ୍ତେ ? ପିଲାଦିନୁଁ କେବେ ଆମେ ଦେଖାସାକ୍ଷାତ୍ ହୋଇ ନାଉଁତ'—ତେଣୁ ଆପଣ ଭାବିବା ସ୍ୱାଭାବିକ ଯେ···ମୁଁ ଠିକ୍ ବୁଝିପାରୁଛି, କିନ୍ତୁ ମୁଁ ଏଭଳି କରିପାରି ନଥାନ୍ତି, ଏଡ଼େ ସାହସ ମୋର ହୁଅନ୍ତା

ନାହିଁ···ବାସ୍ତବିକ ଖୁବ୍ ପ୍ରଶଂସନୀୟ । ଆପଣଙ୍କ ସଙ୍ଗେ ଚିହ୍ନା ହୋଇ ଖୁବ ଖୁସି ହେଲି । ବଡ଼ ବିସ୍ମୟର କଥା ।" ସେ ଟିକିଏ ଚୁପ କରିକହିଲ—

"ଆପଣ ପ୍ରକୃତରେ ଭାବିଥିଲେ ଯେ ମୁଁ·····।" ସେ ହସି ପକାଇଲେ ।

କିନ୍ତୁ ଆମେ ପରସ୍ପରକୁ ଆହୁରି ଭଲ କରି ଚିହ୍ନିବା ଯେ - ସେଇଆ ମୋର ଆଶା ଓ ପ୍ରାର୍ଥନା— ।"

ସେ ତା' ହାତକୁ ମୁଠେଇ ଧରିଲା, କହିଲ—"ଆପଣ ଜାଣନ୍ତି କାଉଣ୍ଟଙ୍କୁ ମୁଁ ଏ ପର୍ଯ୍ୟନ୍ତ ଦେଖି ବି ନାହିଁ, ସେ ମତେ ଡକେଇ ବି ନାହାନ୍ତି— ମୁଁ ମଣିଷ ତ, ମୋ ମନରେ ଦୁଃଖ ହେଉଛି, କିନ୍ତୁ ଅନ୍ୟ ଉପାୟ ନାହିଁ ।"

"ଆପଣ କଣ ସତରେ ଭାବୁଛନ୍ତି ଯେ ନେପୋଲିଅନ୍ ଯଥେଷ୍ଟ ସମୟ ପାଇବେ ଯେ ସେ ତାଙ୍କର ସମୁଦାୟ ସୈନ୍ୟବାହିନୀକୁ ସମୁଦ୍ର ପାରି କରେଇ ଆରପାଖକୁ ନେଇ ଯାଇପାରିବେ ?", ବୋରିସ୍ ପଚାରିଲା ।

ପିଏରେ ଦେଖିଲା ଯେ ବୋରିସ୍ କଥାଭାଷାର ବିଷୟବସ୍ତୁ ବଦଳାଇ ଦେବାକୁ ଚାହେଁ । ସେ ବୁଲୋନ୍ ଅଭିଯାନର ସୁବିଧା ଓ ଅସୁବିଧା କଥା ବୁଝାଇ ବସିଲା । ସେ କଥା ମଝିରେ ଥାଏ, ଜଣେ ଚାକର ଆସି ବୋରିସ୍‌କୁ କହିଲା ଯେ ତା' ଖୋଜ ପଡୁଛନ୍ତି । ବୋରିସ୍ ପିଏରେଠୁଁ ବିଦା ହେଲା । ପିଏରେ ଉତ୍ସାହରେ ତାର କରମର୍ଦ୍ଦନ କଲା ଓ ରୋଷ୍ଟଭ ଘର ଭୋଜକୁ ଯିବ ବୋଲି କଥା ଦେଲା ।

ବୋରିସ୍ ଚାଲିଗଲା ପରେ ସେ ପୁଣି ସେ ଘରଯାକ ବୁଲିଲା, କିନ୍ତୁ ଆଗ ପରି ନିଜେ ଆଉ ଅଦୃଶ୍ୟ ଶତ୍ରୁକୁ ଖଣ୍ଡାରେ ଭୁଷିଲା ପରି ଅଙ୍ଗଭଙ୍ଗୀ କଲାନାହିଁ । ଏହି ଯେଉଁ ନୂଆ ମଣିଷଟି ସଙ୍ଗରେ ତାର ବନ୍ଧୁତା ଏବେ ହେଲା ସେହି ବୁଦ୍ଧିମାନ୍ ଆଉ ହୃଦୟବାନ୍ ଲୋକଟି ପ୍ରତି ହଠାତ୍ ତାର ପ୍ରଗାଢ଼ ସ୍ନେହ ଆସିଲା, ସେହି ଅନୁଭୂତିରେ ସେ ହସିଲା । ସେ ନିଜେ ଏକଘରକିଆ ହେଲା ପରି ରହିଥିଲା । ଏହି ଅବସ୍ଥା ଯୋଗୁ ହିଁ ସେ ଏପରି ଭାବିଲା । ସେ ପ୍ରାୟ ନିଷ୍ପତ୍ତି କରିନେଲା ଯେ, ସେ ଏ ଚିହ୍ନାପରିଚୟକୁ ଆହୁରି ବଢ଼ାଇବ ।

ପ୍ରିନ୍‌ସ୍ ବେସିଲ୍ ପ୍ରିନ୍‌ସେସ୍‌ଙ୍କୁ ଗାଡ଼ିପାଖେ ପହଞ୍ଚାଇ ଦେବାକୁ ଗଲେ । ପ୍ରିନ୍‌ସେସ୍ ରୁମାଲରେ ମୁହଁ ଲୁଚେଇ କାନ୍ଦକାନ୍ଦକା ଚାଲିକୁ

ଓହ୍ଲାଇ ଆସିଲେ । ସେ ଭୂଷ୍ଟୁରୁ ଭୂଷ୍ଟୁରୁ ହୋଇ କହୁଥାନ୍ତି, "ଘୋର ଭୟଙ୍କର କଥା, ଘୋର ଭୟଙ୍କର, ତେବେ ଶେଷଯାକେ ମୁଁ ମୋ କର୍ତ୍ତବ୍ୟ କରିଯିବ । ମୁଁ ଫେରିଆସି ତାଙ୍କ ପାଖରେ ବସିବ, ତାଙ୍କୁ ଏ ଅବସ୍ଥାରେ ଏକୁଟିଆ ପକାଇବା ଚଳବ ନାହିଁ, ଅଇଛା ପ୍ରତି ମୁହୂର୍ତ୍ତ ମୂଲ୍ୟବାନ୍ । ତାଙ୍କ ଝିଆରୀମାନେ କାହିଁକି ଆଜ ଡେରି କରୁଛନ୍ତି ? କାହିଁକି ଅପେକ୍ଷା କରି ରହିଛନ୍ତି, ମୁଁ କିଛି ବୁଝି ପାରୁନାହିଁ । ଈଶ୍ୱରଙ୍କ ଇଚ୍ଛାହେଲେ, ମୁଁ ସ୍ୱାଙ୍କୁ ପ୍ରସ୍ତୁତ କରିବାକୁ ସୁବିଧା ଟିକିଏ ପାଇଯିବ । ମୁଁ ଯାଉଛି ପ୍ରିନ୍ସ, ନମସ୍କାର, ଭଗବାନ ଆପଣଙ୍କୁ ଆଶ୍ରା ହୁଅନ୍ତୁ, ଆଶ୍ୱାସ ଦିଅନ୍ତୁ ।"

ପ୍ରିନ୍ସ୍ ବେସିଲ୍ ମାମୁଲିଭାବରେ କହିଲେ, "ନମସ୍କାର ପ୍ରିନ୍ସେସ୍ !" ସେ ତାଙ୍କ ପୁଅଙ୍କ ସଙ୍ଗେ ଯେମିତି ଗାଡ଼ିରେ ବସିସାରିଲେ, ସେମିତି ସେ ତାଙ୍କ ପୁଅକୁ କହିଲେ, "ଅତି ସାଙ୍ଘାତିକ ଅବସ୍ଥାରେ ପଡିଛନ୍ତି ସେ, କାହାରିକି ଆଉ ଚିହ୍ନିପାରୁ ନାହାନ୍ତି ।"

ବୋରିସ୍ କହିଲା, "ପିଏରେ ସମ୍ପର୍କରେ ତାଙ୍କ ଉଦ୍ଦେଶ୍ୟ କଣ ମୁଁ କିଛି ବୁଝିପାରୁ ନାହିଁ ।"

ପ୍ରିନ୍ସେସ୍ କହିଲେ, "ତାଙ୍କ ଉଇଲ୍ରୁ ଯାଇ ସେ କଥା ଜଣାପଡ଼ିବ । ଆମ କପାଳ ବି ତାରି ଉପରେ ନିର୍ଭର କରୁଚି ।"

"କାହିଁକି ତତେ ଲାଗୁଚି ସେ ଆମକୁ କିଛି ଦେଇଯିବେ ?" "ଆରେ ବାବୁ, ସେ କେଡ଼େ ଧନଲୋକ ! ଆଉ ଆମେ କେଡ଼େ ଦରିଦ୍ର !" "ଏଇ କାରଣରୁ ଆମକୁ ସେ କିଛି ଦେବେ ମତେ ଏ କଥା ମୋଟେ ପସନ୍ଦକୁ ଆସୁନାହିଁ ଲୋ ବୋଉ ?"

"ହେ ଭଗବାନ, ସେ କେଡ଼େ ବେମାର ଅଛନ୍ତି ! ଏଁ !" ତା ବୋଉ ଚିଚିରେଇଲେ ।

---

# ଅଷ୍ଟାଦଶ

ଆନ୍ନା ମିଖାଇଲୋଭ୍ନା ଆଉ ତାଙ୍କ ପୁଅ ଯେତେବେଳେ ଚାଲି ଚାଲିଗଲେ, ସେତେବେଳେ କାଉଣ୍ଟେସ୍ ପଡ଼ିଗଲେ ଏକୁଟିଆ । ସେ ଚିନ୍ତାରେ ବୁଡ଼ିଥାନ୍ତି । ମଝିରେ ମଝିରେ ଲୁହ ଟୋପାଏ ଲେଖାଁ ପୋଛୁଥାନ୍ତି । ଶେଷରେ ସେ ଡାକବା ଘଣ୍ଟି ବଜାଇଲେ । ଘଣ୍ଟି ଶୁଣି ଆସି ପହଞ୍ଚିବାକୁ ଚାକରାଣୀ ଡେରିକଲା । ସେତେବେଳକୁ ତାଙ୍କ ସ୍ନାୟୁସବୁ ଦୁର୍ବଳ ହେଲାଣି, ତାଙ୍କ ସାଙ୍ଗଙ୍କ ଦୁଶ୍ଚିନ୍ତା ଆଉ ଦାରିଦ୍ର୍ୟ କଥା ଭାବି ଭାବି ସେ ଭାରି ବ୍ୟସ୍ତ ହେଉଥାନ୍ତି, ଆଉ ସେ ଭାରି ବିରକ୍ତ ହେଉଥାନ୍ତି ବି ।

ସେ ଚାକରାଣୀ ଟୋକୀକୁ କହିଲେ, "ମତେ ଲାଗୁଚି, ତୋର କାମ କରିବାକୁ ଆଉ ମନ ନାହିଁ । ହଉ, ତୋ ଇଚ୍ଛା । ତୋ ପାଇଁ ଆଉ କୋଉଠି ଗୋଟାଏ ଘର ଠିକଣା କରିଦେଲେ ହେବ ।" ଚାକରାଣୀ ନିଉଛାଳ ହୋଇ କ୍ଷମା ମାଗିଲା । ସେ କହିଲେ, "ଗଲୁ କାଉଣ୍ଟଙ୍କୁ କହିବୁ ଟିକଏ ମୋ ପାଖକୁ ଆସିବେ—"

କାଉଣ୍ଟ୍ ଶୁଣୁ ଶୁଣୁ ଆସି ପହଞ୍ଚିଲେ, ଲାଜ ଲାଜ ହୋଇ ହଲି-ଦୋହଲି ସେ ଭାରିଯାଙ୍କ କଡ଼କୁ ଆସିଲେ । କହିଲେ, "ଆହା, ଟିକି କାଉଣ୍ଟେସ୍ । କେଡ଼େ ବଢ଼ିଆ ଖାନାଟାଏ ଆଜି ହେବ ! ତିତିର ଚଢ଼େଇ ତରକାରି ଆଉ ମାଦିରା ମଦ ! ମୁଁ ଜାଣେ, ମୁଁ ଚାଖିଚି । ତାରାସ୍‌କୁ ମୁଁ ଦେଇଚି ହଜାରେ ରୁବଲ୍, ତା ପାଇବାକୁ ଯୋଗ୍ୟ ବି ସେ ।" ସେ ତାଙ୍କ କଡ଼ରେ ବସି ପଡ଼ିଲେ, ଗୋଟାଏ ପାପୁଲିରେ ଆପଣା ମୁଣ୍ଡ ଆଉଁସିଲେ । ଗଡ଼ କଢ଼ସାରିଲା ଭଙ୍ଗୀରେ ଆଉ ପାପୁଲିକି ଆପଣା ଆଣ୍ଠୁ ଉପରେ ଥୋଇଲେ । କହିଲେ, "କାହିଁକି ମତେ ଡାକୁଥିଲ, ସାନ କାଉଣ୍ଟେସ୍ ?"

"କହୁଚି ରହିଥା । ଏ ଦାଗ କୋଉଠୁ ଲାଗିଲା ?" ତାଙ୍କ ୱେଷ୍ଟକୋଟ୍ ଉପରେ ଠାଏ ଦେଖାଇଦେଇ ସେ କହିଲେ, "ସ୍ୱେ ସେଇ

ଟଙ୍କର ଖୋଲ ନିଷ୍ପତ୍ତି ।" ସେ ହସିଲେ । ପୁଣି କହିଲେ, "ବୁଝିଲ, ମୋର କିଛି ଟଙ୍କା ଦରକାର—" ତାଙ୍କ ମୁହଁ ବିଷଣ୍ଣ ଦିଶିଲା ।

"ସତେ ?" କାଉଣ୍ଟ କହିଲେ, "ତେବେ କଣ କ···" ସେ ଚଞ୍ଚଳ ତାଙ୍କ ପକେଟ ବହି ବାହାର କଲେ ।

"ହଁ, ଦରକାର ।" କାଉଣ୍ଟେସ୍ କହିଲେ, "ବହୁତ ଟଙ୍କା ଦରକାର, ମୋର ପାଞ୍ଚ ଶହ ରୁବ୍‌ଲ ଦରକାର ।" କହିଲା ବେଳେ ସେ ତାଙ୍କ ଓ୍ବେଷ୍ଟ୍ କୋଟ୍ ଉପରର ଦାଗକୁ ତାଙ୍କ ଦାମୀ କ୍ୟାମ୍ବ୍ରିକ୍ ରୁମାଲ୍‌ରେ ଘଷୁଥାନ୍ତି ।

"ନିଶ୍ଚୟ, ଏଇ ସାଙ୍ଗେ ସାଙ୍ଗେ ଦେଉଛି", କାଉଣ୍ଟ କହିଲେ ଆଉ ନିଷ୍ପତ୍ତି କରିଦେଇ ଏଭଳି ଏକ କୁହାଟ ମାରିଲେ ଯେମିତି ସେହିପରି ମଣିଷ ଡାକନ୍ତି ଯେ ଜାଣନ୍ତି ଯେ ଲୋକେ ତାଙ୍କ କଥା ମାନିବେ, ଆଉ ତାଙ୍କ ଡାକ କାନରେ ପଡ଼ିଲାମାତ୍ରେ ନଇଁନଇଁକା ନସର ପସର ହୋଇ ଚାକରମାନେ ଛୁଟି ଆସିବେ । କାଉଣ୍ଟ କୁହାଟ ଛାଡ଼ିଲେ, "ମିତେଙ୍କାକୁ କହିଲ ଆସିବ ।"

ମିତେଙ୍କା ଜଣେ ଭଦ୍ରଘରର ପିଲା । କାଉଣ୍ଟ ତାକୁ ପାଳିଥିଲେ । ବଡ଼ ହେଲାରୁ ବିଶ୍ବାସରେ ତାଙ୍କର ସବୁଯାକ ବିଷୟକୁ ବୁଝାଶୁଝା କରିବା ଭାର ତାକୁ ଦେଇ କାର୍ପରଦାର କରିଥିଲେ । ମାପିଲା ପରି ପାହୁଣ୍ଡ ପକାଇ ଧୀରେ ଧୀରେ ଚାଲି ଚାଲି ସେ ଆସି ଖାଉନ୍ଦ ଆଗରେ ସଂଭ୍ରମ ସହକାରେ ଠିଆ ହେଲା ।

କାଉଣ୍ଟ କହିଲେ, "ଶୁଣରେ ବାବୁ, ଯା ମତେ ଆଣି ଦେ···" ସେ ଅଟକିଯାଇ କହିଲେ, "ଆଣିଦେ ସାତ ଶହ ରୁବ୍‌ଲ, ହଁ, ସାତ ଶହ । ଆଉ ହଁ, ନୋଟ୍‌ଗୁଡ଼ାକ ଯେମିତି ଗଲାଥର ପରି ମଇଳା ଚିରା ନୋଟ୍ ନ ହୋଇଥିବ । ସେଗୁଡ଼ାକ କାଉଣ୍ଟେସ୍ ନେବେଟି !"

କାଉଣ୍ଟେସ୍ ଦୀର୍ଘଶ୍ବାସ ପକାଇ କହିଲେ, "ହଁ ମିତେଙ୍କା, ସଫା ନୋଟ ଦରକାର ।" ସେ ଦୀର୍ଘଶ୍ବାସ ପକାଇଲେ ।

"ମଣିମାଙ୍କର କେବେ ଦରକାର ସେ ନୋଟ ? ମଣିମା ତ ଜାଣିଥିବେ ଯେ—" ମିତେଙ୍କା ଆଉ କଣ କହିଥାନ୍ତା କିନ୍ତୁ, ସେ ଦେଖିଲା କାଉଣ୍ଟ ସଁ ସଁ ହୋଇ ଖର ନିଶ୍ବାସ ଛାଡ଼ୁଛନ୍ତି, ସେ ରାଗିବା ଆଗରୁ ଯେ ଏକ ନିଶ୍ଚିତ ଲକ୍ଷଣ, ତେଣୁ ମିତେଙ୍କା ତରତର ହୋଇ କହିଲା,

"ଯାହାହେଉ ମଣିମା ନିଶ୍ଚିନ୍ତ ରହନ୍ତୁ । —ମୁଁ ଭୁଲିଯାଇଥିଲି, ମଣିମାଙ୍କୁ ନୋଟ୍ ଆଣି ଦେଉଛୁ ।"

"ବେଶ୍, କାଉଣ୍ଟେସ୍‌ଙ୍କୁ ଆଣି ଦେଇଯା—" କାଉଣ୍ଟ୍ କହିଲେ, ମିତେଙ୍କା ଚାଲି ଯାଉ ଯାଉ ତା ପଛଆଡ଼କୁ ଅନାଇ କହିଲେ, "ପିଲାଟା ତ ଗୋଟାଏ ରତ୍ନ ଆଜ । କୌଣସି କଥା ହୋଇପାରିବ ନାହିଁ ବୋଲି ସେ କେବେ କହେ ନାହିଁ । ମତେ ସେଇଟା ଖୁସିଲାଗେ । ଏମିତିଆ ହେବା ଉଚିତ ।"

"ଓଃ ! ଟଙ୍କା ! ଟଙ୍କା ! ଦୁନିଆରେ କେତେ ଅଶାନ୍ତି ସେ ନ କରେ । ମୋର ଏଇଟା ଭାରି କାମରେ ଲାଗିବ ।"

ତାଙ୍କର ସ୍ୱାମୀ କହିଲେ, "ତମେ କେଡ଼େ ଖର୍ଚ୍ଚୀ ଏକଥା ସମସ୍ତେ ଜାଣନ୍ତି, ବୁଝିଲ ଟିକେ କାଉଣ୍ଟେସ୍ !" ସେ ତାଙ୍କ ହାତ ପାପୁଲିକି ଗେଲକରି ତାଙ୍କ ପାଖରୁ ଲାଗିଲେ ।

ଅଳ୍ପ ସମୟ ଭିତରେ ତାଙ୍କୁଏ ନୂଆ ଖସଖସିଆ ନୋଟ୍ କାଉଣ୍ଟେସ୍‌ଙ୍କୁ ଦିଆହେଲା । ସେ ସେ ନୋଟକୁ କୋଡ଼ରେ ଥୋଇଦେଇ ରୁମାଲ ଘୋଡ଼େଇ ପକାଇଲେ । ଅଳ୍ପ କେତେମିନିଟ୍ ଭିତରେ ପ୍ରିନ୍‌ସେସ୍ ଡ୍ରୁବେଜ୍‌କୋଇ ଆସି ପହଞ୍ଚିଗଲେ । କାଉଣ୍ଟେସ୍ ଦେଖିଲେ ଯେ ସେ ଭାରି ଚିନ୍ତିତା ଦିଶୁଛନ୍ତି ।

"କଣ ହେଲା କି ?" ସେ ପଚାରିଲେ ।

"ସେ ଅତି ଭୟାନକ କଥା । ସେ ଯାହା ହେଲେଣି ତେମେ ତାଙ୍କୁ ଦେଖିଲେ ଚିହ୍ନିପାରିବ ନାହିଁ । ବଡ଼ଭାରି ଭାରି ବେମାର । ମୁଁ ତାଙ୍କ ପାଖେ ମିନିଟିଏ ରହିଚି କି ନାହିଁ, ଦିପଦ ବି କଥା କହିଲି ନାହିଁ ।"

"ହେଇ ଶୁଣ ଆନ୍ନା, ତେମେ ଯଦି ପ୍ରକୃତରେ ମତେ ଭଲପାଅ, ଗୋଟିଏ କଥା କହିବି, ରଖିବଟି ?" କାଉଣ୍ଟେସ୍ କେମିତି ଅସଂଶ୍ଳିଷ୍ଟଭାବେ କହିଦେଲେ, ତାଙ୍କଠି କେମିତି ଏକପ୍ରକାର ସଙ୍କୋଚର ଭାବ ଫୁଟିଉଠିଲା । ସେ ତାଙ୍କ ସାଧାରଣ ଭଙ୍ଗୀ ସହିତ ମାନିଲା ନାହିଁ, ତାଙ୍କ ଦେହ ଶୁଖି ଯାଇଥିଲେ ବି ତାଙ୍କ ସାଧାରଣ ଭଙ୍ଗୀ ଢଣେ କଠୋର । ସେ ରୁମାଲ ଟେକିନେଇ ନୋଟ ପ୍ୟାକେଟଟିକି ଆନ୍ନା ମିଖାଇଲୋଭ୍ନାଙ୍କୁ ବଢ଼ାଇ-ଦେଲେ । ସେ କି ପଦାର୍ଥ ପ୍ରିନ୍‌ସେସ୍ ତା ଜାଣିପାରିଲେ, ଆଉ ବନ୍ଧୁଙ୍କୁ କୁଣ୍ଢେଇ ପକାଇବାକୁ ନଇଁ ପଡ଼ିଲେ ।

କାଉଣ୍ଟେସ୍ କହିଲେ, "ବୋରିସ୍‌ର ପୋଷାକପାଇଁ ଏତକ—" ଭାବବିହ୍ୱଳ ହେବାଲାଗି ମୁହୂର୍ତ୍ତେ ଆସିଗଲା, ପ୍ରିନ୍‌ସେସ୍ କାନ୍ଦପକାଇ ନାଟାସାଙ୍କୁ କୁଣ୍ଢେଇ ପକାଇଲେ ।

କାହିଁକି ସେ ବନ୍ଧୁଙ୍କାଦହେଁ କାନ୍ଦିଲେ ? କାନ୍ଦ କଣ ଏଇଥିପାଇଁ ଯେ ସେମାନେ ପଇସା କଉଡ଼ି କଥା ବିଚାର କରିବା ଭଳି ଅବସ୍ଥାକୁ ଓହ୍ଲେଇ ଆସିଥିଲେ ବୋଲି, ନା କଣ ? ବନ୍ଧୁମାନଙ୍କ ଭିତରେ ପଇସା କଉଡ଼ି କଥା ତ ଏକ ଅରୁଚିକର ବିଷୟ । ନା ସେମାନେ ତାଙ୍କ ପିଲାଦିନ କଥା ଭାବୁଥିଲେ, ସେଇ ଯେତେବେଳେ ପହିଲ ହୋଇ ସେମାନେ ପରସ୍ପରକୁ ଭଲ ପାଇଥିଲେ ? ଯାହା କାରଣ ହେଉ, ଅବାରିତଭାବେ ତାଙ୍କ ଲୁହ ବୋହି ଚାଲିଲା । ଆଜି ସେହି ଲୁହ ତାଙ୍କୁ ପରମ ତୃପ୍ତି ଦେଲା ।

---

## ଊଣେଇଶ

କାଉଣ୍ଟେସ୍ ରୋଷ୍ଟଭ୍ ବୈଠକଖାନାରେ ଥିଲେ, ସଙ୍ଗରେ ତାଙ୍କ ଝିଅମାନେ ଆଉ ଦଳେ ଭଦ୍ରମହିଳା । ପୁରୁଷ ଲୋକଙ୍କୁ ତାଙ୍କ ସ୍ୱାମୀ ତାଙ୍କ ବଖୁରିକି ନେଇ ଯାଇଥିଲେ । ଜାତିଜାତିକା ଧୂଆଁ ପିଇବା ନଳି ସେ ସଂଗ୍ରହକରି ରଖିଥିଲେ, ସେଇଆ ସେମାନଙ୍କୁ ଦେଖାଉଥାଆନ୍ତି । ମଝିରେ ମଝିରେ ବୈଠକ୍‌ଖାନାକୁ ଆସି ଉଣ୍ଡୁଥାନ୍ତି ଯେ ମେରିଆ-ମିତ୍ରିଏନା ଆଫ୍ରସିମାଭ୍ ଆସିଲେଣି କି ନାହିଁ ।

ମେରିଆ ମିତ୍ରିଏନାକୁ ଲୋକେ ନାଁ ଦେଇଥାନ୍ତି, "ଭୟଙ୍କର ଡ୍ରାଗନ୍ ।" ତାଙ୍କର ସମ୍ପତ୍ତି ନ ଥାଏ କି ତାଙ୍କର ସେମିତି କିଛି ନାଁ ଡାକ ବଂଶ ନୁହେଁ କିନ୍ତୁ ସେ ଅତି ସଚ୍ଚୋଟ ଆଉ ସ୍ପଷ୍ଟବାଦିନୀ, ତାଙ୍କ ହାବଭାବ ସହଜ ଆଉ ସ୍ୱାଭାବିକ । ସମ୍ରାଟଙ୍କ ପରିବାରରେ ତାଙ୍କର ଚହ୍ଲା ଜଣା ଥିଲା । ଯୋଡ଼ିକିଯାକ ରାଜଧାନୀର ସବୁଠୁଁ ଉଚ୍ଚଶ୍ରେଣୀର ଲୋକ ଯେତେ, ସମସ୍ତିଙ୍କୁ ଦେଖିବ ତାଙ୍କ ଘରେ । ତାଙ୍କର ସହଜ ନିଃସଂକୋଚ ହାବଭାବ ଦେଖି ଲୋକେ ତାଙ୍କୁ ଭିତରେ ଭିତରେ ଥଟ୍ଟା କରନ୍ତୁ ପଛେ, ପଛେ ତାଙ୍କ ଅଖାଡ଼ୁଆମି ବିଷୟରେ ନାନା ରଚିତ କାହାଣି କହନ୍ତୁ, ତାଙ୍କୁ ଡରୁଥିଲେ, ମାନୁଥିଲେ ସମସ୍ତେ ।

କାଉଣ୍ଟଙ୍କ ବୈଠକଖାନାରେ ଲୋକେ ଧୂଆଁ ପିଉଥିଲେ ଆଉ ଯୁଦ୍ଧ ବିଷୟରେ କୁହାକୋହି ହେଉଥିଲେ । ସେତେବେଳକୁ ଯୁଦ୍ଧ ଘୋଷଣା ହୋଇସାରିଥାଏ । ଯୁଦ୍ଧ ପାଇଁ ସୈନ୍ୟ କେମିତି ସଂଗ୍ରହ କରାଯିବ ଏହି ବିଷୟରେ ଏକ ଇସ୍ତାହାର ଛପା ହୋଇଥାଏ ଯେ ତାହାରି ଭିତରେ ଯୁଦ୍ଧ ଘୋଷଣା ହୋଇ ସାରିଥିବା କଥାଟା ସର୍ବସାଧାରଣଙ୍କ ଅବଗତି ନିମନ୍ତେ ପ୍ରକାଶ କରା ହୋଇଥାଏ । ସେଠି ଯେତେ ଲୋକ ଥିଲେ ତାଙ୍କ ଭିତରୁ କେହି ସେ ଇସ୍ତାହାର ପଢ଼ି ନଥାନ୍ତି, କିନ୍ତୁ ସମସ୍ତେ ଜାଣିଥାନ୍ତି

ଯେ ସେଇଟା ଛପା ହୋଇଛି । ଦ ପାଖେ ଦ ଜଣ ଅତିଥିଙ୍କ ମଝିରେ ଗୋଟାଏ ଆସନରେ କାଉଣ୍ଟ ଚୁପ୍‌ଚାପ୍ ହୋଇ ବସିଥାନ୍ତି, ଅତିଥି ଦୁହେଁ ଧୂଆଁ ଟାଣୁଥାନ୍ତି କଥା ଗପୁଥାନ୍ତି, କାଉଣ୍ଟ ଜଣଙ୍କଠୁଁ ଆଉଜଣଙ୍କ ଆଡ଼କୁ ଡାଳ ଡାଳ କଥା ଶୁଣୁଥାନ୍ତି, ଲାଗୁଥାଏ ଯେପରି କି ସେ କଥା ଶୁଣିବାକୁ ଭାରି ଆଗ୍ରହୀ ।

ସେ ଦୁଇ ଅତିଥିଙ୍କ ଭିତରୁ ଜଣେ ଏକ ବେ-ସାମରିକ ଅଫିସର, ସେ ଏକଦମ୍ ଆଜକାଲିକା ଚଳଣିର ପୋଷାକ ପିନ୍ଧିଥିଲେ ବି ତାଙ୍କର ଶୁଖୁଟା ହଲଦିଆ ଦାଢ଼ୁଆ ଖିଅର ହୋଇଥିବା ମୁହଁ ଦେଖି ତାଙ୍କ ବୁଢ଼ା ବୟସ ଜଣା ପଡ଼ିଯାଉଥାଏ । ଜଣେ ମଣିଷ ଆପଣା ଘରେ ଅଛି, ତାକୁ ଏମିତି ଲାଗିଲେ ସେ ଯେପରି ସ୍ୱଚ୍ଛନ୍ଦରେ ବସନ୍ତା, ସେହିପରି ଢଙ୍ଗରେ ସେ ବି ସେ ଆସନ ଉପରେ ଦି ଗୋଡ଼ ଭାଙ୍ଗିଦେଇ ଚେକା ପକାଇ ବସି-ଥିଲେ । ସେ ଏକ 'ଚିବୁକେ' ହୁକା ଟାଣୁଥାନ୍ତି, ତାର ନଳ ମୁହଁଟା 'ଆମ୍ବର'ରେ ତିଆରି । ଖୁବ୍ ଘଡ଼ ଘଡ଼ ଶବ୍ଦ କରି ଜୋରରେ ଜୋରରେ ଟାଣି ଟାଣି ସେ ଧୂଆଁ ପିଉଥାନ୍ତି, ଆଉ ନାନା ଭଙ୍ଗୀରେ ମୁହଁକୁ ବିକୃତ, କରୁଥାନ୍ତି । ସ୍ଚିନ୍‌ଚିନ୍ ଜଣେ ଓଥରା ବୁଢ଼ା, କାଉଣ୍ଟେସ୍‌ଙ୍କର ଏକ ବନ୍ଧୁ ବାନ୍ଧବ, ମସ୍କୋର ବୈଠକ୍‌ଖାନାମାନଙ୍କରେ ତାଙ୍କର ପରିଚୟ ଯେ ସେ ଜଣେ ପରନିନ୍ଦୁକ ଗପୁଡ଼ି ମଣିଷ । କଥା କହିଲାବେଳେ ସେ ଏମିତି ଢଙ୍ଗରେ କହନ୍ତି, ଯେମିତିକି ଯେ ତାଙ୍କ କଥା ଶୁଣିଛି ତାର, ଭାରି ମାନ ବଢ଼ି ଯାଉଛି ।

ଆଉ ଜଣଙ୍କ ସମ୍ରାଟଙ୍କ ସୈନ୍ୟବାହିନୀର ଜଣେ ଟୋକା ଅଫିସର, ଖୁବ୍ ଛନ୍‌ଛନିଆ, ଗାଲରେ ଗୋଲାପୀ ବର୍ଣ୍ଣ, ମୁଣ୍ଡବାଳ କୁଞ୍ଚୁ-କୁଞ୍ଚିଆ, ପ୍ରଚୁର ପରିପାଟିରେ ସେ ପ୍ରସାଧାନ କରିଥାଏ, ନୂଆ ପିନ୍‌ଧଣ୍ଟା ପରି ସେ ଚେଙ୍ଗା ପିଲା । ଚେରି ଫୁଲ ପରି ନାଲି ନାଲି ଓଠ ଦିଫାଳ ମଝିରେ ସେ ତାର 'ଚିବୁକେ' ହୁକାର ନାଡ଼କୁ ଆସ୍ତେ ଧରି ହାଲୁକା କରି ଶୋଷୁଥାଏ ଯେ ଧୂଆଁର ପାତଳ ମେଘ କୁଣ୍ଡଳ ପରି ମୋଡ଼ ମୋଡ଼ ହୋଇ ଉଠୁଥାଏ । ସେ ହେଉଛ ୍ ଲେଫ୍‌ଟେନେଣ୍ଟ ବର୍ଗ, ସେ ଆଉ କୋରସ୍ ଦିହେଁ ସେନାପତି ସେମେନ୍‌ଭ୍‌ସ୍କିଙ୍କ ସୈନ୍ୟଦଳରେ ଯୋଗଦାନ କରିବାକୁ ଯାଉଥାନ୍ତି । "ଭେରାଅପାର୍ ବର୍ଗ" ବୋଲି ଯାଙ୍କର କଥାକୁ— ନାତାଶା ଉପଲକ୍ଷ୍ୟ ଦେଇ କହିଥିଲା ।

କାଉଣ୍ଟ୍ ବସି ବସି ମନ ଧ୍ୟାନ ଦେଇ କଥା ଶୁଣୁଥାନ୍ତି । ଜୀବନରେ ତାଙ୍କର ଚରମ ଆନନ୍ଦ ଥିଲା ତାସରେ ବୋଷ୍ଟନ୍* ଖେଳ ଖେଳିବା ଆଉ ତାଙ୍କ ଭାଗ୍ୟକୁ ଯେତେବେଳେ ଦୁଇଜଣ ଅବସରପ୍ରାପ୍ତ ଗପୁଡ଼ି କେବେ ମିଶିଯାଆନ୍ତି, ସେତେବେଳେ ତାଙ୍କଠୁଁ କଥା ଶୁଣିବା ।

"ଶୁଣନ୍ତୁ ଆଲ୍‌ଫୋଁସେ କାର୍ଲୋଭିଚ୍, ଆପଣ ତ ଏକ ମହା ସମ୍ମାନିତ ବ୍ୟକ୍ତି, କହନ୍ତୁ ତ ଆପଣ ସେ କାମଟାକୁ କେମିତି ଭୁଲେଇବେ ? ଆପଣ କଣ ଏଇଆ ଭାବିଛନ୍ତି ଯେ ସରକାରୀ ଟଙ୍କାରେ ଆପଣଙ୍କ କମ୍ପାନୀଟା ଚାଲିବ, ଆଉ ଆପଣ ତା ଉପରେ ମୋଟା ସୁଧ ପାଇବେ ? ନା କଣ ଆଜ୍ଞା ?" ସ୍ଥିନ୍‌ସିନ୍ ବ୍ୟଙ୍ଗ କରି ପଚାରିଲେ । କଥା କହିଲାବେଳେ ରୁଷ୍ ଭାଷାର ଗାଉଁଲି ଶବ୍ଦ ସହିତ ଫରାସୀ ଭାଷାର ସାଧୁଶବ୍ଦମାନ ଯୋଡ଼ି ଦେଇ ସେ ଏଭଳି ଭାଷା ସୃଷ୍ଟି କରନ୍ତି, ଯାହା ଫଳରେ କଥାଭାଷାରେ ଏକ ବିଚିତ୍ର ମୌଳିକ ନିଜସ୍ୱ ଭାଷା ଯୋଡ଼ି ଦେଲା ପରି ଲାଗେ ।

ବର୍ଗ୍ କହିଲା, "ତା ନୁହେଁ, ପିଟର ନିକୋଲାଇଭିଚ୍, ମୋର ଖାଲି ଏତିକ ପ୍ରମାଣ କରିବାକୁ ଇଚ୍ଛା ଯେ ପଦାତିକ ବାହିନୀରେ କାର୍ଯ୍ୟ କରିବା ଅପେକ୍ଷା ଅଶ୍ୱାରୋହୀ ବାହିନୀରେ କାମ କରିବାରେ ବହୁତ କମ୍ ସୁବିଧା । ରହନ୍ତୁ ଆପଣ ବୁଝିବେ ମୁଁ ଯାହା କହୁଛି···"

ବର୍ଗ୍‌ର କଥା ସବୁବେଳେ ଥଣ୍ଡା, ସଜଡ଼ା ସଜଡ଼ି ଆଉ ଭଦ୍ର । ସେ ନିଜ କଥା ଛଡ଼ା ଆଉ କେଉଁ କଥା କେତେବେଳେ ହେଲେ ପକାଏ ନାହିଁ, କିନ୍ତୁ ଯେତେବେଳେ କୌଣସି କଥାଭାଷା ଭିତରେ ତାର ବ୍ୟକ୍ତିଗତ ସମ୍ପର୍କ କିଛି ନାହିଁ ବୋଲି ସେ ଦେଖିଲା ତ ନିଜେ ଅସ୍ୱସ୍ତି ଅନୁଭବ ନ କରି କି ପରକୁ ଅଖାଡ଼ୁଆ ଲାଗିଲା ଭଳି କିଛି ନ କରି ସେ ଅକଳନ ସମୟ ଯାକେ ତୂନୀତାନ ହୋଇ ବସି ରହି ପାରୁଥିଲା, କିନ୍ତୁ ବେଳ ଆସିଲେ ଖୁବ୍ ଖୁସି ହୋଇ ସେ ଆଗକୁ ଡେଇଁ ପଡ଼ୁଥିଲା ।

"ଶୁଣନ୍ତୁ, ଘଟନାଟା ହେଉଛି ଏମିତି—" ସେ କହି ଚାଲିଲା, "ଯେ ଅଶ୍ୱାରୋହୀ ବିଭାଗରେ ମୁଁ ଲେଫ୍‌ଟେନେଣ୍ଟ୍ ହେଲେ ବି ଯୁଦ୍ଧ

---

* ବୋଷ୍ଟନ୍ ଏକପ୍ରକାର ତାସ୍ ଖେଳ । ଲୋକେ କହନ୍ତି ଆମେରିକାରେ ଯେତେବେଳେ ସ୍ୱାଧୀନତା ଲଢ଼େଇ ଲାଗିଥିଲା ସେତେବେଳେ ସେଠି ଫରାସୀ ଅଫିସରମାନେ ଏ ଖେଳ ଆବିଷ୍କାର କରିଥିଲେ । ଦୁଇ ମୁଠା ତାସ ଧରି ଚାରିଜଣ ଖେଳାଳି ଏକାଠି ଏ ଖେଳ ଖେଳନ୍ତି ।

ମାସରେ ୨୦୦ ରୁବ୍ଲ ରୁ ବେଶି ପାଆନ୍ତି ନାହିଁ, କିନ୍ତୁ ଅଇଛା ତ ମତେ ୨୩୦ ରୁବ୍ଲ୍ ମିଳୁଛି।" ଏତକ କହି ଦେଇ ବର୍ଗ୍ ସ୍କିନ୍‌ସିନ୍ ଓ କାଉଣ୍ଟ ଦୁହିଙ୍କି ଚାହିଁ ଖୁବ୍ ଖୁସି ଆଉ ବିଶ୍ୱାସରେ ହସିଦେଇ ସତେ ଯେପରି କି ତାର ଚାକିରି ଜୀବନଟା ସେହି ଶୁଣିବା ଲୋକମାନଙ୍କୁ ଭାରି ଜରୁରି କଥା ପରି ଲାଗୁଛି, କହିଲା, "ତା ଛଡ଼ା ଏଥିରେ ମୁଁ ସମସ୍ତିଙ୍କ ନଜରରେ ପଡ଼ିବି: ସମସ୍ତେ ମତେ ଚହ୍ନିବେ ଆଉ ଏଥିରେ ପଦୋନ୍ନତି ପାଇଁ ଜାଗା ବି ଖାଲି ହୁଏ ଚଞ୍ଚଳ ଚଞ୍ଚଳ। ତା ବୋଲି ସବୁଦିନେ ତ ଆଉ ମୁଁ ୨୩୦ ରୁବ୍ଲ୍ ପାଇ ଚଳିପାରିବି ନାହିଁ, ସେଥିରୁ କାଟି ରଖି ବାପାଙ୍କ ପାଖକୁ ବି ଟଙ୍କା ପଠାଏଁ—" ଏକ ଧୂଆଁ ମେଘ ଛାଡ଼ି ଦେଇ ବର୍ଗ୍ କହିଲା।

ସ୍କିନ୍‌ସିନ୍ କହିଲା, "ହିସାବଟା ଭାରି କଷୋଟ, କହନ୍ତି ନାହିଁ, ଜଣେ ଜର୍ମାନ୍ ତାର କୁରହାଡ଼ି ପିଠିଆଡ଼େ ବି କାମ କରିବ, କିଛି ନ ହେଲେ ତା ଗୋଡ଼ର ବିଣ୍ଡି ବି ସେଥିରେ ଘଷିଦେଇ ଉଠେଇ ଦେବ, ସେମିତିଆ କଥା—"

ସ୍କିନ୍‌ସିନ୍ ତା ପାଟିର ଆର କଣକୁ ଧୂଆଁ ନଳୀଟାକୁ ଘୁଞ୍ଚେଇ ନେଇ କାଉଣ୍ଟଙ୍କ ଆଡ଼କୁ କଣେଇଁ ଚାହିଁଲା, କାଉଣ୍ଟ୍ ହସି ହସି ଗଡ଼ିଲେ।

ଆଉ ଯେତେ ଥିଲେ ସେମାନେ ଦେଖିଲେ ଯେ ସ୍କିନ୍‌ସିନ୍ ତା ଶକ୍ତିର ଚରମ ବିକାଶରେ ଅଛି, ସେମାନେ ମଜା ଦେଖିବାକୁ ତା ଚାରି କରେ ବେଢ଼େଇ ବସିଲେ। ବର୍ଗ୍ ଆଦୌ ବୁଝିପାରିଲା ନାହିଁ ଯେ ଲୋକେ ତାକୁ ହିଁ ଉପହାସ କରୁଛନ୍ତି, ପଦାତିକ ବାହିନୀକୁ ବଦଳି ହୋଇ ଆସି ତାକୁ କି କି ସୁବିଧାମାନ ମିଳୁଛି, ସେ ଗୋଟି ଗୋଟି କରି ସେହି ଖବର ଗାଇ ବସିଲା, ଯେପରି କି,—ଆଗେ ତ ଏକ ପଦୋନ୍ନତି, ତା ପରେ ଯୁଦ୍ଧ ଲାଗିଥିଲାବେଳେ, ସେ ଯେଉଁ ଦଳରେ ଥିବ ସେ ଦଳର ଯେ ଅଧ୍ୟକ୍ଷ ସେ ଯୁଦ୍ଧରେ ମରିଯାଇପାରନ୍ତି, ମରିଗଲେ ଯେତେଦୂର ସମ୍ଭବ ସେ ନିଜେ ସେ ପଦ ପାଇଯାଇ ପାରେ, କାରଣ ସେ ତ ଅନ୍ୟମାନଙ୍କଠୁଁ ପଦରେ ବଡ଼, ପୁଣି ତା ସୈନ୍ୟଦଳରେ ଲୋକେ ତାକୁ ଭାରି ଭଲପାଆନ୍ତି, ଆଉ ତା ବାପା ବି ତା ପାଇଁ ଭାରି ବଡ଼େଇ କରନ୍ତି। ସେ ତାର ଏ ସାନ ସାନ କାହାଣୀଗୁଡ଼ିକ ଭାରି ମନଖୁସିରେ ଗପିଗଲା, ସେ ଟିକିଏ ସନ୍ଦେହ ବି କଲା ନାହିଁ ଯେ ଏ ପୃଥିବୀରେ ତା କାହାଣୀଠୁ ଆଉ କିଛି ବେଶି ଜରୁରି

ବିଷୟ ଥାଇପାରେ । ତାର ସେ ନିର୍ଭୀକ ପିଲାଳିଆ ଅହଂଭାବରେ ଏପରି କିଛି ବିଶେଷତ୍ୱ ଥିଲା, ଯହିଁରେ ଯେ ତା କଥା ଶୁଣୁଥିଲା, ସେ ତା ଉପରେ କୌଣସି ଖରାପ ଧାରଣା କରୁ ନ ଥିଲା ।

ସ୍କିନ୍ସିନ୍ ଗୋଡ଼କୁ ତଳକୁ ଲମ୍ବେଇ ଦେଇ ତା ପିଠି ଥାପୁଡ଼େଇ କହିଲେ, "ହଉ ବାବୁ, ଆପଣଙ୍କର ବହୁତ ପଦୋନ୍ନତି ହେବ । ଆପଣ ଅଶ୍ୱାରୋହୀ ବିଭାଗରେ କାମ କରନ୍ତୁ କି ପଦାତିକ ବିଭାଗରେ କାମ କରନ୍ତୁ, ଯେଉଁଠି ହେଲେ ଥାଆନ୍ତୁ, ଆପଣଙ୍କର ବଢ଼ତି ହେବ, ମୁଁ ସେଥିପାଇଁ ଜବାବ ଦେଇପାରେ ।" ବର୍ଗ୍ ଆତ୍ମତୁଷ୍ଟିରେ ହସିଦେଇ କାଉଣ୍ଟଙ୍କ ପଛେ ପଛେ ବୈଠକଖାନାକୁ ଗଲା । କାଉଣ୍ଟ୍ ବାଟ କଢ଼ାଇଲେ ।

ଖାଇ ବସିବାର ଠିକ୍ ଆଗର କଥା । ସେହି ସେତିକିବେଳେ ଯେତେବେଳେ ଲୋକେ ଅନାଇଁ ବସିଥାନ୍ତି, ଭୋଜନ ଆଗରୁ ମାଛ ଆଣ୍ଡିର ଆଉ ବ୍ରାଣ୍ଡି ମଦ ଆସି ପହଞ୍ଚିବ ବୋଲି ଯେପରି କି ଖାଇବାକୁ ସ୍ପୃହା ବଳିବ, ଲୋକେ ସେତେବେଳେ ଲମ୍ବା କଥା କହିବାକୁ ମନ କରନ୍ତି ନାହିଁ, ତେବେ ଖାଲି ଭଦ୍ରତା ଖାତିରରେ ଲୋକେ ଅନ୍ତତଃ ଗପସପ କଲାପରି ଖାଲି ଗୋଟାଏ ଦେଖଣା ଦେଖାନ୍ତି, ଖାଲି ଆପଣା ଅଧୀରତା ଲୁଚାଇବାକୁ ହେଉ ପଛେ । ସେତେବେଳେ ନିମନ୍ତ୍ରଣକାରୀ ଭଦ୍ରବ୍ୟକ୍ତି ଓ ତାଙ୍କ ସ୍ତ୍ରୀ ବାରମ୍ବାର ଭୋଜଘର ଦୁଆରମୁହଁ ଆଡ଼କୁ ଅନାଇଁ ରହି ପରସ୍ପର ସହିତ ଚକିତ ଦୃଷ୍ଟି ବିନିମୟ କରନ୍ତି । ଏଣେ ନିମନ୍ତ୍ରିତ ଲୋକେ ତାଙ୍କର ସେ ନୈରାଶ୍ୟମୟ ଦୃଷ୍ଟିଗୁଡ଼ିକ ଦେଖି ଧନ୍ଦହୋଇ ଆପଣା ମୁଣ୍ଡ ବିଗାଡ଼ନ୍ତି ଭାବିଭାବିକା, ଯେ କାହିଁକି ଏମାନେ ଆଉ ଡେରି କରୁଛନ୍ତି ନା କେଉଁ ଲୋକଙ୍କ ପାଇଁ ଏମାନେ ଫେର୍ ଅପେକ୍ଷା କରିଛନ୍ତି ? କିଣ କେଉଁ ବଡ଼ବଡ଼ିଆ ବନ୍ଧୁବାନ୍ଧବଙ୍କ ପାଇଁ ଏ ଅପେକ୍ଷା ? ନା ଖାଇବାଦ୍ରବ୍ୟ ବାଢ଼ି ଥୋଇବା ଆଗରୁ ଆଗ ଯେଉଁ ସୋରୁଆ ଆଣି ଦେଇଯାଆନ୍ତି ସେଇଆ ଆସିବ ବୋଲି ?

ପିଏରେ ଠିକ୍ ସେତିକିବେଳେ ଆସି ପହଞ୍ଚିଥାଏ, ସବୁଥର ପରି ଏଥର ବି ଅସଣ୍ଡା ହୋଇ ସେ ଘର ମଝିଟାରେ ଯେଉଁ ପ୍ରଥମ ଆରାମ୍ ଚୌକିଟା ଦେଖିଲା ସେଥିରେ ଯାଇ ବସି ପଡ଼ିଥାଏ । ସେ ମୁହଁ ଖୋଲୁ, କଥା କହୁ, ଏଥିପାଇଁ କାଉଣ୍ଟେସ୍ ତାଙ୍କ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାନ୍ତି

କିନ୍ତୁ ହଁ ନାହିଁ କରି ସେ ଖାଲି ପଦ ଦେବେକେ ଉତ୍ତର ଦେଉଥାଏ ! ଚଷମା ଭିତରୁ ଏକ ଦୃଷ୍ଟିରେ ସେ ଅନାଇଁ ରହିଥାଏ, ଯେପରି କ କଏ ଆସିବ ବୋଲି ସେ ଅପେକ୍ଷା କରି ରହିଛି । ସେଠି ସେ ଥିବାରୁ ଅନ୍ୟ ସମସ୍ତଙ୍କୁ ଅଡୁଆ ଲାଗୁଥାଏ, ଓ ସେଠି ସେ ସଂପୂର୍ଣ୍ଣ ଅଲୋଡ଼ା, କିନ୍ତୁ ସେ ନିଜେ ଜଣେ ମାତ୍ର ଲୋକ, ସେ ଏ କଥାଟା ବୁଝିପାରୁ ନ ଥାଏ । ଗୋଟାଏ ଭାଲୁକୁ ପୋଲିସ ଚାରି ସେଇଁ କାଣ୍ଡକାରଖାନା, ସେ ବିଷୟରେ ସମସ୍ତେ ଊଣାଅଧିକେ କିଛି କିଛି ଶୁଣି ସାରିଥାନ୍ତି । ତେଣୁ ଏଇ ପ୍ରକାଣ୍ଡ ମୋଟା-ସୋଟା ମଣିଷଟା ସମସ୍ତିଙ୍କ କୁତୂହଳର ପାତ୍ର ହୋଇଥାଏ, ଲୋକେ ଆଶ୍ଚର୍ଯ୍ୟ ହେଉଥାନ୍ତି ଯେ କେମିତି ଏଡ଼େ ଭାରି ମାଦଳ ମାଦା ମଣିଷଟା ଜଣେ ପୁଲିସ ଅଫିସରକୁ ଭାଲୁ ପିଠିରେ ବସାଇ ପଠାଏ ହରବର କରି ଦେଇ ପାରିଲା ।

"ଆପଣ ଅଇଛା ଆସୁଛନ୍ତି ପରା ?" କାଉଣ୍ଟେସ୍ ପଚାରିଲେ ।

"ଆଜ୍ଞା ହଁ", କହିଦେଇ ସେ ତା ଚାଁ ଆଡ଼କୁ ଅନାଇଁଲା ।

"ମୋ ସ୍ୱାମୀଙ୍କ ସଙ୍ଗେ ଦେଖାହୋଇଲାଣି ?"

"ନାହିଁ ଆଜ୍ଞା" "ଆପଣ ତ ଏବେ ପ୍ୟାରିସରେ ଥିଲେ । ଜାଗାଟା ଭାରି ଚମତ୍କାର ହୋଇଥିବ ନିଶ୍ଚୟ ।"

"ଭାରି ଚମତ୍କାର ।"

କାଉଣ୍ଟେସ୍ ଆନ୍ନା ମିଖାଇଲୋଭ୍ନାଙ୍କ ଆଡ଼କୁ ମିନତିମସ୍ତ ଚାହାଣିରେ ଅନାଇଲେ । ଆନ୍ନା ସେତିକି ଝରିବ ମିନତି ବୁଝିପାରି ସମ୍ଭବ ହେଲେ କଥାବାର୍ତ୍ତାରେ ଟିକିଏ ଜୀବନ ପୂରାଇବାକୁ ଆଗେଇ ଆସିଲେ । ସେ ପିଏରେ ଆଗରେ ତା ବାପାଙ୍କ ବିଷୟରେ କହିଲେ । କିଛି ଫଳ ହେଲା ନାହିଁ । ସେ ଖାଲି ହଁ ନାଁ କରି ଉତ୍ତର ଦେଲା ।

ଦଳର ଅନ୍ୟମାନେ ଗଡ଼ର ଗଡ଼ର ହୋଇ କଥା କୁହାକୋହି ହେଉଥାନ୍ତି । ଏମିତି ଖଣ୍ଡ ଖଣ୍ଡ କଥା ବି ଶୁଭୁଥାଏ:—"ରାଜକୁମାର ଭଲ୍କି ଘର,—ଭାରି ଖୁସି ହେଲି ଆପଣଙ୍କର ବହୁତ ଦୟା—କାଉଣ୍ଟେସ୍ ଆପ୍ରାକ୍‌ସିନା—"

କାଉଣ୍ଟେସ୍ ଉଠିପଡ଼ି ଆରପାଖକୁ ଚାଲି ଯାଉ ଯାଉ କହିଲେ, "ମେରିଆ ମିକିଏଭ୍ନା— "

କର୍କଶ ସ୍ୱରରେ ଜବାବ ଆସିଲା, "ହଁ ହଁ । ସ୍ୱୟଂ ସେ—" ଆଉ ମେରିଆ ମିକିଏଭ୍ନା ଆସି ପହଞ୍ଚିଲେ ।

ବୁଢ଼ୀ ବୁଢ଼ୀମାନଙ୍କୁ ଛାଡ଼ିଦେଲେ ଆଉ ସବୁ ସ୍ତ୍ରୀ ଲୋକମାନେ, ଝିଅମାନେ, ବିବାହିତା ସ୍ତ୍ରୀମାନେ, ସମସ୍ତେ ତାଙ୍କୁ ସମ୍ମାନ ଦେଖାଇ ଠିଆ ହୋଇ ପଡ଼ିଲେ । ସେ ଦୁଆରମୁହଁରେ ଅଟକିଲେ । ସେ ଡେଙ୍ଗୀ, ପୁରୁଷ ପରି ସିଧା । ସଳଖ ହୋଇ ପଚାଶବର୍ଷର ଜଣେ ସ୍ତ୍ରୀଲୋକ, ତାଙ୍କ ମୋଡ଼ମୋଡ଼ିକା ମୁଣ୍ଡବାଳ ଲୁହା ପରି କହରା ଦିଶୁଥାଏ । ସେ ଜାଣି ଶୁଣି ପିନ୍ଧାପୋଷାକର ହାତପାଖ ଝାଡ଼ୁଝାଡ଼ୁ ଘରଯାକ ସମସ୍ତିଙ୍କି ଖୋଜିଲା ଖୋଜିଲା ଗୃହାଣିରେ ଅନାଇଁଗଲେ ।

ମେରିଆ ମିତିଏଭ୍ନା ସବୁବେଳେ ରୁଷ୍ ଭାଷାରେ କଥା କହନ୍ତି । ଦମ୍ଭ ସ୍ୱରରେ ସେ କହିଲେ —

"ଯେଉଁ ଭଦ୍ରମହିଳାଙ୍କୁ ମର୍ଯ୍ୟାଦା କରିବୁଁ ବୋଲି ଆମେ ସମସ୍ତେ ଏକାଠି ହୋଇଛୁଁ ତାଙ୍କର ଆଉ ତାଙ୍କର ପିଲାଛୁଆଙ୍କର ସ୍ୱାସ୍ଥ୍ୟ ଆଉ ସୁଖ ବିବର୍ଦ୍ଧିତ ହେଉ,—" ତାଙ୍କ ପାଟି ଆଉ ସମସ୍ତିଙ୍କ ପାଟିକୁ ଚପି ଶୁଭିଲା ।

ସେ କାଉଣ୍ଟଙ୍କ ପାଖକୁ ଯାଇ କହିଲେ, "ଆପଣ ପୁରୁଣା ପାପିଷ୍ଠ ଲୋକ ଏଠି ମସ୍କୋରେ ଫେରି କଣ କରିବାକୁ ଆସିଛନ୍ତି ?"

କାଉଣ୍ଟ୍ ପ୍ରଥା ଅନୁସାରେ ତାଙ୍କ ହାତପାପୁଲିକି ଚୁମ୍ବନ କଲେ ।

ସେ କହିଗଲେ, "ଆପଣଙ୍କୁ ଏଠି ଭାରି ବିରକ୍ତ ଲାଗୁଥିବ । ହଁ, କହନ୍ତୁ ସତ କି ନାହିଁ ? ସ୍ୱୀକାର କରନ୍ତୁ । ଏଠି ତ କୁକୁରଟାଏ ଦଉଡ଼ିବାକୁ ବି ଖୋଲା ଫରଚ୍ଚ ନାହିଁ । କଣ କରିବେ ଆଉ କହନ୍ତୁ ? ଏଇ ସାନ ସାନ ଚଢ଼େଇଟିମାନେ ବଢ଼ିଗଲେ—" ସେ ଝିଅମାନଙ୍କ ଆଡ଼କୁ ହାତ ଛାଟିଦେଇ କହିଲେ, "ତାଙ୍କ ପାଇଁ ଅବଶ୍ୟ ବର ଖୋଜ ଠିକଣା କରିବାକୁ ହିଁ ପଡ଼ିବ, ଆପଣଙ୍କର ଇଚ୍ଛା ଥାଉ କି ନ ଥାଉ । ଆଉ ତୁ କେମିତି ଅଛୁଲୋ, ଟିକି କୋସାକ୍ ?"

ସେ ନାତାଶାକୁ 'ଟିକି କୋସାକ୍' ବୋଲି ସବୁଦିନେ ଡାକନ୍ତି । ନାତାଶା ଟିକିଏ ବି ସଂକୋଚ ନ କରି ତାଙ୍କ ହାତ ପାପୁଲିକି ଚୁମ୍ବନ କଲା । ସେ କହିଲେ, "ଏଇ ପିଲାଟି ଗୋଟିଏ ବାଇଟୁଙ୍ଗୁରିଟିଏ, ହେଲେ କଣ ହେଲା, ମୋର ତାକୁ ଭାରି ଶରଧା ।"

ଏକ ପ୍ରକାଣ୍ଡ ହାତମୁଣି ଭିତରୁ ସେ ପିଅର୍ ଫଳ ଆକୃତିର ଅତି ସୁନ୍ଦର ଓନିକ୍ସ୍ ପଥରବସା କାନଫୁଲ ହଳେ କାଢ଼ି ସେ ପିଲାଟିକି

ଦେଇଦେଲେ, ସେତ ଖୁସିରେ ଛଳଛଳେଇ ଉଠିଲା । ତା' ପରେ ପିଏରେ ଆଡ଼କୁ ବୁଲିପଡ଼ି ଦୋଷୀକୁ ଡାକିଲା ପରି ସ୍ୱରରେ କହିଲେ,

"ହୋ ଭଦ୍ରଲୋକ, ଆସ ଏଠିକି, ଆସ ମୋ ପାଖକୁ ।" ଉତ୍ତେଜିତ ଭାବ ହସ୍ତକୁ କରି ସେ ହାତ ପାଖର ପୋଷାକର ଓସାରିଆ ଝୁଲକୁ ଗୁଡ଼େଇ ପକାଇଲେ । କହିଲେ, "ଆସ ଏଠିକି, ପାଖକୁ ଲାଗିଆସ । ଯେତେବେଳେ ଦରକାର ପଡ଼ିଥିଲା, ସେତେବେଳେ ମୁଁ ଥିଲି ଏକୁଟିଆ ଜଣେ ମଣିଷ, ଯେ ତମବାପାଙ୍କୁ ମୁହାଁମୁହିଁ ସତ କଥାଟା କହିଥିଲା । ତମୁକୁ ବ ମୁଁ ଛାଡ଼ୁ ନାହିଁ । ସେଇ ତ ମୋର ଈଶ୍ୱରଦତ୍ତ କର୍ତ୍ତବ୍ୟ ।"

ସେ ଅଟକିଲେ । ଆସନ୍ନା ତୋଫାନ ଆଗର ଏ ବଜ୍ର ଘଡ଼ଘଡ଼ି ଉତ୍ତରରୁ କଣ ଫେର୍ ହେବ ଶୁଣିବାକୁ ସମସ୍ତେ କାନ ଡେରି ରହିଲେ । ସେ କହିଲେ, "ତେମେ ଭାରି ଭଲ ଲୋକ ତ ! ···ତମ ବାପା ଯେତେବେଳେ ବେମାର ହୋଇ ଖଟରେ ପଡ଼ିଛନ୍ତି, ତମେ ସେତେବେଳେ ଜଣେ ପୁଲିସ୍ ଅଫିସରକୁ ଗୋଟାଏ ଭାଲୁ ପିଠିରେ ବାନ୍ଧିଦେଇ ଭାରି ମଜଜ କରି ପାରିଲ ନୁହେଁ ! ବାଃ ! ଏଇଟା ଅସଭ୍ୟ ଲୋକର କାମ, ନହାତି ଛତରା ବଗୁଲିଆ କାମ ବାବୁ, ତେମେ ଭଲ ଯୁଦ୍ଧକୁ ଚାଲିଯାଇଥାନ୍ତ, ସେ ତ କେଡ଼େ ଭଲ ହୋଇଥାନ୍ତା ।"

ସେ ପିଏରେ ଆଡ଼କୁ ପିଠି ବୁଲାଇ ଦେଲେ । କାଉଣ୍ଟଙ୍କୁ ହାତ ବଢ଼ାଇ ଦେଇ କହିଲେ, "ଏଥର ଭୋଜିରେ ବସିବା । ସବୁ ଠିକ୍ ହୋଇଗଲାଣି ପରା !"

କାଉଣ୍ଟ୍ ମେରିଆ ମିହିଏଭ୍ନାକୁ ସଙ୍ଗରେ ନେଇ ଆଗେ ଆଗେ ଚାଲିଲେ । ତାଙ୍କ ପଛରେ କାଉଣ୍ଟେସ୍ ଓ ତାଙ୍କ ସଙ୍ଗରେ ଅଶ୍ୱାରୋହୀ ବାହିନୀର ଉପ-ସେନାପତି । ତାଙ୍କୁ ବହୁତ ଖାତିର କରିବାକୁ ପଡ଼ୁଥାଏ, କାରଣ ନିକୋଲେସ୍ ଏହି ଉପସେନାପତିଙ୍କ ସୈନ୍ୟଦଳର ରେଜିମେଣ୍ଟ୍‌ରେ ଚାକିରି କରିବ । ଆନ୍ନା ମିଖାଇଲେଭ୍ନା ସ୍କିନ୍‌ସିନ୍‌ଙ୍କ ସଙ୍ଗରେ ଚାଲିଲେ, ବର୍ଗ୍ ଗଲା ଭେରା ସଙ୍ଗରେ, ନିକୋଲାସ ଭାରି ହସି ହସି ଜୁଲିଆ କାରାଗିନ୍‌ଙ୍କୁ ସଙ୍ଗରେ ଧରି ଚାଲିଲା । ଅନ୍ୟମାନେ ପୁରୁଷ ସ୍ତ୍ରୀ ଏପରି ଦୁଇ ଦୁଇଜଣ ହୋଇ ସେହି ପ୍ରକାଣ୍ଡ ଭୋଜିଘରେ.ପଟୁଆରରେ ଚାଲିଲେ, ସବା ଶେଷରେ ଗୃହ ଶିକ୍ଷୟିତ୍ରୀ ଓ ଗୃହଶିକ୍ଷକମାନେ, ସେମାନଙ୍କ ସଙ୍ଗରେ ଜଣେ ଜଣେ ପିଲା ।

ଗୃକରମାନେ ଧାଇଁଯାଇ ଖର ଶବ୍ଦ କରି ଚୌକିଗୁଡ଼ାକୁ ଟେବୁଲ୍‌ଆଡ଼କୁ ଠେଲିଦେଲେ । ଏଣେ ଗ୍ୟାଲେରିରେ ବ୍ୟାଣ୍ଡ୍ ବାଜା ବାଜିଉଠିଲା । ସମସ୍ତେ ବସିପଡ଼ିଲେ । ଛୁରୀ କଣ୍ଟାର ଠକ୍‌ଠକ୍, କୁଣିଆମାନଙ୍କ କଥାବାର୍ତ୍ତା, ଗୃକର-ବାକରଙ୍କ ହୋହାରେ ବାଜା ଶବ୍ଦ ବି ଘୋଡ଼େଇ ହୋଇ ଗଲା । ଟେବୁଲର ଗୋଟାଏ ମୁଣ୍ଡରେ ବସିଥାନ୍ତି କାଉଣ୍ଟେସ୍ ତାଙ୍କ ଡାହାଣକୁ ମେରିଆ ମିତ୍ରିଏଭ୍ନା, ବାଁକୁ ଆନ୍ନା ମିଖାଇଲୋଭ୍ନା । ଟେବୁଲ୍‌ର ଆର-ମୁଣ୍ଡରେ ବସିଥାନ୍ତି କାଉଣ୍ଟ୍, ତାଙ୍କର ପାଖେ କର୍ଣ୍ଣେଲ ପାଖେ ସ୍କିନ୍‌ସିନ । ଅନ୍ୟ ଭଦ୍ରଲୋକମାନେ ନିଜ ନିଜର ଯେଉଁଠି ଇଚ୍ଛା ସେଠି ବସିପଡ଼ିଥାନ୍ତି । ମଝିରେ ଗୋଟାଏ କରକୁ ଥାଆନ୍ତି ଭେରା ଓ ବର୍ଗ୍, ଆରପାଖେ ପିଏରେ ଓ ବୋରିସ୍ ବସିଥାନ୍ତି, ତାଙ୍କ ମୁହଁ ସାମ୍ନାରେ ପିଲାମାନେ ଓ ତାଙ୍କ ଅଭିଭାବକମାନେ । କାଉଣ୍ଟ୍ ବାରମ୍ବାର ତାଙ୍କ ସ୍ତ୍ରୀଙ୍କ ଆଡ଼କୁ ଅନାଉଥାନ୍ତି ଆଉ ତାଙ୍କ ସ୍ତ୍ରୀଙ୍କର ଉଞ୍ଚା ଦେଉଳିଆ ଟୋପିଆଡ଼କୁ, ସେ ଟୋପିରେ ନେଳିଆ ଫିତା ଲାଗିଥାଏ । ମଦ ବୋତଲ, ବଡ଼ ଗିଲାସ, ଫଳ ଭର୍ତ୍ତି ହୋଇ ଉଞ୍ଚା ଥାଳିମାନ ଏମିତି ସବୁ କାଉଣ୍ଟ୍ ଆଉ ତାଙ୍କ ସ୍ତ୍ରୀଙ୍କ ମଝିରେ ଥୁଆହୋଇଥାଏ ଓ ଏହାର ସନ୍ଧିରେ ତାଙ୍କ ସ୍ତ୍ରୀଙ୍କ ଟୋପି ଦିଶିଯାଉଥାଏ । କାଉଣ୍ଟ୍ ତାଙ୍କ ପାଖରେ ବସିଥିବା ଲୋକଙ୍କୁ ମଦ ଯାଚୁଥାନ୍ତି, ନିଜ କଥା ବି ପାସୋରୁ ନ ଥାନ୍ତି । କାଉଣ୍ଟେସ୍ ସପୁରିମାନଙ୍କ ମୁକୁଟ ଉପରେ ଉଙ୍କିମାରି ତାଙ୍କ ସ୍ୱାମୀଙ୍କ ଗୃହାଣିର ଉତ୍ତର ଦେଉଥାନ୍ତି । କାଉଣ୍ଟଙ୍କ ଗୋଲ ମୁଣ୍ଡରେ ଅଳ୍ପ ବାଳ ଥାଏ, ତାଙ୍କ ମୁଣ୍ଡଟି ବାରିହୋଇ ପଡୁଥାଏ ।

ଭଦ୍ରମହିଳାମାନେ ଯେଉଁପଟେ ବସିଥାନ୍ତି ସେପଟେ ଏକାଠି ଅନେକ ପାଟି ଶୁଭୁଥାଏ । ଭଦ୍ରଲୋକମାନେ ଯେଉଁ ମୁଣ୍ଡରେ ବସିଥାନ୍ତି ସେଠି ଧୀରେ ଧୀରେ ପାଟିତୁଣ୍ଡ ବଢ଼ି ବଢ଼ି ଉଠୁଥାଏ, ବେଶି ତ ଉପ-ସେନାପତିଙ୍କ ପାଟି । ସେ ଏତେ ମଦ ପିଇ ଦେଇଥାନ୍ତି ଯେ, ଗୋଟା ସୁଦ୍ଧା ନାଲି ପଡ଼ିଯାଇଥାନ୍ତି । କାଉଣ୍ଟ୍ ତାଙ୍କ ଅନ୍ୟ କୁଣିଆଁମାନଙ୍କ ଆଗରେ ସେହି ଉପ-ସେନାପତିଙ୍କୁ ସ୍ତ୍ରୀ ଏ ବିଷୟରେ ଆଦର୍ଶ ବୋଲି କହୁଥାନ୍ତି । ବର୍ଗ୍ ସ୍ନିଗ୍ଧ ହସ ହସି ଭେରାକୁ ବୁଝାଉଥାଏ ଯେ ପ୍ରେମ ବୋଲି ଯେଉଁ ଜିନିଷ ସେଇଟା ସ୍ୱର୍ଗରୁ ଆସୁଥିବା ଉପହାର ସିନା, ଏ ପୃଥିବୀର ଜିନିଷ ସେ ନୁହେଁ । ବୋରିସ୍ ତାର ନୂଆ ବନ୍ଧୁ ପିଏର୍ ଆଗରେ ସେଠି ଥିବା

ଲୋକଙ୍କ ନାଁ ସବୁ କହୁଥାଏ, ଏଣେ ନାତାଶା ଆଡ଼କୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଅନାଉଁଥାଏ । ନାତାଶା ବସିଥାଏ ତାର ମୁହାଁମୁହିଁ । ପିଏରେ କିଛି କହୁ ନ ଥାଏ, ଯେଉଁ ମୁହଁ ସବୁ ତାର ଅଚିହ୍ନା ସେ ସେହି ସବୁ ମୁହଁ ଉପରେ ଧ୍ୟାନ ଲଗାଇଥାଏ, ଆଉ ପ୍ରତିଜ୍ଞାକୁ ଠାଣ କରି ଭୋଜନ ବଜାଉ-ଥାଏ । ତାକୁ ଯେଉଁ ଦି'ପ୍ରକାର ଝୋଳ ଯାଚିଥିଲେ ତହିଁରୁ ସେ କଇଁଛ ଝୋଳଟା ବାଛି ନେଇଥାଏ । 'କୁଲିଆବିଆକା'*ଠୁଁ ଆରମ୍ଭ କରି ମାଦିରା ମଦରେ ସିଝା ହୋଇଥିବା ଚଢ଼େଇ ମାଂସ ଯାକେ ଯେତେ ଯେତେ ଥାଳି ସେ ବାଟେ ଚାଲିଥାଏ, ସେ ତହିଁରୁ କିଛି ଛୁଉଁ ନଥାଏ କି ପରିବେଷକ ତାକୁ ଯେତେ ପ୍ରକାର ମଦ ଯାଚୁଥାଏ, ସେ କିଛି ନେବାକୁ ମନା କରୁ-ନ ଥାଏ । ପରିବେଷକ ଖୁବ୍ ମର୍ଯ୍ୟାଦାରେ ତା' ପଛଆଡ଼େ ଠିଆହୋଇ କାନପାଖେ ଫୁସ୍ ଫୁସ୍ କରି କହି କହି ଦେଉଥାଏ ।

ପ୍ରତି କୁଣିଆଙ୍କ ପାଖରେ କାଉଣ୍ଟଙ୍କ ସନ୍ତକ ଚିହ୍ନ ଖୋଦା ହୋଇ ଥିବା ଚାରି'ଚାରିଟା ଗିଲାସ ଥୁଆ ହୋଇଥାଏ । ପିଏରେ ତହିଁରୁ ଯେ କୌଣସି ଗିଲାସରୁ ମଦ ପିଇ ନିଏ । ତାର ପଡ଼ିଶାମାନଙ୍କ ପ୍ରତି ବହୁତ ସ୍ନେହସୌହାର୍ଦ୍ଦ୍ୟ ଆପଣାଠିଁ ସେ ଅନୁଭବ କଲା, ଆହୁରି ଥରେ ଲେଖାଁ ମଦ ପିଇଦେଲେ ଏ ମନୋଭାବଟା ଆହୁରି ତାଠିଁ ବଢ଼ି ବଢ଼ି ଉଠେ । ନାତାଶା ବୋରିସ ଆଡ଼କୁ ଏମିତି ଏକ ଦୃଷ୍ଟିରେ ଅନାଇଁ ରହିଥିଲା ଯେମିତି ଅନାଇଁବ ଗୋଟିଏ ଭାରି ଅଳ୍ପ ବୟସର ଝିଅ ଯେ ପହିଲି ହୋଇ ପ୍ରେମ ଅନୁଭବ କରିଛି, ବିଶେଷତଃ ସେମିତି ଦୃଷ୍ଟିରେ ଯେମିତିକି ସେ ସଦ୍ୟ ଚୁମ୍ବନଟିଏ ପାଇଛି । ପିଏରେ ତା କଥାରେ ମୁଣ୍ଡ ଖେଳାଇ ନ ଥିଲା କିନ୍ତୁ ସେ ଯେତେବେଳେ ସେହି ଅଦ୍ଭୁତ ସାନ ଝିଅଟିକୁ ଦେଖିଲା, ଯାହା ଆଖି କାମନାରେ ଖାଲି ଜଳୁଥାଏ ପଡ଼ି, ପିଏରେର ଦୁର୍ବଳ ହୋଇ ଟିକିଏ ଇଚ୍ଛା ହେଲା ହସିବାକୁ ।

ନିକୋଲେ ସୋନିଆଠୁଁ ବହୁତ ଦୂରରେ ଜୁଲିଆ କାରାଗିନା ପାଖରେ ବସିଥାଏ । ସେ ମନଖୁସିରେ ଜୁଲିଆ ସଙ୍ଗରେ ଗଡ଼ର ଗଡ଼ର ହେଉଥାଏ । ସୋନିଆ ବି ହସି ପାରୁଥାଏ, କାରଣ ତା'ର ହୃଦୟ ଭିତରେ ଈର୍ଷା

---

* କୁଲିଆବିଆକା ରୁଷ୍‌ର ଏକପ୍ରକାର ରନ୍ଧା ।

"ଶୁଖିଲା ମାଦିରା ମଦ, ହଙ୍ଗେରି ଦେଶର ମଦ, ରାଇନ୍ ଦେଶର ମଦ —"

ତାକୁ ଧୂଳା ଧୂଳା କରି କାମୁଡ଼ି ଲଗିଥାଏ । ସେ କେତେବେଳେ ନାଲି, କେତେବେଳେ ଫିକା, ନାରଙ୍ଗୀଆ ପଡ଼ିଯାଉଥାଏ, ଆଉ ସେ ଦୁଇ ଜଣ କଣ କୁହାକୋହି ହେଉଥିବେ ଭାବି ଭାବି ତା ମୁଣ୍ଡ ଝାଙ୍କି ହେଉଥାଏ । ପିଲାଙ୍କ ଶିକ୍ଷୟିତ୍ରୀ ବସିଥାଏ ଯେ ତା ମୁହଁ ବଶୁଥାଏ କଳଥା କଲାପରି, ଯେମିତିକି ଯେ ଆସିବ ତୁଆଙ୍କ ସଙ୍ଗେ କଥାଭାଷା ହେବାକୁ, ସେ ତା ଆଡ଼କୁ ବୁଲିପଡ଼ି ତାକୁ ଚିରି ଫଡ଼ାଫଡ଼ା କରିଦେବ । ଯେତେ ପ୍ରକାର ବୋତଲ, ଯେତେ ପ୍ରକାର ମଦ ପରଷା ହେଲା, ଜର୍ମାନ୍ ଗୃହଶିକ୍ଷକ ମନେ ମନେ ତାର ତାଲିକା କରି ରଖିଥାଏ ; ଯେପରି ସେ ପରେ ଘରକୁ ଚିଠି ଲେଖିଲାବେଳେ ତହିଁରେ ସେ ସବୁ ବିବରଣୀ ଲେଖିପାରିବ । ତାକୁ ଭାରି ଅପମାନ ଲାଗୁଥାଏ ଯେ ପରିବେଷକ ଥରେ ହେଲେ ତାକୁ ମଦ ଯାଚିଲା ନାହିଁ । ସେ ଯଥାଶକ୍ତି ଅପମାନଟାକୁ ଗିଳି ପକାଇବାକୁ ଚେଷ୍ଟା କରୁଥାଏ, ନିଜେ ନିଜର ବିଶ୍ୱାସ ଜନ୍ମାଉଥାଏ ଯେ ସେ ତ ନିଜେ କୌଣସି ପ୍ରକାର ମଦ ଲୋଡ଼ୁନାହିଁ । ସେ ନିଜର ବିଶ୍ୱାସ କରାଇବାକୁ ଚେଷ୍ଟା କରୁଥାଏ ଯେ ଯଦି ବା ସେ ଟିକିଏ ମଦ ପିଇଥାନ୍ତା ତ ତା କେବଳ ତାର ବୈଜ୍ଞାନିକ କୁତୂହଳ ଲାଗି ।

---

## ॥ ବାଂଶ

ଭଦ୍ରଲୋକଙ୍କ ଭିତରେ ଯେଉଁ କଥାଭାଷା ଚାଲିଥାଏ, ସେ ବେଶି ବେଶି ବ୍ୟଗ୍ର ଆଉ ବଡ଼ପାଟିଆ ହୋଇ ଉଠୁଥାଏ । ଉପ-ସେନାପତି କହିଲେ ଯେ ଯୁଦ୍ଧଘୋଷଣା ହେଲା ବୋଲି ଇସ୍ତାହାର ସେଣ୍ଟ ପିଟର୍ସ୍‌ବର୍ଗରେ ବାହାର ସାରିଲାଣି । ସେନାପତିଙ୍କ ପାଖକୁ ଜଣେ ଦୂତ ସେଥିରୁ ଖଣ୍ଡେ ଧରି ଆସିଥିଲା ସେ ଉପ-ସେନାପତି ଏହି ବର୍ତ୍ତମାନ ସେଟକୁ ଦେଖି ଆସିଛନ୍ତି ।

ଷ୍ଟିନ୍‌ସିନ୍ ପାଟିକରି କହିଲେ, "ଭଗବାନ୍ ଜାଣନ୍ତି କି ପାପଗ୍ରହ ଆମକୁ ନେପୋଲିଆନଙ୍କ ସଙ୍ଗରେ ଲଢ଼ିବାକୁ ପଠାଉଛି । ସେ ତ ଅଷ୍ଟ୍ରିଆକୁ ପାଟି ବନ୍ଦ କରିବାକୁ ଶିକ୍ଷା ଦେଇ ସାରିଛନ୍ତି, ମୋର ଆଶଙ୍କା ହେଉଛି, ଏଥର ଆମର ପାଳି ପଡ଼ିଲା ।"

ଉପ-ସେନାପତି ଜଣେ ଜର୍ମାନ୍ । ଦେହରେ ଖୁବ୍ ହୃଷ୍ଟପୁଷ୍ଟ ଆଉ ଉଞ୍ଚାପୂରା । ସେ ଜଣେ ଖୁବ୍ ଭଲ ସାମରିକ କର୍ମଚାରୀ । ଜନ୍ମଟା ବିଦେଶୀ ହେଲେ ବି ସେ ଖାଣ୍ଟି ଋଷିଆନ୍ । ଏକଥା ଶୁଣି ସେ ବାଣ ଫୁଟିଲା ପରି ଫୁଟି ଉଠି ତାଙ୍କ ଜର୍ମାନ୍ ଉଚ୍ଚାରଣରେ କହିଲେ, "ପାପଗ୍ରହ ! ଏଁ ! ନିଜେ ଯେତେବେଳେ ରୁଷ୍ ଦେଶର ସମ୍ରାଟ ଯୁଦ୍ଧଘୋଷଣା କରିଛନ୍ତି, କାହିଁକି ଯୁଦ୍ଧ ଘୋଷଣା କରିଛନ୍ତି କେହି ତା' ଜାଣିନାହିଁ ? ସେ ସେହି ଘୋଷଣାପତ୍ରରେ କହିଛନ୍ତି ଯେ, ରୁଷ ଦେଶ ଉପରକୁ ଯେଉଁ ବିପଦର ଆଶଙ୍କା ରହିଛି, ତାହା ପ୍ରତି ସେ ଆଉ ଉଦାସୀନ ରହି ନ ପାରନ୍ତି । ସାମ୍ରାଜ୍ୟର ନିରାପତ୍ତା ଆଉ ଅନ୍ୟ ଶକ୍ତିମାନଙ୍କ ସଙ୍ଗେ ହୋଇଥିବା ସନ୍ଧିର ନ୍ୟାଯ୍ୟ କର୍ତ୍ତବ୍ୟ ପ୍ରତି···" ସେ ସେହି ସନ୍ଧି ଶବ୍ଦଟା ଉପରେ ଖୁବ୍ ଜୋର୍ ଦେଲେ' ଯେପରି କି ସବୁଯାକ କଥାର ମଞ୍ଜି ସେଥିକରେ ରହିଯାଇଛି ।

ସରକାରୀ ଘୋଷଣାମାନ ମନେରଖିବା କାର୍ଯ୍ୟରେ ଯେଉଁ ଲୋକର ବହୁ ବର୍ଷର ଅଭ୍ୟାସ ଅଛି, ତାର ଯେପରି ଏସବୁ ଆବୃତ୍ତି କରିବାରେ ସ୍ୱଚ୍ଛନ୍ଦତା ଥାଏ, ସେହି ସହଜ ସ୍ୱଚ୍ଛନ୍ଦତାରେ ସେ ସେହି ଘୋଷଣାର ମୂଳ କଥା ସବୁ ଆବୃତ୍ତି କରିଗଲେ । କହିଲେ—

"ଯେହେତୁ ସମ୍ରାଟଙ୍କର ନିରନ୍ତର ଏକମାତ୍ର ଉଦ୍ଦେଶ୍ୟ ୟୁରୋପ ମହାଦେଶରେ ସ୍ଥାୟୀ ଶାନ୍ତିପ୍ରତିଷ୍ଠା, ତେଣୁ ସେ ନିଷ୍ପତ୍ତି କରିଛନ୍ତି ଯେ ସେଇ ଚରମ ଲକ୍ଷ୍ୟର ସାଧନ ଉଦ୍ଦେଶ୍ୟରେ ସେ ରୁଷ୍‌ଦେଶର ସୀମା ବାହାରକୁ ତାଙ୍କ ସୈନ୍ୟବାହିନୀର ଗୋଟିଏ ଅଂଶ ପଠାଇବେ । ଶୁଣିଲେ ତ, ଯୁଦ୍ଧଘୋଷଣା କରିବାର ଏହି ହେଉଛି କାରଣ ।" କହିଦେଇ ସେ ମଦ ଗିଲାସକ ପିଇଦେଇ ପ୍ରଶଂସା ପାଇବାପାଇଁ କାଉଣ୍ଟଙ୍କ ଆଡ଼କୁ ଅନାଇଁଲେ ।

ସିନସିନ ବ୍ୟଙ୍ଗୋକ୍ତିରେ କହିଲେ, "ଆପଣ ଶୁଣିଥିବେ ସେ ଢଗଟା, ଯେ 'ଜେଲମିଆ, ଜେଲମିଆ, ଘରେ ଥା, ତାକୁଡ଼ିକ ନିଶା, ଦେଇ ଥା ।' ହାତରେ ଦସ୍ତାନା ଗଳେଇଲା ପରେ ଆମକୁ ସେ ଢଗ ବିଲ୍‌କୁଲ୍ ଖାପି ଯାଉଛି । ଆମେ ତ ଜାଣିରୂ ଯେ ସୁଭରୋଭ୍‌ଙ୍କ ପରି ମହାଯୋଦ୍ଧା ବି ହାରି ଚଉପଟ୍ ହୋଇଗଲେ । ଆଜିକାଲି ଜଣେ ସୁଭରୋଭ୍ ଆଉ କାହୁଁ ମିଳିବେ ?" ସେ ରୁଷ ଭାଷା ଛାଡ଼ି ଫରାସୀ ଭାଷାରେ କହିଲେ ।

ଟେବୁଲ୍ ଉପରେ ବିଧା ମାରି ସାମରିକ କର୍ମଚାରୀ କହିଲେ, "ଆମ ଦେହରେ ଶେଷ ରକ୍ତବିନ୍ଦୁ ଥିବାଯାଏ ଆମେ ଲଢ଼ି ପାରିବା ଉଚିତ । ସମ୍ରାଟଙ୍କ ପାଇଁ ଆମେ ମରିବାକୁ ପ୍ରସ୍ତୁତ ହେବା ଉଚିତ । ଆମକୁ ସେଇଆ କରିବାକୁ ପଡ଼ିବ, ଆଉ ଠିକକରି ବେଶି କଥା କହିବା ଉଚିତ ନୁହେଁ ।" କାଉଣ୍ଟଙ୍କୁ ସମ୍ବୋଧନ କରି ସେ କହିଲେ, "ଆମେ ସବୁ ଯେତେ ପୁରୁଣା ସୈନିକ, ଆମକୁ ଏମିତିଆ ଯୁକ୍ତି କାବୁ କରେ । ଆଉ ତୁମେ, ତୁମେପରି ନୂଆ ସୈନିକ, ତମେ କେମିତି ଯୁକ୍ତି କର ? " ସେ ନିକୋଲେଇକୁ ପଚାରିଲେ । ନିକୋଲେ ତା ପାଖରେ ତରୁଣୀକି ନିଘା ନ ଦେଇ କଥା ଶୁଣୁଥିଲା ।

"ମୁଁ ଆପଣଙ୍କ ସଙ୍ଗେ ସମ୍ପୂର୍ଣ୍ଣ ଏକମତ"—ସେ କହିଲା । ସେ ଏକଦମ୍ ପପି ଫୁଲ ପରି ନାଲି ପଡ଼ିଗଲା । ତା ଖାଇବା ଥାଳିକୁ ମୋଡ଼-ମୋଡ଼ି ବୁଲେଇଲା ଆଉ ତା ଗିଲାସକୁ ଏମିତି ଘଡ଼େଇବାକୁ ଲାଗିଲା,

ସେମିତିକ ତାକୁ ଭାଙ୍ଗି ପକାଇବ ! ସେ କହିଲା, “ମୋର ପୂର୍ଣ୍ଣ ବିଶ୍ୱାସ ଯେ ଆମ ରୁଷ୍ ଲୋକଙ୍କ କର୍ତ୍ତବ୍ୟ ହେଉଛି, ଆମେ ଲଢ଼ିଲେ ଜିତିବୁଁ ନହେଲେ ମରିବୁଁ ।”

ସେ ତାର ବାକ୍ୟଟା ଶେଷ ନ କରୁଣୁ ଆପଣା କଥାର ଅସମ୍ଭବପଣ ତାକୁ ଜଣାପଡ଼ିଗଲା, ତା ଭାଷାଟା ହୋଇଥାଏ ଖୁବ୍ ଗୁରୁଗମ୍ଭୀର, ସତେ କି ବକ୍ତୃତା ଦେଲାପରି; ଆଉ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ବି ।

“ବାଃ ଭାରି ଚମତ୍କାର !” ଜୁଲିଆ କାରଗିନା ଗୁଣୁଗୁଣୁ ହେଲା । ସୋନିଆ ଉତ୍ତେଜନାରେ ଥରୁଥାଏ । ସେ ବି ନାଲି ପଡ଼ି ଯାଇଥାଏ । ଉପସେନାପତିଙ୍କ ବକ୍ତୃତା ଶୁଣି ପିଏରେ ପ୍ରଶଂସା କରୁଥାଏ ।

ସେ କହିଲା, “ଶୁଣିଲେଇଁ ଯାହାହେଉ ଅସଲ କଥା ପଦେ ।”

“ତୁମେ ଯୁବକ ଜଣେ ପ୍ରକୃତ ସୈନିକ ।” ଉପସେନାପତି ପାଟିକରି ଟେବୁଲ୍‌ରେ ପୁଣି ବିଧା ବାଡ଼େଇଲେ ।

“ହେ ହେ, ଯେତେ କ ପାଟିତୁଣ୍ଡ ହୋ !” ମେରିଆ ମିନିଯେଭ୍ନା ପଚାରିଲେ, “କହୋ ଏ ଟେବୁଲ୍‌ବାଡ଼ିଆ କାହିଁକି ? ଆପଣ ଏଠି କାହା ସଙ୍ଗେ ଲଢ଼େଇ କରୁଛନ୍ତି ? ମତେ ଲାଗୁଛି, ଆପଣ ଏତେ ତାତି ଉଠିଛନ୍ତି, ସତେ କି ଫରାସୀଙ୍କ ଉପରେ ଚଢ଼ାଉ କରୁଛନ୍ତି ।”

“ମୁଁ ଯାହା କହୁଛି ସତ କହୁଛି”, ସାମରିକ କର୍ମଚାରୀ ଉତ୍ତର ଦେଲେ । କାଉଣ୍ଟ କହିଲେ, “ଆମେ ଯୁଦ୍ଧ ବିଷୟରେ କଥା ହେଉଛୁଁ ମେରିଆ ମିନିଯେଭ୍ନା । ଆପଣ ଜାଣନ୍ତି, ମୋର ଗୋଟିଏ ପୁଅ ଯାଉଛି ସୈନ୍ୟବିଭାଗକୁ ।”

ମେରିଆ ମିନିଯେଭ୍ନା ତାଙ୍କୁ ବଡ଼ପାଟିରେ କହିଲେ, “ମୋର ତ ଚାରି ପୁଅ ସୈନ୍ୟବିଭାଗରେ ଅଛନ୍ତି । କାହିଁ ମୁଁ ତ ସେଥିପାଇଁ ଅଭିଯୋଗ କରୁନାହିଁ । ଈଶ୍ୱରଙ୍କ ଇଚ୍ଛାରେ ସମସ୍ତେ ବନ୍ଧା । ମରିବାର ଥିଲେ ଜଣେ ଆପଣା ଚୁଲ୍ଲୀ ଉପରେ ଶୋଇ ଶୋଇ ମରିଯିବ । ନ ମରିବାର ଥିଲେ ଯୁଦ୍ଧ ଭିତରୁ ବି ନିରାପଦରେ ଫେରିଆସିବ ।” ତାଙ୍କ ସ୍ୱର ଟେବୁଲ ଉପରେ ଝଣ ଝଣେଇଲା ।

“ହଁ ଠିକ୍ କଥା ।”

ତା ପରେ ପୁଣି କଥାଭାଷା ଚାଲିଲା, ପାଖେ ମାଇକିନିଆଁ-ମାଇକିନିଆଁଙ୍କ ଭିତରେ ତ ଆରପାଖେ ମର୍ଦ୍ଦ ମର୍ଦ୍ଦଙ୍କ ଭିତରେ ।

"ମୁଁ କହୁଚି, ତୋ ଦେଇ ହବ ନାହିଁ," ପେଟ୍ରୁଶା ନାତାଶାଙ୍କୁ ଫୁସ୍‌ଫୁସ୍ କରି କହିଲା, "ପଚାରିବାକୁ ତୋଇ କୋଉଠୁ ଏତେ ସାହସ ହବ ?"

"ମୁଁ ତତେ କହୁଚି, ଦେଖ୍ ମୁଁ ପଚାରିବି"—ନାତାଶା କହିଲା । ତା ବସିଲା ଚୌକିରୁ ଅଧା ଉଠି ପଡ଼ିଲା, ଦୁଷ୍ଟାମି ଆଉ ଦୁଃସାହସରେ ତା ମୁହଁ ନାଲି ପଡ଼ି ଯାଇଥିଲା । ପିଏରେ ଆଡ଼କୁ ଥରେ ଚାହିଁଦେଇ ସେ ତାର ଚାହାଣିରେ ସାହସ ଦେଖାଇ ଦେଇଥିଲା । ତା ପରେ ତାର ପିଲାଳିଆ ସ୍ପଷ୍ଟ ସ୍ୱରରେ ସେ ଡାକିଲା "ବୋଉ" !

କାଉଣ୍ଟେସ ସେ ସାନ ପିଲାଟିର ମୁହଁକୁ ଅନାଇଁ ଦେଇ ବୁଝି-ପାରିଲେ ଯେ ସେ କିଛି ଦୁଷ୍ଟାମି କରିବାକୁ ଯାଉଛି । ଡରି ହରି ପାଟିକଲେ, "କଣ ହେଲା ?" ବିରକ୍ତ ଦେଖାଇ ମୁଣ୍ଡ ହଲାଇ ହଲାଇ ଡରାଇ ଦେବାକୁ ଆଙ୍ଗୁଠି ଦେଖାଇଲେ ।

ହଠାତ୍ ସମସ୍ତେ ଚୁପ ପଡ଼ିଗଲେ ।

ନାତାଶା ଟିକିଏ ବି ସଙ୍କୋଚ ନ କରି କହିଲା, "ମିଠା କଣ ଆସୁଚି ?" ତା ବୋଉ ବୃଥା ଚେଷ୍ଟା କଲେ ମୁହଁ ଭ୍ରୂକୁଟି କରି ତାକୁ ଡରେଇବାକୁ ।

ମେରିଆ ମିଡି ଏଭ୍ନା ବି ତାକୁ ଡରେଇବାକୁ ଟେକି ଆଙ୍ଗୁଠି ଟେକି କହିଲେ, "ହେଇ କୋସାକ୍ ଟୋକି—"

ଲୋକେ ତା ମୁହଁକୁ ଅନାଇଲେ, କଥା ମଝିରେ ଏଇ ଯେ ବ୍ୟାଘାତ ଘଟିଲା, ସେ ବିଷୟରେ କଣ ଭାବିବେ ସେ କଥା ବଡ଼ ବଡ଼ମାନେ ଚିନ୍ତାକଲେ ।

କାଉଣ୍ଟେସ୍ ଗାଳି ଦେଲେ—"ଧେତ୍ ଦୁଷ୍ଟ ପିଲାଟା—"

ମଝିରେ ତାର ଏ ଦୁଷ୍ଟାମିର ଫଳ କଣ ହେବ, ସେ ବିଷୟରେ ଟିକିଏ ବି ହଡ଼ବଡ଼େଇ ନ ଯାଇ ନାତାଶା ପୁଣି କହିଲା, "ବୋଉ ! କହ କି ମିଠେଇ ଆସୁଚି ?"

ସୋନିଆ ଆଉ ମୋଟା ପେଟ୍ରୁଶା ହସି ହସି ଗଡ଼ୁଥାନ୍ତି; କିନ୍ତୁ ହସକୁ ମାଡ଼ି ବସୁଥାନ୍ତି । ନାତାଶା ତାର ସାନ ଭାଇକି ଅନେଇଲା, ପୁଣି ପିଏରେ ଆଡ଼କୁ ଥରେ ଚାହିଁଦେଲା, କହିଲା, "ଦେଖିଲ ଦେଖିଲ, କେମିତି ମୁଁ ପଚାରିଲି । କହୁଥିଲ କଣ ?" ମେରିଆ ମିଡି ଏଭ୍ନା କହିଲେ, "ମିଠା

ବରଫ ଆସୁଚ ଯେ ତର୍କେ କିଛି ଦିଆ ହେବନାହିଁ ।" ନାତାଶା ଦେଖିଲା ଯେ ଆଉ ଡରିବାକୁ କିଛି ନାହିଁ, ଏଇ ଯେଉଁ ମଣିଷଟିକି ଦେଖିଲେ ମାଡ଼ ଚଢ଼େ, ତାଙ୍କୁ ବି ଡରିବା କଥା ନୁହେଁ । ସେ ସାହସ ଦହକାରେ ତାଙ୍କୁ ହାତ ବଢ଼େଇ ଦେଲା, "କି ବରଫ ? ମତେ ମଲାଇ ବରଫ ଭଲ ଲାଗେ ନାହିଁ ।"

"ହଉ ତେବେ ଗାଜରରେ ବରଫ ଦିଆ ମିଠା ଆସୁଛି ।"

"ନାଇଁ ନାଇଁ, କି ବରଫ ଆସୁଚ ? ମେରିଆ ମିତ୍ରିଏଭ୍ନା, କହ କି ବରଫ ଆସୁଚ ? ମୁଁ ଜାଣିବାକୁ ଚାହେଁ ।"

କାଉଣ୍ଟେସ୍ ହସିଲେ । ତାଙ୍କ ସଙ୍ଗରେ ଆଉ ସମସ୍ତେ ହସିଲେ । ମେରିଆ ମିତ୍ରିଏଭ୍ନାଙ୍କ କଥାକୁ ହସିଲେ ନାହିଁ ଯେ ଏ ସାନ ପିଲାଟାର ସାହସ ଦେଖି ହସିଲେ, କେମିତି ସେ ବୁଦ୍ଧି ଖଟେଇ ସାହସ ଦେଖାଇ ନିଜ ପଟଟାକୁ ରକ୍ଷା କରୁଛି ସେଇଆ ଦେଖି ।

ନାତାଶାକୁ କହିଲେ ଯେ ବରଫଦିଆ ସପୁରି ମିଠେଇ ଆସୁଚ, ସେତିକରେ ସେ ଖୁସି ହେଲା ।

ତା ପରେ ଭୋଜିର ଶେଷ ପର୍ଯ୍ୟାୟ ଆସିଗଲା, ସ୍ୟାମ୍ପେନ୍ ମଦ ଲାଗିଗଲା । ପୁଣି ବ୍ୟାଣ୍ଡ ବାଜା ବାଜି ଉଠିଲା । କାଉଣ୍ଟ୍ ତାଙ୍କ "ଟିକି କାଉଣ୍ଟେସ୍"ଙ୍କୁ ଚୁମ୍ବନ କଲେ । ନିମନ୍ତ୍ରିତ ସମସ୍ତେ ଠିଆ ହୋଇପଡ଼ି ଶିଷ୍ଟାଚାରର ଅନୁଯାୟୀ କାଉଣ୍ଟ ଓ ତାଙ୍କ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଓ ମଙ୍ଗଳ କାମନା କରି କାଉଣ୍ଟ ଓ କାଉଣ୍ଟେସ୍ଙ୍କ ମଦ ଗିଲାସରେ ଆପଣା ଆପଣା ଗିଲାସ ଠୁକେଇ, ପୁଣି ନିଜ ପାଖରେ ଥିବା ଲୋକଙ୍କ ଗିଲାସ ସଙ୍ଗେ, ସାମ୍ନାରେ ଥିବା ଲୋକଙ୍କ ଗିଲାସ ସହିତ ଆଉ ସାନପିଲାଙ୍କ ଗିଲାସ ସହିତ ବି ଆପଣା ଆପଣା ମଦ ଗିଲାସ ଠୁକେଇ ଠୁକେଇ ମଦ ପିଇଲେ । ଚାକର-ମାନେ ଚୌକିଗୁଡ଼ାକୁ ପଛକୁ ଓଟାରି ଦେଲେ । ସେ ଦିନର ସବୁଯାକ ମଣିଷ ଭୋଜି ଓ ମଦର ଉଷ୍ମରେ ଟିକିଏ ତେଜି ହୋଇ ଯାଇଥାନ୍ତି, ସେମାନେ ଯେମିତି ଯାହା ସଙ୍ଗରେ ଯାହା ପଛରେ ଯେ ହୋଇ ଏ ଘର ଭିତରକୁ ଆସିଥିଲେ, ସେମିତି ତା ପଛକୁ ତା ପଛ ଦୁଇ ଦୁଇ ହୋଇ ଏ ଘରୁ ବାହାରି ବୈଠକଖାନାକୁ ଉଠିଗଲେ ।

———

## ଏକବିଂଶ

କାଉଣ୍ଟ ବେଜୁହଭଙ୍କର ବେମାର ଥରକୁ ଥର ବଢ଼ିବାର ସେ ଥରକୁ ଛଅ ଥର । ଡାକ୍ତରମାନେ କହୁଥାଆନ୍ତି ଯେ ଆଉ ବଞ୍ଚିବାର ଆଶା ନାହିଁ । ରୋଗୀ ଅଜ୍ଞାନ ଅବସ୍ଥାରେ ପଡ଼ିରହି ଧର୍ମ-ପ୍ରଚାରକଙ୍କଠୁଁ ଶେଷ ଆଶୀର୍ବାଦ ପାଇ ସାରିଥାନ୍ତି । ଠିକ୍ ମୃତ୍ୟୁ ପୂର୍ବରୁ ଯେଉଁସବୁ ପାଠ ବୋଲାଯାଏ, ସେଥିପାଇଁ ବନ୍ଦୋବସ୍ତ ହୋଇ ସାରିଥାଏ । ସେସବୁ ଘଡ଼ିରେ ଯେପରି ଉଲୁଗ ଲାଗିଯାଏ । ଆଉ ସମସ୍ତେ ଚଂ ଚଂ ହେଉଥାନ୍ତି, ଘରଯାକ ସେତେବେଳେ ସେହିପରି ଅବସ୍ଥା । ପଦାରେ ଫାଟକ ବାହାରେ ସେତେବେଳକୁ ମୁର୍ଦ୍ଦାରବୁହାଳଙ୍କ ଭିଡ଼ ଭିତରକୁ ଆସୁଥିବା ଗାଡ଼ିମାନଙ୍କ ଦୃଷ୍ଟିରୁ ଉଢ଼ୁଆଳରେ ରହିବାକୁ ସେମାନେ ଚେଷ୍ଟା କରୁଥିଲେ ବି ବଡ଼ ଆଗ୍ରହରେ ଅପେକ୍ଷା କରିଥାନ୍ତି କାଳେ କାଉଣ୍ଟଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସକାଶେ ସେମାନଙ୍କୁ ବହୁତ ପଇସାର କାମ ଜୁଟିଯିବ । ମସ୍କୋ ସହରର ଗଭର୍ଣ୍ଣର କାଉଣ୍ଟଙ୍କ ଦେହ କେମିତି ଅଛି ବୁଝିବାକୁ ତାଙ୍କ ଲୋକଙ୍କୁ ବାରମ୍ବାର ଦଉଡ଼ାଉଥିଲେ । ସେଦିନ ସଞ୍ଜରେ ସେ ନିଜେ ଚାଲିଆସିଲେ କାଉଣ୍ଟ ବେଜୁହଭଙ୍କଠୁଁ ବିଦାୟ ନେବାକୁ । ରାଣୀ କାଥାରିନାଙ୍କ ଦରବାରରେ ପ୍ରସିଦ୍ଧ ପରିଷଦ୍ କାଉଣ୍ଟ ବେଜୁହଭ୍ ।

ଅତି ଜାକଜମକରେ ସଜାସଜ ହୋଇଥିବା ବୈଠକ୍‌ଖାନାରେ ଲୋକ ଭର୍ତ୍ତି । ଗଭର୍ଣ୍ଣର ରୋଗୀଙ୍କ ସହିତ ଅଧଘଣ୍ଟାଏ ଏକୁଟିଆ କଟାଇ ରୋଗୀଙ୍କ ବଖରା ଭିତରୁ ବାହାରି ପଡ଼ିଲେ ।ମାନେ ସମସ୍ତେ ସମ୍ଭ୍ରମରେ ଠିଆ ହୋଇ ପଡ଼ିଲେ । ତାଙ୍କୁ ଯେଉଁ ଅସଂଖ୍ୟ ଦଣ୍ଡବତ ମିଳିଲା, ତା ବିନମ୍ରସ୍ୱରେ ନ ଚାହିଁ ଲି ପରି ପ୍ରତିନମସ୍କାର ଜଣାଇ ଡାକ୍ତରମାନଙ୍କ ଦୃଷ୍ଟିରୁ, ଧର୍ମଯାଜକମାନଙ୍କ ଦୃଷ୍ଟିରୁ, ଆଉ କାଉଣ୍ଟଙ୍କ ବନ୍ଧୁବାନ୍ଧବଙ୍କ

ଦୃଷ୍ଟିରୁ ଆତ୍ମରକ୍ଷା କରି ଲୁଚିଯିବାକୁ ସେ ଚେଷ୍ଟା କରୁଥାନ୍ତି । ଗତ କେଇଦିନ ଭିତରେ ପ୍ରିନ୍ସ୍ ବେସିଲ୍ ଓରଫ ଭାସିଲି ଶୁଖିଯାଇଥାନ୍ତି ଆଉ ପାଣ୍ଡୁଟିଆ ପଡ଼ିଯାଇଥାନ୍ତି । ସେ ଗଭର୍ଣ୍ଣରଙ୍କୁ ବାଟକଢ଼ାଇ ନେଇଗଲେ, ଆଉ ତାଙ୍କ କାନରେ କଣ ଭୁନ ଭୁନ କରି କହିଲେ ।

– ଗଭର୍ଣ୍ଣରଙ୍କୁ ବାଟେଇ ଦେଇ ଆସି ପ୍ରିନ୍ସ୍ ଭାସିଲି ବୈଠକ୍‌ଖାନା ଘରେ ଏକୁଟିଆ ଗୋଟିଏ ଚଉକିରେ ବସିପଡ଼ିଲେ । ସେ ଗୋଟାଏ ଗୋଡ଼କୁ ଆଉ ଗୋଟାଏ ଗୋଡ଼ ଉପରେ ଉଞ୍ଚ କରି ଲଦି ଦେଲେ, ଆଣ୍ଠୁ ଉପରେ କହୁଣୀକୁ ଭରାଦେଇ ହାତ ପାପୁଲିରେ ଆଖିକୁ ଢାଙ୍କି ବସି ରହିଲେ । ଏମିତି କିଛି ସମୟ ବସି ସେ ଭୁଡ଼୍‌କରି ଉଠିପଡ଼ି ତାଙ୍କ ସ୍ୱାଭାବିକ ଚାଲିଠୁଁ ଆହୁରି ତରତର କରି ପାଦ ପକାଇ ସେ ଘର ଭିତରର ଲମ୍ବା ଖୋଲାବାଟରେ ଏମୁଣ୍ଡରୁ ସେମୁଣ୍ଡକୁ ଚାଲିଗଲେ । ଗଲାବେଳେ ଓରଲା ପରି ଚାରିଆଡ଼କୁ ଅନାଉଁଥାନ୍ତି । ଘରର ପଛପଟେ ବଡ଼ ପ୍ରିନ୍‌ସେସ୍‌ଙ୍କ ବଖରା ସବୁ । ପ୍ରିନ୍‌ସ ବେସିଲ୍ ସେଇଆଡ଼କୁ ଗଲେ ।

ପ୍ରିନ୍‌ସ୍ ବେସିଲ୍ ଓରଫ ଭାସିଲି ବଡ଼ ପ୍ରିନ୍‌ସେସ୍‌ଙ୍କ ଘର କବାଟ ଖୋଲିଲେ । ଘର ଭିତରେ ଅଧା ଅନ୍ଧାର । ଯୀଶୁଖ୍ରୀଷ୍ଟଙ୍କ ଛବିମାନଙ୍କ ସାମ୍ନାରେ ଖାଲି ଯୋଡ଼ିଏ ଧୂପ ଜଳୁଥାଏ । ଫୁଲ ଆଉ ଧୂଣା ବାସୁଥାଏ । ଘରସାରା ସାନ ସାନ ଆସବାବ ଥୁଆ ହୋଇଥାଏ । ସାନ ସାନ ସାଇଡ୍‌ବୋର୍ଡ, ସାନ ସାନ ବହି-ଆଲମାରି ଆଉ ସାନ ସାନ ଟେବୁଲ ଥୁଆ ହୋଇଥାଏ । ଗୋଟାଏ ପର୍ଦ୍ଦା ସେପଟେ ହଂସତୂଳ ଶେଯ ପଡ଼ିଥିବା ଉଞ୍ଚ ପଲଙ୍କ ଉପରର ଧୋବ ଢାଙ୍କୁଣୀ ଦିଶୁଥାଏ । ଗୋଟିଏ ଛୋଟ କୁକୁର ଭୁକିଲା ।

“କିଏ ସେ ? ଭାଇ ?”

ବଡ଼ ପ୍ରିନ୍‌ସେସ୍ ଉଠିପଡ଼ି ଆଗ ମୁଣ୍ଡବାଳକୁ ସାଉଁଳି ନେଲେ । ତାଙ୍କ ମୁଣ୍ଡବାଳ ଏବେ ବି ଏଡ଼େ ଚିକ୍‌କଣ କଳା ଯେ ଦେଖିଲେ ଲାଗେ ଯେତେ କି ମୁଣ୍ଡ ସଙ୍ଗେ ମିଶି ଏକାଠି ତିଆରି ହୋଇଛି ଆଉ ତହିଁରେ ବାର୍ଣ୍ଣିସ୍ ବୋଳା ହୋଇଛି ।

“କଣ କିଛି ହୋଇଗଲା କି ?” ସେ ପଚାରିଲେ, “ମତେ ତ ସବୁବେଳେ ଡରମାଡ଼ୁଛି ।”

ନାଇଁ ଯେମିତି ଥିଲା ସେମିତି । କିଛି ବଦଳି ନାହିଁ । ମୁଁ ଖାଲି କାମ ବିଷୟରେ ତୁମ ସାଙ୍ଗରେ ଦି'ପଦ କଥା ହେବାକୁ ଆସିଛି କାଟିସ୍ ।”

କାଉଚ୍ ଯେଉଁ ଆଡ଼ ଚଉକିରୁ ଉଠିପଡ଼ିଥିଲେ ପ୍ରିନ୍ସ୍ ଭ୍ୟାସିଲି କ୍ଲାନ୍ତଭାବେ ସେଥିରେ ବସିପଡ଼ିଲେ । କହିଲେ, "ଏଠି କେତେ ସୁନ୍ଦର ଉଷୁମ ହୋଇଛି । ଆସ ଏଠି ବସ, ଗପ କରିବା ।"

ଜଣାଯାଉଥିଲା ଯେପରି କି ପ୍ରିନ୍ସ୍ ଭ୍ୟାସିଲି ଯାହା କହି ଆସୁଥିଲେ ସେଥିଲାଗି ତାଙ୍କ ଭିତରେ ଭିତରେ ଗୋଟାଏ ଦ୍ୱନ୍ଦ୍ୱ ଚାଲିଥିଲା । ଯାହା କହିବାକୁ ଯାଉଛନ୍ତି ସେଥିଲାଗି ଜାଣି ଜାଣି ଆପଣାକୁ ଟାଣି କରି ସେ କହିଲେ, "ବୁଝିଲ ପ୍ରିନ୍ସେସ୍ କ୍ୟାଟେରିନା ସେମିନଭ୍ନା ! ତୁମେ ତ ମୋର ଭଉଣୀ । ବର୍ତ୍ତମାନ ଯେମିତି ସମୟ ସେମିତି ବେଳ ପଡ଼ିଲେ ମଣିଷକୁ ସବୁକଥା ଭାବିବାକୁ ପଡ଼େ । ଲୋକକୁ ତ ଭବିଷ୍ୟତ କଥା ଭାବିବାକୁ ପଡ଼ିବ, ପୁଣି ତୁମ କଥା । ତୁମେ ତ ଜାଣିଛ ମୁଁ ତୁମମାନଙ୍କୁ ମୋ ନିଜର ଛୁଆପିଲା ପରି ଦେଖେ ।"

ଏକ ନିରର୍ଥକ ମାଦଳା ପଥର ଚାହାଣୀରେ ପ୍ରିନ୍ସେସ୍ ତାଙ୍କୁ ଅନାଇଲେ ।

ପ୍ରିନ୍ସ ଭ୍ୟାସିଲି ତାଙ୍କ ଆଡ଼କୁ ନ ଚାହିଁ ବଗଲରେ ଗୋଟିଏ ସାନ ଟେବୁଲକୁ ଠେଲିଦେଇ କହିଗଲେ, "ଶେଷରେ ଫେର୍ ମୋ ପରିବାର କଥା ବି ତ ଆମକୁ ଭାବିବାକୁ ପଡ଼ିବ । କଥାଟା ହେଉଛି, ଆଉ ତୁମେ ନିଜେ ବି ଜାଣିଛ, ଯେ ଗଲାଥର ଶୀତଋତୁରେ ସ୍ୱେ କାଉଣ୍ଟ ଗୋଟାଏ ଉଇଲ୍ କଲେ, ଯେଉଁଥିରେ କି ତାଙ୍କ ନିଜ ଉତ୍ତରାଧିକାରୀମାନଙ୍କୁ ଓ ଆମକୁ ସବୁ ଉଡ଼େଇ ଦେଇ ସେ ତାଙ୍କର ସମଗ୍ର ସମ୍ପତ୍ତି ପିଏରେ ନାଁରେ କରିଦେଲେ ।"

ପ୍ରିନ୍ସେସ୍ ଅବିଚଳିତଭାବେ କହିଲେ, "ସେ ଯେତେ ଇଚ୍ଛା ସେତେ ଉଇଲ୍ କରିଥାନ୍ତୁ ପଛେ, କିନ୍ତୁ ପିଏରେଙ୍କୁ ତ ସେ ସମ୍ପତ୍ତି ଦେଇ ପାରିବେ ନାହିଁ । ପିଏରେ ତ ବେହେରଣିଆ ପୁଅ ।"

ପ୍ରିନ୍ସ ଭ୍ୟାସିଲି ଖୁବ୍ ଗମ୍ଭୀର ହୋଇଯାଇ ତାଙ୍କ ଚୌକିକୁ ଆପଣା ଆଡ଼କୁ ଓଟାରି ଆଣି ହଠାତ୍ ଆତୁର ତରତର କରି କହି ଲାଗିଲେ, "ଶୁଣ ଭଉଣୀ, ଧରି ଯଦି ମହାରାଜାଙ୍କ ପାଖକୁ ଗୋଟାଏ ଚିଠି ଲେଖା ହୋଇଥିବ, ଆଉ କାଉଣ୍ଟ୍ ପିଏରେଙ୍କୁ ବୈଧ ସନ୍ତାନ ବୋଲି ଗ୍ରହଣ କରିବାକୁ ଦରଖାସ୍ତ କରିଥିବେ, ତେବେ କ'ଣ ହେବ ଭଉଣୀ ? ତୁମେ ତ

ଜାଣିନ୍ତି, କାଉଣ୍ଟ୍ ସମ୍ରାଟଙ୍କର ଯେତେ ଯେତେ କାର୍ଯ୍ୟ କରିଛନ୍ତି ସେଥିରେ ତାଙ୍କର ଦରଖାସ୍ତକୁ ସମ୍ରାଟ ଓଜନ ଦେବେ ।"

ପ୍ରିନ୍‌ସେସ୍ ମୁରୁକି ହସିଲେ । କାହା ସାଙ୍ଗରେ କଥା କହିଲା-ବେଳେ ଯଦି କେହି ଭାବନ୍ତି ସେ ଯାହା ସାଙ୍ଗରେ ଯେଉଁ କଥା କହୁଛନ୍ତି ସେ ବିଷୟରେ ତାଠୁଁ ବେଶୀ ଜାଣନ୍ତି, ସେତେବେଳେ ସେ ଯେପରି ହସନ୍ତି, ପ୍ରିନ୍‌ସେସ୍ ସେପରି ହସିଲେ ।

ପ୍ରିନ୍‌ସ ଭାସିଲି ତାଙ୍କ ହାତକୁ ମୁଠାଇ ଧରି କହିଗଲେ, "ମୁଁ ଆହୁରି ବି କହିବି ଯେ କାଉଣ୍ଟ୍ ସେ ଦରଖାସ୍ତ ଲେଖିଥିଲେ କିନ୍ତୁ ସେ ଦରଖାସ୍ତ ଯାଇନାହିଁ । ଆଉ ସମ୍ରାଟ ବି ସେ କଥା ଜାଣିଛନ୍ତି । ବର୍ତ୍ତମାନ କଥା ହେଉଛି ଯେ ସେ ଦରଖାସ୍ତକୁ ନଷ୍ଟକରି ଦିଆହୋଇଛି କି ସେ ଦରଖାସ୍ତ ସେହିପରି ଅଛି ? ଯଦି ତା ନଷ୍ଟ ନ ହୋଇ ଥୁଆହୋଇ ରହିଥିବ ତେବେ ତ ସବୁ ସରିଗଲା ଜାଣ !" ପ୍ରିନ୍‌ସ ଭାସିଲି ଦୀର୍ଘନିଶ୍ୱାସ ପକାଇଲେ । ସବୁ ସରିଗଲା ଅର୍ଥ କ'ଣ ଏହି ଦୀର୍ଘନିଶ୍ୱାସରେ ତାଙ୍କୁ ବୁଝାଇଦେଲେ । କହିଲେ, "ତେବେ, ଯେତେବେଳେ ଲୋକେ କାଉଣ୍ଟଙ୍କ କାଗଜପତ୍ର ଖୋଲି ଦେଖିବେ, ଓ ତାଙ୍କ ଉଇଲ୍ ଆଉ ତାଙ୍କ ଚିଠି ସମ୍ରାଟଙ୍କ ପାଖକୁ ଯିବ, ତାଙ୍କ ଦରଖାସ୍ତ ତ ନିଶ୍ଚୟ ମଞ୍ଜୁର ହେବ । ପିଏରେ ତାଙ୍କ ବୈଧସନ୍ତାନ ହିସାବରେ ସମଗ୍ର ସମ୍ପତ୍ତି ପାଇବ ।"

"ଆଉ ଆମ ଅଂଶଟା କୁଆଡ଼େ ଯିବ ?" ପ୍ରିନ୍‌ସେସ୍ ପଚାରିଲେ । ସେ ଶ୍ଳେଷରେ ହସିଲେ । ସତେ ଯେପରି କି ଯେତେ ଯାହା ଘଟିଲେ ସୁଦ୍ଧା ସେତକ ଘଟିବ ନାହିଁ ।

"ଆଃ ବିଚରା କାତିସ୍ ! ସବୁ ତ ଦିନ ଆଲୁଅ ପରି ଜଳ ଜଳ ଦିଶୁଛି । ପିଏରେ ସେତେବେଳେ ସମଗ୍ର ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରୀ ହେବ, ଆଉ ସେଥିରୁ ତୁମେ ଏତେ ଟିକେ ବି ପାଇବ ନାହିଁ । ତୁମେ ଜାଣିବା ଦରକାର, ଉଇଲ୍ ଆଉ ଦରଖାସ୍ତ ଲେଖା ହୋଇଥିଲା କି ନାହିଁ ଏବଂ ସେ ଦିଟାକୁ ନଷ୍ଟ କରାହୋଇଛି କି ନାହିଁ । ଆଉ ଧରି ଯଦି କୌଣସିମତେ ସେ ଦିଟା ନଷ୍ଟ ନ ହୋଇ ସେମିତି ରହିଛି, ତାହାହେଲେ ତୁମେ ଜାଣିବା ଦରକାର ସେ କେଉଁଠି ଅଛି, କାରଣ—

ପ୍ରିନ୍‌ସେସ୍‌ଙ୍କର ଆଖିର ଭଙ୍ଗୀ ବଦଳିଲା ନାହିଁ । ଶ୍ଳେଷହସ ହସି ସେ ତାଙ୍କ କଥାରେ ବାଧାଦେଇ କହିଲେ, "ସେଇ ତ ଭାରି ମୁସ୍କିଲ୍ କଥା !

ମୁଁ ମାଇକନା ଲୋକ, ଆଉ ତୁମେ ଭାବଚ ଯେ ଆମେ ସମସ୍ତେ ମୂର୍ଖ । ତେବେ ମୁଁ ଏତକ ତ ହେଲେ ଜାଣେ ଯେ ଅବୈଧ ସନ୍ତାନ ବାପର ସମ୍ପତ୍ତି ପାଇପାରିବ ନାହିଁ । ହେଁଃ ! ଗୋଟାଏ ବେଧ ଟୁଆ,''—ପ୍ରସ ସଚେକ ମନେ ମନେ ଭାବନେଲେ ଯେ ଏ ଶବ୍ଦଟା ବ୍ୟବହାର କରିବାଦ୍ୱାରା ସେ ପ୍ରିନ୍‌ସ୍‌ଙ୍କ ଆଗରେ ସମ୍ପୂର୍ଣ୍ଣଭାବେ ନିଃସନ୍ଦେହରେ ପ୍ରମାଣ କରିଦେଲେ ଯେ ତାଙ୍କ ଆଶଙ୍କା ଅମୂଳକ ।

"କେମିତି ତମ ମୁଣ୍ଡରେ ପଶୁ ନାହିଁ କାଉସ୍ ! ସତେ, ତୁମର ଏତେ ବୁଦ୍ଧି, ତଥାପି କାହିଁକି ଏ କଥାଟା ତୁମେ ବୁଝି ପାରୁ ନା, ଯେ ଯଦି କାଉଣ୍ଟ ସମ୍ରାଟଙ୍କ ନାଁରେ ଗୋଟିଏ ଚିଠି ଲେଖି ଥୋଇ ଦେଇ ଯିବେ, ଆଉ ସେ ଚିଠିରେ ପ୍ରାର୍ଥନା କରିଥିବେ ଯେ ସମ୍ରାଟ୍ ପିଏରେକୁ ତାଙ୍କ ବୈଧ ସନ୍ତାନ ବୋଲି ସ୍ୱୀକାର କରନ୍ତୁ, ତେବେ ପିଏରେ ନାଁଟା ଆଉ ପିଏରେ ହୋଇ ରହିବ ନାହିଁ । ତା ନାଁ ହେବ କାଉଣ୍ଟ ବେଜୁହଭ୍ । ଆଉ ସେତେବେଳେ ଉଇଲ୍‌ରେ ଯେତେ ଯାହା ଲେଖା ହୋଇଥିବ ସେ ସବୁ ସମ୍ପତ୍ତି ସେ ଉତ୍ତରାଧିକାର ସୂତ୍ରରେ ପାଇବ ? ଆଉ ଜାଣି ଥା, ଯଦି ଉଇଲ୍‌ଟା ଆଉ ଚିଠିଟା ଧ୍ୱଂସ କରା ନ ହୋଇ ସେମିତି ରହିଥିବ, ତେବେ ତମ ପାଇଁ କେବଳ ରହିଥିବ ଆପଣା ଆତ୍ମାଭିମାନ ଆଉ ଶାନ୍ତି, କଣ ନା ତୁମେ ସତ୍ୟ ରଖିଛ, କର୍ତ୍ତବ୍ୟ କରିଛ । ଆପଣା କର୍ତ୍ତବ୍ୟ କଲେ ଯେଉଁ ଫଳ ଫଳେ ତା ତୁମକୁ ପ୍ରାପ୍ତ ହେବ ବୋଲି ଭାବି ଭାବି ତୁମେ ମନକୁ ବୋଧ ଦେଉଥିବ ଯିନା, କିନ୍ତୁ ସେତିକି ଛଡ଼ା ତୁମ ପାଇଁ ଆଉ କିଛି ରହିବ ନାହିଁଟି ! ଏଇଟା ସତ କଥା ।"

"ଉଇଲ୍‌ଟାଏ କରା ହୋଇଥିଲା ମୁଁ ଜାଣିଛି, କିନ୍ତୁ ମୁଁ ଏ କଥା ବି ଜାଣେ ଯେ ଉଇଲ୍‌ଟା ଅକାମୀ । ତୁମେ ତ ମତେ ଗୋଟାଏ ବୁଦ୍ଧୁ ବୋଲି ଭାବଚ, ବୁଝିଲ ଭାଇ !" ସ୍ତ୍ରୀ ଲୋକମାନେ ଯେତେବେଳେ ଭାବନ୍ତି ଯେ ସେମାନେ ଖୁବ୍ ଚତୁର ହୋଇ କଟୁରି ଚଲେଇଲେ ପର କଥା ପଦେ କହି ପକାଇଛନ୍ତି, ସେତେବେଳେ ଯେମିତି ଠାଣିରେ କଥା କହନ୍ତି, ପ୍ରିନ୍‌ସେସ୍ ସେମିତି ଠାଣିରେ କଥା କହିଲେ ।

ଅସନ୍ତୁଷ୍ଟ ହୋଇ ପ୍ରିନ୍‌ସ୍ ଭାସିଲି କହିଲେ, "ପ୍ରିନ୍‌ସେସ୍ ଆରନୋ ସେସପ୍ୟୋନ୍‌ଭ୍ନା, ମୁଁ ଯାହା କହୁଚି ଶୁଣ, ମୁଁ ତମକୁ ଚିଢ଼େଇବାକୁ ଆସି ନାହିଁ, ବୁଝିଲ ? ତମେ ମୋର ଆପଣାର ବନ୍ଧୁବାନ୍ଧବ, ତମର

ହୃଦସ୍ଥ ଅଛୁ, କେଡ଼େ ଭଲ ମଣିଷ ତୁମେ, ତମର ଭଲ କଥା ମୁଁ କହିବାକୁ ଆସିଚ । ମୁଁ ତମକୁ ଦଶ ଥର କହିଚ ଯେ ଯଦି ସମ୍ରାଟଙ୍କ ପାଖକୁ ସେ ଚିଠିଟା ଆଉ ପିଏରେ ନାଁରେ ହୋଇଥିବା ଉଇଲ୍‌ଟା କାଉଣ୍ଟଙ୍କ କାଗଜପତ୍ର ଭିତରେ ଥିବ, ତେବେ ତେମେ କି ତମ ଭଉଣୀମାନେ କେହି ତାଙ୍କ ସମ୍ପତ୍ତିର ଉତ୍ତରାଧିକାରିଣୀ ନୁହଁ, ବୁଝିଲ ? ମୋ କଥାରେ ବିଶ୍ୱାସ ଆସୁନାହିଁ ତ ଆଉ ଯେ କହିଲେ ତୁମର ବିଶ୍ୱାସ ହେବ, ତାକୁ ତେମେ ପଚାରି ବୁଝ । ମୁଁ ଏଇ ବର୍ତ୍ତମାନ ମିଚିଓଲୁଫି୍ରଚଙ୍କ ସଙ୍ଗରେ ପରାମର୍ଶ କରୁଥିଲି । ( ମିଚିଓଲୁଫି୍ରଚ୍ ଏ ଘରବାରର ଓକିଲ ) ସେ ବି ସେଇଆ କହିଲେ ।"

ଜଣାପଡ଼ିଲା ଯେପରି କି ପ୍ରିନ୍‌ସେସ୍‌ଙ୍କ ବିଚାରବୁଦ୍ଧି ହଠାତ୍ ବଦଳିଗଲା । ତାଙ୍କ ପାତଳ ଓଠ ହଫାଳ ଧଳା ପଡ଼ିଗଲା, (ଆଖିର ଚାହାଣି ବଦଳିଲା ନାହିଁ,) ଆଉ ଯେତେବେଳେ ସେ କଥା କହିବାକୁ ଆରମ୍ଭ କଲେ, ତାଙ୍କ ସ୍ୱର ଅଟକି ଅଟକି ବାହାରୁଥିଲା, ଏପରି ହେବ ବୋଲି ସେ ଆଦୌ ଆଗରୁ ଭାବି ନ ଥିଲେ ।

"ତା ହେଲେ ତ ଭାରି ଭଲ କଥା ହେବ ।" ସେ କହିଲେ, "ମୁଁ କିଛି ଖୋଜି ନାହିଁ କି ଅଇଚ୍ଛା ବି କିଛି ଚାହେଁ ନାହିଁ ।" ସେ କୁକୁରଟାକୁ କୋଡ଼ରୁ ଓଟାରି ଫୋପାଡ଼ି ଦେଇ ପିନ୍ଧା ପୋଷାକର ଭାଙ୍ଗ ସଜାଡ଼ିଲେ ।

"ଯେଉଁ ଲୋକମାନେ ତାଙ୍କ ପାଇଁ ଆପଣାର ସବୁ ସ୍ୱାର୍ଥ ପାଣି ଛାଡ଼ିଦେଇ ଦେଇଥିଲେ ତାଙ୍କ ପ୍ରତି ଉଚିତ ହେଲା ଏ କୃତଜ୍ଞତା । ବାଃ ! ଠିକ୍ ଚିହ୍ନିଲେ ସେମାନଙ୍କୁ ସେ, ସେ କହିଲେ, "ହଉ, ଭଲ ହେଲା, ବେଶ୍ ହେଲା । ନା, ତାଙ୍କ ସମ୍ପତ୍ତିରୁ ମୋର କିଛି ଦରକାର ନାଇଁ ପ୍ରିନ୍‌ସ୍ ।"

"ହଉ ହେଲା, ତେବେ ତେମେ ତ ଏକୁଟିଆ ନୁହଁ, ତମର ଭଉଣୀମାନେ ଅଛନ୍ତି ଯେ,—" ପ୍ରିନ୍‌ସ୍ ହସିକି କହିଲେ । କିନ୍ତୁ ପ୍ରିନ୍‌ସେସ୍ ତାଙ୍କ କଥାକୁ କାନ ଦେଲେ ନାହିଁ ।

କହିଗଲେ, "ହଁ, ଏ କଥା ମୁଁ ବହୁତ ଆଗରୁ ଜାଣିଥିଲି । କିନ୍ତୁ ମୁଁ ଭୁଲି ଯାଇଥିଲି ଯେ ଏ ଘରେ ଆଉ କିଛି ମିଳିବ ନାହିଁ ଯେ, ଖାଲି ପ୍ରେଟଲୋକ, ଚଡାକଟା, ଠକେଇ, ଈର୍ଷା, ଫନ୍ଦିଫିକର, ମିଳିବ, ଖାଲି ଅକୃତଜ୍ଞତା, ଅତି ଅବିଶ୍ୱାସୀ ଅକୃତଜ୍ଞତା···"

"ଉଇଲ୍‌ଟା କୋଉଁଠି ଅଛି ତୁମେ ଜାଣିଚ କ ନାହିଁ କହିଲ ମା !" ପ୍ରିନ୍‌ସ୍ ଭାସିଲ୍ କହିଲେ । ତାଙ୍କ ଗାଲ ଦିଟା ଯେ ମୋଡ଼ ମୋଡ଼ ହୋଇ ଯାଉଥିଲା ତା ଆହୁରି ବଡ଼ି ବଡ଼ି ଜଣାପଡ଼ିଲା ।

ପ୍ରିନ୍‌ସେସ୍ କହୁଥାନ୍ତି, "ଅଇଚ୍ଛା ମତେ ସବୁ ଜଳ ଜଳ ଦିଶି- ଯାଉଛି । ମୁଁ ବୁଝିପାରୁଚ ଯେ କାହା ଷଡ଼ଯନ୍ତ୍ର ।"

"ସେ କଥା ପଡ଼ ନାହିଁ ମା !"

"ସବୁ ଆପଣଙ୍କର ସେଇ ଅମୂଲ୍ୟ ଆନ୍ନା ମିହାଲୋଭ୍ନା ଯୋଗୁଁ, ଆପଣ ତାକୁ ଘଣ୍ଟ ଘୋଡ଼େଇଛନ୍ତି । ମୁଁ ସେ ଅଲକ୍ଷଣୀଟାକୁ ଚାକରାଣୀ କରିବ, ତାକୁ ଘରେ ପୂରାଇବା ଉଚିତ ନୁହେଁ ।"

"ବେଳ ଯାଉଛି, ସମୟ ନଷ୍ଟ କରିବା ନାହିଁ ।"

"ମତେ କିଛି କହନ୍ତୁ ନାହିଁ । ଗଲା ଥର ଶୀତଦିନେ ସେ କେମିତି କଳେ ବଳେ ଏଠିକି ପଶି ଆସିଲା ଆଉ ଏମିତି ଲଗେଇ ଯୋଡି ଅତି ହୀନ, କଞ୍ଚା ମିଛଗୁଡ଼ାଏ ଆମ ନାଁରେ କାଉଣ୍ଟଙ୍କ ଆଗରେ କହିଲା ଯେ ମଣିଷ କାନରେ ହାତ ଦେବ । ମୁଁ ସେ କଥାଗୁଡ଼ାକ ତୁଣ୍ଡରେ ଧରିବ ନାହିଁ । ବେଶି ତ ସୋଫୀ ନାଁରେ । ସେ କଥା ଶୁଣି କାଉଣ୍ଟଙ୍କୁ ରୋଗ ଧରି ପକେଇଲା, ସେ ପନ୍ଦର ଦିନ ଯାକେ ଆମ ମୁହଁ ଚାହିଁଲେ ନାହିଁ । ସେତିକି- ବେଳେ ସେ ସେହି ଦଲିଲ୍‌ଟା ଲେଖିଥିଲେ, ବୁଝିଲେ ? ସେଇ ଭୟଙ୍କର ହୀନ କାଗଜଟା, ତେବେ ମୁଁ ଭାବିଥିଲି କଣ ନା ସେଥିରେ କିଛି ହେବ ନାହିଁ ।"

"ଆଃ, କଥା ତ ସେଇଠି ଅଛି । ଆଃ ! ମତେ ଆଗରୁ କାହିଁକି କହିଲ ନାହିଁ ?"

"ତାଙ୍କ ତକିଆ ତଳେ ଯେଉଁ ମୁଣିଟାକୁ ସେ ରଖିଥାନ୍ତି ତାରି ଭିତରେ ସେଇଟା ଅଛି, ଅଇଚ୍ଛା ମୁଁ ବୁଝିଲି ।" ପ୍ରିନ୍‌ସେସ୍ ତାଙ୍କ କଥାର ଉତ୍ତର ନ ଦେଇ ମନଇଚ୍ଛା କହିଗଲେ, "ହଁ, ମୋଠି ଯଦି କିଛି ପାପ ଥିବ, କିଛି ଭାରି ବଡ଼ ପାପ, ତ ସେଇଟା ସେଇ ଅଲକ୍ଷଣୀ ଛତରଖାଇଟା ପ୍ରତି ମୋର ଘୃଣା ।" ପ୍ରିନ୍‌ସେସ୍ ଏକଦମ୍ ବଦଳି ଯାଇ ଚିତ୍କାର କରି କହିଲେ, "କାହିଁକି ସେଇଟା ବଳେ ବଳେ ଏଠିକି ଆସେ ? ହଉ, ମୁଁ ତାକୁ ଥଣ୍ଡା କରୁଛି ରହି ଥା, ବେଳ ଆସିବ ଯେ !"

ପ୍ରିନ୍‌ସେସ୍‌ଙ୍କ ବଖରାରେ ଏ କଥାଭାଷା ଚାଲିଥିଲାବେଳେ ଗୋଟାଏ ଘୋଡ଼ାଗାଡ଼ି କାଉଣ୍ଟ୍ ବେଜୁହୋଭ୍‌ଙ୍କ ପ୍ରାସାଦର ଅଗଣା ଭିତରକୁ

ଅାସୁଥିଲା । ସେଥିରେ ଥିଲେ ପିଏରେ, ତାଙ୍କୁ ଡାକ ଆଣିବାକୁ ଲୋକ ପଠା ହୋଇଥିଲା, ଆଉ ଥିଲେ ଆନ୍ନା ମିହାଲୋଭ୍ନା, ଆସିବା ଦରକାର ବୋଲି ଭାବି ସେ ନିଜ ଇଚ୍ଛାରେ ଆସିଥିଲେ । ସଡ଼କରେ ଯେଉଁ ନଡ଼ା ପଡ଼ିଥିଲା ତା ଉପରେ ଗଲା ବେଳେ ଗାଡ଼ି ଚକର ଘଡ଼ ଘଡ଼ ଶବ୍ଦ ଯେତେବେଳେ ଆଉ ନ ଶୁଭିଲା, ସେତେବେଳେ ବୋଧ ଶୋଧ କରି ବାପବ କହି ଆନ୍ନା ମିହାଲୋଭ୍ନା ତାଙ୍କ ସଙ୍ଗୀ ଆଡ଼କୁ ବୁଲି ପଡ଼ି ଦେଖିଲେ ଯେ ସେ ଗାଡ଼ିର କଣଟିରେ ନିଦରେ ଶୋଇଛି । ତାଙ୍କୁ ଉଠାଇ ଦେଲେ ।

ପିଏରେ ନିଦରୁ ଉଠି ଆନ୍ନା ମିହାଲୋଭ୍ନାଙ୍କ ପଛେ ପଛେ ଗାଡ଼ିରୁ ବାହାରି ଚାଲିଲା । ଖାଲି ସେତିକବେଳେ ସେ ମନେ ପକାଇଲା ଯେ ତାର ବାପା ମରି ଯାଉଛନ୍ତି, ତାଙ୍କ ସଙ୍ଗେ ଦେଖା କରିବା କାର୍ଯ୍ୟନା ତାକୁ ଅପେକ୍ଷା କରୁଛି । ସେ ଲକ୍ଷ୍ୟ କଲା ଯେ ଲୋକେ ଯେଉଁ ବାଟେ ଆସନ୍ତି ତାଙ୍କ ଗାଡ଼ିକୁ ସେ ଦୁଆରମୁହଁକୁ ନ ଆଣି ପଛପଟ ଦୁଆରମୁହଁକୁ ଅଣା ହୋଇଛି । ସେ ଯେମିତି ଗାଡ଼ି ପାହାଚରୁ ଓହ୍ଲାଇ ପଡ଼ୁଛି, ସେମିତି ଦେଖିଲା ଯେ ଦୁଇ ଜଣ ମଣିଷ ଦୁଆର ପାଖରୁ କାନ୍ଥର ଛାଇ ଆଡ଼କୁ ତରତର ହୋଇ ଚାଲିଗଲେ । ତାଙ୍କ ପୋଷାକରୁ ଜଣାପଡ଼ିଲା ଯେ ସେମାନେ ଦୋକାନୀ । ପିଏରେ ଅପେକ୍ଷା କରି ଠିଆ ହୋଇଥିଲାବେଳେ ଲକ୍ଷ୍ୟ କଲା ଯେ ଘରର ଛାଇତଳେ ଦୁଇ ପାଖେ ଅନ୍ଧାରେ ସେମିତି କେତେ ଲୋକ ଠିଆ ହୋଇଛନ୍ତି । ଆନ୍ନା ମିହାଲୋଭ୍ନାଙ୍କ ଚଉକିଦାରମାନେ କି ଗାର୍ଡ୍ସ ଆଦି କେହି ସେ ଲୋକଙ୍କ ଆଡ଼କୁ ଚାହୁଁ ନ ଥାନ୍ତି । ତା ହେଲେ ସବୁ ଠିକ୍ ଅଛି, ପିଏରେ ଭାବିଲା । ଆଉ ଆନ୍ନା ମିହାଲୋଭ୍ନାଙ୍କ ପଛେ ପଛେ ଚାଲିଲା ।

ତରତର ପାହୁଣ୍ଡ ପକାଇ ଆନ୍ନା ମିହାଲୋଭ୍ନା ଅଳ୍ପ ଆଲୁଅ ପଡ଼ିଥିବା ଅଣଓସାରିଆ ପଥର ସିଡ଼ିରେ ଚଢ଼ି ଚାଲିଲେ । ପିଏରେ ପଛରେ ପଡ଼ି ଯାଉଥାଏ ଯେ ତାକୁ ତର ତର କରୁଥାନ୍ତି । ପିଏରେର ଆଦୌ ଧାରଣା ହେଉ ନ ଥାଏ ଯେ ମୂଳରୁ ଆଗ କାହିଁକି ତାର କାଉଣ୍ଟଙ୍କ ପାଖକୁ ଯିବା ଦରକାର । ତାର ଆହୁରି କମ୍ ଧାରଣା ଥାଏ କାହିଁକି ପଛପଟ ସିଡ଼ିବାଟେ ତାକୁ ଯିବାକୁ ପଡ଼ୁଛି । ତେବେ ଆନ୍ନା ମିହାଲୋଭ୍ନାଙ୍କ ତର ତର ଦେଖି ଆଉ ତାଙ୍କ ଆଶ୍ୱାସନାମାନ ଶୁଣି ଏମିତି ମାଡ଼ିପଡ଼ିଲା ଯେ ସେ ମନେ ମନେ ଠିକଣା କଲା ଯେ କାଉଣ୍ଟଙ୍କ ସଙ୍ଗେ ଦେଖା କରିବା ତାର ଏକାନ୍ତ ଆବଶ୍ୟକ ।

ସେମାନେ ସିଡ଼ିରେ ଅଧାବାଟରେ ହୋଇଛନ୍ତି, ଦେଖିଲେ ଯେ ଥୋଡ଼ାଏ ଲୋକ ବଡ଼ ବଡ଼ ହାଣ୍ଡି ଧରି ଓହ୍ଲାଉଛନ୍ତି, ଜୋତା ଦୁମ୍‌ଦାମ୍ କରି ସେମାନେ ତାଙ୍କ ଆଡ଼କୁ ଦୌଡ଼ି ଆସୁଥାନ୍ତି ଯେ ଦୁହେଁ ପ୍ରାୟ ହାବୁଡ଼ାହାବୁଡ଼ି ହୋଇ ପଡ଼ୁଯାଇଥାନ୍ତେ । ସେ ଲୋକେ ପିଏରେ ଓ ଆନ୍ନା ମିହାଲୋଭ୍‌ନାଙ୍କୁ ଛାଡ଼ିଦେବାକୁ କାନ୍ଥ କରରେ ଲେପଟିଗଲେ, ତାଙ୍କୁ ଦେଖି ଟିକିଏ ବି ଆଶ୍ଚର୍ଯ୍ୟ ହେଲେ ନାହିଁ ।

"ପ୍ରିନ୍‌ସେସ୍‌ମାନଙ୍କ ବଖୁରି କଣ ଏହି ଘରର ଏଇପଟେ ?" ସେଥିରୁ ଜଣଙ୍କୁ ଆନ୍ନା ମିହାଲୋଭ୍‌ନା ପଚାରିଲେ । ଖୁବ୍ ବଡ଼ ପାଟିରେ ଜଣେ ଚୌକିଦାର କହିଲା, "ହଁ ହଁ", ଯେପରି କି ଏତେବେଳେ ଯେମିତି କଲେ ବି ସାତଖୁଣ ମାଫ୍, କହିଲା, "ହଁ ସାଆନ୍ତାଣି, ବାଁପାଖ କବାଟ—"

ଉପରେ ପହଞ୍ଚି ପିଏରେ କହିଲା, "ମତେ ଲାଗୁଚି କାଉଣ୍ଟ୍ ବୋଧେ ମତେ ଡକେଇ ନାହାନ୍ତି, ମୁଁ ଯାଏଁ ମୋ ନିଜ ବଖୁରିକୁ ।" ପିଏରେ ତାଙ୍କ ପାଖରେ ପହଞ୍ଚିବାଯାକେ ଆନ୍ନା ମିହାଲୋଭ୍‌ନା ଅପେକ୍ଷା କଲେ । ସକାଳେ ତାଙ୍କ ପୁଅ ହାତକୁ ଧରିପକେଇଲାବେଳେ ଯେମିତି ଅଙ୍ଗଭଙ୍ଗୀ କରିଥିଲେ ସେମିତି ଅଙ୍ଗଭଙ୍ଗୀ କରି ତା ହାତକୁ ଛୁଇଁଦେଇ ସେ କହିଲେ, "ଶୁଣ ବାବୁ, ମୋ କଥାରେ ବିଶ୍ୱାସ କର । ତୁମର ଯେତିକି ମନଦୁଃଖ ହେଉଛି ମୋର ବି ସେଇଆ ହେଉଛି, କଣ କରିବ, କହ ? ପୁରୁଷ ପୁଅ ତ, ସହିବାକୁ ପଡ଼ିବ ।"

ଚଷମା ଉପରବାଟେ ତାଙ୍କ ଆଡ଼କୁ ଅନାଇଁ ପିଏରେ ସ୍ନେହରେ କହିଲା, "ସତରେ କହନ୍ତୁ ତ, ମୁଁ ନ ଗଲେ ଭଲହେବ ନାଇଁ ?"

"ଆଃ ! ତମ ପ୍ରତି ଯାହା ଅନ୍ୟାୟ କରାହୋଇଛି ସେକଥା ଅଇଛା ପାସୋରିପକା ବାବୁ, ଖାଲି ଏଇଆ ହେଉଛିକର ଯେ ସେ ତମ ବାପା··· ମୂଳରୁ ମୁଁ ତମକୁ ମୋ ପୁଅ ପରି ଦେଖିଛି, ଶରଧା କରିଚି । ମୋଠି ବିଶ୍ୱାସ ରଖ ପିଏରେ, ତମର ଯେମିତି ଭଲ ହବ ମୁଁ ସେକଥା ଭୁଲିନାଇଁ ।"

ପିଏରେ ଏ କଥାର ଵନ୍ଦୁବିସର୍ଗ ବି ବୁଝିପାରିଲା ନାଇଁ । ଆଗଠୁ ଆହୁରି ବେଶି ଟାଣ କରି ତାକୁ ଲାଗିଲା ଯେ ଏସବୁ ଏମିତି ହେବାର କଥା । ଆନ୍ନା ମିହାଲୋଭ୍‌ନାଙ୍କ ପଛେ ପଛେ ବାଧ ପିଲା ପରି ସେ ଚାଲିଲା ।

ଆନ୍ନା ମିହାଲୋଭ୍ନା କବାଟଟା ଖୋଲି ସାରିଥିଲେ । ପଛପଟ ସିଡ଼ିର ଉପର ଘରର କବାଟ ସେଇଟା, କଣରେ ବସିଥିଲା ପ୍ରିନ୍‌ସେସ୍‌ଙ୍କ ପୁରୁଣା ବୁଢ଼ା ଚାକର, ମୋଜା ସିଲେଇ କରୁଥିଲା । ପିଏରେ ଘରର ଏପଟକୁ କେବେ ଆସି ନ ଥିଲା କି ଏଣେ ଏସବୁ ବଖରା ଅଛି ସେକଥା ବି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ।

ଥାଳିଟିଏ ଧରି ଗୋଟିଏ ଚାକରାଣୀ ପଛରୁ ଆସି ତାଙ୍କ କଡ଼ରେ ପହଞ୍ଚିଗଲା, ଥାଳି ଉପରେ ଗିଲାସଟିଏ ଥୁଆ ହୋଇଥାଏ । ତାକୁ 'ମାଆଲୋ', 'ସୁନାଲୋ' ବୋଲି କହି ପ୍ରିନ୍‌ସେସ୍‌ଙ୍କ ଦେହ କେମିତି ଅଛି ବୋଲି ତାକୁ ଅନ୍ନା ମିହାଲୋଭ୍ନା ପଚାରିଲେ ଆଉ ପଥର ଘରର ବାଟେ-ବାଟେ ପିଏରେକୁ ଓଟାରି ନେଇ ଚାଲିଲେ ।

ବାଁପଟର ପ୍ରଥମ କବାଟ ପ୍ରିନ୍‌ସେସ୍‌ମାନେ ଯେଉଁ ବଖରାରେ ରହନ୍ତି ସେହି ବଖରାର । ଯେଉଁ ଚାକରାଣୀ ଗିଲାସ ନେଇ ଯାଉଥିଲା ସେ ଭାରି ତରତର ଥିଲା । ସେହି ସମୟଟାରେ ଏ ଘରେ ଯାହା ଘଟୁଥିଲା ସବୁ ଖାଲି ତରତର, ତରତରରେ ଚାକରାଣୀ କବାଟ ଆଉଜେଇ ନେଲା ନାହିଁ । ପିଏରେ ଆଉ ଆନ୍ନା ମିହାଲୋଭ୍ନା ସେବାଟେ ଗଲାବେଳେ ଅଜାଣତରେ ତାଙ୍କ ଆଖି ପଡ଼ିଗଲା ଆଉ ଘର ଭିତରକୁ ଯେଉଁଠି ବଡ଼ ପ୍ରିନ୍‌ସେସ୍ ଆଉ ପ୍ରିନ୍‌ସ୍ ଭାସିଲି ଏକାଠି ବସି କଥା ହେଉଥିଲେ । ସେମାନେ ସେବାଟେ ଯାଉଛନ୍ତି ଦେଖି ପ୍ରିନ୍‌ସ୍ ଭାସିଲି ଅସ୍ଥିର ହେଲା ପରି ଭାବଭଙ୍ଗୀ କରି ପଛକୁ ହଟିଗଲେ ଆଉ ପ୍ରିନ୍‌ସେସ୍ ଡେଇଁପଡ଼ି ଉଠିଆସି ଖୁବ୍ ଜୋର୍‌ରେ ଧଡ଼୍‌କରି କବାଟଟାକୁ କିଳି ଦେଲେ । ପ୍ରିନ୍‌ସେସ୍ ସ୍ୱଭାବତଃ ଶାନ୍ତଶିଷ୍ଟ, ତାଙ୍କ ସ୍ୱଭାବ ସଙ୍ଗେ ତାଙ୍କର ଏଭଳି ବ୍ୟବହାର ଏତେ ବେଖାପ ଲାଗିଲା, ଆଉ ପ୍ରିନ୍‌ସ ଭାସିଲିଙ୍କ ମୁହଁ ଉପରେ ଯେଉଁ ନୈରାଶ୍ୟର ଛାଇ ଫୁଟିଉଠିଲା ତା ତାଙ୍କ ମର୍ଯ୍ୟାଦା ସହିତ ଏଭଳି ଅସାମଞ୍ଜସ୍ୟ ଜଣାଗଲା, ଯେ ପିଏରେ ହଠାତ୍ ଅଟକି ରହି ତାର ସଙ୍ଗିନୀଙ୍କୁ ଚଷମା ଉପରୁ ପଚାରିଲା ଭଙ୍ଗୀରେ ଅନାଇଲା । କିନ୍ତୁ ଆନ୍ନା ମିହାଲୋଭ୍ନା ଏଥିରେ ଆଦୌ ବିସ୍ମିତ ହେଲା ପରି ଦିଶିଲେ ନାହିଁ । ସେ ଅଳ୍ପ ହସି ଦୀର୍ଘଶ୍ୱାସ ପକାଇଲେ, ସତେ ଯେପରି ଏଇଆ ଜଣାଇ ଦେବାକୁ ଏବଂ ଏପରି ହେବ ବୋଲି ସେ ଆଗରୁ ଜାଣିଥିଲେ ।

"ଧୈର୍ଯ୍ୟ ଧର ବାବୁ, ମୁଁ ତମର ସ୍ୱାର୍ଥକୁ ବି ନଜର ଦେଇଛି," ତାର ପ୍ରଶ୍ନସୂଚକ ଦୃଷ୍ଟିର ଏଇ ଉତ୍ତର ଦେଇ ସେ ଗଳି ବାଟରେ ତରତର ହୋଇ ଚାଲିଲେ ।

କଣ ସବୁ ଘଟିଯାଉଛି ସେ ବିଷୟରେ ପିଏରେର ଆଦୌ ଧାରଣା ନ ଥିଲା କି ତାର ସ୍ୱାର୍ଥକୁ ନଜରଦେବା ଅର୍ଥ କଣ ସେ ବିଷୟରେ ବି ତାର ଟିକିଏ ବି ଧାରଣା ନ ଥିଲା । କିନ୍ତୁ ତାକୁ ଲାଗୁଥାଏ ଯେ ଏସବୁ ତ ଏମିତି ହେବାର କଥା । ଗଳିବାଟରୁ ବାହାରିଲା ପରେ ବୈଠକଖାନା ପାଖ ବଡ଼ ହଲଘର ଭିତରକୁ ସେମାନେ ପଶିଲେ, ପିଏରେ ଏ ଘରକୁ ଚିହ୍ନିଥିଲା, ବାହାରଆ ଲୋକେ ଯେଉଁ ସିଡ଼ିବାଟେ ଆସନ୍ତି, ତାହାର ମୁଣ୍ଡ ଉପରେ ଏ ଘର, ଏଘର ଭାରି ବିଳାସ ଆଡ଼ମ୍ବରରେ ସଜା ହୋଇଥାଏ, ଶୀତଳ ଥାଏ, କିନ୍ତୁ ଏ ବଖରାରେ ବି ଚଟାଣ ମଝିରେ ଗୋଟାଏ ଗାଧୁଆ କୁଣ୍ଡ ଥୁଆ ହୋଇଥାଏ, ଖାଲି ପଡ଼ିଥାଏ, ଘର ଚଟାଣରେ ଯେଉଁ ଗାଲିଚା ପରା ହୋଇଥିଲା ତା ଉପରଯାକ ପାଣି ଢଳା ହୋଇଥାଏ । ଏଠି ସେମାନେ ଦେଖିଲେ ଯେ ଏ ଘରର ଜଣେ ଚାକର ଗୀର୍ଜାଘରର ଜଣେ ଚାକର ଅଛନ୍ତି । ଗୀର୍ଜାଘରର ଲୋକ ଗୋଟାଏ ଝୁଣାକୁଣ୍ଡ ଧରିଥାଏ, ସେମାନେ ଆଗଗୋଡ଼ରେ ପାଦ ଚିପି ଚିପି ଚାଲୁଥାନ୍ତି । ଏମାନଙ୍କୁ ସେ ଲୋକେ ନଜର ବି କଲେନାହିଁ । ଏମାନେ ବୈଠକଖାନା ଘରକୁ ଗଲେ, ସେଘର ଦୁଆର ସେପଟେ ଶୀତଦିନିଆ ବଗିଚା । ପିଏରେ ଏ ଘରକୁ ଭଲକରି ଚିହ୍ନିଥିଲା, ଏ ଘରେ ପ୍ରାଚୀନ କାରୁକାର୍ଯ୍ୟମୟ ଇଟାଲିଆନ୍ ଝରକା । ଗୋଟାଏ ବଡ଼ ମୂର୍ତ୍ତି ଥୁଆ ହୋଇଥାଏ ଯେ ସେ ମୂର୍ତ୍ତି ମୁଣ୍ଡଠୁ ଗୋଡର ଅଧଯାକେ । ଆଉ ଏ ଘରେ ଥାଏ ମହାରାଣୀ କାଥରିନାଙ୍କର ପୂରା ଦେହେରର ବଡ଼ ଛବିଟିଏ । ତାକୁ ଲାଗିଲା ଯେପରିକି ଆଗରୁ ଯେ ଯେଉଁ ଜାଗାରେ ବସିଥିଲା, ସେ ଦେଖିଥିଲା ସେମାନେ ସମସ୍ତେ ସେହି ସେହି ଜାଗାରେ ବସି ରହିଛନ୍ତି, ଆଉ ଫୁସ୍‌ଫୁସ୍ ହୋଇ କଥାଭାଷା ହେଉଚନ୍ତି । ସମସ୍ତେ ଯେମିତି ଦେଖିଲେ ଯେ ଆନ୍ନା ମିହାଲୋଭ୍ନା ଆସି ପହଞ୍ଚିଲେ, ସମସ୍ତେ ଚୁପ ହୋଇଗଲେ । ସେମାନେ ଦେଖିଲେ ଯେ ତାଙ୍କ ମୁହଁ ଶୁଖିଯାଇଛି, ମୁହଁଯାକ ଲୁହ କେରା କେରା ହୋଇ ବୋହିଯାଉଛି, ଆଉ ତାଙ୍କ ପଛେ ପଛେ ଚାଲିଛି ପ୍ରକାଣ୍ଡ ଆକାରର ପିଏରେ, ମୁହଁ ତଳକୁ ପୋତି ବିମିତ ହୋଇ ଚାଲିଛି ।

ଆନ୍ନା ମିହାଲୋଭ୍ନାଙ୍କ ମୁହଁ ଦେଖି ଜଣାଗଲା ଯେ ସନ୍ଧି ମୁହୂର୍ତ୍ତଟା ଆସି ପହଞ୍ଚିଗଲା । ପିଟର୍ସ୍‌ବର୍ଗ୍‌ ସହରର ଅଭିଜ୍ଞ ଭଦ୍ରମହିଳାମାନେ ଯେପରି ଠାଣି ଦେଖାନ୍ତି, ସକାଳେ ସେ ସେହିପରି ଠାଣିରେ ଦମ୍ଭ ଦେଖାଇ ସେ ଘର ଭିତରକୁ ପଶି ଯାଇଥିଲେ । ବର୍ତ୍ତମାନ ସକାଳଠୁ ଆହୁରି ଅଧିକ ଦମ୍ଭ ଦେଖାଇ ସେ ଘର ଭିତରକୁ ପଶିଗଲେ, ପିଏରେକୁ ଆପଣା କରପଟେ ରଖିଥାନ୍ତି । ସେ ଭାବିଥିଲେ ଯେ ମୁମୂର୍ଷୁ ବ୍ୟକ୍ତିଟି ଯେଉଁ ଲୋକକୁ ଦେଖିବାକୁ ଚାହିଁ ରହିଛି, ଯେତେବେଳେ ସେହି ଲୋକଟିକୁ ସେ ସଙ୍ଗରେ ନେଇ ଆସିଛନ୍ତି, ତାଙ୍କୁ କିପରି ଅଭ୍ୟର୍ଥନା ହିଆଯିବ, ସେ ବିଷୟରେ ସେ ନିଶ୍ଚିନ୍ତ । ଚଞ୍ଚଳ ଚାହାଣିରେ ସେ ସେଘରେ ଥିବା ସମସ୍ତଙ୍କୁ ନିରେଖି ଦେଖିନେଇ କାଉଣ୍ଟଙ୍କ ଧର୍ମ ପୁରୋହିତଙ୍କୁ ଲକ୍ଷ୍ୟ କଲେ, ସେ ଠିକ୍ ନଇଁପଡ଼ି ଉଜାଗି ହେଲେନାହିଁ ସତ କିନ୍ତୁ କେମିତି ହଠାତ୍ ଯେପରିକି ଚେହେରାରେ ସାନ ହୋଇଗଲେ, ଆଉ ପିଲାଏ ଖେଳିବା ମାଉଲା ପରି ପହଁରିଲା ପରି ସେ ପୁରୋହିତମାନଙ୍କ ପାଖକୁ ଧାଇଁଯାଇ ବହୁତ ମାନ୍ୟ ଦେଖାଇ ଆଗ ଜଣକଠୁଁ ଫେର ଆରଜଣଙ୍କଠୁଁ ଏହିପରି ଦୁଇଜଣ ଧର୍ମପୁରୋହିତଙ୍କଠୁଁ ଆଶୀର୍ବାଦ ନେଲେ ।

"ଯାହାହେଉ ଭଗବାନଙ୍କ ଦୟା ଯେ ଆମେ ଠିକଣାବେଳେ ଆସି ପହଞ୍ଚିଛୁ—," ସେ ପୁରୋହିତଙ୍କୁ କହିଲେ, "ଆମେ ତାଙ୍କ ବନ୍ଧୁ-ବାନ୍ଧବମାନେ ସମସ୍ତେ ତ ଆତଙ୍କରେ ପଡ଼ିଛୁ ।" ସେ ଗୁନ ଗୁନ କହିଲେ, "ଏହି ଟୋକା ଜଣକ କାଉଣ୍ଟଙ୍କ ପୁଅ । ବଡ଼ ଭୟଙ୍କର ସମୟ—"

ଏତକ କଥା କହିଦେଇ ସେ ଡାକ୍ତରଙ୍କ ପାଖକୁ ଗଲେ । କହିଲେ "ଆଜ୍ଞା ଡାକ୍ତରବାବୁ, ଏହି ଯୁବକଟି କାଉଣ୍ଟଙ୍କ ପୁଅ । କଣ କିଛି ଆଶା ଦେଖୁଚନ୍ତି ?" ଡାକ୍ତର କିଛି କଥା କହିଲେନାହିଁ । କାନ୍ଧ ଟାଙ୍କିଦେଇ ଥରେ ଆଖି ଟେକି ଉପରକୁ ଅନାଇଁଲେ । ଅବିକଳ ସେହିପରି ଭଙ୍ଗୀ କରି ଆନ୍ନା ମିହାଲୋଭ୍ନା ବି କାନ୍ଧ ନଚେଇଲେ, ଡୋଳା ବୁଲେଇଲେ, ଆଖିପତାକୁ ପ୍ରାୟ ବୁଜିଦେଇ ଦୀର୍ଘଶ୍ୱାସ ପକାଇ ସେ ଡାକ୍ତରଙ୍କ ପାଖରୁ ପିଏରେ ପାଖକୁ ଚାଲିଗଲେ । ଏକପ୍ରକାର ବିଶିଷ୍ଟ ସଂଭ୍ରମ ସହିତ କୋମଳ ଦୁଃଖିତ ଭଙ୍ଗୀରେ ସେ ପିଏରେକୁ କହିଲେ "ଭଗବାନଙ୍କ ଦୟାରେ ଭରସା ରଖ ବାବା—" । ଗୋଟାଏ ଆସନ ଆଡ଼କୁ ହାତଠାରି ସେଠି ବସିବାକୁ ଓ ତାଙ୍କୁ ଅପେକ୍ଷା କରିବାକୁ ତାଙ୍କୁ

ଇଙ୍ଗିତ କରି ସେ ନିଜେ ସେପାଖ ଘର ଦୁଆରମୁହଁ ଆଡ଼କୁ ଗଲେ, ଏମିତି ପାଦ ପକାଇଗଲେ ଯେପରି ପାଦଶବ୍ଦ ଶୁଭିବ ନାହିଁ । ସମସ୍ତେ ସେହି ଘର ଦୁଆରମୁହଁକୁ ଅନାଇଁଥାନ୍ତି, ନିଃଶବ୍ଦରେ ସେ ଘର ଭିତରେ ପଶି ଅନ୍ତର୍ଦ୍ଧାନ ହୋଇଗଲେ ।

ପିଏରେ ନିଷ୍ପତ୍ତି କରିଥାଏ ମାଷ୍ଟ୍ରାଣୀ କଥା ମାନିଲା ପରି ସବୁଥିରେ ତାଙ୍କର କଥା ମାନି ଚଳିବ । ସେ ଯେଉଁ ଆସନ ତାକୁ ଦେଖାଇ ଦେଇ ଯାଇଥିଲେ, ସେହି ଆସନରେ ସେ ବସିବ ବୋଲି ଗଲା ।

ବି ମିନିଟ୍ ନ ପାଉଣୁ ପ୍ରିନ୍ସ ଭସିଲି ସେ ଘର ଭିତରକୁ ପଶି ଆସିଲେ । ସେ ଭାରି ଠାଣି ଦେଖାଇ ଚାଲୁଥାନ୍ତି, ଯେଉଁ କୋଟ ପିନ୍ଧିଥାନ୍ତି ସେଥିରେ ତିନଟା ତାରା ଚିହ୍ନ ଥାଏ । ତାଙ୍କ ବେକ ସଳଖ ଥାଏ । ସକାଳଠୁ ଆହୁରି ସରୁଆ ହୋଇଗଲା ପରି ସେ ଦିଶୁଥାନ୍ତି । ସେ ଯେତେବେଳେ ଘର ଚାରିଆଡ଼କୁ ନିରେଖୁ ଥାନ୍ତି, ସେତେବେଳେ ସେଠି ପିଏରେକୁ ଦେଖି ପକାଇ ସତେକି ତାଙ୍କ ଆଖିଯୋଡ଼ାକ ଆହୁରି ବଡ଼ବଡ଼ ହୋଇଗଲା । ସେ ତା ପାଖକୁ ଚାଲିଆସି ତା ହାତଧରି ପକାଇଲେ । ଏଭଳି କଥା ସ୍ବା ଆଗରୁ ସେ କେବେ କରି ନଥିଲେ । ସତେକି ତା ହାତର ବଳ ପରଖୁଛନ୍ତି, ଏହିଭଳି ତା ହାତକୁ ତଳକୁ ଓଟାରିଲେ ।

"ସାହସ ଧର, ଧୈର୍ଯ୍ୟଧର ବନ୍ଧୁ ! ସେ ତମୁକୁ ଦେଖିବେ ବୋଲି କହିଛନ୍ତି, ଖୁବ୍ ଭଲକଥା—" ସେ ଆହୁରି କହୁଥାନ୍ତେ; କିନ୍ତୁ ପିଏରେ ସେତେବେଳେ ଭାବିଲା ଯେ ତାଙ୍କୁ ପଚାରିବା ଦରକାର, ସେ ପଚାରିଲା,—"କେମିତି ସେ···" ସେ କଣ ନାଁ ଧରି କହିବ, ଥଙ୍ଗେଇ ହେଲା, ଠିକଣା କରିପାରିଲା ନାହିଁ ଯେ ମୁମୂର୍ଷୁ ଲୋକଟିକୁ 'କାଉଣ୍ଟ' ବୋଲି କହିବା ଠିକ୍ ହେବ କି ନାହିଁ । ଏଣେ 'ବାପା' ବୋଲି କହିବାକୁ ଲାଜ ମାଡ଼ୁଥାଏ ।

"ଏଇ ଅଧ ଘଣ୍ଟାଏ ହେଲା ପୁଣି ଆଉ ଥରେ ତାଙ୍କ ରୋଗଟା ବଢ଼ି ଉଠିଛି ବନ୍ଧୁ,—ଫେର୍ ଥରେ ଘାତ ମାରି ଦେଲା ।"

ପିଏରେର ମୁଣ୍ଡ ଭିତର ଏମିତି ଗୋଳମାଳିଆ ହୋଇ ଯାଇଥାଏ ଯେ ରୋଗ ବଢ଼ିବା ନାଁ ଶୁଣି ଘାତ ମାରି ଦେବ । ନାଁ ଶୁଣି ତା ମନରେ ଏପରି ଗୋଟାଏ ଧାରଣା ହେଲା ଯେପରି କି ସତକୁ ସତ ଗୋଟାଏ କଣ ଓଜନିଆ ଜିନିଷରି ମାଡ଼ ବସିଚି ତାଙ୍କଠି । ସେ ଆବା କାବା ହୋଇ

ପ୍ରିନ୍‌ସ୍ ଭସିଲଙ୍କ ମୁହଁକୁ ଅନାଇଁଲା ଆଉ କିଛି ସମୟ ଗଲାରୁ ଯାଇ ବୁଝିଲା ଯେ ଯାତ ଶବ୍ଦ କହିଲେ ରୋଗର ଆଘାତ ବୁଝାଉଛି । ପ୍ରିନ୍‌ସ୍ ଭସିଲ ପାଦ ଅଗରେ ଚାଲି ଚାଲି ଆଉ ଘରର ଦୁଆର ମୁହଁ ଆଡ଼କୁ ଯାଉ ଯାଉ ଥିର ଥିର କଣ ଅଳ୍ପ କଥା ଡାକ୍ତର ଲରେନଙ୍କୁ କହିଦେଇ ଗଲେ । ସେ ଗୋଡ଼ ଚପି ଚପି ଚାଲି ପାରୁ ନ ଥାନ୍ତି, ତାଙ୍କ ସାରା ଦେହଟା ଅବାଗିଆ ହୋଇ ଏକର ସେକର ଝାଙ୍କି ହେଉଥାଏ, ତାଙ୍କ ପଛେ ପଛେ ବଡ଼ ପ୍ରିନ୍‌ସେସ୍ ଗଲେ । ତା ପଛକୁ ଧର୍ମ ପୁରୋହିତମାନେ, ଗୀର୍ଜା ଘରର ଲୋକେ, କେଇ ଜଣ ଚାକର ବି କବାଟ ବାଟେ ଭିତରକୁ ଗଲେ । ସେ ଦୁଆର ମୁହଁ ସେପଟେ ଗହଳ ଚହଳ ଶୁଭୁଥାଏ । ଶେଷରେ ଆନ୍ନା ମିହାଲେଭ୍ନା ଦଉଡ଼ି ଆସିଲେ, ତାଙ୍କ ମୁହଁ ଶୁଖିଲା ଦିଶୁଥାଏ କିନ୍ତୁ କର୍ତ୍ତବ୍ୟ କଲାବେଳର କଠିନ ଦମ୍ଭର ଛବି ସେଥିରେ ଫୁଟି ଉଠୁଥାଏ । ପିଏରେର ବାହା ଛୁଇଁ ଦେଇ ସେ କହିଲେ

"ଭଗବାନଙ୍କ ଦୟା ଅସରନ୍ତି । ଅଇଗ୍ଣ ସେମାନେ ଶେଷକୃତ୍ୟର ଅନୁଷ୍ଠାନ ଯାକ କରୁଛନ୍ତି, ଚାଲଆସ ।"

ନରମ ଗାଲିଚା ଉପରେ ପାଦ ପକାଇ ପିଏରେ ଭିତରକୁ ଗଲା । ସେ ଲକ୍ଷ୍ୟ କଲା ଯେ ତା ପଛେ ପଛେ ଜଣେ ସାମରିକ ବ୍ୟକ୍ତି, ଜଣେ ଅଚିହ୍ନା ମହିଳା ଓ କେତେ ଜଣ ଚାକର ବି ଗଲେ, ଯେପରି କି ସେ ଘରେ ପଶିବାକୁ ଆଉ ଅନୁମତି ଦରକାର ନାହିଁ ।

ସେ ପ୍ରକାଣ୍ଡ ଘର ବଖରାକୁ ପିଏରେ ଆଗରୁ ଚିହ୍ନି ନ ଥିଲା । ସେ ଘରେ ସ୍ତମ୍ଭମାନ ଆଉ ଗୋଟାଏ ଖିଲାଣ ଥାଇ ଘରକୁ ବିଭକ୍ତ କରୁ ଥିଲା । ପାରସ୍ୟ ଦେଶର ଗାଲିଚା ପଡ଼ି ସେ ଘର ସଜା ସଜ ହୋଇଥିଲା । ସ୍ତମ୍ଭ ସେ ପାଖେ ବଖରାଟିର ଯେଉଁ ଅଂଶ ଥିଲା ସେଠି ମ୍ୟାହଗ୍ନି କାଠର ଏକ ଉଚ୍ଚ ପଲଙ୍କ ପଡ଼ିଥିଲା, ସେଥିରେ ରେଶମ କନା ଓହଳ ଥିଲା । ବଖରାଟିର ଆର ପାଖରେ ଏକ ପ୍ରକାଣ୍ଡ ବିମାନ । ସେଥିରେ ଧର୍ମ ସଂପର୍କୀୟ ଛବିମାନ ପୂର୍ଣ୍ଣ ହୋଇଥିଲା । ବହୁତ ଆଲୁଅ ଜଳୁଥିଲା, ସାଜ ସଜ୍ଜା କଲା ପରି ଆଲୁଅମୟ ହୋଇଥିଲା । ଯେମିତି ସଞ୍ଜବେଳେ ଗୀର୍ଜା ଘରେ ପ୍ରାର୍ଥନା କଲାବେଳେ ହୁଏ ସେମିତି ସଜାସଜ ହୋଇଥିଲା । ବିମାନର ଜକ ଜକ ସାଜ ସଜ୍ଜା ତଳେ ଲମ୍ବା ହୋଇ ଗୋଟିଏ ରୋଗୀ ଚୌକି ଥୁଆ ହୋଇଥିଲା । ପିଏରେ ଚିହ୍ନିଲା, ସେହି ଚଉକରେ ବରଫ

ପର ଧଳା ନୂଆ ବଦଳ ଥିବା କୋଟ୍ କୋଟ୍ ନ ହୋଇଥିବା ଚଉକୀ ଉପରେ ଅଣ୍ଟା ଯାଏ ଶାଗୁଆ ଶେଯ ଯୋଡ ହୋଇ ରାଜା ପରି ଦିଶୁଥିବା ରୂପଟି ତା ବାପା କାଉଣ୍ଟ୍ ବେଜୁହଭ୍ । ଓସାର କପାଳ ଉପରେ ମେଞ୍ଚାଏ ଧଳା ବାଳ । ସତେ ଯେପରି କି ସିଂହର କେଶର, ଆଉ ତାଙ୍କର ସୁନ୍ଦର ସମ୍ଭ୍ରାନ୍ତ ନାଲି ହଳଦିଆ ମୁହଁ ଉପରେ ଗମ୍ଭୀର ଗାର ସବୁ । ଧର୍ମ-ଚିତ୍ର-ମାନଙ୍କ ଠିକ୍ ତଳେ ସେ ଶୋଇ ଥାନ୍ତି, ତାଙ୍କର ମୋଟା ମୋଟା ପ୍ରକାଣ୍ଡ ବାହା ଯୋଡ଼ିକ ଶେଯ ଉପରେ ପଡ଼ିଥାଏ । ତାଙ୍କ ଡାହାଣ ହାତ ପାପୁଲି ତଳକୁ ହୋଇଥାଏ, ସେ ହାତରେ ବୁଢ଼ା ଆଙ୍ଗୁଠି ଆଉ ଅନାମିକା ମଝିରେ ଗୋଟାଏ ମହମବତୀ ଗୁଞ୍ଜି ଦେଇଥାନ୍ତି, ଚଉକି ଉପରେ ନଇଁ ପଡି ଜଣେ ବୁଢ଼ା ଚାକର ତାଙ୍କୁ ଧରିଥାଏ। ଚଉକି ଚାରିପାଖ ବେଢ଼ି ଜକ ଜକ ପୁରୋହିତ ପୋଷାକ ପିନ୍ଧି ପୁରୋହିତମାନେ ଠିଆ ହୋଇଥାନ୍ତି । ତାଙ୍କର ଲମ୍ବା ବାଳ ତାଙ୍କ ଉପରେ ଖେଳେଇ ହୋଇ ପଡ଼ିଥାଏ । ସେମାନେ ହାତରେ ଜଳନ୍ତା ବତୀ ଧରିଥାନ୍ତି ଓ ଗମ୍ଭୀର ହୋଇ ମନ୍ତ୍ର ପଢ଼ୁଥାନ୍ତି । ତାଙ୍କ ପଛରେ ଟିକିଏ ଛାଡ଼ି ସାନ ପ୍ରିନ୍‌ସେସ୍ ଦିହେଁ ଠିଆ ହୋଇ ଆଖିରେ ରୁମାଲ ମାଡ଼ୁଥାନ୍ତି । ସେ ଦୁହିଁଙ୍କ ଆଗରେ ଠିଆ ହୋଇଥାନ୍ତି ବଡ଼ ପ୍ରିନ୍‌ସେସ୍ କାଟିସ, ତାଙ୍କ ଚାଣିରେ ଦୃଢ଼ତା ଓ ପ୍ରତିହିଂସା ଫୁଟି ଉଠୁଥାଏ । ସେ ମୁହୂର୍ତ୍ତେ ବି ଠାକୁର ମୂର୍ତ୍ତି ଉପରୁ ଆଖି ଫେରାଉ ନ ଥାନ୍ତି, ଯେପରି କି ସେ ଦୁନିଆଁ ସାରା ଜଣାଇ ଦେବାକୁ ଚାହାନ୍ତି ଯେ ସେଠୁ ଆଖି ବୁଲେଇ ଆଣି ଅନ୍ୟଠିଁକି ଅନାଇଁଲେ ଯାହା ଘଟିବ, ସେଥିପାଇଁ ସେ ଆଦୌ ଦାୟୀ ହେବେନାହିଁ । ଆନ୍ନାମିହାଇଲଭ୍ନା ଦୁଆରମୁହଁ ପାଖେ ଠିଆ ହୋଇଥାନ୍ତି, ତାଙ୍କ ମୁହଁରେ ନମ୍ର ଦୁଃଖ ଓ କ୍ଷମାର ଛାଇ । ଦୁଆର ଆରପଟେ ରୋଗୀ ଚୌକିର ଅତି ପାଖରେ ପ୍ରିନ୍‌ସ୍ ଭାସିଲି ଠିଆ-ହୋଇଥାନ୍ତି । ମଖ୍‌ମଲ୍ ଲାଗିଥିବା କାରୁକାର୍ଯ୍ୟମୟ ଗୋଟାଏ ଚୌକି ସେ ଆପଣା ପାଖକୁ ଓଟାରି ଆଣି ତା' ପିଠିଆଡ଼କୁ ବାଁ ହାତ ଆଉଜେଇ ବସିଥାନ୍ତି, ବାଁ ହାତରେ ଗୋଟାଏ ବତୀ । ଭଗବାନଙ୍କୁ ସ୍ମରଣ କଲା ଭଙ୍ଗୀରେ ଡାହାଣ ହାତକୁ ସେ ଛାତି ଉପରେ ସମ୍ଭ୍ରମ ସହକାରେ ଛକି ପକାଉଥାନ୍ତି, ଆଙ୍ଗୁଠିକୁ ଆପଣା କପାଳରେ ଯେତେଥର ଲଗାଉଥାନ୍ତି ସେତେଥର ଉପରକୁ ଆଖି ଟେକୁଥାନ୍ତି । ତାଙ୍କ ମୁହଁରେ ଶାନ୍ତ ଧାର୍ମିକତା ଓ ଈଶ୍ୱରଙ୍କ ଇଚ୍ଛାର ଉପରେ ଆପଣାକୁ ଛାଡ଼ିଦେବାର ଭଙ୍ଗୀ ଫୁଟି

ଉଠିଥାଏ । ତାଙ୍କ ମୁହଁର ଛବି ଯେପରିକି ଜଣାଇଁ ଦେଉଥିଲା, "ଏଭଳି ମନୋଭାବ ଯଦି ତୁମେ ବୁଝିପାରୁନା, ତେବେ ତୁମେହିଁ ପସ୍ତେଇବ ।"

ତାଙ୍କ ପିଠିଆଡ଼େ ଠିଆ ହୋଇଥାନ୍ତି ସେହି ସାମରିକ ଭଦ୍ରବ୍ୟକ୍ତି, ଡାକ୍ତରମାନେ, ଆଉ ଚାକରମାନେ । ଗୀର୍ଜା ଘର ଭିତରେ ଥିଲାପରି ସ୍ତ୍ରୀ ପୁରୁଷ ଆପେ ଆପେ ଦି ଭାଗ ହୋଇ ଅଲଗା ହୋଇ ଯାଇଥାନ୍ତି । ସମସ୍ତେ ଚୁପ୍‌ଚାପ୍ ହୋଇ ଆପଣା ଆପଣା ହାତରେ ଛକିର ସଙ୍କେତ କରୁଥାନ୍ତି । କେବଳ ଧର୍ମ ପ୍ରାର୍ଥନା ଛଡ଼ା ଆଉ କିଛି ଶୁଭୁ ନଥାଏ । ଖୁବ୍ ଗମ୍ଭୀର ସଂଯତ ଗଳାରେ ପ୍ରାର୍ଥନା ବୋଲା ହେଉଥାଏ, ମଝିରେ ମଝିରେ ଯେତେବେଳେ ତୁନି ପଡ଼ିଯାଉଥାଏ, ସେତେବେଳେ ଦୀର୍ଘଶ୍ୱାସର ଶବ୍ଦ ଆଉ ପାଦ ଏକରୁ ସେକର କରିବାର ଶବ୍ଦ ଶୁଭୁଥାଏ । ଅର୍ଥପୂର୍ଣ୍ଣ ଭଙ୍ଗୀରେ ଆନ୍ନା ମିହାଲଭ୍ନା ଘରର ଏ ମୁଣ୍ଡରୁ ସେମୁଣ୍ଡକୁ ପିଏରେ ପାଖକୁ ଚାଲିଗଲେ, ଯେପରିକି ସେ କଣ କରୁଛନ୍ତି ତା ସେ ଜାଣି ବୁଝି କରୁଛନ୍ତି । ପହଞ୍ଚିଯାଇ ପିଏରେ ହାତକୁ ଗୋଟାଏ ବତି ବଢ଼ାଇ ଦେଲେ ।

ପିଏରେ ନଜର କଲା ଯେ ପ୍ରିନ୍‌ସ ଭାସିଲି ତାଙ୍କ ଚୌକି ପିଠିଆଡ଼ୁ ଉଠି ଚାଲିଗଲେ । ତାଙ୍କ ହାବଭାବ ବି ସେହିପରି ଥିଲା, ଯେପରିକି ସେ ଯାହା କରିବାକୁ ଯାଉଚନ୍ତି ତା ଜାଣି ବୁଝି କରୁଛନ୍ତି, ଆଉ ଯେ ତା ନ ବୁଝିବ ସେ ହରବରରେ ପଡ଼ିବ । ଏହିପରି ହାବଭାବ ଦେଖାଇ ସେ ରୋଗୀ ପାଖକୁ ନଯାଇ ବଡ଼ ପ୍ରିନ୍‌ସେସ୍‌ଙ୍କ ପାଖକୁ ଗଲେ । ତା'ପରେ ସେ ଦୁହେଁ ଘରର ଆର ମୁଣ୍ଡରେ ପଡ଼ିଥିବା ରେଶମ ଚାନ୍ଦୁଆ ତଳର ଉଞ୍ଚ ପଲଙ୍କ ପାଖକୁ ଗଲେ । ଯେତେବେଳେ ସେମାନେ ସେ ପଲଙ୍କ ପାଖରୁ ଚାଲିଗଲେ, ସେତେବେଳେ ଆଉ କବାଟ ବାଟେ ଅଦୃଶ୍ୟ ହୋଇଗଲେ । କିନ୍ତୁ ପ୍ରାର୍ଥନା ବୋଲା ନ ସରୁଣୁ ଆପଣା ଆପଣା ଜାଗାକୁ ଲେଉଟି ଆସିଲେ । ଅନ୍ୟାନ୍ୟ ଘଟଣାଠୁଁ ଏ ଘଟଣାକୁ ପିଏରେ ବେଶୀ ନଜର ଦେଲାନାହିଁ କାରଣ ସେ ମନେ ମନେ ଠିକଣା କରି ନେଇଥିଲା ଯେ ସେ ସାମ୍ନାରେ ଯାହା ଯାହା ଘଟୁଥିଲା, ତାହା ସବୁ ଘଟିବାର କଥା ।

ପ୍ରାର୍ଥନା ବୋଲିବା ଶବ୍ଦ ବନ୍ଦ ହୋଇଗଲା, ତା ପରେ ଶୁଣାଗଲା ପ୍ରଧାନ ପୁରୋହିତଙ୍କ ସ୍ୱର । ରୋଗୀ ଯେ ଗୂଢ଼ ରହସ୍ୟର ବାଣୀ କର୍ଣ୍ଣରେ ଶୁଣି ପାରିଛନ୍ତି ସେଥିପାଇଁ ତାଙ୍କ ସୌଭାଗ୍ୟ ଲାଗି ସେ ତାଙ୍କୁ ପ୍ରଶଂସା

କଲେ ! ମୁମୂର୍ଷୁ ରୋଗୀ ଆଗେ ଯେମିତି ନିଶ୍ଚଳ ହୋଇପଡ଼ିଥାନ୍ତି, ସେହିପରି ପଡ଼ି ରହିଲେ ।

ଆନ୍ନା ମିହାଲୋଭ୍ନା ପିଏରେର ବାହୁସ୍ପର୍ଶ କରି କହିଲେ, "ଚାଲିଆସ ।"

ପିଏରେ ଯେମିତି ପାଖକୁ ଆସିଲା, କାଉଣ୍ଟ୍ ତା ମୁହଁକୁ ସିଧା ଅନାଇଁଲେ, କିନ୍ତୁ ତାଙ୍କ ଦୃଷ୍ଟିର ଉଦ୍ଦେଶ୍ୟ କି ଅର୍ଥ ଏପରି ଥିଲା ଯେ କେହି ତାକୁ କଳି ପାରିବ ନାହିଁ । ହୁଏ ତ ସେ ଆଖି ଦୁଇଟି କିଛି କଥା କହିଲା ନାହିଁ, ଖାଲି ଯାହା କିଛି ଗୋଟାକୁ ଅନାଇଁବାକୁ ପଡ଼ିବ ବୋଲି ଅନାଇଁ ରହିଥାଏ, ନ ହେଲେ ସେ ଆଖି ବହୁତ କଥା କହି ଯାଉଥାଏ । ପିଏରେ ଅଟକିଗଲା, କଣ କରିବା ଉଚିତ ବୁଝିପାରିଲା ନାହିଁ । ପୁଣି ପ୍ରଶ୍ନସୂଚକ ଦୃଷ୍ଟିରେ ଆନ୍ନା ମିହାଲୋଭ୍ନାଙ୍କୁ ଅନାଇଲା । ଆନ୍ନା ମିହାଲୋଭ୍ନା ତାକୁ ଏକ ଚଞ୍ଚଳ ଚାହାଣୀରେ ଅନାଇଁଲେ, ରୋଗୀର ହାତ ଆଡ଼କୁ ଠାରି ଆପଣା ଓଠରେ ଏକ ଉଡ଼ା ଚୁମ୍ବନର ଭଙ୍ଗୀ କଲେ । ପିଏରେ ତାଙ୍କଠୁଁ ଯେମିତି ନିର୍ଦ୍ଦେଶ ପାଇଲା ସେମିତି କଲା, ଓସାରିଆ ହାଡ଼ ଓ ମାଉଁସିଆ ହାତରେ ସେ ଚୁମ୍ବନ କଲା । ସେ ହାତ ଟିକିଏ ବି ଥରିଲା ନାହିଁ କି ସେ ମୁହଁର ଭଙ୍ଗୀରେ ଟିକିଏ ବି ପରିବର୍ତ୍ତନ ହେଲାନାହିଁ ।

ପିତା ପୁତ୍ରଙ୍କର ଶେଷ ଦେଖାଦେଖି ବେଳର ଗମ୍ଭୀର କ୍ଷଣକୁ ଆନ୍ନା ମିହାଲୋଭ୍ନା ତାଙ୍କ ଭାବଭଙ୍ଗୀରେ ପ୍ରକାଶ କଲେ । ଏମିତି ଦି ମିନିଟ୍ ଗଲା, ପିଏରକୁ ଲାଗୁଥାଏ ସତେ ଅବା ଘଣ୍ଟାଏ ବିତିଲା । ହଠାତ୍ କାଉଣ୍ଟଙ୍କ ମୁହଁର ବହଳ ମାଂସପେଶୀ ଓ ସିଅର ଉପରେ ଗୋଟାଏ କମ୍ପ ଚାଲିଗଲା । କମ୍ପଟା ଆହୁରି ବଢ଼ି ଉଠିଲା, ସେହି ସୁନ୍ଦର ମୁହଁରେ ଭ୍ରୂକୁଟି ଫୁଟି ଉଠିଲା ( ଠିକ୍ ସେତିକିବେଳେ ପିଏରେ ବୁଝିପାରିଲା ଯେ ତାର ବାପା ମୃତ୍ୟୁର କେତେ ନିକଟ ହୋଇଗଲେଣି ) ଆଉ ସେହି ଭ୍ରୂକୁଟି-ବିଭଙ୍ଗ ପାଟିବାଟେ ଗୋଟାଏ କେମିତି ଚାପିଲା ପରି ଗମ୍ଭୀର ଶବ୍ଦ ବାହାରିଲା । ଆନ୍ନା ମିହାଲୋଭ୍ନା ତୀକ୍ଷ୍ଣ ଦୃଷ୍ଟିରେ ରୋଗୀର ପାଟିକୁ ଅନାଇଁ ରହିଲେ, କଣ ସେ ଲୋଡ଼ୁଛନ୍ତି ଜାଣିବାକୁ ଚେଷ୍ଟା କଲେ । ଆଗ ଦେଖାଇଲେ ପିଏରେ ଆଡ଼କୁ, ତା ପରେ ମଦ ଆଡ଼କୁ ଠାରିଲେ, ତା ପରେ ପଚାରିଲା ପରି ଫୁସ୍‌ଫୁସ୍ କରି ସେ ପ୍ରିନ୍ସ୍ ଭାସିଲିଙ୍କ ନାଁ

କହିଲେ, ତା ପରେ ଶେଯ ଆଡ଼କୁ ଦେଖାଇଲେ । ରୋଗୀର ମୁହଁ ଆଖି ଅଧୀରତା ପ୍ରକାଶ କଲା ।

"ମଣିମା କର ମୋଡ଼ିବାକୁ ଚାହୁଁଛନ୍ତି", ଫୁସ୍‌ଫୁସ୍ କରି ଗୋଟାଏ ଚାକର କହିଲା । କାଉଣ୍ଟଙ୍କ ମୁହଁଟାକୁ କାନ୍ଥ ଆଡ଼କୁ କରି ସେହି ଓଜନ ଦେହଟାକୁ କରମୋଡ଼ ଦେବାକୁ ସେ ଉଠିପଡ଼ି ପାଖକୁ ଗଲା ।

ଯେତେବେଳେ କାଉଣ୍ଟଙ୍କୁ କରମୋଡ଼ ଦେଇ ଶୁଆଇ ଦେବାକୁ ଚେଷ୍ଟା କରାହେଉଥିଲା, ସେତେବେଳେ ତାଙ୍କର ଗୋଟିଏ ହାତ ଜରାଗ୍ରସ୍ତ ହୋଇ ପଛରେ ଘୁଷୁରୁଥାଏ । ସେ ସେ ହାତଟାକୁ ଓଟାରି ନେବାକୁ ବୃଥାରେ ଚେଷ୍ଟା କରୁଥାନ୍ତି । ପିଏରେ ସେହି ନିର୍ଜୀବ ହାତ ଆଡ଼କୁ ଚାହିଁ ରହିଥିଲାବେଳେ ତା ମୁହଁରେ ଯେଉଁ ଭୟଭାବ ଫୁଟି ଉଠିଥିଲା, ତାକୁ କାଉଣ୍ଟ ଲକ୍ଷ୍ୟ କଲେ ବୋଲି ହେଉ କି ମରି ଆସୁଥିବା ମସ୍ତିଷ୍କ ଭିତରେ ଆଉ କିଛି ଧାରଣା ପଶିଗଲା ବୋଲି ହେଉ, କାଉଣ୍ଟ ତାଙ୍କର ସେହି ଅବାଧ ହାତଟା ଆଡ଼କୁ ଥରେ ଚାହିଁଲେ, ପୁଣି ପିଏରେର ମୁହଁରେ ଭୟାର୍ତ୍ତ ଚାହାଣିକୁ ଥରେ ଚାହିଁଲେ, ପୁଣି ସେଇ ହାତକୁ ଥରେ ଚାହିଁଲେ, ଆଉ ତାଙ୍କ ମୁହଁରେ ହସ ଫୁଟିଲା । ତାଙ୍କ ଚେହେରା ସଙ୍ଗେ ସେ ହସର ଆଦୌ ସାମଞ୍ଜସ୍ୟ ନ ଥିଲା, ସେ ଏକ ଦୁର୍ବଳ ଯନ୍ତ୍ରଣାମୟ ହସ, ଯେପରିକି ଆପଣା ନିଃସହାୟ ଅବସ୍ଥାକୁ ସେ ଥଟ୍ଟା କରୁଛନ୍ତି ! ହଠାତ୍ ସେ ହସକୁ ଦେଖି ପିଏରେର ତଣ୍ଟିରେ ଯେମିତିକି କଣ ଲାଗିଗଲା, ନାକ ଭିତର ସରସର ଲାଗିଲା, ଲୁହ ବୋହି ତାର ଦୃଷ୍ଟିକୁ ଢାଙ୍କି ପକାଇଲା । ରୋଗୀକୁ କାନ୍ଥ ଆଡ଼କୁ ମୁହଁକରି କରି ଲେଉଟାଇ ଦିଆଗଲା । ସେ ଦୀର୍ଘ ନିଶ୍ୱାସ ପକାଇଲା ।

"ସେ ଶୁମେଇ ପଡ଼ିଛନ୍ତି", ଆନ୍ନା ମିହାଲୋଭ୍ନା କହିଲେ, "ଯିବା ଚାଲ ।" ପିଏରେ ବାହାରିଗଲା ।

ବୈଠକ୍‌ଖାନା ଘରେ ସେତେବେଳେ ପ୍ରିନ୍‌ସ୍ ଭାସିଲି ଆଉ ବଡ଼ ପ୍ରିନ୍‌ସେସଙ୍କ ଛଡ଼ା ଆଉ କେହି ନ ଥିଲେ । ଏ ଦୁହେଁ କାଥାରିନାଙ୍କ ଛବି ତଳେ ବସି ଘୋର ବିଶ୍ୱାସରେ ଆଗ୍ରହରେ କଥାଭାଷା ହେଉଥାନ୍ତି । ସେମାନେ ଯେମିତି ପିଏରେ ଓ ତାର ସାଙ୍ଗ ଜଣଙ୍କୁ ଦେଖିପକାଇଲେ ସେମିତି ତୁନି ପଡ଼ିଗଲେ । ପିଏରେକୁ ଲାଗିଲା—ପ୍ରିନ୍‌ସେସ୍ କଣ ଗୋଟାଏ

ଜନକଙ୍କୁ ଲୁଚେଇ ଦେଇ ଗୁନ ଗୁନ କରି କହିଲେ, "ଏ ମାଇକନଆଣ୍ଟାଙ୍କୁ ଦେଖିଲେ ମୋର କଣ ହେଇଯାଉଚି ।"

ପ୍ରିନ୍ସ ଭାସିଲି ଆନ୍ନା ମିହାଲୋଭ୍ନାଙ୍କୁ ବାରେଇ ଦେଇ କହିଲେ, "କାଉଣ୍ଟ ସେ ଆର ସାନ ବୈଠକ୍‌ଘରେ ଗ୍ରୁ ଜଳଖିଆ ବଢ଼େଇ ଥୋଇଚନ୍ତି । ଯାଅ ବରଂଚ ଆନ୍ନା ମିହାଲୋଭ୍ନା !

ପିଏରେକୁ ସେ କିଛି କହିଲେ ନାହିଁ, ଖାଲି ସହାନୁଭୂତି ଦେଖାଇ ତା ହାତକୁ ଟିକିଏ ଚିପିଦେଲେ । ପିଏରେ ଓ ଆନ୍ନା ମିହାଲୋଭ୍ନା ସାନ ବୈଠକଖାନାକୁ ଚାଲିଗଲେ ।

ପିଏରେର ଖାଇବାକୁ ଭାରି ମନ ହେଉଥିଲା, ତଥାପି ସେ କିଛି ଛୁଇଁଲା ନାହିଁ । ସେ ପୁଣି ଆନ୍ନା ମିହାଲୋଭ୍ନା ଆଡ଼କୁ ପଚାରିଲା ପରି ଚାହିଁଲା ଆଉ ଦେଖିଲା ଯେ ସେ ପୁଣି ପାଦ ଅଗରେ ଚାଲିଚାଲିକା ବୈଠକ୍‌ଖାନା ଭିତରକୁ ଗଲେଣି, ଯେଉଁଠି ପ୍ରିନ୍‌ସ୍ ଭାସିଲି ଆଉ ବଡ଼ ପ୍ରିନ୍‌ସେସ୍ ବସିଥାନ୍ତି । ଟିକିଏ ଡେରିକରି ପିଏରେ ବି ସେଠିକି ଗଲା । ସେତେବେଳକୁ ଆନ୍ନା ମିହାଲୋଭ୍ନା ବଡ଼ ପ୍ରିନ୍‌ସେସ୍‌ଙ୍କ ପାଖରେ ଠିଆ ହୋଇଥାନ୍ତି, ଆଉ ଦହେଁ ଏକା ସାଙ୍ଗରେ ଉତ୍ତେଜିତ ହୋଇ କଥାଭାଷା ହେଉଥାନ୍ତି ।

ଜଣାପଡ଼ୁଥାଏ ପ୍ରିନ୍‌ସେସ୍ ସକାଳେ ଘର କବାଟ ଧଡ଼୍‌କରି ବନ୍ଦ କରିଦେଲାବେଳେ ଯେମିତି ରାଗରେ ଫାଟି କରିଥିଲେ ଏତେବେଳେ ବି ତାଙ୍କର ସେହି ଅବସ୍ଥା । କହୁଥାନ୍ତି –

"କଣ କରିବା ଦରକାର କଣ ନୁହେଁ, ସେକଥା ମୁଁ ବୁଝିବି, ସେଥିପାଇଁ ଆଉ କାହାର କାହିଁକି ମୁଣ୍ଡ ବଥାଉଚି ଆଜ୍ଞା !"

ଆନ୍ନା ମିହାଲୋଭ୍ନା ଶୋଇବାଘରକୁ ଯିବାବାଟ ବନ୍ଦକରି ଠିଆ ହୋଇଥାନ୍ତି, ଭାରି କଅଁଳେଇ ଫୁସୁଲେଇଲା ପରି କଥା କହୁଥାନ୍ତି । କହିଲେ, "ମୋ ସାନକୁନ୍ହା ମାନ, ପ୍ରିନ୍‌ସେସ୍, ତମ ମଉସା ବିଚରାର ଅଇଛି ଯେଉଁ ଅବସ୍ଥା, ସେଥିରେ ଏମିତି କଲେ ସେ କଣ ସହିପାରିବେ ? ତାଙ୍କର ତ ଅଇଛି ଟିକିଏ ଶାନ୍ତି ଦରକାର । ଏ ଦୁନିଆଁ ଛାଡ଼ି ଆରପାରିକି ଯିବା ପାଇଁ ତାଙ୍କ ଆତ୍ମା ପ୍ରସ୍ତୁତ ହୋଇସାରିଲାଣି, ଏତେବେଳେ ତାଙ୍କୁ ସଂସାରି କଥାମାନ କହିଲେ କଣ…"

ପ୍ରିନ୍‌ସ୍ ଭାସିଲି ତାଙ୍କ ସ୍ୱାଭାବିକ ଢଙ୍ଗରେ ଗୋଟାଏ ମାଙ୍କି ଚୌକିରେ ବସି ରହିଥାଆନ୍ତି, ଗୋଟାଏ ଗୋଡ଼ ଉଞ୍ଚ ହୋଇ ଆର ଗୋଡ଼

ଢଙ୍ଗରେ ଲଦା ହୋଇଥାଏ ; ତାଙ୍କ ଢ'ଗାଲରେ ଖୁବ୍ ଜୋରରେ ମାଂସ-ପେଶୀ ଡେଇଁଥାଏ, ଯେତେବେଳେ ଅଟକ ଯାଉଥାଏ, ସେତେବେଳେ ଗାଲ ତଳଟା ଖୁବ ଖୁବ ଢଶୁଥାଏ, କିନ୍ତୁ ସେ ଏମିତି ଠାଣି ଦେଖାଉଥାନ୍ତି ଯେପରି କି ଏ ଦି ସ୍ତ୍ରୀଲୋକଙ୍କ କଥାଭାଷାକୁ ତାଙ୍କର ଆଦୌ ଧ୍ୟାନ ନାହିଁ ।

"ନାଇଁ, ଆନ୍ନା ମିହାଲୋଭ୍ନା, ସୁନାଟି ପରା, ଯାଉନ୍ତୁ କାଉଣ୍ଟ ତାଙ୍କ ନିଜ ବୁଦ୍ଧିରେ କାମ କରନ୍ତୁ । ତେମେ ତ ଜାଣିଚ କାଉଣ୍ଟ ତାଙ୍କୁ କେତେ ଭଲପାଆନ୍ତି ।"

ପ୍ରିନ୍‌ସେସ ତାଙ୍କ ହାତରେ ଗୋଟାଏ ପୋର୍ଟ୍‌ଫୋଲିଓ ମୁଣି ଧରିଥାନ୍ତି । ସେଇଆକୁ ଦେଖାଇ କହିଲେ, "ଏ ଦଲିଲ୍ ଭିତରେ କଣ ଲେଖାହୋଇଛି ସେକଥା ବି ମୁଁ ଜାଣିନାଇଁ । ମୁଁ ଖାଲି ଜାଣିଚି ଯେ ଅସଲ ଉଇଲ୍‌ଟା ଆଲମାରି ଭିତରେ ଅଛି, ଆଉ ଏ କାଗଜଟା ଗୋଟାଏ ଅନ୍ୟ କିଛି କାଗଜ, ଏଇଟା ଏମିତି ପଡ଼ିଥିଲା, କାହାରି ମନେ ନାହିଁ ।"

ସେ ପୁଣି ଆନ୍ନା ମିହାଲୋଭ୍ନାଙ୍କ କରପଟେ ବୁଲିଯିବେ ବୋଲି ଚେଷ୍ଟା କଲେ କିନ୍ତୁ ଆନ୍ନା ମିହାଲୋଭ୍ନା ସେ ମୁଣିଟାକୁ ଟାଣି କରି ଧରି ପକେଇଲେ, ଏମିତି ମୁଠେଇ ଧରିଲେ ଯେ ଜଣାଗଲା ସେ ଆଉ ଏତେ ସହଜରେ ତାକୁ ଛାଡ଼ିବେ ନାହିଁ । କହିଲେ, "ସୁନାଟି ପରା ପ୍ରିନ୍‌ସେସ୍, ମୁଁ ତମୁକୁ ଅନୁରୋଧ କରୁଚି, ହାତ ଯୋଡ଼ୁଚି । ତାଙ୍କୁ ଆଉ ହଇରାଣ କରି ନାଇଁ ।"

ପ୍ରିନ୍‌ସେସ୍ ପାଟି ଫିଟାଇଲେ ନାହିଁ । କେବଳ ମୁଣିଟାକୁ ଛଡ଼ାଓଟରା କରିବାର ଶବ୍ଦ ଶୁଭୁଥାଏ । ଏଥିରେ ସନ୍ଦେହ ନ ଥିଲା ଯେ ପ୍ରିନ୍‌ସେସ୍ ଯଦି ମୁହଁ ଖୋଲନ୍ତେ ସେ ଆନ୍ନା ମିହାଲୋଭ୍ନାକୁ ଭଲକଥା କିଛି କହନ୍ତେ ନାହିଁ । ଆନ୍ନା ମିହାଲୋଭ୍ନା ବଜ୍ରମୁଠାରେ ମୁଣିଟାକୁ ଧରିଥାନ୍ତି । ତଥାପି ତାଙ୍କ ସ୍ୱରରେ ମିଠା ଗାମ୍ଭୀର୍ଯ୍ୟ ଆଉ ନରମପଣ ଊଣା ପଡ଼ି ନ ଥାଏ । ଡାକିଲେ, "ପିଏରେ, ଏଠିକି ଆସ ତ ବାବା, ଏ ତ ଘରକଥା, ପିଏରେ ଆସିଲେ କିଛି ବଳକା ହେବନାଇଁ ।"

ହଠାତ୍ ପ୍ରିନ୍‌ସେସ୍ ଚିର୍ଚିରେଇ ଉଠିଲେ, "ଆପଣ କାହିଁକି ପାଟି ଫିଟାଉ ନାହାନ୍ତି ଭାଇ ? ସେ ଏତେ ଜୋର୍‌ରେ ବିକଟାଳ ହୋଇ ଚଳାରିଟାଏ କଲେ ଯେ ଆରପାଖେ ବୈଠକଖାନା ଘରେ ସମସ୍ତେ ତାଙ୍କ

ପାଟି ଶୁଣି ଆତଙ୍କିତ ହୋଇ ଉଠିଲେ । ପ୍ରିନ୍‌ସେସ୍ ପାଟି କଲେ, "ଆପଣ କାହିଁକି ପାଟି ଫିଟାଉ ନାହାନ୍ତି ? ଦେଖୁଛନ୍ତି ଗୋଟାଏ କୁଆଡ଼ର ବାହାରିଆ ଲୋକଟାଏ ଆସି ଆମ ଘରୋଇ ବିଷୟରେ ଗୁଞ୍ଜିହୋଇ ଲାଗୁଛି, ଏଣେ ମଣିଷଟାଏ ମରୁଛି, ଆଉ ଏ ଲୋକଟା ଆସି ତା ଘର ଦୁଆରମୁହଁରେ ଗୋଟାଏ ସୁଆଙ୍ଗ ଲଗେଇଛି, ସତର ଘର ଭଙ୍ଗେଇ—"

ଚମକି ଉଠି ଗାଳିଦେଲା ପରି ପ୍ରିନ୍‌ସ୍ ଭାସିଲି କହିଲେ, "ଆଃ ! ଏଗୁଡ଼ାକ ବଡ଼ ଲୋକହସା କଥା । ଆସ, ଦିଅ ଛାଡ଼ିଦିଅ ମୁଁ କହୁଛି ।" ପ୍ରିନ୍‌ସେସ୍ ଦେଲେ ଛାଡ଼ି ।

"ଆଉ ତେମେ ବି ଛାଡ଼—"

ଆନ୍ନା ମିହାଲୋଭ୍ନା ଜମା ଶୁଣିଲେ ନାହିଁ ।

"ଛାଡ଼ିଦିଅ, ମୁଁ କହୁଛି । ସବୁ ଦାୟିତ୍ୱ ମୁଁ ମୁଣ୍ଡକୁ ନେବି । ମୁଁ ନିଜେ ଯିବି ତାଙ୍କୁ ପଚାରିବି, ତେମେ ଯାକୁ ଛାଡ଼ିଦିଅ ।"

ଆନ୍ନା ମିହାଲୋଭ୍ନା କହିଲେ, "ଶୁଣନ୍ତୁ ପ୍ରିନ୍‌ସ୍, ଶେଷ ପ୍ରାର୍ଥନା ଉତ୍ତରୁ ତାଙ୍କୁ ଟିକିଏ ହେଲେ ଶାନ୍ତି ଦିଅନ୍ତୁ ଭଲା ! ହେଇ ଶୁଣ ପିଏରେ, ତମ ବିଚାରକୁ କଣ ଲାଗୁଛି କହିଲ ମତେ—" ସେ ପିଏରେ ଆଡ଼କୁ ବୁଲି ପଡ଼ିଲେ, ପିଏରେ ସେମାନଙ୍କ ଆଡ଼କୁ ଆସୁଥିଲା । ଆଶ୍ଚର୍ଯ୍ୟ ହୋଇ ସେ ପ୍ରିନ୍‌ସେସଙ୍କ ମୁହଁକୁ ଅନାଉଁଥିଲା, ସେ ମୁହଁରୁ ସବୁ ମାନ ମହତ ଝଡ଼ି ପଡ଼ିଥିଲା, ଅତି ରାଗ ଆଉ ଦୁଃଖରେ ଅତି କମ୍ଭୂତ କମାକାର ଦିଶୁଥିଲା ସେ ମୁହଁ । ଆଉ ଆଶ୍ଚର୍ଯ୍ୟ ହୋଇ ଦେଖୁଥିଲା ପ୍ରିନ୍‌ସ୍ ଭାସିଲିଙ୍କ ଗାଲକୁ । ସେଠି ମାଂସପେଶୀଗୁଡ଼ାକ ଘୋଡ଼ା ପରି ଡେଇଁଥିଲା ।

ପ୍ରିନ୍‌ସ୍ ଭାସିଲି କ୍ରୋଧରେ କହିଲେ, "ଜାଣିଥା, ଏଥିରୁ ଯାହା ଫଳ ହେବ, ସେଥିପାଇଁ ତମେ ଦାୟୀ ରହିଲ, ତମେ କଣ କରୁଛ ତା ପରିଣାମ ତମକୁ ଜଣାପଡ଼ୁ ନାହିଁ ।"

"ଛତରଖାଇ ମାଇକିନିଆ—" ଚିତ୍କାର କରି ପ୍ରିନ୍‌ସେସ୍ ହଠାତ୍ ଆନ୍ନା ମିହାଲୋଭ୍ନା ଉପରେ କୁଦିପଡ଼ି ତାଙ୍କ ହାତରୁ ମୁଣିଟାକୁ ଝିକି ଓଟାରି ଛଡ଼େଇନେଲେ । ପ୍ରିନ୍‌ସ୍ ଭାସିଲି ମୁଣ୍ଡକୁ ତଳକୁ ପୋତି ହତାଶଭାବ ଦେଖାଇ ଦି ହାତ ଉପରକୁ ଟେକିଦେଲେ ।

ଠିକ୍ ସେତିକିବେଳେ ରୋଗୀ ଘରର ସେଇ ଭୟଙ୍କର କବାଟଟା ଯାହାକୁ ପିଏରେ ଏତେବେଳଯାଏ ଅନେଇଁ ରହିଥିଲା, ଆଉ ଯାହାକୁ

ଆଗେ ଯେତେବେଳେ ଖୋଲଲେ ଅନ୍ତ ଆସ୍ତେ ଆଗେ ଖୋଲି ଯାଉଥିଲା ସେ କବାଟଟା ଭୁଷ୍‌କରି ଖୋଲା ହୋଇଗଲା, ଧଡ଼୍‌କରି ଆସି ଡାଇକରି କାନ୍ଥରେ ବାଜିଲା ଆଉ ମଝିଆଁ ପ୍ରିନ୍‌ସେସ୍ ହାତ ହଲେଇ ଦଉଡ଼ି ଆସିଲେ ।

ଅତି ଦୁଃଖରେ କାତର ହୋଇ ସେ କହିଲେ, "ତେମେ ସବୁ କଣ କରୁଚ ? ସେ ମରିଯାଉଚନ୍ତି ଯେ ! ତେମେ ମତେ ଟିକିଏ ଶାନ୍ତିରେ ରହିବାକୁ ଦିଅ ।"

ବଡ଼ ପ୍ରିନ୍‌ସେସ୍ ମୁଣିଟାକୁ ହାତରୁ ତଳେ ପକାଇଦେଲେ, ଗୁଇଁ କରି ସଙ୍ଗେ ସଙ୍ଗେ ଆନ୍ନା ମିହାଲେଭ୍ନା ନଇଁପଡ଼ିଲେ ଆଉ ଯେଉଁ ଜିନିଷଟା ପାଇଁ କଳି ଲଗିଥିଲା ତାକୁ ଗୋଟେଇନେଇ ଶୋଇବାଘର ଭିତରକୁ ଦୌଡ଼ି ପଳାଇଲେ । ବଡ଼ ପ୍ରିନ୍‌ସେସ୍ ଆଉ ପ୍ରିନ୍‌ସ୍ ଭସିଲି ପଡ଼ି ଉଠି ତାଙ୍କ ପଛେ ପଛେ ଗଲେ । କେତେ ମିନଟ୍ ପରେ ବଡ଼ ପ୍ରିନ୍‌ସେସ୍ ଫେରିଆସିଲେ, ତାଙ୍କ ମୁହଁରେ ରକ୍ତ ନ ଥିଲା, ସେ ତାଙ୍କ ତଳ ଓଠକୁ କାମୁଡ଼ୁଥିଲେ । ପିଏରେଙ୍କୁ ଦେଖିଲା ମାତ୍ରେ ତାଙ୍କ ଘୃଣା ଉଚ୍ଛୁଳି ଉଠିଲା ।

ସେ କହିଲେ, "ହଉ, ହଉ, ଏଥର ଛଇ ଛଟକ ଦେଖାଉ ଥା, ତେମେ ଯାହା ଖୋଜୁଥିଲ ତା ତ ପାଇଗଲ ଆଉ କଣ ?" ଭେଁ କରି କାନ୍ଦ ପକାଇ ସେ ରୁମାଲରେ ମୁହଁ ଲୁଚେଇ ସେ ଘରୁ ଧାଇଁ ପଳାଇଲେ ।

ତା' ପରେ ପ୍ରିନ୍‌ସ୍ ଭସିଲି ବାହାରିଲେ । ସେ ଟଳିଲା ପରି ଆସି ପିଏରେ ଯେଉଁ ଆସନ ଉପରେ ବସିଥିଲା, ସେଇ ଆସନ ଉପରେ ଗଡ଼ି ପଡ଼ିଲେ । ଆଖିକି ହାତରେ ଢାଙ୍କି ପକାଇଲେ । ପିଏରେ ଦେଖିଲା ଯେ, ସେ ଗୋଟା ଝୁଣ୍ଟା ଶେଥା ପଡ଼ିଯାଇଥାନ୍ତି, ବାତ ମାରିଲା ପରି ତାଙ୍କ ତଳ ଓଠମଣିଟା ଜୋରରେ ଥରୁଥାଏ ।

ପିଏରେର କହୁଣିକୁ ଧରି ସେ କହିଲେ, "ଆଃ, ବାବୁରେ—," ତାଙ୍କ ସ୍ୱରରେ ଏଭଳି ଏକ ଦୁର୍ବଳତା ଆଉ ଆନ୍ତରିକତା ଥିଲା, ଯାହା ସେ ଆଗରୁ ଆଉ କେବେ ଅନୁଭବ କରିନାହିଁ । କହିଲେ, "ଆମେ ସବୁ କି ପାପ, କି ଜୁଆଚୋରି ନ କରୁଁ ! ଆଉ କାହିଁକି ଏସବୁ କରୁଁ ? ମତେ ପଚାଶ ବର୍ଷ ହେଲାଣି···ମୁଁ ବି···ଆଉ ସବୁ ଶେଷ ହୁଏ ମୃତ୍ୟୁରେ, ସବୁ । ମରଣ ବଡ଼ ଭୟଙ୍କର—", ସେ କାନ୍ଦ ପକେଇଲେ ।

ସବା ଶେଷରେ ଆସିଲେ ଆନ୍ନା ମିହାଲୋଭ୍ନା । ଥିର ଥିର ନରମ ପାଦ ପକାଇ ସେ ପିଏରେ ପାଖକୁ ଆସିଲେ । "ପିଏରେ—" ନାଁ ଧରି ସେ ଡାକିଲେ । ପିଏରେ ପ୍ରଶ୍ନସୂଚକ ଚାହାଣିରେ ତାଙ୍କୁ ଅନାଇଲା । ସେ ତା' କପାଳରେ ଚୁମା ଦେଲେ, ତାକୁ ଲୁହରେ ଭିଜେଇଦେଲେ । କିଛି ସମୟ ସେ କିଛି କହିଲେ ନାହିଁ ।

"ସେ ଚାଲିଗଲେ, ଆଉ ନାହାନ୍ତି ।'

ସେ ତାଙ୍କୁ ଅନ୍ଧାରୁଆ ବୈଠକଖାନା ଘରକୁ ନେଇଗଲେ । ପିଏରେ ଖୁସି ହେଲା ଯେ କେହି ତା' ମୁହଁ ଦେଖିପାରିବେ ନାହିଁ । ଆନ୍ନା ମିହାଲୋଭ୍ନା ତାକୁ ସେଠି ଛାଡ଼ି ଦେଇଗଲେ । ସେ ଫେରିଲାବେଳକୁ ଦେଖିଲେ—ପିଏରେ ମୁଣ୍ଡତଳେ ବାହା ଥୋଇ ନିଘୋଡ଼ ନିଦରେ ଶୋଇ ପଡ଼ିଛି ।

ତହିଁଆରଦିନ ସକାଳେ ଆନ୍ନା ମିହାଲୋଭ୍ନା ପିଏରେକୁ କହିଲେ, "ହଁରେ ବାପ, ସମସ୍ତଙ୍କ ପକ୍ଷରେ ଏ ଗୋଟାଏ ମସ୍ତବଡ଼ କ୍ଷତି । ତମ କଥା ମୁଁ କହୁନାହିଁ, ଭଗବାନ ତମକୁ ସାହା ହେବେ । ତୁମେ ଟୋକା ଲୋକ, ଆଉ ମୁଁ ଆଶା କରୁଚି ଅଇଛୁ ତୁମେ ବିପୁଳ ସମ୍ପତ୍ତିର ମାଲିକ । ଉଇଲ୍ ଏ ପର୍ଯ୍ୟନ୍ତ ଖୋଲା ହୋଇନାହିଁ । ମୁଁ ତମକୁ ଭଲ କରି ଚିହ୍ନିଚି । ମୁଁ ଜାଣେ ଏଥିରେ ତୁମ ମୁଣ୍ଡ ବିଗିଡ଼ି ଯିବନାହିଁ । ସ୍ବାହାରି ତମ ଉପରେ ଦାୟିତ୍ବର ବୋଝ ଲଦି ହେବ ଆଉ ତମକୁ ମଣିଷ ହେବାକୁ ପଡ଼ିବ ।"

ପିଏରେ କିଛି କହିଲା ନାହିଁ ।

"ହଠାତ୍ ପଛେ କେବେ ମୁଁ ତମକୁ ବୁଝେଇ ଦେବି ଯେ ଯଦି ମୁଁ ଜାଗା ଉପରେ ନ ଥାନ୍ତି ତ କଣ ହୋଇଥାନ୍ତା ଭଗବାନ ଜାଣନ୍ତି । ତୁମେ ଜାଣିଚ, ପହିଲି ଦିନ ତ ମଉସା ମତେ ଜବାବ୍ ଦେଇଥିଲେ ଯେ ସେ ବୋରିସ୍‌କୁ ଭୁଲିଯିବେ ନାହିଁ । କିନ୍ତୁ ସେ ବେଳ ପାଇଲେ ନାହିଁ । ମୋଠି ତମର ଏତେ ଶରଧା । ମୁଁ ବିଶ୍ବାସ କରୁଚି, ତୁମେ ତୁମ ବାପାଙ୍କ ଆଶା ପୂରଣ କରିବ ।"

ପିଏରେ ଏ କଥାରୁ ପଦେ କିଛି ବୁଝିପାରିଲା ନାହିଁ, ଲାଜରେ ରଙ୍ଗା ପଡ଼ିଯାଇ ବକା ପରି ଆନ୍ନା ମିହାଲୋଭ୍ନାଙ୍କୁ ଅନାଇଁ ରହିଲେ । ତା ସଙ୍ଗେ କଥା କହୁସାରି ଗାଡ଼ିରେ ବସି ଆନ୍ନା ମିହାଲୋଭ୍ନା ଗଲେ ରୋସ୍ତଭଙ୍କ

ଘରକୁ । ସେଠି ଯାଇ ଶୋଇ ପଡ଼ିଲେ । ସକାଳୁ ନିଦରୁ ଉଠି ସେ ରୋଷ୍ଟଭ୍ ପରିବାରର ସମସ୍ତଙ୍କି ଆଉ ଅନ୍ୟାନ୍ୟ ପରିଚିତ ଲୋକଙ୍କୁ କାଉଣ୍ଟ ବେଜୁହଭ୍‌ଙ୍କ ମୃତ୍ୟୁ ବିଷୟରେ ଗୋଟି ଗୋଟି କରି ସବୁ କଥା କହିଲେ । ସେ କହିଲେ ଯେ ଅବିକଳ ଯେମିତିଆ ମରଣ ସେ ନିଜ ପାଇଁ ଲୋଡ଼ୁଛନ୍ତି, କାଉଣ୍ଟଙ୍କ ମରଣଟା ହେଲା ସେମିତି । ତାଙ୍କ ମୃତ୍ୟୁବେଳର ଦୃଶ୍ୟ ଯେ ଖାଲି କରୁଣ ହୋଇଥିଲା ତା ନୁହେଁ, ସେ ଦୃଶ୍ୟରେ ବଡ଼ପଣ ବି ଥିଲା, ଦେଖିଲେ ପବିତ୍ର ଲାଗୁଥିଲା । ବାପପୁଅଙ୍କ ଶେଷ ଦେଖାଦେଖି ଏମିତି ଛାତିଫଟା ଦୃଶ୍ୟ ହୋଇଥିଲା ଯେ ସେ କଥା ଭାବିଲେ ଆଗ ଲୁହ ବୋହି ପଡ଼ୁଛି । ସେ କହିଲେ ଯେ ଆଖିରବେଳକୁ ବାପ ପୁଅ ଏ ଦି' ଜଣଙ୍କ ଭିତରୁ କାହା ବ୍ୟବହାରରେ ବେଶି ଉଦାରପଣ ଥିଲା, ତା ବାଛିବା କଷ୍ଟ, ବାପେ ତ ଶେଷ ପର୍ଯ୍ୟନ୍ତ ସବୁ କଥା, ସବୁ ମଣିଷଙ୍କୁ ଭଲ କରି ମନେ ପକାଉଥିଲେ, ପିଏରେ ପିଲାଟାକୁ ଦେଖିଲେ ତ ଛାତି ଫାଟି ଯାଉଥିଲା, ଦୁଃଖରେ ସେ ବିଚରାଟି ଚୂନା ହୋଇ ଯାଇଥିଲା । ତଥାପି କାଳେ ବାପେ ବିକଳ ହେବେ ବୋଲି ପାରୁପର୍ଯ୍ୟନ୍ତ ତା ଦୁଃଖକୁ ସେ ଲୁଚେଇ ରଖିବାକୁ ଚେଷ୍ଟା କରୁଥିଲା ।

ସେ କହିଲେ, "ସେ ଦୃଶ୍ୟ ବଡ଼ ଦୁଃଖପ୍ରଦ, ତେବେ ଦେଖିଲେ ଉପକାର ଅଛି । ଏ ବୁଢ଼ା କାଉଣ୍ଟ ଆଉ ତାଙ୍କ ଉପଯୁକ୍ତ ପୁଅ ଏମିତିଆ ଲୋକଙ୍କୁ ଦେଖିଲେ ମଣିଷର ନିଜର ଆତ୍ମାର ଉନ୍ନତି ହେବ ।"

ପ୍ରିନ୍‌ସ୍ ଭାସିଲି ଆଉ ପ୍ରିନ୍‌ସେସ୍ ଯେଉଁ କାମ କରୁଥିଲେ, ସେ କଥା ବି ସେମାନଙ୍କୁ ସବୁ ସେ କହିଲେ ଯେ, ଭାରି ଗୁପ୍ତରେ କହିଲେ, ଆଉ, ଅତି ନିନ୍ଦା କରି ଗପିଲେ ।

ବ୍ଲାକ୍ ହିଲ୍‌ସ୍ ( ଲଣ୍ଡା ପାହାଡ଼ ) ଗାଁରେ ପ୍ରିନ୍‌ସ୍ ନିକୋଲେ ଆନ୍ଦ୍ରେଇଭିଚ୍ ବଲ୍‌କନ୍‌ସ୍କିଙ୍କ ଜମିଦାରୀର ପ୍ରିନ୍‌ସ୍ ଆନ୍ଦ୍ରେ ଆଉ ତାଙ୍କ ଘରଯା ଆସିବେ ବୋଲି ନିତି ଅପେକ୍ଷା କରାହେଉଥିଲା । କିନ୍ତୁ ବୁଢ଼ା ପ୍ରିନ୍‌ସ୍‌ଙ୍କ ଉଆସରେ ଜୀବନ ସବୁ ଦିନେ ଯେଉଁ ନିର୍ଘଣ୍ଟ ଆଉ ନୀତିରେ ଚାଲେ ଏମାନଙ୍କୁ ଅପେକ୍ଷା କରିଛନ୍ତି ବୋଲି ସେଥିରେ ଟିକିଏ ବି ହଲଚଲ ହେଉ ନ ଥିଲା । ପ୍ରିନ୍‌ସ୍ ନିକୋଲେ ବଲ୍‌କନ୍‌ସ୍କି ଆଗେ ସେନାପତି ହୋଇଥିଲେ, ବଡ଼ବଡ଼ଆଙ୍କ ମହଲରେ ତାଙ୍କ ନାଁ ଦିଆ ହୋଇଥିଲା 'ପ୍ରୁସିଆର ରାଜା' । ମହାରାଜା ପଲ୍‌ଙ୍କ ରାଜୁତିବେଳେ ତାଙ୍କୁ ତାଙ୍କ

ଜମିଦାରୀକୁ ନିର୍ବାସନ ଦଣ୍ଡ ଦିଆ ହୋଇଥିଲା, ସେହିଦିନୁ ତାଙ୍କ ଝିଅ ପ୍ରିନ୍‌ସେସ ମେରିଆ ଆଉ ମେରିଆଙ୍କ ସାଙ୍ଗ ଶ୍ରୀମତୀ ବୁରିଏନାଙ୍କ ସଙ୍ଗରେ ସେ ତାଙ୍କ 'ଲଣ୍ଡା ପାହାଡ଼' ଉଆସରେ ରହୁଥିଲେ । ନୂଆ ମହାରାଜାଙ୍କ ଅମଳରେ ଆପଣା ଜମିଦାରୀକୁ ଫେରିଯିବାକୁ ତାଙ୍କୁ ଅନୁମତି ମିଳିଥିଲା, ହେଲେ କଣ ହେବ, ଗାଁରେ ତାଙ୍କର ଯେଉଁ ଘର ଥିଲା, ସେଠୁ ସେ ଦିନେ ବି ପଦାକୁ ଗୋଡ଼ କାଢ଼ି ନାହାନ୍ତି, କହିଲେ କହନ୍ତି ଯଦି ତାଙ୍କୁ ଦେଖିବ ବୋଲି କିଏ ମନ କରିବ, ସେ କଣ ମସ୍କୋରୁ ଲଣ୍ଡା ପାହାଡ଼ ଯାକେ ପଚାଶ କୋଶ ବାଟ ଆସିପାରିବ ନାହିଁ ? କୌଣସି ମଣିଷକୁ ଦେଖିବାକୁ କି କୌଣସି ଜିନିଷକୁ ପାଇବାକୁ ତାଙ୍କର ମନ ନ ଥିଲା । ସେ ବରାବର କହୁଥିଲେ ଯେ, ମଣିଷର ପାପ ଦିଓଟି ଜିନିଷରୁ ଉପୁଜେ, ଗୋଟିଏ ଅଳସୁଆମି ତ ଆରଟା ଅନ୍ଧବିଶ୍ୱାସ, ଆଉ ପୁଣ୍ୟ ବି ମଣିଷଟିଁ ଯୋଡ଼ିଏ, ଗୋଟିଏ ମଣିଷର କାର୍ଯ୍ୟକାରୀ ଶକ୍ତି ତ ଆରଟି ତାର ବୁଦ୍ଧି । ସେ ଆପେ ଆପଣା ଝିଅକୁ ପାଠ ପଢ଼ାଇବା କାର୍ଯ୍ୟର ଭାର ମୁଣ୍ଡକୁ ନେଇଥିଲେ, ଆଉ ତାଠିଁ ଏ ଦୁଇଟି ମହତ୍ ଗୁଣର ବିକାଶ କରିବା ପାଇଁ ତାକୁ କୋଡ଼ିଏ ବର୍ଷ ହେବା ଯାକେ ବୀଜଗଣିତ ଆଉ ଜ୍ୟାମିତି ପଢ଼ାଉଥିଲେ । ତାର ସମଗ୍ର ଜୀବନ ଗୋଟାକ ଯାକ ପାଇଁ ଏପରି ଭାବେ କଣ୍ଟିକାଣ୍ଟି ନକ୍‌ସା କାଟିଦେଇ କାମ ଖଞ୍ଜି ଦେଇଥିଲେ ଯେ ସେ ବ୍ୟବସ୍ଥା ଭିତରେ କେତେବେଳେ ହେଲେ କାମରୁ ହାତ ଖାଲି ହେବା କଥା ହିଁ ନ ଥିଲା । ସେ ନିଜେ ବି ସବୁବେଳେ କାର୍ଯ୍ୟରେ ବୁଡ଼ି ରହୁଥିଲେ । ନିଜର ଜୀବନୀ ଲେଖୁଥିଲେ, ଉଚ୍ଚ ଗଣିତର ସମସ୍ୟାମାନ ସମାଧାନ କରୁଥିଲେ, ତାଙ୍କ କଳ ଚଳାଇ ନାସଦାନି ତିଆରି କରୁଥିଲେ, ବଗିଚାରେ କାମ କରୁଥିଲେ, ତାଙ୍କ ଜମିଦାରୀରେ ତ ସବୁବେଳେ ନୂଆ ନୂଆ କୋଠା ତୋଳା ଲାଗିଥିଲା, ସେହି ସବୁ ଘରତୋଳା କାମ ବି ତଦାରଖ କରୁଥିଲେ । ତାହାର ପକ୍ଷରେ ଏ ଜୀବନରେ କିଛି କାମ ଉଠେଇବା ପାଇଁ ସବୁଠୁ ବଡ଼ କଥା ହେଲା ସମୟ ଜଗି କାମ କରିବା, ତାଙ୍କ ଆପଣା ଜୀବନକୁ ସେ ଏମିତି ଗଢ଼ି ନେଇଥିଲେ ଯେ ସେଥିରେ ସମୟାନୁବର୍ତ୍ତିତାକୁ ଏକଦମ୍ ଘଣ୍ଟାର କଣ୍ଟାଏ କଣ୍ଟାଏ ଜଗି ହେଉଥିଲା । ତାଙ୍କ ପାଇଁ ଭୋଜନ କେମିତି ବଢ଼ା ହେବ, ତାର ବାଗ ବି ସବୁ ଦିନ ପାଇଁ ଠିକଣା କରା ହୋଇ ଥିଲା, ତିଳେ ଏପାଖ ସେପାଖ ହେବ ନାହିଁ, ସବୁ ଦିନେ ଘଣ୍ଟାରେ ଠିକ୍

ସେତିକ ବାଜିଲାବେଳକୁ ଭୋଜନ ବଢ଼ା ହେବ ତା ନୁହେଁ, ଠିକ୍ ସେତିକି ବାଜି ସେତିକ ମିନିଟ୍ ହୋଇଥିବ ତ ଖାନା ବଢ଼ା ହେବ । ତାଙ୍କ ଘର ଲୋକଙ୍କ ପ୍ରତି, ଝିଅଠୁଁ ଚାକରମାନଙ୍କ ଯାକେ ସମସ୍ତିଙ୍କ ପ୍ରତି ତାଙ୍କ ବ୍ୟବହାର ଥିଲା ଅତି କଡ଼ା, ସମସ୍ତିଙ୍କି ସେ କାମ କରାଇ କରାଇ ନାକ ଘଷୁରାଉଥିଲେ । ତେଣୁ ସେ ନିଷ୍ଠୁର ଲୋକ ନ ହେଲେ ବି ଲୋକେ ତାଙ୍କୁ ଏଡ଼ିକି ଡରୁଥିଲେ, ଏଡ଼ିକି ଖାତିର କରୁଥିଲେ ଯେ ନିଷ୍ଠୁରତମ ଲୋକ ବି ଅନ୍ୟଠୁଁ ସେ ବ୍ୟବହାର ପାଇପାରିବ ନାହିଁ । ତାଙ୍କ ନିଁଠା ଅବସର ପାଇଥିବା କର୍ମଚାରୀଙ୍କ ତାଲିକାରେ ଥିଲା ସତ, ରାଜନୈତିକ ମହଲରେ ତାଙ୍କର କିଛି ପ୍ରତିପତ୍ତି ନ ଥିଲା ସତ, ତଥାପି ତାଙ୍କ ଜମିଦାରି ଯେଉଁ କର୍ମଚାରୀଙ୍କ ଇଲାକା ଭିତରେ ପଡ଼ୁଥିଲା, ସେ ବି ଭାବୁଥିଲେ ଯେ ତାଙ୍କ ସଙ୍ଗେ ଦେଖାକରିବାକୁ ଆସିବାକୁ ସେ ବାଧ୍ୟ । ଆସିଲେ ବି ବଗିଚାର ମାଳି କି ପ୍ରିନ୍ସ୍‌ଙ୍କ ଝିଅ ଯେମିତି ଅପେକ୍ଷା କରି ରହୁଥିଲେ ଯେ ଗୋଟାଏ ବଡ଼ା ଘଡ଼ି ଅଛି, ଯେତେବେଳେ ତାଙ୍କ ଉଚ୍ଚ ଅଭ୍ୟର୍ଥନାଘରେ ଆସି ପ୍ରିନସ୍ ଦର୍ଶନ ଦେବେ, ତା ଆଗରୁ ନୁହେଁ,—ସେ କର୍ମଚାରୀଙ୍କି ବି ସେତିକବେଳ ହେବାଯାକେ ଅପେକ୍ଷା କରିବାକୁ ପଡ଼ୁଥିଲା । ସେ ଘରର ଅତି ଉଚ୍ଚା କବାଟଟା ଯେତେବେଳେ ଖୋଲି ଯାଉଥିଲା, ଆଉ ପାଉଡ଼ରବୋଳା ପରଚୁଲା ପିନ୍ଧା ସେଇ ଛୋଟିଆ ବୁଢ଼ାଲୋକଙ୍କ ଚେହେରା ଦିଶି ଯାଉ-ଥିଲା, ଆଉ ଦିଶୁଥିଲା ତାଙ୍କ ସାନ ସାନ ସରୁ ସରୁ ହାତ ଯୋଡ଼ିକ, ଆଉ ତାଙ୍କ ଓହଳି ପଡ଼ିଥିବା ଭ୍ରୂଲତା, ଯେ ଏତେ ତଳକୁ ଓହଳି ଥିଲା ଯେ ଯେତେବେଳେ ସେ ବିରକ୍ତ ହେଉଥିଲେ, ସେତେବେଳେ ତାଙ୍କ ପିଲାଳିଆ ଆଖିର ଜକ୍ ଜକ୍ ବି ତା ତଳେ ଲୁଚି ରହୁଥିଲା,—ସେତେବେଳେ ବୈଠକଖାନାରେ ଅପେକ୍ଷା କରି ରହିଥିବା ସବୁ ଲୋକ ସେ ମୂର୍ତ୍ତିକୁ ଦେଖି ଏକାପରି ସମ୍ଭ୍ରମ ଅନୁଭବ କରୁଥିଲେ, ଆଉ ଏକାପରି ଗ୍ଲାନିଆଁ ଲାଗୁଥିଲା ସମସ୍ତିଙ୍କି ।

ଯେଉଁ ଦିନ ପ୍ରିନ୍ସ୍ ଆନ୍ଦ୍ରେ ଆଉ ତାଙ୍କ ସ୍ତ୍ରୀ ଆସି ପହଞ୍ଚିବା କଥା ଥିଲା, ସବୁଦିନ ପରି ସେଦିନ ସକାଳଓଳି ନିର୍ଦ୍ଦିଷ୍ଟ ଘଣ୍ଟାରେ ପ୍ରିନ୍ସେସ୍ ମେରି ବାପାଙ୍କୁ ଦଣ୍ଡବତ କରିବେ ବୋଲି ବୈଠକଖାନାକୁ ଗଲେ । ଭୟରେ ସେ ଠାକୁରଙ୍କୁ ଡ଼ାକି ଛାତି ଉପରେ ଛକର ସଙ୍କେତ କଲେ, ଆଉ ମନେ ମନେ ପ୍ରାର୍ଥନା ବୋଲିଲେ । ସବୁଦିନେ ସେ ବାପାଙ୍କୁ ଦେଖିବାକୁ

ଗଲାବେଳକୁ ସେମିତି ଦୁଇଜଣ ଆଉ ସବୁଦିନେ ସେ ଠାକୁରଙ୍କୁ ଡାକନ୍ତି କେମିତି ସେଦିନ ବାପାଙ୍କ ସଙ୍ଗେ ଦେଖାଦେଖିଟା ଭଲରେ ଭଲରେ ଚଳିଯାଉ ।

କବାଟବାଟେ ଲେଥ୍ କଳ ଘୂରିବାର ଶବ୍ଦ ସମାନ ଛନ୍ଦରେ ଶୁଭୁଥିଲା । ପ୍ରିନ୍‌ସେସ୍ ଡରି ଡରି କବାଟକୁ ଧରି ଠିଆ ହେଲେ, କବାଟ ସୁଟ୍‌କରି ଧୀରେ ଖୋଲିଗଲା, ସେ ଦୁଆରମୁହଁ ପାଖେ କାଠ ପରି ଠିଆ ହୋଇ ରହିଲେ । ପ୍ରିନସ୍ ସେତେବେଳେ ଲେଥ୍ କଳରେ କାମ କରୁଥାନ୍ତି, ଟିକିଏ ଘୂରିଆଉକୁ ଚାହିଁଦେଇ ସେ ଯେଉଁ କାମ କରୁଥିଲେ, ସେହି କାମରେ ଲାଗି ରହିଲେ ।

ଏଡ଼େ ବଡ଼ ବଖରାଟାଯାକ ଜିନିଷ ଭର୍ତ୍ତି, ସବୁ ଜିନିଷ ଲାଗୁଥାଏ ଯେମିତିକି ସବୁବେଳେ କାମରେ ଲଗାହେଉଛି । ଏକ ମସ୍ତବଡ଼ ଟେବୁଲ୍, ତା ଉପରେ ବହି ଆଉ ନକ୍‌ସାଗୁଡ଼ାଏ ଜମା ହୋଇଛି । ଡେଙ୍ଗା ବହି ଆଲମାରି, ତାର କାଚ କବାଟରେ ଚାବି ଲାଗିଛି । ପ୍ରିନ୍‌ସ୍ ଠିଆ ହୋଇ ଲେଖିବା ପାଇଁ ଡେଙ୍ଗା ଟେବୁଲ୍ । ସେଥିରେ ଖୋଲାହୋଇ ପଡ଼ିଥାଏ ଗୋଟାଏ ପାଣ୍ଡୁଲିପି । ଲୋକେ ବଢ଼େଇ କାମ କରନ୍ତି ଯେଉଁ ଲେଥ୍ କଳରେ, ସେଥିରୁ ଗୋଟାଏ ଥାଏ । ଘୂରିପାଖେ ପଡ଼ିଥାଏ ଜଞ୍ଜାଳ ହୋଇଥିବା ଚେନା ଚେନା କାଠ । ଏସବୁ ଦେଖିଲେ ଜଣାପଡ଼ିବ ମଣିଷଟା ସବୁବେଳେ କାମରେ ଲାଗିଛି, ପୁଣି ଗୋଟାଏ ପ୍ରକାରର କାମ ନୁହେଁ ନାନାପ୍ରକାର କାମ କରୁଛି । ପାଦରେ ଥାଏ ତାତାର୍ ଦେଶର ଜୋତା, ସେଥିରେ ରୁପା କାମ ହୋଇଥାଏ । ତା ଭିତରେ ତାଙ୍କ ପାଦର ଯେଉଁ ଗଠି, କରଡ଼ା ମାଂସପେଶୀମୟ ସରୁ ସରୁ ହାତ ଯେପରି ଜୋରରେ ଦାବି ପାରୁଥାଏ ଏସବୁ ଦେଖିଲେ ଜଣାପଡୁଥାଏ ଯେ ବୁଢ଼ାକାଳରେ ବି ତାଙ୍କଠି ବହୁତ ବଳ, ତାଙ୍କ ମନରେ ବହୁତ ଆଣ୍ଟ, ଆଉ ସେ ତାର ପରି ଟେମେଡ଼ା ଆଉ ଟାଣୁଆ ମଣିଷ । ଆଉ କେତେଥର ଲେଥ୍ କଳକୁ ଘୂରେଇ ଦେଇ ଲେଥ୍ କଳର ପାଦ ରଖିବା ଜାଗାରୁ ସେ ଗୋଡ଼ କାଢ଼ି ନେଲେ, ରନ୍ଦାକୁ ପୋଛିଦେଲେ, ଲେଥ୍ କଳରେ ଗୋଟାଏ ଝୁଲିମୁଣି ଯେ ତା ଭିତରେ ରନ୍ଦାକୁ ପକାଇଦେଲେ, ଆଉ ଟେବୁଲ୍ ପାଖକୁ ଯାଇ ଝିଅକୁ ପାଖକୁ ଡାକିଲେ ।

ଅନ୍ୟମାନେ ତାଙ୍କ ପିଲ୍ମାନଙ୍କୁ ଯେମିତି ଆଶୀର୍ବାଦ କରନ୍ତି ସେ ସେମିତି କରନ୍ତି ନାହିଁ । ସେ ଖାଲି ଝିଅ ଗେଲ କରିବ ବୋଲି ତା ଆଡ଼କୁ ତାଙ୍କ ଗାଲ୍‌ଟାକୁ ମୋହିଁ ଦେଲେ, ସେ ଗାଲ୍‌ରେ ଥୁଣ୍ଟା ଥୁଣ୍ଟା ରୁଢ଼ ଥାଏ, ସେ ଗାଲ ଖିଅର ହୋଇ ନ ଥିଲେ । ଝିଅକୁ ତଳୁ ଉପର ଯାକେ ଥରେ ଚାହିଁଦେଇ ଟାଣ ପାଟିରେ ଅଥଚ ଅତି ସ୍ନେହରେ ସେ ଖାଲି କହିଲେ, "ସବୁ ଭଲତ ?···ହଜ ତେବେ ବସ ।" ଆପଣା ହାତରେ ଲେଖିଥିବା ଗୋଟିଏ ଜ୍ୟାମିତି ବହି ଉଠାଇ ନେଇ ସେ ଚୌକିଟାକୁ ତାଙ୍କ ପାଖକୁ ଗୋଡ଼ରେ ଟାଣିନେଲେ ।

ପୃଷ୍ଠା ଓଲଟାଇ ଗୋଟାଏ ଦନ୍ଥଡ଼ା କଣ୍ଟାରେ ଗୋଟିଏ ଥାକ ଲେଖାଠାରୁ ଆଉ ଗୋଟାଏ ଥାକ ଲେଖାଯାକେ ଗୋଟାଏ ଗାର ଟାଣିଦେଇ ସେ ତରତର କରି କହିଲେ, "ପୁଣି କାଲିକା ପାଇଁ ଏତକ ।" ପ୍ରିନ୍‌ସେସ୍ ସେ ଜ୍ୟାମିତି ବହି ଉପରେ ଝୁଙ୍କି ପଡ଼ିଲେ । ହଠାତ୍ ବୁଢ଼ା କହିଲେ, "ଇଇଥା, ହୋଇଚି ତୋର ଖଣ୍ଡେ ଚିଠି ଅଛି ।" ଟେବୁଲ୍ ଉପରେ ଗୋଟାଏ ସାନ ମୁଣି ଝୁଲୁଥିଲା, ସ୍ତ୍ରୀଲୋକ ହାତ ଅକ୍ଷରରେ ଲେଖା ଗୋଟାଏ ଲଫାପା ତା ଭିତରୁ ବାହାର କରି ସେ ଟେବୁଲ ଉପରେ ଥୋଇଦେଲେ ।

ଚିଠିକି ଦେଖି ପ୍ରିନ୍‌ସେସ୍‌ଙ୍କ ମୁହଁ ସ୍ଥାନେ ସ୍ଥାନେ ନାଲି ପଡ଼ିଗଲା । ସେ ଚଞ୍ଚଳ ଚିଠିଟା ନେଇ ତା ଉପରେ ନଇଁ ପଡ଼ିଲେ ।

"କିଏ ହ୍ଲୋଆସୀ ଦେଇଚି ?" ପ୍ରିନ୍‌ସ ଏକ ଶୀତଳ ହସ ହସି ପଚାରିଲେ । ତାଙ୍କ ହଳଦିଆ ଦାନ୍ତ ଦିପାଟି ଦିଶିଲା, ସେ ଦାନ୍ତ ଏବେ ବି ଟାଣ ଅଛି ।

ତାଙ୍କ ଆଡ଼କୁ ଡରି ଡରି ଅନାଇଁ ଡରି ଡରି ମୁରକି ହସି ପ୍ରିନ୍‌ସେସ୍ କହିଲେ, "ହଁ, ଜୁଲି ଲେଖିଚି ।"

ରୁଢ଼ଭାବେ ପ୍ରିନ୍‌ସ କହିଲେ, "ମୁଁ ଏମିତି ଚିଠି ଦୁଇଖଣ୍ଡ ଯାକେ ଆସିବା ପର୍ଯ୍ୟନ୍ତ କିଛି କରିବି ନାହିଁ । ତା ପରେ ତୃତୀୟ ଖଣ୍ଡ ଆସିଲେ ମୁଁ ତାକୁ ପଢ଼ିବି । ମତେ ଲାଗୁଚି, ତୁ ବହୁତ ଗୁଡ଼ାଏ ଏଣୁ ତେଣୁ ବାଜେକଥା ଲେଖୁ । ତୃତୀୟ ଚିଠିଖଣ୍ଡ ମୁଁ ପଢ଼ିବି ।"

ପ୍ରିନ୍‌ସେସ୍ ଆହୁରି ନାଲି ପଡ଼ିଯାଇ ତାଙ୍କ ହାତକୁ ଚିଠିଟା ବଢ଼େଇ ଦେଇ କହିଲେ, "ନିଅ ଏ ଚିଠି ଖଣ୍ଡିକ, ପଢ଼ ବାପା—"

ପ୍ରିନ୍‌ସ୍‌ ଅଳ୍ପ କଥାରେ କହିଦେଲେ, "ତୃଷ୍ଣାସୂ ଚିଠିଟା, ମୁଁ କହିଲି ତୃଷ୍ଣାସୂ ଚିଠିଟା—" । ଚିଠିଟାକୁ ଦୂରକୁ ଠେଲି ଦେଇ ଟେବୁଲ୍‌ ଉପରେ କହୁଣି ଭରା ଦେଇ ସେ ସେହି ଜ୍ୟାମିତିର ଛବି କଟା ହୋଇଥିବା ବହିଟାକୁ ପାଖକୁ ଓଟାରି ନେଲେ ।

ଝିଅ ପାଖରେ ବସି ବହି ଉପରେ ବୁଢ଼ା ନଇଁ ପଡ଼ିଲେ । ଝିଅ ଯେଉଁ ଚୌକିରେ ବସିଥିଲା ସେ ଚୌକି ପିଠିଆଡ଼େ ଗୋଟାଏ ହାତ ବେଢ଼ାଇଦେଲା । ବାପାଙ୍କ ଦେହର ଗନ୍ଧ ଥିଲା ଧୂଆଁ ପତ୍ର ଧୂଆଁର ନାକରୁନ୍ଧା ଗନ୍ଧ ଓ ବାର୍ଦ୍ଧକ୍ୟର ଗନ୍ଧ । ପ୍ରିନ୍‌ସେସ୍‌ଙ୍କର ଏ ଗନ୍ଧ ଅଭ୍ୟାସ ହୋଇ ଯାଇଥିଲା । ପ୍ରିନ୍‌ସେସ୍‌ ଅନୁଭବ କଲେ ଯେ ସେହି ଗନ୍ଧ ତାଙ୍କ ଚାରିଆଡ଼େ ବେଢ଼େଇ ରହିଛି । ପ୍ରିନ୍‌ସ୍‌ କହିଲେ—

"ଏଥର ମହାଶୟା, ହେଇ ଦେଖନ୍ତୁ ଏଇ ତ୍ରିଭୁଜଗୁଡ଼ିକ ପରସ୍ପର ସହିତ ସମାନ, ଦୟାକରି ଦେଖନ୍ତୁ, କ ଖ ଗ କୋଣ···"

ପ୍ରିନ୍‌ସେସ୍‌ ଦେଖିଲେ, ତାଙ୍କର ଅତି ପାଖରେ ଦିଶୁଛି ତାଙ୍କ ବାପାଙ୍କ ଆଖି ହଟା ଜଳୁଛି । ତାଙ୍କ ମୁହଁ ଯାକ ନାଲି ନାଲି ମନ୍ଦା ମନ୍ଦା ଚିହ୍ନ ଭର୍ତ୍ତି ହୋଇଗଲା । ପରିଷ୍କାର ଜଣାପଡ଼ୁଥାଏ ଯେ ସେ କିଛି ପଦେ ବି ବୁଝିପାରୁ ନ ଥାନ୍ତି । ତାଙ୍କୁ ଏତେ ଡର ମାଡ଼ୁଥାଏ ଯେ ତା ପଛକୁ ପଛ ତାଙ୍କ ବାପା ଯାହା କହି କହି ବୁଝେଉଥାନ୍ତି ସେ ସବୁ ତାଙ୍କ ମୁଣ୍ଡରେ ପଶୁ ନ ଥାଏ । ଦୋଷଟା ମାଷ୍ଟରର ହେଉ କି ଛାତ୍ରୀର ହେଉ, ସବୁ ଦିନେ ଏକା ଦୃଶ୍ୟ ପୁଣି ପୁଣି ଅଭିନୀତ ହୁଏ । ପ୍ରିନ୍‌ସେସ୍‌ଙ୍କ ଆଖିର ଶକ୍ତି କ୍ଷୀଣ ହୋଇ ଆସିଲା, ସେ କିଛି ଦେଖିପାରିଲେ ନାହିଁ କି କିଛି ଶୁଣିପାରିଲେ ନାହିଁ । ତାଙ୍କ ପାଖରେ ତାଙ୍କ ବାପାଙ୍କ ରୁକ୍ଷ ଶୁଖିଲା ମୁହଁଟା ଛଡ଼ା ସେ ଆଉ କିଛି ବାରି ପାରିଲେ ନାହିଁ, ଖାଲି ଅନୁଭବ କଲେ—ତାଙ୍କ ବାପାଙ୍କ ନିଶ୍ୱାସ ଆଉ ତାଙ୍କ ଦେହର ଗନ୍ଧ, ଆଉ କିଛି ଭାବିପାରିଲେ ନାହିଁ, ଖାଲି ଭାବୁଥାନ୍ତି—କେମିତି ଏ ପଢ଼ାଘରୁ ନିଷ୍କୃତି ପାଇ ଚାଲି ଯାଇ ପାରିଲେ ଆପଣା ବଖରାଟିରେ ସ୍ୱାଧୀନ ଭାବେ ତା ଭିତରେ ଜ୍ୟାମିତିର ସମସ୍ୟାଟାର ଅନ୍ତ ପାଇବାକୁ ଚେଷ୍ଟା କରନ୍ତେ । ବୁଢ଼ା ଆଉ ରାଗ ସମ୍ଭାଳି ପାରିଲେ ନାହିଁ । ଖୁବ୍‌ ଜୋରରେ ଘଡ଼ ଘଡ଼ ଶବ୍ଦ କରି ସେ ବସିଲା ଚଉକିଟାକୁ ଥରେ ଠେଲି ଦେଇ ପୁଣି ତାକୁ ଘୋଷାଡ଼ି ନେଲେ, ରାଗ ସମ୍ଭାଳିବାକୁ ଚେଷ୍ଟା କରି ପ୍ରାୟ ପ୍ରତିଥର ପୁଣି

ସ୍ୱଗରେ ନଆଁ ହୋଇ ଯାଉଥାନ୍ତି, ଗାଳ ଦେଉଥାନ୍ତି, ବେଳେ ବେଳେ ବହିଟାକୁ ଫୋପାଡ଼ ଦେଉଥାନ୍ତି ।

ପ୍ରିନ୍‌ସେସ୍ ଗୋଟାଏ ପ୍ରଶ୍ନର ଭୁଲ୍ ଉତ୍ତର ଦେଇ ପକାଇଲେ ।

"ଆଉ କଣ ହେବ ? ତୋ ମୁଣ୍ଡରେ ତ କିଛି ନାହିଁ—" ବହିଟାକୁ ଠେଲି ଦେଇ ଆପେ ଝଟ୍‌କିନା ପିଠି ବୁଲାଇ ଦେଇ ପ୍ରିନ୍‌ସ୍ ଛାଟି କରି ଉଠିଲେ । କିନ୍ତୁ ସଙ୍ଗେ ସଙ୍ଗେ ସେ ଫେର୍ ଠିଆ ହୋଇ ପଡ଼ିଲେ, ଘରର ଏମୁଣ୍ଡ ସେମୁଣ୍ଡ ବୁଲିବାକୁ ଲାଗିଲେ ଆଉ ପ୍ରିନ୍‌ସେସ୍‌ଙ୍କ ମୁଣ୍ଡ ଉପରେ ହାତ ଥୋଇଲେ । ପୁଣି ସେ ବସିପଡ଼ିଲେ । ଟେବୁଲ ପାଖକୁ ଘୁଞ୍ଚି ଯାଇ ପୁଣି ସେ ପାଠ ବୁଝେଇବାକୁ ଲାଗିଲେ । ପ୍ରିନ୍‌ସେସ୍ ମେରିଆଙ୍କୁ ଯେଉଁ ବହିରୁ ପାଠ ଦିଆ ହୋଇଥିଲା, ସେ ବହିଟି ହାତରେ ଧରି ବହି ବନ୍ଦ କରି ସେ ଘରୁ ଚାଲିଯିବାକୁ ବସିଲାବେଳେ ପ୍ରିନ୍‌ସ୍ ପୁଣି କହିଲେ—

"ଏମିତିଆ ହେଲେ ଚଳିବ ନାହିଁ । ଅଙ୍କଶାସ୍ତ୍ର ଗୋଟିଏ ଖୁବ ଚମତ୍କାର ବିଦ୍ୟା ମହାଶୟା ! ଆଉ ତୁ'ସେ ଏ ସାଧାରଣ ନିର୍ବୋଧ ଝିଅ-ଗୁଡ଼ାଙ୍କ ପରି ହେବୁ ଏ କଥା ମୁଁ ସହିବି ନାହିଁ । ଧୈର୍ଯ୍ୟ ଧର, ଶେଷରେ ତୋ ମନ ବି ଏଥିରେ ଲାଗିଯିବ ଯେ !" ସେ ତାଙ୍କ ଗାଲ ଆଉଁସି ଦେଲେ, କହିଲେ, "ଅଙ୍କବିଦ୍ୟା ତୋ ମୁଣ୍ଡରୁ ସବୁ ମୂର୍ଖତାକୁ କୁଆଡ଼େ ଛଡ଼ି ନେଇଯିବ । ଯା, ଧାଇଁ ପଳା, ଧାଇଁ ପଳା—"

ସେ ତାଙ୍କ କାନ୍ଧ ଆଉଁସି ପକାଇଲେ, ପ୍ରିନ୍‌ସେସ୍ ଚାଲିଗଲା ବେଳେ ନିଜେ ଉଠି ପଡ଼ି ଯାଇ କବାଟ ବନ୍ଦ କଲେ ।

ପ୍ରିନ୍‌ସେସ୍ ମେରିଆଙ୍କ ମୁହଁଟି ଥିଲା ସାଧାରଣିଆ, ରୋଗିଣା । ସବୁବେଳେ ତାଙ୍କ ମୁହଁରେ ଏକ କରୁଣ ଭୀତତ୍ରସ୍ତ ଭଙ୍ଗୀ ଲାଗି ରହି ସେ ମୁହଁକୁ ଆହୁରି ବୈଶିଷ୍ଟ୍ୟହୀନ କରି ଦେଉଥିଲେ । ସେହିପରି ତାଙ୍କ ମୁହଁରେ ସେହିପରି ଭଙ୍ଗୀ ରହିଥାଏ । ସେ ତାଙ୍କ ରହିବା ବଖରାକୁ ଲେଉଟି ଗଲେ ଓ ସେଠି ସେ ଯେଉଁ ଟେବୁଲ୍ ପାଖେ ବସି ଲେଖାଲେଖି କରନ୍ତି, ସେଠି ବସି ପଡ଼ିଲେ । ସେ ଟେବୁଲ୍ ଉପରେ ଯାକ ସାନ ସାନ ଛବି କୁରିହା ହୋଇଥାଏ ଓ ଖୁରିଆଡ଼ ଯାକ ବହି ଓ ହାତଲେଖା ଖାତା ଅଳିଆ ବଳିଆ ହୋଇ ଫୋପଡ଼ା ହୋଇଥାଏ । ତାଙ୍କ ବାପା ଯେତିକି ସୁରୁଖ, ପ୍ରିନ୍‌ସେସ୍ ସେତିକି ଅଣସୁରୁଖ । ଜ୍ୟାମିତି ବହିଟାକୁ ରଖିଦେଇ

ସେ ଅଧୀର ହୋଇ ଚିଠିଟାକୁ ଖୋଲିଦେଇ ପଢ଼ିବସିଲେ । ଚିଠି ଲେଖିଥାଏ ତାଙ୍କର ପିଲା ଦିନର ସବୁଠୁ ପ୍ରିୟ ସଖୀ । ସେ ସଖୀଟି ଅନ୍ୟ କେହି ନୁହେଁ ଯେ, ରୋଷ୍ଟଭ ପରିବାରଙ୍କ ଘରେ ନାମକରଣ ଉତ୍ସବକୁ ଯେଉଁ ଜୁଲି କାରଗିନା ଯାଇଥିଲା, ସେ ସେହି ।

"ଜୁଲି ଫରାସୀ ଭାଷାରେ ଚିଠି ଲେଖିଥିଲା :—

ପ୍ରାଣସଖିଟି ମୋର,

କେଡ଼େ ଅସହ୍ୟ କେଡ଼େ ଭୟାନକ ଏ ବନ୍ଧୁ ବିରହ ଲୋ ! ମନେ ମନେ ଆପଣା ଆଗରେ ପରି କହି ହେଉଥାଏଁ,—ଯେ ମୋର ଏ ଅସ୍ତିତ୍ୱର ମୋ ସୁଖଶାନ୍ତିର ଅଧେ ରହି ଯାଇଛି ତୁମରି ଠିଁ । ତୁମର ମୋର ମଝିରେ ଯେତେ ଦୀର୍ଘ ବ୍ୟବଧାନ ଆମ ଦୁହିଁଙ୍କୁ ପରସ୍ପରଠାରୁ ଦୂରେଇ ରଖିଥାଉ ପଛେ ଲୋ ସହି, ଅଦେଖା ବନ୍ଧନ ଡୋରିରେ ଆମ ଦୁହିଁଙ୍କ ହୃଦୟ ଏକାଠି ଛନ୍ଦା ହୋଇ ରହିଛି । ହେଲେ କଣ ହେବ, ମୋ ହୃଦୟ ମାନୁ ନାହିଁ, ଦଇବ ଉପରକୁ ବିଦ୍ରୋହ କରି ଉଠୁଛି । ମୁଁ ଯେତେ ବିଳାସ ବ୍ୟସନ ଖୁସି, ଆନନ୍ଦ ଭିତରେ ବୁଡ଼ି ରହିଥାଏଁ ପଛେ, ତୁମ ସଙ୍ଗ-ସୁଖ ଅନ୍ତର ହେଲା ଦିନୁ ମୋ ହୃଦୟ ତଳେ ତଳେ ଯେଉଁ ବିଷାଦ ଛପି ରହିଛି, ତାକୁ ଜୟ କରିବାକୁ ମୋର ଆୟତ୍ତ ନାହିଁ । ଏ ବର୍ଷ ଗ୍ରୀଷ୍ମ ଋତୁରେ ଯେପରି ତୁମର ସେ ଫରିକ୍ଷ ପଢ଼ାଘରେ ତୁମେ ଆଉ ମୁଁ ଏକାଠି ତୁମର ସେ ଆସନ ଉପରେ ବସି ରହୁଥିଲୁଁ, ସେହି ଯାହା ଉପରେ ନେଳ ଗଦି ପଡ଼ିଥିଲା, ଖାଲି ତୁମେ ଆଉ ମୁଁ, ଆଉ କେହି ନ ଥାନ୍ତି,—କାହିଁକି ଆମେ ଆଉ ସେପରି ଏକାଠି ହୋଇପାରୁ ନାହୁଁ ? ଏ ଚିଠି ଲେଖିଲାବେଳେ ତୁମରି ସେହି ମୁହଁ, ସେହି ଆଖି ମୋର ଆଖି ଆଗରେ ନାଚିଯାଉଛି, ତାକୁ ମୁଁ ଭୁଲିପାରି ନାହିଁ । କେଡ଼େ ଶାନ୍ତ ସ୍ନିଗ୍ଧ କେଡ଼େ ମର୍ମଭେଦୀ ତୁମରି ସେ ଦୃଷ୍ଟି ! ମୁଁ ତ ସେ ଚାହାଣି ସଙ୍ଗେ ପ୍ରେମରେ ମଜ୍ଜି ଯାଇଛି, ଆତ୍ମହରା ହୋଇ ମଜ୍ଜି ଯାଇଛି । ମାତ୍ର ତିନି ମାସ ତଳେ ତୁମରି ସେ ଢଳ ଢଳ ମୁହଁଟିକୁ ଦେଖି ମୁଁ ଯେପରି ସ୍ୱର୍ଗୀୟ ଶକ୍ତି ପାଇ ପାରୁଥିଲି, ଆଜି କି କାରଣରୁ ମୁଁ ସେଥିରୁ ବଞ୍ଚିତ ହେଲି ସହି ?

ମସ୍କୋ ସହର ଗୋଟାକଯାକ ଯେଉଁଠି ଶୁଣିବ ଖାଲି ଯୁଦ୍ଧ କଥା ପଡ଼ିଛି, ତା ଛଡ଼ା ଆଉ ଅନ୍ୟ କଥା କେହି କହୁନାହାନ୍ତି । ମୋର ଦୁଇ

ଭାଇଙ୍କ ଭିତରୁ ଜଣେ ତ ଦରଆପାର ଚାଲିଗଲାଣି, ଆଉଟି ସ୍ଥଳ-ବାହିନୀରେ ମିଶିଲାଣି, ସେମାନେ ଯୁଦ୍ଧସୀମାନ୍ତ ଆଡ଼କୁ ଯାତ୍ରା ଆରମ୍ଭ କଲେଣି । ଆମର ପ୍ରିୟତମ ସମ୍ରାଟ୍ ପିଟର୍ସବର୍ଗରୁ ବାହାରି ଗଲେଣି । ଲୋକେ କୁହାକୋହି ହେଉଛନ୍ତି ଯେ ସେ ତାଙ୍କର ଅମୂଲ୍ୟ ଶ୍ରୀଅଙ୍ଗକୁ ବିପଦ ଆଡ଼କୁ ମୁହାଁଇଦେବାକୁ ବସିଛନ୍ତି । କର୍ସିକା ଦ୍ୱୀପର ସେହି ରାକ୍ଷସଟା ୟୁରୋପ ମହାଦେଶର ଶାନ୍ତି ଧ୍ୱଂସ କରୁଛି । ତାର ଗର୍ବ ଖର୍ବ କରିବାକୁ ପରମେଶ୍ୱର ସ୍ୱୟଂ ତାଙ୍କ ଦୂତଙ୍କୁ ଏ ପୃଥିବୀକୁ ପଠାଇଛନ୍ତି, ଆମର ମହାମାଣ୍ଡିବ ସମ୍ରାଟ ହିଁ ସେହି ଦୂତ । ମୁଁ ପରମେଶ୍ୱରଙ୍କୁ ପ୍ରାର୍ଥନା କରେ ଯେ ପ୍ରଭୁଙ୍କର ସେହି ଦୂତ ହିଁ ସେହି ଅସୁରଟାର ଗର୍ବ ଖର୍ବ କରନ୍ତୁ । ମୋ ଭାଇମାନଙ୍କ ଛଡ଼ା ମୋ ହୃଦୟର ଆହୁରି ଗୋଟିଏ ଅତି ପ୍ରିୟ ସମ୍ବନ୍ଧର ସୁଖରୁ ଏ ଯୁଦ୍ଧ ବଞ୍ଚିତ କରିଛି । ମୁଁ କହୁଛି ଯୁବକ ନିକୋଲେ ରୋଷ୍ଟଭଙ୍କ ବିଷୟ, ତାଙ୍କର ଉତ୍ତେଜନା ଏପରି ବଢ଼ି ଉଠିଲା ଯେ, ଯୁଦ୍ଧରେ ନ ମିଶି ସେ ଆଉ ସ୍ଥିର ହୋଇ ବସି ରହିପାରିଲେ ନାହିଁ । ସେ ଯୁଦ୍ଧରେ ଯୋଗଦେବେ ବୋଲି ବିଶ୍ୱବିଦ୍ୟାଳୟ ଛାଡ଼ି ଚାଲି ଆସିଛନ୍ତି ।

ଯେଉଁ ସମ୍ବାଦଟିକୁ ସମଗ୍ର ମସ୍କୋ ସହରର ଘରଆଡ଼େ ଲୋକେ ଆଲୋଚନା କରୁଛନ୍ତି ତା ବୃଦ୍ଧ କାଉଣ୍ଟ୍ ବେଜୁହଭ୍‌ଙ୍କ ଦେହତ୍ୟାଗ ସମ୍ବାଦ ଓ ତାଙ୍କ ଅନ୍ତେ ତାଙ୍କ ବିଶାଳ ସମ୍ପତ୍ତିର କିଏ ଉତ୍ତରାଧିକାରୀ ହେବ ସେହି ବିଷୟ । ଶୁଣ ସହି, ତିନିଜଣଯାକ ପ୍ରିନ୍‌ସେସ୍ କେହି ସମ୍ପତ୍ତିରୁ ଭାଗ ପାଇନାହାନ୍ତି କହିଲେ ଚଳେ । ସବୁ ସମ୍ପତ୍ତି ପଡ଼ିଗଲା ଶ୍ରୀଯୁକ୍ତ ପିଏରେଙ୍କ ଭାଗ୍ୟରେ । ତା ଛଡ଼ା ପୁଣି ଶ୍ରୀଯୁକ୍ତ ପିଏରେ ଆଇନତଃ ତାଙ୍କର ସନ୍ତାନ ବୋଲି ତାଙ୍କୁ ସ୍ୱୀକାର କରାଗଲାଣି । ତେଣୁ ସେ ବର୍ତ୍ତମାନ ହେଲେଣି କାଉଣ୍ଟ୍ ବେଜୁହଭ୍ । ସମଗ୍ର ରୁଷ୍ ଦେଶ ଗୋଟାକରେ ବିଶାଳତମ ସମ୍ପତ୍ତି ବର୍ତ୍ତମାନ ତାଙ୍କର, ସେ ଅଚଳାଚଳ ସମ୍ପତ୍ତି । ଲୋକେ କୁହାକୋହି ହେଉଛନ୍ତି ଯେ ଏସବୁ ଘଟଣାରେ ପ୍ରିନ୍‌ସ ଭାସିଲି ଯେପରି ଆଚରଣ ଦେଖାଇଲେ, ତା ଅତି ନିନ୍ଦନୀୟ । ସେହି କାରଣରୁ ସେ ଅତି ନିରାଶ ହୋଇ ମୁଣ୍ଡପୋତି ଦେଇ ପିଟର୍ସବର୍ଗ୍‌କୁ ଚାଲିଯାଇଛନ୍ତି ।

ବାକି କଥା ଏତିକି ଥାଉ ସବୁ, ମୁଁ ଦ୍ୱିତୀୟ କାଗଜ ଖଣ୍ଡିକ ପ୍ରାୟ ପୂର୍ଣ୍ଣ କରି ସାରିଲିଣି । ମୋ ବୋଉଠୁଁ ଡାକରା ଆସିଲାଣି ଏତିକିବେଳେ, ମୁଁ ଯିବି । ଆପ୍ରାସ୍କିନ ପରିବାରଙ୍କ ଘରେ ଆଜି ଭୋଜି, ଆମେ ସମସ୍ତେ ସେଠିକି ଯାଉଛୁଁ । ତୁମ ପିତୃଦେବଙ୍କୁ ମୋର ନମସ୍କାର ଜଣାଇଁ ଦେବ । ଶ୍ରୀମତୀ ବୁରିଏନ୍‌ଙ୍କୁ ମୋର ଯଥାବିଧି । ମୋର ସ୍ନେହ ଜାଣିବ । ମୋର ଆଲିଙ୍ଗନ ନେବ । ଇତି ।

ତୁମର

ଜୁଲି ।

ପୁନଶ୍ଚ—ତୁମ ଭାଇ ଓ ତାଙ୍କର ଅତି ଚମତ୍କାର କୁନି ଘରଣୀଟି କିପରି ଅଛନ୍ତି ? ସେମାନଙ୍କ ଖବର ଲେଖିବ ।”

ବାହାର ଘରେ ପୁରୁଣା ଚୌକିରେ ବସି ଘୁମାଉଥିଲା, ତାର ବାଳ ପାଚିଗଲାଣି । ପ୍ରକାଣ୍ଡ ପଢ଼ାଘରେ ପ୍ରିନ୍ସ ଘୁଙ୍ଗୁଡ଼ି ମାରୁଥିଲେ । ସେ କାନେଇଥିଲା । ଘରର ଦୂର ପଟ ଆଡ଼ୁ ବନ୍ଦ କବାଟ ବାଟେ ଶୁଭୁଥିଲା କବି ଡସେକଙ୍କ ଲେଖା କବିତାର ଦୁର୍ବୋଧ ପଦ୍ୟାଂଶଗୁଡ଼ାଏ କିଏ ବାରମ୍ବାର ପଢ଼ୁଛି, କୋଡ଼ିଏଥର ପଢ଼ିଲାଣି ।

ସେତିକିବେଳେ ଗୋଟାଏ ଘୋଡ଼ାଗାଡ଼ି ଆଉ ଗୋଟାଏ ସାନ ମାଲବୁହା ଗାଡ଼ି ଘରର ପାହାଚ ପାଖକୁ ଚାଲିଆସି ଅଟକିଲେ । ପ୍ରିନ୍ସ୍ ଆନ୍ଦ୍ରେ ଗାଡ଼ିରୁ ଓହ୍ଲାଇ ପଡ଼ିଲେ, ତାଙ୍କର ଟିକି ସ୍ତ୍ରୀଙ୍କୁ ଓହ୍ଲାଇଦେବାରେ ସାହାଯ୍ୟ କଲେ ଆଉ ତାଙ୍କ ଆଗେ ଆଗେ ତାଙ୍କ ସ୍ତ୍ରୀ ଘରକୁ ଯାଉନ୍ତୁ ବୋଲି ତାଙ୍କୁ ବାଟ ଛାଡ଼ିଦେଲେ । ପରଚୁଲାପିନ୍ଧା ବୁଢ଼ା ଟିହନ୍ ବାଟ ଘରର ଦୁଆରମୁହଁ ବାଟେ ହଠାତ୍ ବାହାରି ପଡ଼ିଲା । ଫୁସ୍ ଫୁସ୍ କରି ତାଙ୍କୁ କହିଲା ଯେ ପ୍ରିନ୍ସ ଟିକିଏ ଶୋଇ ପଡ଼ିଛନ୍ତି । ସେ ତରତର କରି କବାଟ କିଳିଦେବାକୁ ଗଲା । ଟିହନ୍ ଜାଣିଥିଲା ଯେ ଘଟଣା ଯେତେ ଅସ୍ୱାଭାବିକ ହୋଇଥାଉ ପଛେ, ଏପରି କି ନିଜେ କାଉଣ୍ଟଙ୍କ ପୁଅ ଆସିଥିଲେ ସୁଦ୍ଧା ସେ ଖବର କହିବା ସକାଶେ ମଧ୍ୟ ଦିନଯାକର ନୀତି-ନିର୍ଘଣ୍ଟ ଭାଙ୍ଗିଦେଇ ପ୍ରିନ୍ସ୍‌ଙ୍କ ପାଖକୁ ଯିବାକୁ କାହାରିକି ଆଦେଶ ନାହିଁ । ଏ କଥା ଟିହନ୍ ଯେତିକି ପରିମାଣରେ ଜାଣିଥିଲା ପ୍ରିନ୍ସ୍ ଆନ୍ଦ୍ରେ ନିଜେ ବି ସେତିକି ପରିମାଣରେ ଜାଣିଥିଲେ । ସେ ତାଙ୍କ ବାପାଙ୍କୁ ନ ଦେଖିଥିବା

ସମସ୍ତ ଭିତରେ ଜାଣେ ତାଙ୍କ ବାପାଙ୍କର ଅଭ୍ୟାସ ସବୁ ବଦଳି ଯାଇଛି ସତେ ଅବା ସେଇ କଥା ବୁଝିବା ପାଇଁ ଘଣ୍ଟାକୁ ଅନାଇଁଥିଲେ, ତା ପରେ ଯେମିତି ଜାଣିଲେ ଯେ ବାପାଙ୍କ ନିର୍ଘଣ୍ଟ ବଦଳି ନାହିଁ ସେ ତାଙ୍କ ଘରଜାଙ୍କ ଆଡ଼କୁ ବୁଲିପଡ଼ି କହିଲେ—

"ଆଉ କୋଡ଼ିଏ ମିନିଟ୍ ଗଲେ ବାପା ଉଠିବେ, ଚାଲ ଯିବା ମେରି—।" ଇତ୍ୟବସରରେ ଗେଡ଼ୀ ପ୍ରିନ୍‌ସେସ୍‌ଟି ଆତୁର ଆକୁଳି ହୋଇ ଯାଇଥାନ୍ତି କିନ୍ତୁ ତାଙ୍କର ସାନ ଉପର ଓଠରେ ଆଗ ପରି ହସଟିଏ ଲାଗି ରହିଥାଏ ଆଉ ତା ଉପରେ ନିଶ ପରି ଅସ୍ପଷ୍ଟ ଧାରଟି ସେ ବି ବଦଳି ନଥାଏ । କଥା କହିଲାବେଳେ ଆଗେ ଯେମିତି ସେ ଠିକ ଓଠଟି ଉଠୁଥାଏ ପଡ଼ୁଥାଏ, ଋହିଁଲେ ଆଖିକୁ ଭାରି ସୁନ୍ଦର ଦିଶେ, ସେତେବେଳେ ବି ସେମିତି ଦିଶୁଥିଲା ।

"ଆରେ, ଏତ ଗୋଟିଏ ରାଜପ୍ରାସାଦ," ସେ ତାଙ୍କ ସ୍ୱାମୀଙ୍କି କହିଲେ । ଘରେ ନାଚଉତ୍ସବ ହେଲେ ଲୋକଙ୍କୁ ନିମନ୍ତ୍ରଣ କଲେ ଆମନ୍ତ୍ରିତ ଲୋକେ ଯେଉଁପରି ଠାଣି ଦେଖାଇ ଗୃହସ୍ୱାମୀଙ୍କି ପ୍ରଶଂସା କରନ୍ତି, ସେମିତି ମୁହଁ ଆଖି କରି ସାନ ପ୍ରିନ୍‌ସେସ୍ ଚାରିଆଡ଼କୁ ଅନାଇଁଲେ ।

"ଆସ ଫୁର୍ତ୍ତି, ଆସ !"

ସେ ଚାରିପଟକୁ ଅନାଇଁ ଟିହନକୁ ଆଉ ତାଙ୍କ ସ୍ୱାମୀଙ୍କ ଆଉ ଯେଉଁ ବୋଲକରା ଜଣକ ତାଙ୍କୁ ଘର ଭିତରକୁ ପାଛୋଟି ନେଉଥିଲା, ଏମାନଙ୍କୁ ସବୁ ଅନାଇଁ ଦେଇ ହସିଦେଲେ ।

"ହେଇ ଶୁଣ, ମେରି ପାଠ ପଢ଼ୁଚନ୍ତି । ଆମେ ଚୁନ ହୋଇ ଯାଇ ପହଞ୍ଚିବା ଯେ ସେ ଜାବା ହୋଇଯିବେ ।"

ଭଦ୍ର ଅଥଚ ବିଷଣ୍ଣ ମୁହଁ କରି ପ୍ରିନ୍‌ସ୍ ଆନ୍ଦ୍ରେ ତାଙ୍କ ପଛେ ପଛେ ଚାଲୁଥାନ୍ତି । ଗୋଟିଏ ଘରୁ ବୀଣାର ଝଙ୍କାର ଶୁଭୁଥିଲା । ସେମାନେ ସେ ଘରେ ପହଞ୍ଚିବା ଆଗରୁ ଗୋଟାଏ ପାଖ ଦୁଆର ବାଟେ ବାହାରି ପଡ଼ିଲେ ପରମ ରୂପବତୀ ଫରାସୀ ଭଦ୍ରମହିଳା ଶ୍ରୀମତୀ ବୁରିଏନେ । ତାଙ୍କର ମୁଣ୍ଡବାଳ ସୁନାବର୍ଣ୍ଣର । ଆନନ୍ଦରେ ସେ ବିଭୋର ହୋଇ ପଡ଼ିଲେ । ସେ ଖୁସିରେ ପାଟିକଲେ—

"ପ୍ରିନ୍‌ସେସ୍ ଦେଖିଲେ କେଡ଼େ ଖୁସିହେବେ ! ଯାହା ହେଉ ! ଶେଷରେ ଆସିଲେ ! ମୁଁ ଯାଉଛି ତାଙ୍କୁ କହିଦେବି ।"

ସାନ ପ୍ରିନ୍‌ସେସ୍ ତାଙ୍କୁ ଚୁମ୍ବନ କରି କହିଲେ, "ନାଇଁ ନାଇଁ, ଲୁହ ନାଇଁ, ଥାଉ । ତମେ ଶ୍ରୀମତୀ ବୁରିଏନେ ତ, ମୋ ନଣନ୍ଦ ତୁମରି ସାଙ୍ଗ, ତାଙ୍କରି ବାଟେ ମୁଁ ତ ତମୁକୁ ଆଗରୁ ଚିହ୍ନିଛି । ଆମେ ଆଜି ଆସିବୁ ବୋଲି ସେ ଭାବି ନାହାନ୍ତି ।"

ଆର ଘରୁ ଶୁଭୁଥାଏ, ବାରମ୍ବାର କଣ ପାଠ ପଢ଼ା ମୁଖସ୍ଥ କରାହେଉଛି । ସେମାନେ ସେ ଘର ଦୁଆରମୁହଁକୁ ଗଲେ । ପ୍ରିନ୍‌ସ୍ ଆନ୍ଦ୍ରେ ଭ୍ରୂକୁଟି କରି ଠିଆହୋଇ ରହିଥାନ୍ତି, ସତେ କି କଣ ଅପ୍ରୀତିକର କିଛି ଘଟିବ ବୋଲି ସେ ଆଶଙ୍କା କରୁଥାନ୍ତି ।

ଠିକ ପ୍ରିନ୍‌ସେସ୍ ଭିତରକୁ ଗଲେ । ପାଠପଢ଼ା ଅଧାରୁ ଅଟକି ଗଲା । ଆନ୍ଦ୍ରେଙ୍କୁ ଶୁଭିଲା ଏକ ଉଲ୍ଲାସମୟ ଚିତ୍କାର, ତା ପରେ ପ୍ରିନ୍‌ସେସ୍ ମେରିଆଙ୍କ ଦୁମୁଦୁମୁ ପାଦଶବ୍ଦ । ତାପରେ ଚୁମ୍ବନର ଶବ୍ଦ । ପ୍ରିନ୍‌ସ ଆନ୍ଦ୍ରେ ଭିତରକୁ ଯାଇ ଦେଖିଲେ ଯେ ତାଙ୍କ ବାହାଘରବେଳେ ଖାଲି ଥରଟିଏ ଯେଉଁ ଦୁଇଟି ଯୁବତୀ ପରସ୍ପରକୁ ଦେଖିଥିଲେ, ସେ ଦୁହେଁ କୁଣ୍ଢାକୁଣ୍ଢି ହୋଇଅଛନ୍ତି ।

ଦୁଇ ନାରୀ ଏକ ସଙ୍ଗରେ କଥା କହିବାକୁ ଆରମ୍ଭ କଲେ— "ଓହୋ, ମୋ ସୁନାଭାଉଜ···ଆରେ, ମୋର ମେରି" ସେମାନେ ହସି ଉଠିଲେ ।

"କାଲି ରାତିରେ ମୁଁ ସପନ ଦେଖିଥିଲି ।"

"ତେବେ ଆମେ ଆସିବୁ ବୋଲି ତେମେ ଜାଣି ନ ଥିଲ ? ହେଇ ମେରି, ତେମେ କେତେ ଶୁଖିଯାଇଚ—"

"ତେମେ ଆଗଠୁ ଆହୁରି ସୁନ୍ଦର ଦିଶୁଚ—" ପ୍ରିନ୍‌ସେସ୍ ମେରିଆ କହିଲେ, "ଆରେ, ଏତେ ଅପୂର୍ବ, ମୁଁ ଜାଣି ନ ଥିଲି ! ହେଇ ଆନ୍ଦ୍ରେ, ମୁଁ ତତେ ଦେଖିପାରି ନ ଥିଲି—"

ପ୍ରିନ୍‌ସ୍ ଆନ୍ଦ୍ରେ ଓ ତାଙ୍କ ବଡ଼ଭଉଣୀ ପରସ୍ପରର ହାତକୁ ଚୁମ୍ବନ କଲେ ।

ଦୀର୍ଘଶ୍ୱାସ ପକାଇ ମେରୀ କହିଲେ, "ହଇ ରେ, ତୁ ଯୁଦ୍ଧକୁ ଯିବୁ ବୋଲି କଣ ଏକଦମ୍ ଠିକଣା ହୋଇଗଲାଣି ?" ଲିସା ବି ଦୀର୍ଘଶ୍ୱାସ ପକାଇଲେ ।

"ହଁ, ମୁଁ କାଲି ଚାଲିଯାଉଚି—" ତାଙ୍କ ଭାଇ କହିଲେ ।

"ସେ ମତେ ଛାଡ଼ି ଚାଲିଯାଉଛନ୍ତି, ଭଗବାନଙ୍କୁ ଜଣା କାହିଁକି ସେ ଯାଉଛନ୍ତି, ଏଠି ଥିଲେ ତ ପଦୋନ୍ନତି ହୋଇଥାନ୍ତା—" ପ୍ରିନ୍‌ସେସ୍ ମେରିଆ ତାଙ୍କ କହିବା ଶେଷଯାକେ ଶୁଣିଲେ ନାହିଁ । ଆପଣା ମନର ଭାବନା ପଛେ ପଛେ ଧାଇଁଯାଇ ସେ ତାଙ୍କ ଭାଉଜଙ୍କୁ ଅନାଇଁ ଦେଖିଲେ, ତାଙ୍କର ସ୍ନେହସ୍ନିଗ୍ଧ ଦୃଷ୍ଟି ତାଙ୍କ ଭାଉଜଙ୍କ ଅଣ୍ଟା ଉପରେ ଭରା ଦେଲା ।

"ଏ କଣ ସତ ?" ସେ ପଚାରିଲେ ।

ତାଙ୍କ ଭାଉଜଙ୍କ ମୁହଁର ଭଙ୍ଗୀ ବଦଳିଗଲା ।

"ହଁ ସତ", ସେ କହିଲେ, "ଓଃ ! କେଡ଼େ ଭୟାନକ !"

ଲିସାଙ୍କ ଓଠ ଝୁଲିପଡ଼ିଲା । ସେ ତାଙ୍କ ନଣନ୍ଦର ଗାଲରେ ଗାଲ ଲଗାଇ ପୁଣି ହଠାତ୍ କାନ୍ଦିବାକୁ ଲାଗିଲେ ।

ପ୍ରିନ୍‌ସ୍ ଆନ୍ଦ୍ରେ ମୁହଁ ଭ୍ରୁକୁଟି କରି କହିଲେ, "ତାଙ୍କର ବିଶ୍ରାମ ଦରକାର, ନାଇଁ ଲିସା ? ମୁଁ ବାପାଙ୍କ ପାଖକୁ ଯାଉଛି, ତାଙ୍କୁ ତୋ ଘରକୁ ନେଇ ଯା । ବାପା କେମିତି ଅଛନ୍ତି ? ଯେମିତି ଥିଲେ ସେମିତି ?"

ପ୍ରିନ୍‌ସେସ୍ ମେରିଆ ଖୁସି ହୋଇ କହିଲେ, "ଯେମିତି ଥିଲେ ସେମିତି, ତୁ ଦେଖିଲେ ତତେ କେମିତି ଜଣାପଡ଼ିବ କେଜାଣି !"

ପ୍ରିନ୍‌ସ ଆନ୍ଦ୍ରେ ପଚାରିଲେ—

"ଠିକ୍ ସେଇ ସେଇ ଘଣ୍ଟାରେ ସେଇ ସେଇ କାମ ? ସେମିତି ରାସ୍ତାରେ ବୁଲାବୁଲି ? ସେମିତି ଲେଥ୍ କଳରେ କାମ କରୁଛନ୍ତି ?" ପ୍ରିନ୍‌ସ୍ ଆନ୍ଦ୍ରେ ଖୁବ୍ କ୍ଷୀଣ ହସ ହସି ପ୍ରକାଶ କଲେ ଯେ ବାପାଙ୍କୁ ଯେତେ ଭଲପାଇଲେ ଯେତେ ମାନ୍ୟ କଲେ ବି ବାପାଙ୍କର ଯାହା ଯାହା ଦୁର୍ବଳତା, ତା ସେ ଜାଣିଛନ୍ତି ।

ପ୍ରିନ୍‌ସେସ୍ ମେରିଆ ହରଷ ହୋଇ କହିଲେ, "ସବୁ ଅବିକଳ ଆଗ ପରି, ସେଇ ଘଣ୍ଟା ଅନୁସାରେ କାମ, ସେଇ ଲେଥ୍ କଳରେ ଘୁଣ୍ଟୁରୁକୁଣ୍ଟୁରୁ, ସେଇ ଅଙ୍କ କଷିବା, ଆଉ ଆଗ ପରି ମତେ ଜ୍ୟାମିତି ପଢ଼େଇବାଟା ବି," ଯେମିତିକି ଜ୍ୟାମିତି ପାଠ ପଢ଼ିବା କାମଟା ତାଙ୍କ ଜୀବନର ଅତି ଆନନ୍ଦକର ଘଟନା ଭିତରୁ ଗୋଟିଏ ।

ଯେମିତି କୋଡ଼ିଏ ମିନିଟ ସମୟ ଚାଲିଗଲା ଆଉ ବୁଢ଼ା ପ୍ରିନ୍‌ସ୍ ନିଦରୁ ଉଠିବାବେଳ ହେଲା, ସେମିତି ଟିଖନ୍ ଆସିଲା ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ

ତାଙ୍କ ବାପାଙ୍କ ପାଖକୁ ଯିବାକୁ ଡାକବାକୁ । ପୁଅ ଆସିଛୁ ବୋଲ ବୁଢ଼ା ତାଙ୍କ ସବୁଦିନିଆ ଅଭ୍ୟାସକୁ ଟିକଏ ବଦଳେଇଦେଲେ । ସେ ହୁକୁମ୍ ଦେଲେ ଯେ ଖାଇବାକୁ ଯିବା ପୂର୍ବରୁ ଯେତେବେଳେ ତାଙ୍କର ପୋଷାକ ପିନ୍ଧିବା ବେଳ ପୁଅକୁ ସେତିକବେଳେ ତାଙ୍କ ପାଖକୁ ଅଣାହେବ । ବୁଢ଼ା ପ୍ରିନ୍‌ସ ପୁରୁଣାକାଳିଆ ପୋଷାକ ପିନ୍ଧି ବେଶ ହେଉଥିଲେ, କାପ୍ତାନ୍ ପିନ୍ଧୁଥିଲେ, ପାଉଡ଼ର ବୋଳା ହେଉଥିଲେ । ଯେତେବେଳେ ପ୍ରିନ୍‌ସ୍ ଆନ୍ଦ୍ରେ ତାଙ୍କ ବାପାଙ୍କ ବଖରାକୁ ଗଲେ, ବୈଠକଖାନା ଘର ଭିତରକୁ ପଶିଗଲାବେଳେ ସେ ଯେମିତି ଭାବଭଙ୍ଗୀରେ ତାଚ୍ଛଲ୍ୟଭାବ ଦେଖାଉଥିଲେ, ସେତେବେଳେ ତାଙ୍କଠିଁ ଆଉ ସେଭଳି ଭାବଭଙ୍ଗୀ ନ ଥିଲା । ପିଏରେ ସହିତ କଥାଭାଷା ହେଲାବେଳକୁ ତାଙ୍କ ମୁହଁରେ ଯେଉଁ ଆନ୍ତରିକତା ଫୁଟି ଉଠିଥିଲା, ବାପାଙ୍କ ପାଖକୁ ଗଲାବେଳେ ବି ମୁହଁରେ ଥିଲା ସେହି ବ୍ୟଗ୍ର ଆନ୍ତରିକତାର ଭଙ୍ଗୀ ।

ବୁଢ଼ା ଗୋଟିଏ ଫରସ୍ ଚୌକିରେ ବସିଥିଲେ, ତାଙ୍କ ମୁଣ୍ଡଟି ଥିଲା ଖିକର ଟିଖନର ହାତରେ । କହିଲେ, "ହେଇ ଆସିଗଲେ ବୀର-ପୁରୁଷ । ହଁ, ତେମେ ବୋନାପାର୍ଟ ସାଙ୍ଗରେ ଲଢ଼ିବ ନା—" ପାଉଡ଼ର ବୋଳା ହୋଇଥିବା ମୁଣ୍ଡକୁ ଏତେ ଜୋରରେ ଝାଙ୍କିଲେ ଯେ ଟିଖନ ହାତରେ ଥିବା ତାଙ୍କ ବାଳର ମେଣ୍ଟି ପର୍ଯ୍ୟନ୍ତେ ଯେତେଦୂର ଥରପାରିବ ସେ ପର୍ଯ୍ୟନ୍ତ ମୁଣ୍ଡଟା ଥରିଗଲା ।

"ହୁସିଆର ବାବା ! ସେ ନେପୋଲିଅନଟାକୁ ଟିକିଏ ସିଧାକର, ନଇଲେ ତ ସେ ଆମୁକୁ ବି ତା ରଇତଙ୍କ ତାଲିକାରେ ନେଇ ଥୋଇଦବା ବେଶି ଡେରି ନାହିଁ । କେମିତି ଅଛୁ କହିଲୁ ?"

ପୁଅ ଚୁମ୍ବନ ଦେବ ବୋଲି ବାପା ତା ଆଡ଼କୁ ଗାଲ ଦେଖାଇ ଦେଲେ । ଭୋଜନ ପୂର୍ବରୁ ବୁଢ଼ା ଟିକଏ ଶୋଇ ଉଠିଥିଲେ, ତାଙ୍କ ମନ ଖରି ଭଲ ଥିଲା । ( ସେ କହନ୍ତି, ଖାଇସାରିବା ପରେ ଯେଉଁ ନିଦ ସେ ରୁପା ନିଦ, କିନ୍ତୁ ଖାଇବା ଆଗରୁ ଯେଉଁ ନିଦ, ସେ ସୁନା ନିଦ ।) ବହଳିଆ ଆଉ ଓହଳି ପଡ଼ିଥିବା ଆଖିପତା ଉହାଡ଼ରୁ କଣେଇଁ କଣେଇଁ ଖରି ଖୁସିରେ ସେ ପୁଅକୁ ବାରମ୍ବାର ଚାହିଁଲେ । ପ୍ରିନ୍‌ସ ଆନ୍ଦ୍ରେ ଉଠିପଡ଼ି ବାପାଙ୍କ ପାଖକୁ ଯାଇ ଯେଉଁ ଜାଗାରେ ଚୁମ୍ବନ କରିବାକୁ ଦେଖାଇ ଦିଆହୋଇଥିଲା ସେହି ଜାଗାରେ ଚୁମ୍ବନ କଲେ । ଆଜିକାଲିକା

ସେନାପତି ପୁଣି ବିଶେଷକରି ନେପୋଲିଅନ ବୋନାପାର୍ଟ୍ ଏଇମାନଙ୍କ କଥା ପକାଇ ତାଙ୍କ ବାପା ଯେତେବେଳେ ସେମାନଙ୍କୁ ହସରେ ଉଡ଼େଇଲେ, ପ୍ରିନ୍ସ୍ ଆନ୍ଦ୍ରେ ସେଥିକି କିଛି ଉତ୍ତର ଦେଲେ ନାହିଁ, ଏମିତି ଏ ବିଷୟରେ ରହସ୍ୟ କରି କଥା କହିବା ତାଙ୍କ ବାପାଙ୍କୁ ସବୁଠୁ ବେଶି ଭଲ ଲାଗେ ।

ବାପାଙ୍କ ମୁହଁର ପ୍ରତ୍ୟେକ ଭଙ୍ଗୀକୁ ଅତି ଆଗ୍ରହ ଓ ମାନଡା-ପଣରେ ନିରେଖି ଗ୍ଧହିଁ ପ୍ରିନ୍ସ୍ ଆନ୍ଦ୍ରେ କହିଲେ—

"ବାପା, ମୁଁ ଆପଣଙ୍କ ପାଖକୁ ଆସିଛି । ମୋ ସଙ୍ଗରେ ଆସିଛି ଗର୍ଭିଣୀ ଘରଯାଠା । ଆପଣଙ୍କ ଦେହପା କେମିତି ଅଛି ?"

"ଆରେ ବାବୁ ମୂର୍ଖ ଲୋକେ ନଇଲେ ଦୁରାଗ୍ଧୀ ଲୋକେ ସିନା ବେମାର ପଡ଼ନ୍ତି, ତୁ ତ ମୋ କଥା ଜାଣୁ, ସକାଳୁ ରାତିଯାଏ କାମରେ ଲୋଚିଥାଏ । ବେଶି ମଦ ପିଇବା ବଦଖୋଇ ବି ନାହିଁ । ସେଇଥିପାଇଁ ମୁଁ ମୋର ଭଲ ଅଛି ।"

ହସି ହସି ପୁଅ କହିଲେ, "ଭଗବାନ ଭରସା ।"

"ଏ ବିଷୟରେ ଭଗବାନ କଲା ଭଳି କିଛି କାମ ନାହିଁ ମ, ହେଇ ଶୁଣ୍ ତୁ"—ଯେଉଁ କଥାରେ ତାଙ୍କର ପୁରୁଣା ଝୁଙ୍କ ବୁଢ଼ା ପୁଣି ସେହି କଥା କହି ଲାଗିଲେ, "ବୋନାପାର୍ଟ୍ ସଙ୍ଗରେ ଲଢିବାକୁ ଜର୍ମାନ୍‌ମାନେ କଣ ତମକୁ ତାଙ୍କର ନୂଆ ବୈଜ୍ଞାନିକ ଯୁଦ୍ଧକୌଶଳ ଶିଖେଇଚନ୍ତି ଟି ? —କଣ ଟି କହନ୍ତି ସେ କୌଶଳକୁ ? 'ଷ୍ଟ୍ରାଟେଜି' ନା କଣ ପରା ?"

ପ୍ରିନ୍ସ୍ ଆନ୍ଦ୍ରେ ହସିଲେ । ସେ ହସରୁ ଜଣାପଡ଼ୁଥାଏ ଯେ ବାପାଙ୍କର ଯାହା ଦୁର୍ବଳତା ଥାଉ ସେଥିପାଇଁ ତାଙ୍କୁ ଭଲ ପାଇବା ସମ୍ମାନ କରିବାରେ କୌଣସି ଅନ୍ତରାୟ ଘଟୁ ନାହିଁ । ସେ କହିଲେ, "ବାପା, ଆଗ ମୁଁ ଟିକିଏ ବିଶ୍ରାମ କରେଁ, ତା ପରେ ସିନା ! ମୁଁ ଏଇ ଗୋଡ଼େ ଗୋଡ଼େ ଆସି ପହଞ୍ଚୁଛି ।" ବୁଢ଼ା କହିଲେ, "ନିହାତି ବାଜେ କଥା, ବାଜେ କଥା," ମୁଣ୍ଡ ଉପରେ ଜୁଡ଼ାଟା ଠିକଣା ବନ୍ଧା ହୋଇଛି କି ନା ପରଖି ନେବାକୁ ଜୁଡ଼ାଟାକୁ ଆହୁରି ଝାଙ୍କିଲେ । ପୁଅର ହାତ ଧରି କହିଲେ, "ଆରେ ତୋ ଘରଜା ପାଇଁ ଏ ଘର ସଜା ହୋଇ ରହିଚି ରେ, ମେଞ୍ଚ ତା ଖବର ବୁଝିବ, ସାତକୁ ସତର କହି ଗପୁଥିବ ବସି ତା

ସାଙ୍ଗରେ । ସେ ତାଙ୍କ ମାଇକନଆଙ୍କ ଧରଣ । ସେ ଆସିଲ ମୁଁ ଭାରି ଖୁସି । ବସି ପଡ଼, ମୋ ସାଙ୍ଗରେ କଥା କହ । ମୁଁ ଶୁଣିଚି ମିହେଲସନ୍‌ଙ୍କ ସୈନ୍ୟ ଆଉ ଟଲଷ୍ଟୟଙ୍କ ସୈନ୍ୟ ହ···ସମବେତ ଆକ୍ରମଣ···ଦକ୍ଷିଣର ସୈନ୍ୟବାହିନୀ କଣ କରିବେ ବୋଲି ଠିକଣା ହୋଇଛି ? ପ୍ରୁସିଆର ନିରପେକ୍ଷତା···ମୁଁ ସେ ସବୁ ଜାଣିଚଯେ ! ଅଷ୍ଟ୍ରିଆ ଖବର କଣ ?'' କହୁ କହୁ ସେ ଚଉକିରୁ ଉଠିପଡ଼ି ଘରଯାକ ବୁଲିଲେ, ପଛେ ପଛେ ଟିହୋନ ଗୋଡ଼େଇ ଥାଏ, ତାଙ୍କ ପିନ୍ଧା ପୋଷାକମାନଙ୍କରୁ ଖଣ୍ଡିକୁ ଖଣ୍ଡି ତାଙ୍କୁ ବଢ଼ାଇ ଦେଉଥାଏ । "ସ୍ୱିଡେନ୍ କଥା କଣ ହେବ ? ପୋମେରାନିଆ ଭିତର ବାଟେ ସେମାନେ କେମିତି ଆସିବେ ?''

ପ୍ରଶ୍ନ ପଚାରିବାରେ ବାପାଙ୍କ ଜିଗର ଦେଖି ପ୍ରିନ୍ସ୍ ଆନ୍ଦ୍ରେ ପ୍ରସ୍ତାବିତ ଯୁଦ୍ଧ ଅଭିଯାନର କାର୍ଯ୍ୟକ୍ରମର ଯୋଜନାକୁ ବୁଝାଇବାକୁ ଲଗିଲେ । ପହିଲେ ପହିଲେ ତାଙ୍କ ମନ ହେଉ ନ ଥିଲ ପରି ବୁଝାଇଲେ, କିନ୍ତୁ କହୁ କହୁ ସେ ନିଜେ ସେ କଥା ନଅସରେ ମାତିଗଲେ ଆଉ କହୁ କହୁ ଆପଣା ଅଜାଣତରେ ଆପଣା ରୁଷ୍ ଭାଷାରେ କଥା ନ କହି କେତେବେଳୁ ଫରାସୀ ଭାଷାରେ କଥାଭାଷା କରିବା ଆରମ୍ଭ କରିଦେଲେ କାରଣ ସେମିତିଆ ଥିଲ ତାଙ୍କ ଅଭ୍ୟାସ । ସେ ତାଙ୍କ ବାପାଙ୍କୁ ବୁଝାଇଲେ ଯେ ନବେ ହଜାର ସୈନ୍ୟଙ୍କର ଏକ ପ୍ରକାଣ୍ଡ ଥାଟ ଯାଇ ପ୍ରୁସିଆ ରାଜ୍ୟକୁ ଭୟଭୀତ କରିଦେବ ବୋଲି ଯୋଜନା କରାଯାଇଛି । ପ୍ରୁସିଆ କୌଣସି ପଟରେ ନ ମିଶି ନିରପେକ୍ଷ ହୋଇ ରହିଛି । ଏମିତି କଲେ ବଳେ ତା ନିରପେକ୍ଷତା ଭାଙ୍ଗିଯିବ । ସେ ଆସି ଲଢ଼େଇରେ ମିଶିବ । ଆଉ ବୁଝାଇଲେ ଯେ ଏଇ ନବେ ହଜାର ସୈନ୍ୟଙ୍କ ଭିତରୁ ଗୋଟିଏ ଅଂଶ ଷ୍ଟ୍ରାଲ୍‌ସୁନ୍ଦ୍-ଠାରେ ଯାଇ ସ୍ୱିଡେନର ସୈନ୍ୟଙ୍କ ସଙ୍ଗେ ମିଶିବେ ବୋଲି ଯୋଜନା ହୋଇଛି । ଆଉ ଅଷ୍ଟ୍ରିଆ ଦେଶର ଦୁଇ ଶହ କୋଡ଼ିଏ ହଜାର ସୈନ୍ୟ ଶହେ ହଜାର ରୁଷ୍ ସୈନ୍ୟଙ୍କ ସଙ୍ଗେ ଇଟାଲି ଦେଶରେ ପୁଣି ରାଇନ୍ ନଦୀ କୂଳେ କୂଳେ ଏକାଠି ହୋଇ ଯିବେ, ଆଉ ରୁଷ୍‌ଦେଶର ପଚିଶ ହଜାର ସୈନ୍ୟ ଓ ଇଂରେଜ ଦେଶର ପଚିଶ ହଜାର ସୈନ୍ୟ ନେପ୍ଲସ୍ ସହରରେ ସମ୍ମିଳିତ ହେବେ । ସୈନ୍ୟବାହିନୀରେ ସୈନ୍ୟସଂଖ୍ୟା ସମୁଦାୟ ପାଞ୍ଚଶ ସହସ୍ର, ସେମାନେ ଯାଇ ଏକା ସମୟରେ ଭିନ୍ନ ଭିନ୍ନ ଘାଟି ଜାଗାରେ ଫରାସୀ ସୈନ୍ୟଙ୍କୁ ଆକ୍ରମଣ କରିବେ । ପ୍ରିନ୍ସ୍ ଆନ୍ଦ୍ରେ

ଯାହା କହୁଥାନ୍ତି, ବୁଢ଼ା ସେ କଥା ଶୁଣି ସେଥିରେ ଆଦୌ ଆଗ୍ରହ ଦେଖାଉ ନ ଥାନ୍ତି । ସେ ଘରଯାକ ବୁଲି ବୁଲି ବୁଲୁ ବୁଲୁ ପୋଷାକ ପିନ୍ଧୁଥାନ୍ତି । ତିନି ଥର ସେ ପୁଅର କଥା ମଝିରେ ଭ୍ରୂକ୍ଷେପ କରି କଥା କହିଲେ । ଥରେ ସେ ତାଙ୍କ ପୁଅର କଥା ମଝିରେ ନିଜେ ପାଟି କରି ଉଠିଲେ. "ଧଳାଟା ! ଧଳାଟା !"

ତା ଅର୍ଥ ସେ ଯେଉଁ ଓ୍ୱେଷ୍ଟକୋଟ୍ ପିନ୍ଧିବାକୁ କହିଲେ, ଟିହନ୍ ତାଙ୍କୁ ସେ ଗୋଟାକ ଦେଇ ନାହିଁ । ଆଉ ଥରେ ସେ ନିଶ୍ଚଳ ହୋଇ ଠିଆ ହୋଇ ପଡ଼ି କହିଲେ, "ବୋଡ୍‌ଙ୍କ ପ୍ରସୂତିଘରେ କଣ ଚଞ୍ଚଳ ହେବ ?" ତା ପରେ ସେ ତିରସ୍କାର କରିବା ଭଙ୍ଗୀରେ ମୁଣ୍ଡକୁ ହଲାଇ ହଲାଇ କହିଲେ, "ଭଲ କଥା ନୁହେଁ । ହଁ କହି ଯା, କହି ଯା—"

ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ବ୍ୟାଖ୍ୟାନ ଠିକ୍ ଶେଷ କଲାବେଳକୁ ପୁଣି ତୃତୀୟ ଥର ବୁଢ଼ା ତାଙ୍କ କଥାରେ ବାଧା ଦେଲେ, ସେ ଫରାସୀ ଭାଷାରେ ଥରିଲା ଥରିଲା ବୁଢ଼ାଳିଆ ସ୍ୱରରେ ଗୁଣୁ ଗୁଣୁ ହେଲେ—

"ମାଲ୍‌ବ୍ରୁକ୍ ଯିବେ ଲଢ଼େଇକୁ, ପୁଣି କେବେ ସେ ଲେଉଟି ଆସିବେ ଠାକୁରେ ଜାଣନ୍ତି ଟି !"

ତାଙ୍କ ପୁଅ ଖାଲି ମୁରୁକି ମୁରୁକି ହସୁଥାନ୍ତି ।

କହିଲେ, "ମୁଁ ଏ କଥା କହୁ ନାହିଁ ଯେ ଏହି ଯେଉଁ ଯୋଜନା ନିଷ୍ପତ୍ତି କରାହୋଇଛି ମୁଁ ତାକୁ ପସନ୍ଦ କରୁଛି । ଯାହା ଯେପରି ହେବ ବୋଲି ଠିକଣା ହୋଇଛି, ମୁଁ ଆପଣଙ୍କୁ ଖାଲି ସେହି କଥା ବୁଝାଇଦେଲି । ଏତେବେଳ ସରିକି ନେପୋଲିଅନ ଯେଉଁ ଯୋଜନା କରିବେଣି ତା ମଧ୍ୟ ଏ ଯୋଜନା ସଙ୍ଗେ ପଟ ପକାଇବ—"

"ହଉ, ଯାହା କହିଲୁ ସେଥିରେ ନୂଆ କଥା କିଛି ନାହିଁ ।" ଭାବିଲା ପରି ହୋଇ ଛାଁକୁ ଛାଁ ତରତର କରି କଥା କହି ବୁଢ଼ା ପୁଣି କହିଲେ—"ପୁଣି କେବେ ସେ ଲେଉଟି ଆସିବେ ଠାକୁରେ ଜାଣନ୍ତି ଟି !"

ତହିଁଆର ଦିନ ସଞ୍ଜ ବୁଢ଼େ ପ୍ରିନ୍ସ ଆନ୍ଦ୍ରେ ଘରୁ ଅନୁକୂଳ କରି ଚାଲିଯିବା କଥା । ବୁଢ଼ା ପ୍ରିନ୍ସ୍ ତାଙ୍କର ସବୁଦିନିଆଁ ନିର୍ଘଣ୍ଟରୁ ବ୍ୟତିକ୍ରମ କଲେ ନାହିଁ, ସେ ଖାଇସାରି ଆପଣା ବଖରାକୁ ଚାଲିଗଲେ । ଟିକି ବୋଡ୍‌ଟି ନଣନ୍ଦ କତିରେ ଥାଏ । ପ୍ରିନ୍ସ୍ ଆନ୍ଦ୍ରେ ରହିବେ ବୋଲି ତାଙ୍କ ପାଇଁ ଯେଉଁ ଘର ଠିକଣା କରାହୋଇଥିଲା, ସେ ଘରେ ସେ ଆଉ

ତାଙ୍କ ପରିଚାରକ ଦୁହେଁ ମିଶି ଯିବାଜିନିଷ ସଜାଡୁଥାନ୍ତି । ପ୍ରିନ୍ସ ଆନ୍ଦ୍ରେ ପୋଷାକ ବଦଳି ସାରିଥାନ୍ତି, ତାଙ୍କର ପଦବୀର ଚିହ୍ନ ମସ୍ର ନ ହୋଇ ଥିବା ଖାଲି ବୁଲି ଯିବା ବେଳର କୋଟ୍ ଖଣ୍ଡିଏ ସେ ପିନ୍ଧିଥାନ୍ତି । ସେ ନିଜେ ଗାଡ଼ି ଭିତର ଦେଖି ଗାଡ଼ିରେ ଲଦା ହୋଇଥିବା ତାଙ୍କ ଟ୍ରଙ୍କ-ଗୁଡ଼ାକ ଦେଖା ବିହାଁ କରି ତା ପରେ ଗାଡ଼ିରେ ଘୋଡ଼ା ବାନ୍ଧିବାକୁ ହୁକୁମ ଦେଲେ । ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ସଙ୍ଗରେ ଯେଉଁ ଯେଉଁ ଜିନିଷ ନିଅନ୍ତି ସେ ଘରେ ସେହି ସେହି ଜିନିଷ ରହିଥିଲା, ଆଉ ଅନ୍ୟ କିଛି ନୁହେଁ । ଭ୍ରମଣରେ ବାହାରିଲାବେଳର ଗୋଟାଏ ଦାକ୍ସ, ରୂପାର ଗୋଟାଏ ମଢ ବାକ୍ସ, ଦିଟା ତୁର୍କି ଦେଶର ପିସ୍ତଲ, ଗୋଟାଏ ଖଣ୍ଡା ସେଇଟା ତାଙ୍କ ବାପା ଦେଇଥିଲେ, ସେ ସେନାପତି ଓଚ୍ଚକଭଙ୍କ ଅଧୀନରେ ଯେଉଁ ଲଢ଼େଇକୁ ଯାଇଥିଲେ ସେ ଲଢ଼େଇରୁ ପୁଣି ସେ ଖଣ୍ଡା ଲେଉଟି ଆସିଥିଲା । ଯାହା ସକାଶେ ତାଙ୍କର ଯେତେ ଜିନିଷ ସବୁ ଠିକଣା ଥିଲା, ସବୁ ନୂଆ ଆଉ ସଫାସୁତୁରା, ଜିନିଷ ଉପରେ କନା ଘୋଡ଼ଣି ମଡ଼ା ହୋଇ ହୁସିଆରରେ ଫିତା ବନ୍ଧା ହୋଇଥିଲା ।

ଯେଉଁ ଲୋକଙ୍କର ଆପଣା କାର୍ଯ୍ୟ ସମ୍ବନ୍ଧରେ ଚିନ୍ତା କରିବା ଅଭ୍ୟାସ ଥାଏ, ଯାହା ଆରମ୍ଭ କଲା ମୁହୂର୍ତ୍ତରେ, ଯେତେବେଳେ ମଣିଷ ଗୋଟିଏ ନୂଆ ଜୀବନ ଆରମ୍ଭ କରିଦିଏ । ସେତେବେଳେ ସାଧାରଣତଃ ସେହିମାନଙ୍କର ଲୋକଙ୍କ ମନ ଗୁରୁଗମ୍ଭୀର ଅବସ୍ଥାରେ ଥିବାର କଥା । ସେହିପରି ସମୟରେ ମଣିଷ ପଛ କଥା ଭାବେ, ଲାଭ ଲୋକସାନ ହିସାବ କରେ, ଭବିଷ୍ୟତରେ କଣ କରିବ ସେଥିପାଇଁ ଯୋଜନା କରେ । ପ୍ରିନ୍ସ୍ ଆନ୍ଦ୍ରେଙ୍କ ମୁହଁ ଭାରି ସ୍ୱପ୍ନାବିଷ୍ଟ, ଭାରି ନରମ ଦିଶୁଥିଲା । ପିଠିଆଡ଼େ ହାତରେ ହାତ ଛନ୍ଦି ସେ ଏ ଘରଯାକ ଏ କଣରୁ ସେ କଣ ତରତର କରି ପାହୁଣ୍ଡ ପକାଇ ଚାଲୁଥିଲେ । ସେ ସିଧା ସାମ୍ନାକୁ ଅନାଉଁଥିଲେ ଆଉ ସ୍ୱପ୍ନ ଦେଖିଲା ପରି ମୁଣ୍ଡ ହଲାଉଥିଲେ । ସେତେବେଳେ ଯୁଦ୍ଧକୁ ଯାଉଛନ୍ତି ବୋଲି ସେ ଭୟ ଅନୁଭବ କରୁଥିଲେ, କି ସ୍ତ୍ରୀଙ୍କୁ ଛାଡ଼ି ଯାଉଛନ୍ତି ବୋଲି ଦୁଃଖିତ ହେଉଥିଲେ କି ଦୁଇ ଆଉ କିଛି କିଛି ଅନୁଭବ କରୁ-ଥିଲେ । ଯାହାହେଉ, ତାଙ୍କର ଏଭଳି ଅବସ୍ଥାରେ ସେ ଯେ ଆଉ କାହାରି ଆଖିରେ ପଡ଼ିବାକୁ ଚାହୁଁ ନ ଥିଲେ ଏ କଥା ପରିଷ୍କାର, କାରଣ ଦାଣ୍ଡ-ଘରେ କାହାର ପାଦଶବ୍ଦ ଯେମିତି ତାଙ୍କ କାନରେ ବାଜିଗଲା, ସେମିତି

ଚରଚର ହୋଇ ସେ ଦ ହାତ ଖୋଲି ଦେଇ ଆସି ଟେବୁଲ୍ ପାଖରେ ବାଁରେଇ ହୋଇ ଠିଆହେଲେ, ସତେ କି ବାକ୍ସ ଉପରେ ଖୋଲ ବାନ୍ଧୁଛନ୍ତି ଆଉ ତାଙ୍କ ମୁହଁର ଭଙ୍ଗୀରେ ଦଶିଲା ତାଙ୍କର ସ୍ୱାଭାବିକ ପ୍ରଶାନ୍ତି ଆଉ ସେହି ଠାଣି, ଯାହା ଭିତରେ ପଶି ହୁଏ ନାହିଁ । ପାଦଶବ୍ଦ ଓଜନ ଶୁଭୁଥିଲା, ପ୍ରିନ୍‌ସେସ୍ ମେରିଆଙ୍କ ପାଦଶବ୍ଦ ।

"କୁଆଡ଼େ ଗାଡ଼ିରେ ଘୋଡ଼ା ଯୋଡ଼ିବାକୁ କହିଲୁଣି, ଆଉ ଏଣେ ତୋ ସଙ୍ଗରେ ଏକୁଟିଆରେ ମୋର ଟିକିଏ କଥା ଅଛି ପରା ! ଆମର ଏ ବିଚ୍ଛେଦ କେତେ କାଳ ରହିବ ତା' ଭଗବାନଙ୍କୁ ଜଣା । ମୁଁ ଆସିଲି ବୋଲି ରାଗିଲୁ ନାହିଁ ଟି ? ତୋର ବହୁତ ପରିବର୍ତ୍ତନ ହୋଇ ଯାଇଛି, ଆଣ୍ଡ୍ରୁ୍ୟଷା" ସତେ କି ପ୍ରଶ୍ନକୁ ବୁଝେଇ ଦେବା ପାଇଁ ସେ କହିଲେ ।

ଆଣ୍ଡ୍ରୁ୍ୟଷା ଶବ୍ଦଟି କହିଲାବେଳେ ସେ ମୁରୁକି ମୁରୁକି ହସିଲେ । ଏକଥା ଭାବିଲା ବେଳକୁ ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ, ଗୁରୁଗମ୍ଭୀର ଆଉ ସୁନ୍ଦର କେହେବର ଏଇ ଯେଉଁ ଲୋକଟି ସେଇ ଦିନେ ଥିଲା ସେହି ସରୁଆ ଦୁଷ୍ଟ ଟୋକା ଆଣ୍ଡ୍ରୁ୍ୟଷା, ପିଲାଦିନେ ଯେ ଥିଲା ତାଙ୍କର ଖେଳର ସାଥୀ ।

ତାଙ୍କ ପ୍ରଶ୍ନର ଜବାବ ଖାଲି ଗୋଟାଏ ମୁରୁକି ହସରେ ଦେଇ ଆନ୍ଦ୍ରେ ପଚାରିଲେ, "ଲିସା ଗଲା କାହିଁ ?"

"ତାଙ୍କୁ ଏଡ଼େ ବାଧା ହୋଇଯାଇଛି ଯେ, ମୋ ଘରେ ଯେଉଁ ଖଟ ପଡ଼ିଛି ସେଇଠି ସେ ଶୋଇପଡ଼ିଲେ ।" ଖଟ ଉପରେ ଭାଇର ଆଗରେ ମୁହାଁମୁହିଁ ବସିପଡି ସେ କହିଲେ, "ହେ ଆନ୍ଦ୍ରେ ! କେଡ଼େ ଅମୂଲ୍ୟ ରତ୍ନଟିଏ ତୋର ଏ ଭାରିଯାଟିରେ, ଗୋଟାସୁଦ୍ଧା ପିଲାଟିଏ । ଏମିତି ସୁନ୍ଦର ଏଡ଼େ ଭଲ ହସଖୁସି ପିଲାଟିଏ । ମତେ ସେ ଭାରି ଭଲ ଲାଗୁଛନ୍ତି ।" ପ୍ରିନ୍‌ସ୍ ଆନ୍ଦ୍ରେ କଥା କହିଲେ ନାହିଁ ; କିନ୍ତୁ ସେତେବେଳେ ତାଙ୍କ ମୁହଁରେ ଯେଉଁ ଶ୍ଳେଷ ଆଉ ବିଦ୍ରୂପର ଭାବ ଫୁଟିଉଠିଲା ପ୍ରିନ୍‌ସେସ୍ ମେରୀ ତାକୁ ଲକ୍ଷ୍ୟ କଲେ ।

"ସାନ ସାନ ଦୋଷ ଥିଲେ ମଣିଷ ତାକୁ ସହି ଚଳେଇ ନେବାକୁ ପଡ଼ିବ । କିଏ ସେଥିରୁ ନିସ୍ତାର ପାଇଛି କି ଆନ୍ଦ୍ରେ, ତୁ ଏ କଥା ଭୁଲିଲେ ଚଳିବ ନାହିଁ ଭାଇ, ତୋ' ଭାରିଜା ସହରରେ ବଡ଼ଲୋକିଆ

ମହଲରେ ବଢ଼ିଛି, ପାଠ ପଢ଼ିଛି । ତାର ଯେଉଁ ଅବସ୍ଥା ସେ ବି ସେତେ ଭଲ ନୁହେଁ । ମଣିଷ ନିଜକୁ ଅନ୍ୟ ମଣିଷ ସ୍ଥାନରେ ଥୋଇ ବିଚାର ଦେଖିବ । ସବୁକଥା ବୁଝି ପାରିଲେ ମଣିଷ ସବୁକଥା କ୍ଷମା କରିପାରେ । ଖାଲି ଏତିକ ଟିକିଏ ସେ ବିଚାରି ପାଇଁ ଭାବ ଯେ, ଯେଉଁଭଳି ଚଳିବା ତାଙ୍କର ଅଭ୍ୟାସ ହୋଇଯାଇଛି, ତାକୁ ଛାଡ଼ି ଆପଣା ସ୍ୱାମୀଠୁ ବିଚ୍ଛେଦରେ ରହି ଏକୁଟିଆ ମଫସଲରେ ପଡ଼ି ରହିବା, ପୁଣି ତା'ର ଏ ଅବସ୍ଥାରେ । ବାସ୍ତବିକ, ସେ ଭାରି କଷ୍ଟ କଥା ।"

ପ୍ରିନ୍ସ୍ ଆନ୍ଦ୍ରେ ଭଉଣୀକି ଅନେଇଁ ହସିଲେ । ଆମେ କାହା କଥା ଶୁଣିଲାବେଳେ ଯେତେବେଳେ ଭାବୁ ଯେ, ଯେ କଥା କହୁଛି ତାର ନାଡ଼-ନକ୍ଷତ୍ର ବି ଆମେ ଜାଣିଛୁଁ, ସେତେବେଳେ ଆମେ ଯେମିତି ହସୁଁ ପ୍ରିନ୍ସ୍ ଆନ୍ଦ୍ରେ ସେହିପରି ହସିଲେ । ସେ କହିଲେ, "ତୁ ତ ନିଜେ ମଫସଲରେ ରହିଚୁ, ଆଉ ଏଠି ଚଳିବା ଅତି ଭୟାନକ ବୋଲି କେମିତି ଭାବୁଚୁ ?"

"ମୁଁ—ସେ ସ୍ୱତନ୍ତ୍ର କଥା, ମୋ କଥା କାହିଁକି ପଡ଼ୁଚ ? ମୋର ଆଉ ଅନ୍ୟ ରକମର ରହିବା ଦରକାର ନାହିଁ । ମୋର ଅନ୍ୟପ୍ରକାର ଜୀବନ ହଉ ବୋଲି ମୁଁ ଭାବିପାରିବି ନାହିଁ ଯେ, ଅନ୍ୟପ୍ରକାର ଜୀବନ ତ ମୁଁ ଜାଣିନାହିଁ । ତେବେ ଏ କଥା ବିଚାର କର ଆନ୍ଦ୍ରେ, ଜଣେ ଯୁବତୀ ଆଡ଼ମ୍ବରପୂର୍ଣ୍ଣ ଜୀବନରେ ବଢ଼ି ଆସିଥିବ, ଅଥଚ ଯେଉଁତକ ତାର ଜୀବନର ଭଲ ସମୟ ସେହି ସମୟଟା ସେ ମଫସଲରେ ଏକୁଟିଆ ପୋତି ହୋଇ ରହିଥିବ । ହଁ, ଏକୁଟିଆ, କାହିଁକି ନା ବାପା ତ ସବୁବେଳେ କାର୍ଯ୍ୟବ୍ୟସ୍ତ ଆଉ ମୁଁ —" ।

ହଠାତ୍ ପ୍ରିନ୍ସ୍ ଆନ୍ଦ୍ରେ ପଚାରିଲେ, "ସତ କହିଲୁ ମେରି, ମତେ ଲାଗୁଚି, ବେଳେ ବେଳେ ତୁ ତ ଭାରି କଷ୍ଟ ପାଉଥିବୁ, ବାପାଙ୍କ ମିଜାଜ୍ ଯୋଗୁଁ ।" ପ୍ରଥମେ ପ୍ରିନ୍‌ସେସ୍ ମେରିଆ ଏ ପ୍ରଶ୍ନ ଶୁଣି କାବା ହୋଇଗଲେ, ତ ପରେ ଭୟରେ ମୂକ ହୋଇଗଲେ ।

"ମୁଁ—ମୁଁ କଷ୍ଟ ପାଉଚି ?" ସେ ପଚାରିଲେ ।

"ତାଙ୍କ ବ୍ୟବହାର ତ ସବୁଦିନେ ରୁଢ଼ ଥିଲା, କିନ୍ତୁ ମତେ ଲାଗୁଚି ଏଣିକି ତାଙ୍କ କଥାଭାଷା ବିରକ୍ତିକର ହୋଇଯାଉଛି ।" ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ବାପାଙ୍କ ବିଷୟରେ ଏତେ ହୀନମାନ କରି କହିଲେ ଯେ,

ଲାଗିଲା ଯେପରି କି ତାଙ୍କର ଉଦ୍ଦେଶ୍ୟ ଥିଲା ଭଉଣୀଙ୍କୁ ବିବ୍ରତ କରିବା; ନ ହେଲେ ତାଙ୍କୁ ପରୀକ୍ଷା କରିବା ।

କଥାରେ ଖିଅ ନ ଧରି ଆପଣା ଚିନ୍ତାର କ୍ରମ ଅନୁସରି ପ୍ରିନ୍‌ସେସ୍ କହିଲେ, "ତୋର ସବୁ କଥା ଭଲ ଆନ୍ଦ୍ରେ ! ଖାଲି ଗୋଟିଏ କଥା ଛାଡ଼ି ଯେ ତୁ ବୁଦ୍ଧିମାନ୍ ବୋଲି ତୋର ଗୋଟାଏ ଅହଂକାର ଅଛି, ସେଇଟା ଗୋଟାଏ ବଡ଼ ପାପ । ବାପାଙ୍କ କାମ ଭଲ କି ମନ୍ଦ, ସେ କଥା ବିଚାର କରିବାଟା କଣ ଉଚିତ ବୋଲି ତୁ ଭାବୁଛୁ ? ଧରି ଉଚିତ ବା ହେଲା, ତେବେ ବାପା ଯେଉଁ ଭଳି ମଣିଷ, ତାଙ୍କ ପ୍ରତି ସମ୍ଭ୍ରମ ଆସିବା ଛଡ଼ା କ'ଣ ଆଉ କିଛି ଆସି ପାରେ ! ମୁଁ ତାଙ୍କ ପାଖରେ ଅଛି ବୋଲି କେଡ଼େ ଖୁସିରେ କେଡ଼େ ଶାନ୍ତିରେ ଅଛି, ମୁଁ ଭାବୁଛି ତେମେ ସମସ୍ତେ ଭଲ, ଏଡ଼ିକି ମନ ଖୁସିରେ ଥାଅନ୍ତି କି—"

ତାଙ୍କ ଭାଇ ଅବିଶ୍ୱାସରେ ମୁଣ୍ଡ ହଲେଇଲେ ।

"ମତେ ଖାଲି ତାଙ୍କର ଗୋଟିଏ କଥା ଅଡୁଆ ଲାଗୁଚି,—ସତ କହିବି ଆନ୍ଦ୍ରେ,—ସେଇଟା ହେଉଛି ଧର୍ମ ସମ୍ବନ୍ଧରେ ତାଙ୍କର ଭାବିବାର ବାଗଟା । ମୁଁ ତ ମୋଟେ ବୁଝି ପାରୁ ନାହିଁ ଯେ, ଯେଉଁ ଲୋକର ଏଡ଼େ ପ୍ରଚଣ୍ଡ ବୁଦ୍ଧି, ଯେଉଁଟା ଦିନ ଆଲୁଅ ପରି ପରିଷ୍କାର କଥାଟାକୁ ସେ କେମିତି ନ ଦେଖି ପାରି ଭ୍ରମରେ ପଡ଼ିଛନ୍ତି ! ସେଇ ଗୋଟିଏ କଥା ଲାଗି ମୁଁ ମନ ଦୁଃଖ କରୁଛି । ତେବେ ଏଇ ଯାହା କହିଲି, ସେ ବିଷୟରେ ବି ମୁଁ ଦେଖୁଛି ଯେ କିଛିଦିନ ହେଲା ତାଙ୍କର ଟିକିଏ ଉନ୍ନତି ଘଟିଚି । କିଛିଦିନ ହେଲା ତାଙ୍କର ଥଟ୍ଟା ନକଲ ଆଗ ପରି ଏଡ଼େ କଡ଼ା ହେଉ ନାହିଁ । ଜଣେ ବାବାଜୀ ବି ଆସିଥିଲେ ଯେ ବାପା ତାଙ୍କୁ ଆଦର ଅଭ୍ୟର୍ଥନା କରି ତାଙ୍କ ସଙ୍ଗେ ବହୁତ ବେଳ ଯାକେ କଥା ଭାଷା ହୋଇଥିଲେ ।"

"ବୁଝିଲୁ ମୋ ସୁନା ଭଉଣୀଟା, ତୁ ଆଉ ତୋ ବାବାଜୀ ଖାଲି ଗୁଳି ବାରୁଦ ନୋକସାନ କରୁଚ—" ଆନ୍ଦ୍ରେ ଶ୍ଳେଷରେ କହିଲେ ଅଥଚ ସ୍ନେହରେ କହିଲେ । ମିନିଟିଏ ତୁନି ହୋଇ ଡରି ଡରି ସେ କହିଲେ "ହଉ, ଭାଇ ହଉ, ମୁଁ ଖାଲି ଭଗବାନଙ୍କୁ ଡାକୁଥିବି ମୋ ଗୁହାରି ଶୁଣିବାକୁ । ତତେ ମୁଁ ଗୋଟାଏ ଭାରି ବଡ଼ ଅନୁରୋଧ ଭିକ୍ଷା ମାଗିବି, ଦେବୁଟି ?"

"କଣ କହୁନୁ—"

"ନାଇଁ ଆଗ ପ୍ରତିଜ୍ଞା କର ମତେ ମନା କରିବୁ ନାଇଁ ବୋଲି । ତତେ ବେଶୀ କିଛି କଷ୍ଟ ପଡ଼ିବ ନାଇଁ କି ମୁଁ କିଛି ହୀନିମାନିଆ କାମ କରିବାକୁ ତତେ ମୁଁ କହୁ ନାଇଁ ଯେ; କେବଳ ମୋ ମନ ବୋଧ ହେବ । ପ୍ରତିଜ୍ଞା କର ଆନ୍ଦ୍ରୁ୍ୟଷା—" ସେ ତାଙ୍କ ମୁଣିରେ ହାତ ପୁରାଇ କଣ ଗୋଟିଏ ମୁଠାଇଲେ, କିନ୍ତୁ ମୁଠାରେ କଣ ଅଛି ଖୋଲି ଦେଖାଇଲେ ନାହିଁ, ଯତେ ଯେମିତିକି ଯେଉଁଥି ପାଇଁ ସେ ନେହୁରା ହେଉଥିଲେ, ସେହି ଜିନିଷଟି ତାଙ୍କ ହାତରେ ଅଛି । ଏଣେ ଆନ୍ଦ୍ରେ ତାଙ୍କ ପ୍ରାର୍ଥନା ମଞ୍ଜୁର କରିବେ ବୋଲି ତୁଣ୍ଡରେ ନଧରିବା ଯାକେ ଜିନିଷଟି ଆଉ ମୁଣି ଭିତରୁ ବାହାରିବ ନାହିଁ । ଭୟ ଓ ଅନୁନୟ ମିଶା ଚୁହାଣିରେ ସେ ତାଙ୍କ ଭାଇକୁ ଅନାଇଁ ରହିଲେ ।

କି ବିଷୟରେ ଅନୁନୟ କରା ହେଉଛି ପ୍ରିନ୍ସ୍ ଆନ୍ଦ୍ରେ ତାକୁ ଅନୁମାନ କରି ଭଲି କହିଲେ—"ଅତି ବିଷମ ଅବସ୍ଥା ହେଲେ ବି କଣ—"

"ସେ ଜିନିଷଟି କଣ ସେ ବିଷୟରେ ତୁ ତୋର ଯାହା ଇଚ୍ଛା ତାହା ଭାବୁଥା ବସି । ତୁ ବି ବାପାଙ୍କ ପରି, ସେ କଥା ମୁଁ ଜାଣେ ଯେ, ଯାହା ଇଚ୍ଛା ତା ଭାବୁଥା କିନ୍ତୁ ଅନ୍ତତଃ ମୋର କଥା ରଖିବା ପାଇଁ ମୁଁ ଯାହା କହୁଚି ସେଇ କଥାଟି କରିବୁ । କରିବୁ, ତତେ ମୋ ରାଣଟି । ଆମ ବାପାଙ୍କ ବାପା, ଆମ ଜେଜେ ବାପା । ଯେତେ ଯେତେ ଲଢ଼େଇକି ଯାଇ ଥିଲେ, ସବୁଠି ଏଇଟିକି ପିନ୍ଧିଥିଲେ", ମୁଣିରେ କଣ ଅଛି ତା ସେ ବାହାର କଲେ ନାହିଁ, କହିଲେ "ପ୍ରତିଜ୍ଞା କଲୁଚି ?"

"ନିଶ୍ଚୟ, ସେ ଜିନିଷଟି କଣ ?"

"ଆନ୍ଦ୍ରେ, ଯୀଶୁଖ୍ରୀଷ୍ଟଙ୍କ ମୂର୍ତ୍ତିଟିଏ ଦେଇ ମୁଁ ଠାକୁରଙ୍କୁ ଡାକୁଛି, ତୋର ମଙ୍ଗଳ ହେଉ, ତୁ ଏଥିକୁ ବେକରେ ପିନ୍ଧିବୁ, ମୋ ପାଖେ ପ୍ରତିଜ୍ଞା କର କେବେ ଓହ୍ଲେଇ ପକାଇବୁ ନାଇଁ, କଣ କହୁଚୁ, କଥା ଦେଉଛୁ ତ ?"

ପ୍ରିନ୍ସ୍ ଆନ୍ଦ୍ରେ କହିଲେ—"ହଁ ଯଦି ସାତ ମହଣ ବୋଝ ନ ହେଇଥିବ, ଆଉ ମୋ ବେକକୁ ଝାଙ୍କି ନ ପକାଇବ, ତେବେ ଯାଇ··· ଖାଲି ତତେ ଖୁସି କରିବାକୁ—" କହି ଦେଇ ସାରି ସେ ଲକ୍ଷ୍ୟ କଲେ, ଏ ପରିହାସ ଶୁଣି ତାଙ୍କ ଭଉଣୀର ମୁହଁରେ ଯନ୍ତ୍ରଣାକ୍ଲିଷ୍ଟ ଭାବ ଫୁଟି

ଉଠିଲା । ଅନୁତାପ ଆସିଲା । କହିଲେ "ମୁଁ ଭାରି ଖୁସି ହେଲି, ସତରେ ମୁଁ ଭାରି ଖୁସି ହେଲି, ବୁଝିଲୁ"

ଗମ୍ଭୀର ଅଙ୍ଗଭଙ୍ଗୀ କରି ତାଙ୍କ ଭାଇଙ୍କ ଆଗରେ ଦୁଇ ହାତରେ ସେ ଗୋଟିଏ ପୁରୁଣା କାଳିଆ ଟିକି ମୂର୍ତ୍ତିଟିଏ ଧରି ଠିଆ ହେଲେ । ମୂର୍ତ୍ତିଟି ତ୍ରାଣ କର୍ତ୍ତା ଯୀଶୁଖ୍ରୀଷ୍ଟଙ୍କର । ରୂପାର ପୃଷ୍ଠ ଭୂମିରେ ଗୋଟିଏ କଳା ମୁହଁ । ମୂର୍ତ୍ତିର ଆକୃତି ଡିମ୍ବାକୃତି । ସେଥିରେ ଗୋଟିଏ ଖୁବ୍ ସରୁ ରୂପା ଶିକୁଳି ଲାଗିଛି, ସେଥିରେ ଅତି ସୂକ୍ଷ୍ମ କାରୁକାର୍ଯ୍ୟ । ତାଙ୍କର ସ୍ୱର ଓ ଭାବ ବିହ୍ୱଳ ହୋଇ ଥାଉଥାଏ । ସେ କହିଲେ—

'ତୁମେ ନିଜେ ପ୍ରଭୁଙ୍କ କରୁଣା ନ ପାଇବାକୁ ପଣ କଲେ ମଧ୍ୟ ପ୍ରଭୁ ନିଶ୍ଚୟ ତମକୁ ଶରଣ ଦେଇ ରଖିବେ, ନିଶ୍ଚୟ ତମକୁ କୃପାକରିବେ । ବଳେବଳେ ତାଙ୍କଠି ତୁମର ମତି ରଖିଥିବ କାରଣ କେବଳ ଈଶ୍ୱରଙ୍କଠାରେ ହିଁ ସତ୍ୟ ଓ ଶାନ୍ତି ବିଦ୍ୟମାନ" ସେ ଛାତି ଉପରେ ଛକି ଚିହ୍ନର ସଙ୍କେତ କଲେ, ମୂର୍ତ୍ତିଟିକୁ ଚୁମ୍ବନ କଲେ ଓ ତାପରେ ତାଙ୍କୁ ଆନ୍ଦ୍ରେଙ୍କ ହାତକୁ ବଢ଼ାଇଦେଲେ । କହିଲେ ଭାଇ ଆନ୍ଦ୍ରେ, ମୋ ପାଇଁ ତତେ ମୋ ମୁଣ୍ଡ ଖାଉଛି—"

ତାଙ୍କର ବଡ଼ ବଡ଼ ଆଖିରୁ ସସ୍ନେହ ଧୀରୁ ଆଲୋକଧାରା ଛୁଟିଥିଲା । ସେହି ରୁଗ୍ଣ ପାତଳ ମୁହଁଟି ସାରା ସେହି ଆଲୁଅରେ ଉଜ୍ଜ୍ୱଳ ହୋଇଉଠି ମୁହଁଟି ସୁନ୍ଦର ଦିଶିଲା । ତାଙ୍କ ଭାଇ ମୂର୍ତ୍ତିଟିକୁ ସଙ୍ଗେ ସଙ୍ଗେ ନେଇଯାଇଥାନ୍ତେ କିନ୍ତୁ ସେ ତାଙ୍କୁ ଅଟକାଇ ଦେଲେ । ଆନ୍ଦ୍ରେ ବୁଝି ପାରିଲେ, ଆପେ ଆପଣା ଛାତି ଉପରେ ଛକି ଚିହ୍ନର ସଙ୍କେତ କଲେ, ମୂର୍ତ୍ତିକୁ ଚୁମ୍ବନ କଲେ । ( ସେ ଅଭିଭୂତ ହୋଇଯାଇଥିଲେ । ) ତାଙ୍କ ମୁହଁରେ ଶ୍ଳେଷ ଓ କୋମଳତାର ଭାବ ଏକାସାଙ୍ଗରେ ଫୁଟି ଉଠିଲା ।

"ଧନ୍ୟବାଦ; ପ୍ରିୟ ବନ୍ଧୁ—" ସେ ତାଙ୍କ ଭାଇଙ୍କ କପାଳରେ ଚୁମ୍ବନ କଲେ ଓ ପୁଣି ଆସନ ଉପରେ ବସିପଡ଼ିଲେ । ଦୁହେଁ ତୁନିହୋଇ ରହିଲେ ।

ତାପରେ ମେରି କଥା କହିଲେ, "ଯାହା କହୁଥିଲି ଆନ୍ଦ୍ରେ, ତୁ ସବୁଦିନେ ଯେମିତି ଦୟାଳୁ ଉଦାର ଥିଲୁ, ତତେ ସେମିତି ହେବାକୁ ପଡ଼ିବ । ଲିସାକୁ ଏତେ କଠୋରଭାବେ ବିଚାର କଲେ ଚଳିବ ନାହିଁ । ତା ସ୍ୱଭାବ

ଏତେ ଭଲ, ସେ ଏତେ ଚମତ୍କାର, ଅଥଚ ବର୍ତ୍ତମାନ ତାଙ୍କ ଅବସ୍ଥା ବଡ଼ ଅସହ—"

"ମାସା, ମତେ ଲାଗୁନି ମୁଁ ତ ତତେ କିଛି କହି ନାହିଁ ଯେ କୌଣସି କଥାରେ ମୁଁ ମୋ ଭଉଣୀକୁ ଦୋଷ ଦେଉଛି କି ତା ପ୍ରତି ମୁଁ ଅସନ୍ତୋଷ ହୋଇଛି ବୋଲି—ତୁ କାହିଁକି ଏଗୁଡ଼ା ମତେ କହୁଚୁ ମାସା ?"

ପ୍ରିନ୍ସେସ ମେରିଆଙ୍କ ଦେହରେ ଅବାଏ ଲେଖାଁ ନାଲି ଚକଟି ଗଲା, ସତେକି କିଏ ଦୋଷ କରି ପକାଇଛନ୍ତି, ଏହିପରି ଭାବ ଦେଖାଇ ସେ ଚୁପ୍‌ହୋଇ ରହିଲେ । ପ୍ରିନ୍ସ୍ ଆନ୍ଦ୍ରେ କହିଲେ—

"ମୁଁ ତତେ କିଛି କହି ନାହିଁ, ତତେ ଆଉ କେହି କହୁଛି । ଏଇଥିପାଇଁ ମତେ ଦୁଃଖ ଲାଗୁଛି ।"

ପ୍ରିନ୍ସେସ୍ ମେରିଆଙ୍କ କପାଳରେ, ବେକରେ, ଗାଲରେ ନାଲି-ନାଲି ମହାଗୁଡ଼ାକ ଆହୁରି ନାଲି ହୋଇଗଲା । କିଛି କହିବାକୁ ତାଙ୍କର ମନ ହେଉଥିଲା କିନ୍ତୁ କଥାଗୁଡ଼ାକ ତୁଣ୍ଡରେ ବାହାରି ହେଲାନାହିଁ । ତାଙ୍କ ଭାଇ ଠିକ୍ ଅନ୍ଦାଜ କରି ନେଇଥିଲେ । ଖାଇ ଖାଇସାରିଲା ପରେ ତାଙ୍କ ଭଉଣୀ ଲୁହ ଢାଳିଥିଲେ, ସେ କହିଥିଲେ ତାଙ୍କୁ କେମିତି ଜଣା-ପଡ଼ୁଚି ଯେ ପିଲା ଜନ୍ମ ହେବାଟା ସୁରୁଖୁରୁରେ ହେବନାହିଁ, ବିପଦ ପଡ଼ିବ, ସେ କହିଥିଲେ ସେ କିଛି ଭାବି ତାଙ୍କୁ ଡର ମାଡ଼ୁଛି । ତାଙ୍କ ଭାଗ୍ୟ ବିରୁଦ୍ଧରେ ତାଙ୍କ ଶଶୁର ତାଙ୍କ ସ୍ୱାମୀ ସମସ୍ତଙ୍କ ବିରୁଦ୍ଧରେ ସେ ଅଭିଯୋଗ କରି କାନ୍ଦିଥିଲେ । କାନ୍ଦି କାନ୍ଦି ସେ ଶୋଇ ପଡ଼ିଥିଲେ । ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ଭଉଣୀଙ୍କ ମନକଥା ଭାବି ଦୁଃଖିତ ହେଲେ । କହିଲେ —

"ମୁଁ ତତେ ଗୋଟାଏ କଥା କହୁଚି ମାସା, ତୋ ଭାଉଜ ଯାହା କଲେ ବି ମୁଁ ତୋ ଭାଉଜକୁ କେବେ ନିନ୍ଦିବ ନାହିଁ, କେବେ ନିନ୍ଦିନାହିଁ କି କେବେ ହେଲେ ନିନ୍ଦିବ ନାହିଁ । ତାଙ୍କ ପ୍ରତି ମୋର ଯେଉଁ ଆଚରଣ ସେଥିଲାଗି ନିଜକୁ ବି ମୁଁ କେବେ ଦୋଷ ଦେଇ ପାରିବି ନାହିଁ । ମୁଁ ଯେଉଁ ପରି ଅବସ୍ଥାରେ ପଡ଼ିଛି ପଛେ, ମୋ ହାତରେ ଆଉ ଅନ୍ୟଥା ହୋଇପାରିବ ନାହିଁ । କିନ୍ତୁ ଯଦି ତୁ ସତକଥା ଜାଣିବାକୁ ଖୋଜୁଚୁ··· ଯଦି ପଚାରୁଚୁ ତାଙ୍କ ଆପ ସମ୍ପର୍କରେ ମୁଁ ସୁଖୀ କି ନାହିଁ, ମୁଁ କହିବି

ନାଁ, ମୁଁ ଦୁଃଖୀ ନୁହେଁ । ସେ ବି କଣ ସୁଖୀ ? ନା ସେ ସୁଖୀ ନୁହନ୍ତି । କାହିଁକି ଏମିତି ହେଲା, ମୁଁ ତ ଜଣା ନାହିଁ ।"

ଏକଥା କହିଲାବେଳେ ସେ ତାଙ୍କ ଭଉଣୀଙ୍କ ପାଖକୁ ଉଠିଯାଇ ତାଙ୍କ ଉପରେ ନଇଁପଡ଼ି ତାଙ୍କ କପାଳରେ ଚୁମ୍ବନ କଲେ । ତାଙ୍କର ସୁନ୍ଦର ଆଖିଯୋଡ଼ିକ ବୁଦ୍ଧି ଓ ଭଲ ପଣରେ ଏକ ଅପରୂପ ଅନଭ୍ୟସ୍ତ ଆଲୋକରେ ଉଜ୍ଜ୍ୱଳ ଦିଶିଲା । କିନ୍ତୁ ସେ ତାଙ୍କ ଭଉଣୀଙ୍କୁ ଅନାଉଁ ନଥିଲେ, ଭଉଣୀ ମୁଣ୍ଡ ଉପରବାଟେ ଖୋଲା କବାଟ ସେପାଖର ଅନ୍ଧାରକୁ ଚାହିଁଥିଲେ ।

ପ୍ରିନ୍‌ସ୍ ଆନ୍ଦ୍ରେ କହିଲେ, "ଚାଲ ତାଙ୍କ ପାଖକୁ ଯିବା । ତାଙ୍କଠୁଁ ମୁଁ ନିଶ୍ଚୟ ବିଦା ହେବାକୁ ଯିବି । ନଇଲେ ତୁ ଏକା ଯାଇ ତାଙ୍କୁ ଉଠା, ମୁଁ ଏଇ ଯାଉଁ ଯାଉଁ ଯାଉଚି ।" ଚାକରକୁ ଡାକଲେ, "ପେଟ୍ରୁସ୍କା, ଏଠିକି ଆସିଲୁ, ନେଲୁ ଏସବୁ ଜିନିଷ । ହେଇ ଦେଖ୍ ଏତକ ସେ ବସିଲା ଜାଗା ଉପରେ ରହିବ, ଆଉ ଏତକ ତା ଡାହାଣ ପଟେ ଥୁଆ ହେବ ।"

ପ୍ରିନ୍‌ସେସ୍ ମେରିଆ ଠିଆହୋଇ ପଡ଼ି ଦୁଆରମୁହଁ ଆଡ଼କୁ ଚାଲିଲେ । ଅଟକି ଯାଇ କହିଲେ, ଆନ୍ଦ୍ରେ, ଯଦି ଭଗବାନଙ୍କ ଉପରେ ତୋର ବିଶ୍ୱାସ ଥାଆନ୍ତା, ତେବେ ଭଗବାନଙ୍କୁ ଡାକିଥାନ୍ତୁ, ଗୁହାରି କରିଥାନ୍ତୁ ଯେ ମୁଁ ତ ଆପଣା ହୃଦୟ ଭିତରେ ପ୍ରେମ ଅନୁଭବ କରି ପାରିଲି ନାହିଁ, ଭଗବାନ ମତେ ସେ ପ୍ରେମ ଦିଅନ୍ତୁ । ସେମିତି କରିଥିଲେ ଭଗବାନ ତୋ ଗୁହାରି ଶୁଣିଥାନ୍ତେରେ ।"

"ହଁ, ସେପରି କଲେ ହୋଇଥାନ୍ତା ପରି—ଯା, ମାସା, ମୁଁ ଏଇକ୍ଷଣିକା ଯାଉଚି—।"

ସେ ଯେତେବେଳେ ତାଙ୍କ ଭଉଣୀଙ୍କ ବଖରାରେ ପହଞ୍ଚିଲେ, ସେତେବେଳକୁ ଠିକ ପ୍ରିନ୍‌ସେସ୍ ନିଦରୁ ଉଠି ସାରିଥିଲେ; ତାଙ୍କର ଖୁସି ଆନନ୍ଦମୟ କଅଁଳ ସ୍ୱର କବାଟ ସେପଟୁ ଶୁଭୁଥିଲା । ପଦେ କହିଲା ଉତ୍ତାରୁ ତରତର କରି ସେ ଆଉ ଗୋଟାଏ ପଦ କହିଯାଉଥିଲେ । ସତେ ଯେମିତିକି ବହୁତ ବେଳ ତାଙ୍କ କଥାଭାଷା ଜୋର କରି ବନ୍ଦ କରା-ହୋଇଥିଲା, ଆଉ ସେଇଥିପାଇଁ ଯେତେବେଳେ ଭୁଲିଗଲେ ବସି ଯେଉଁ ସମୟ ନଷ୍ଟ କରି ହୋଇଥିଲା, ସେହି ସମୟ ବାବଦକୁ ସେ ବେଶି ବେଶି

କରି କଥା ଗପୁଥାନ୍ତି । ସବାବେଳପରି ସେ ଫରାସି ଭାଷାରେହିଁ କଥା ଗପୁଥିଲେ ।

"ନାଇଁ ନାଇଁ, ବୁଢ଼ୀ କାଉଣ୍ଟେସ୍ ଜିଁ କ୍ରଭଙ୍କ କଥା ଦେଖିଲ। ମୋଡ଼ମୋଡ଼କା ନକଲ ମୁଣ୍ଡବାଳ ପାନିପାକ ନକଲ ଦାନ୍ତ ଘଣ୍ଟି, ସତେ ଯେପରିକି ସେ ଆପଣା ବୟସକୁ ହସରେ ଉଡ଼େଇବାକୁ ଦେଖାଉଥାନ୍ତି—"

କାଉଣ୍ଟ ଜିକ୍ରଭଙ୍କ ଭରସା ବିଷୟରେ ଅବିକଳ ଏଇ ଭାଷାରେ ଏଇ ମନ୍ତବ୍ୟ ଆଉ ଅବିକଳ ଏଇ ହସ ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ଭଉଣୀଙ୍କଠୁଁ ପର ଲୋକେ ଥାଇ ଅନ୍ତତଃ ପାଞ୍ଚଥର ଶୁଣି ସାରିଲେଣି । ସେ ଧିରଧିର ଘର ଭିତରକୁ ପଶିଗଲେ । ଠିକ ପ୍ରିନ୍‌ସେସ୍ ମୋଟା ଆଉ ଗୋଲଫୀ ବର୍ଣ୍ଣର ଦିଶୁଥାନ୍ତି । ତାଙ୍କ ସିଲେଇ ବୁଣା କ୍ରାମକୁ ହାତରେ ଧରି ସେ ଗୋଟାଏ ମାଗୁ ଚୌକି ଉପରେ ବସିପଡ଼ି ଗଡ଼ଗଡ଼ କରି ତାଙ୍କ ପିଟର୍ସବର୍ଗ ଅନୁଭୂତି କଥା କହି ଯାଉଥାନ୍ତି ।

ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ପାଖକୁ ଯାଇ ତାଙ୍କ ମୁଣ୍ଡ ଥାପୁଡ଼େଇଲେ, ଆଉ ପଚାରିଲେ ଯେ ଏତେ ବାଟ ଆସିଥିବାରୁ ଯେଉଁ ପଥଶ୍ରମ ହୋଇଥିଲା, ସେ ଭଲ ହୋଇଗଲାଣି କି ନାହିଁ । ସେ ତାଙ୍କୁ ଉତ୍ତର ଦେଇସାରି କଥା ଗପି ଲାଗିଲେ ।

ପାହାଚ ପାଖେ ଛଅଟା ଘୋଡ଼ା ଲାଗିଥିବା ଗାଡ଼ି ଠିଆ ହୋଇଥିଲା । ଶରତ୍ ଋତୁର ଅନ୍ଧାର ରାତି । ଗାଡ଼ିଆଳ ଅନ୍ଧାରରେ ଗାଡ଼ିର ଦାଣ୍ଡିଆ ବି ଦେଖିପାରୁ ନଥିଲା । ପାହାଚ ଉପରେ ଲଲ୍‌ଟେଣ ଧରି ଚାକରମାନେ ଏକରି ସେକରି ଧାଉଁଥିଲେ ।

ପ୍ରକାଣ୍ଡ ଘରର ଝରକାଗୁଡ଼ାକ ଅତି ବଡ ବଡ଼, ଝରକାବାଟେ ଆଲୁଅ ଦିଶୁଥିଲା ଯେ ଏତେ ବଡ଼ ଘରଟା ଆଲୁଅରେ ଜଳ ଜଳ ହେଉଥିଲା । ଦାଣ୍ଡ ଘରେ ଘରର ଚାକରମାନେ ରୁଣ୍ଡ ହୋଇଥିଲେ ଯେ ଯୁବକ ପ୍ରିନ୍‌ସଙ୍କୁ ବିଦାୟ ଦଣ୍ଡବତ କରିବେ ବୋଲି । ତା ସେକରି ବଡ଼ ହଲ୍ ଘରେ ଘର ମଣିଷଯାକ ଠିଆ ହୋଇଥିଲେ—ମିହାଇଲ୍ ଇଭାନୋଭିଚ୍ , ଶ୍ରୀମତୀ ବୁରିଏନା, ପ୍ରିନ୍‌ସେସ୍ ମେରିଆ, ସାନ ପ୍ରିନ୍‌ସେସ୍ ସମସ୍ତେ ସେଠି ଥିଲେ । ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ତାଙ୍କ ବାପା ଡକାଇ ପଠେଇବାରୁ ସେ ଯାଇଥିଲେ । ବାପା ତାଙ୍କଠୁଁ ଏକୁଟିଆ ବିଦାୟ ନେବାକୁ ଚାହିଁଥିଲେ । ସମସ୍ତେ ତାଙ୍କ ଆସିବାଯାକେ ଅପେକ୍ଷା କରି

ରହିଥାନ୍ତି । ପ୍ରିନ୍‌ସ୍ ଆନ୍ଦ୍ରେ ତାଙ୍କ ବାପାଙ୍କ ପଢ଼ାଘରକୁ ଗଲାବେଳକୁ ବୁଢ଼ା ପ୍ରିନ୍‌ସ୍ ତାଙ୍କ ବୃଦ୍ଧଙ୍କ ଚଷମା ପିନ୍ଧିଥାନ୍ତି, ଆଉ ଧଳା ଗାଉନ୍‌ଟା ପିନ୍ଧିଥାନ୍ତି । ତାଙ୍କ ପୁଅକୁ ଛାଡ଼ିଦେଲେ ଧଳା ଗାଉନ୍ ପିନ୍ଧି ଆଉ କାହା ଆଗକୁ ସେ ଆସନ୍ତି ନାହିଁ । ସେ ଟେବୁଲ ପାଖେ ବସି କଣ ଲେଖୁଥିଲେ, ବୁଲି ପଡ଼ିଲେ ।

"ଯାଉଚୁ ?" ପୁଣି ଲେଖା ଚାଲିଲା ।

"ମୁଁ ବିଦା ହେବାକୁ ଆସିଚି ବାପା—"

ଆପଣା ଗାଲକୁ ଛୁଇଁଦେଇ ସେ କହିଲେ, 'ମତେ ଏଇଠି ଚୁମା ଦେ ।' "ସାବାସ୍, ତତେ ଧନ୍ୟବାଦ ଦଉଚି ।"

"କାହିଁକି ମତେ ଧନ୍ୟବାଦ ଦେଉଚନ୍ତି ?"

"ସମୟ ଯେତିକିବେଳକୁ ଧାର୍ଯ୍ୟ ହୋଇଚି, 'ତା' ଉପରୁ ନ ମାଣ୍ଡୋଉଚୁ ବୋଲି, ଗୋଟାଏ ମାଇକିନିଆର ପଣତ ତଳେ ରହିକରି ଘରେ ବସି ରହିଲୁ ନାହିଁ ବୋଲି । ସବୁ କାମ ପଛ, କର୍ତ୍ତବ୍ୟ ଆଗ । ହଉ, ଧନ୍ୟବାଦ, ଧନ୍ୟବାଦ ।" ସେ ଲେଖିଲାଗିଲେ, କଲମ ଆଞ୍ଚୁଡ଼ା ଯୋଗୁ ସ୍ୟାହି ଛିଟୁଥାଏ ।

"ଯଦି କିଛି କହିବାକୁ ବସିଚୁ ତ କହିଦେ,—ଏ ଦି କାମ ମୁଁ ଏକା ସଙ୍ଗରେ କରିପାରେ ।" ସେ କହିଲେ ।

"ମୋ ଭାରିଯା କଥା···ଆପଣଙ୍କ ଉପରେ ତା ଭାର ଲଦି ଦେଇ ଯାଉଚି ବୋଲି ମତେ ଭାରି ଲାଜମାଡ଼ୁଚି—"

"କାହିଁ ଏଗୁଡ଼ା ବାଜେ କଥାଗୁଡ଼ାକ କହୁଚୁ ? କଣ କହିବୁ କହୁନୁ ?"

'ଯେତେବେଳେ ମୋ ସ୍ତ୍ରୀଙ୍କର ପ୍ରସୂତି ହେବାବେଳ ପାଖ ହୋଇ ଯିବ, ସେତେବେଳେ ମସ୍କୋ ସହରରୁ ଜଣେ ଡାକ୍ତର ଡକେଇବେ···ସେ ଥିବ ଆସି ଏଠି ।" ବୁଢ଼ା ଅଟକିଯାଇ କଠୋର ଦୃଷ୍ଟିରେ ପୁଅକୁ ଅନାଇଁଲେ, ସତେକି ସେ କଥାଟା ବୁଝିପାରିଲେ ନାହିଁ ।

ପ୍ରିନ୍‌ସ୍ ଆନ୍ଦ୍ରେ ଘାବଡ଼େଇ ଗଲେ, କହିଲେ 'ମୁଁ ଜାଣେ ଯଦି ପ୍ରକୃତି ନିଜେ ସାହାଯ୍ୟ ନ କରିବ, କେହି କିଛି କାମରେ ଆସିପାରିବେ ନାହିଁ । ମୁଁ ମାନୁଚି ଯେ କାହିଁ ଦଶଲକ୍ଷ ଭିତରୁ କେଉଁ ଗୋଟାଏ ଘଟନା ବିଗିଡ଼ି ଯାଏ କିନ୍ତୁ ମୁଁ ମୋ ସ୍ତ୍ରୀ ଆମ ଦି'ଜଣଙ୍କର ଗୋଟାଏ ମନର;

ଖିଆଲ ଯେ ଡାକ୍ତର ଆସିବ । ସେ କଣ ସ୍ୱପ୍ନ ଦେଖିଥିଲା । ସେ ଭାରି ଡରୁଚି ।" "ହୁଁ !" ବୁଢ଼ା ପ୍ରିନ୍ସ୍ ଲେଖୁ ଲେଖୁ ଛାଁକୁ ଛାଁ କହିଦେଲେ, "ମୁଁ କରିବ ସେମିତି ।" ସେ ତାଙ୍କ ଦସ୍ତଖତ୍‌ଟାକୁ ଗାରେଇ ଦେଲେ, ତାପରେ ଚଞ୍ଚଳ ପୁଅ ଆଡ଼କୁ ଲେଉଟି ପଡ଼ ଠୋ ଠୋ ହୋଇ ହସିଦେଲେ ।

"ଭାରି ଅଡୁଆ କଥା ନୁହେଁ ?"

"କଣ ଅଡୁଆ କଥା ବାପା ?"

ତାତ୍ପର୍ଯ୍ୟପୂର୍ଣ୍ଣ ଚୁମ୍ବକରେ ବୁଢ଼ା ପ୍ରିନ୍ସ୍ କହିଲେ "ଭାରିଯା ।"

"ମୁଁ ବୁଝିପାରିଲି ନାହିଁ" ପ୍ରିନ୍ସ ଆନ୍ଦ୍ରେ କହିଲେ ।

"କିଛି ଉପାୟ ନାହିଁରେ ବାବୁ, ସେମାନେ ସମସ୍ତେ ସେହି ଏକାପରି ।" ବୁଢ଼ା ପ୍ରିନ୍ସ୍ କହିଲେ, "ଆଉ ଥରେ ତ ଆଉ ଅଭିଆଡ଼ା ହୋଇ ହେବ ନାହିଁ । ଜମା ଡରନା, ମୁଁ ଏକଥା କାହାରିକି ପଦେ କହିବି ନାହିଁ, ତେବେ ତୁ ନିଜେ ବୁଝୁଚୁ ତ, ଆଉ କଣ ?"

ସରୁ ସରୁ ହାଡ଼ୁଆ ଆଙ୍ଗୁଠିରେ ତାଙ୍କ ହାତକୁ ଧରି ପକାଇ ହଲାଇଲେ । ଆପଣାର ତୀକ୍ଷ୍ଣ ଦୃଷ୍ଟିରେ ପୁଅ ମୁହଁକୁ ସିଧା ଅନେଇଲେ, ଆଖିର ସ୍ବହାଣି ମଣିଷ ଭିତରେ ସଚେତକ କଣା କରିଦେଇ ଆରପାଖକୁ ଫୁଟି ଯାଉଥିଲା । ତା'ପରେ ସେ ତାଙ୍କର ସେହି ଶୀତୁଆ ହସ ହସିଦେଲେ ।

ପୁଅ ଦୀର୍ଘଶ୍ୱାସ ପକାଇଲେ । ସେହି ଦୀର୍ଘ ନିଃଶ୍ୱାସରେ ଜଣାଇଁ ଦେଲେ ଯେ ବାପ ତାଙ୍କ କଥା ବୁଝିଛନ୍ତି । ସେତେବେଳେ ସୁଦ୍ଧା ବୁଢ଼ା ତାଙ୍କର ସ୍ୱାଭାବିକ କ୍ଷିପ୍ରତା ସହିତ ଚିଠି ଗୁଡ଼ାକ ଭାଙ୍ଗିବା ଓ ଜଉମୁଦ ଦବା କାର୍ଯ୍ୟରେ ବ୍ୟସ୍ତ ଥିଲେ । ପୁଣି କାଗଜ ମୋହର ଓ ମହମ ଉପରେ ଦେଇ ପୁଣି ସେ ଗୁଡ଼ାକ ପକାଇଦେଲେ ।

ଚିଠିରେ ଜଉ ମୁଦ ଦେଉ ଦେଉ ସେ ରହି ରହି ଝାଙ୍କି ହୋଇ ହୋଇ କହିଲେ, "ଉପାୟ ନାହିଁ । ଭାରି ସୁନ୍ଦରଟିଏ ! ମୁଁ ସବୁ କରିବ । ତୁ ତୋ ମନ ନିଶ୍ଚିନ୍ତ କର ।"

ଆନ୍ଦ୍ରେ କିଛି କହିଲେ ନାହିଁ । ତା ବାପା ଯେ ତା ମନ କଥା ଜାଣି ପାରିଛନ୍ତି, ଏଇଟା ଭାବିଲାବେଳକୁ ତାଙ୍କୁ ଖୁସି ଯେମିତି ଲାଗୁଥିଲା, ସଙ୍ଗେ ସଙ୍ଗେ ମନରେ ଦୁଃଖ ବି ହେଉଥିଲା । ବୁଢ଼ା ଉଠିପଡ଼ ପୁଅ ହାତକୁ ଚିଠି ଖଣ୍ଡ ବଢ଼ାଇ ଦେଲେ, କହିଲେ "ଶୁଣ୍, ଭାରିଯା ପାଇଁ ମନ

କଷ୍ଟ କରନାହିଁ । ଯାହା କରାଯାଇ ପାରିବ, ତା କରା ହେବ । ଏବେ ମୁଁ ଯାହା କହୁଚି, ମୋ କଥା ଶୁଣ୍ । ମିହାଇଲ୍ ଇଲ୍ୟାଚ ନୋଭିଚ୍‌ଙ୍କୁ ଏ ଚିଠି ଖଣ୍ଡ ଦେଇ ଦେବୁ, ମୁଁ ଲେଖି ଦେଇଛି ଯେ ସେ ତତେ ଭଲ କାମରେ ଲଗାଇବେ, ଖାଲି ପାର୍ଶ୍ୱଚର କରି ବେଶି ଦିନ ରଖିବେ ନାହିଁ । ପାର୍ଶ୍ୱଚର ! ଖରାବ ବାଜେ କାମ । ତାଙ୍କୁ କହିଦବୁ, ମୁଁ ତାଙ୍କୁ ମନେ ରଖିଛି, ମୁଁ ତାଙ୍କୁ ଶ୍ରଦ୍ଧା ରଖିଛି । ଯଦି ଦେଖିବୁ ସେ ଭଲ ଲୋକ, ତାଙ୍କ ପାଖେ ଚାକରି କରିବୁ । ନିକୋଲାଇ ଆନ୍ଦ୍ରେଇଚ୍ ବଲ୍‌କନ୍‌ସ୍କିର ପୁଅର ଗରଜ ପଡ଼ି ନାହିଁ ଯେ କାହାକୁ ଖୁସାମତ କରିବା ପାଇଁ କାହା ପାଖରେ ଚାକରି କରିବ । ଆଉ ଶୁଣ୍, ଏଠିକି ଆ—"

ସେ ଏତେ ତର ତରରେ କଥା କହୁଥାନ୍ତି ଯେ ଯେଉଁ ବାକ୍ୟଟା ଆରମ୍ଭ କଲେ, ତାର ଅଧେ ବି ସାରି ପାରିଲେ ନାହିଁ । କିନ୍ତୁ ତାଙ୍କ କଥା ବୁଝିବା ତାଙ୍କ ପୁଅଙ୍କର ଅଭ୍ୟାସ ହୋଇ ଯାଇଥାଏ । ସେ ପୁଅକୁ ଗୋଟାଏ ଆଲମାରି ପାଖକୁ ନେଲେ, ତାର ଢାକିବ ଖୋଲିଲେ, ଗୋଟାଏ ଖୋପକୁ ଭିଡ଼ି ଆଣିଲେ । ସେ ଖୋପ ଭିତରୁ ଗୋଟାଏ ଖାତା ବାହାର କଲେ, ସେଥିରେ ତାଙ୍କର ମୋଟା ମୋଟା ବଡ଼ ବଡ଼ ଲଗାଲଗି ଅକ୍ଷରରେ ଲେଖା ଭର୍ତ୍ତି ହୋଇଥାଏ ।

କହିଲେ, "ତୁ ମରିବା ଆଗରୁ ତ ମୁଁ ନିଶ୍ଚେ ମରୁଚି । ଦେଖିଥା, ଏଇଠି ମୋ ଲେଖାତକ ରହିଲା, ମରିଗଲେ ମହାରଜାଙ୍କୁ ଦେଇଦବୁ । ଆଉ ହେଇ ଦେଖିଥା, ଖଣ୍ଡେ ନୋଟ୍ ରହିଲା, ଗୋଟାଏ ଚିଠି ରହିଲା । ସୁଭରଭ, ଯେଉଁ ସବୁ ଲଢ଼େଇ କରିଥିଲେ, ତାର ଇତିହାସ ଯେ ଲେଖିବ, ସେ ଏ ନୋଟ୍ ଖଣ୍ଡିକ ପୁରସ୍କାର ପାଇବ, ଏଟାକୁ ଆକାଡେମୀକୁ ପଠାଇ ଦେବୁ । ହେଇଟି ଦେଖ ମୁଁ ମୋ ମନ୍ତବ୍ୟ ଲେଖିଚି, ମୁଁ ମଲାପରେ ତୁ ତୋ ନିଜ ଉପକାର ପାଇଁ ପଢ଼ି ଦେବୁ, ଦେଖିବୁ ପଢ଼ିଲେ ତୋର ଲାଭ ହେବ ।"

ଆନ୍ଦ୍ରେ ତାଙ୍କ ବାପାଙ୍କୁ କହିଲେ, ନାହିଁ ଯେ ବୋଧ ହୁଏ ତାଙ୍କର ଆହୁରି ବହୁତ ବହୁତ ବର୍ଷ ବଞ୍ଚିବାକୁ ପଡ଼ୁଛି । ସେ ଜାଣି ଥିଲେ ଯେ ସେପରି କହିବାର ବି କିଛି ଦରକାର ନାହିଁ ।

"ହଉ ବାପା ! ମୁଁ ସେ ସବୁ କଥା କରିବ ।" କହିଲେ, ସେ ଗେଲ କରିବାକୁ ତାଙ୍କ ପୁଅ ଆଡ଼କୁ ତାଙ୍କ ହାତ ପାପୁଲି ବଢ଼ାଇ

ହେଲେ । ତାଙ୍କୁ କୁଣ୍ଢେଇ ପକାଇ କହିଲେ, "ହଉ ତେବେ ଯା, ବିଦାୟ । ଗୋଟାଏ କଥା ମନେ ରଖିଥିବ ପ୍ରିନ୍ସ ଆନ୍ଦ୍ରେ, ଯଦି ତୁମେ ଯୁଦ୍ଧରେ ନିହତ ହେବ, ତେବେ ମୋର ଏ ବୁଢ଼ା ଦିନେ ମତେ ଦୁଃଖ ପଡ଼ିଯିବ···" ସେ ହଠାତ୍ ଅଟକି ଗଲେ । ତା'ପରେ ହଠାତ୍ ତୀବ୍ର ସ୍ୱରରେ କହି ଉଠିଲେ "କିନ୍ତୁ ମୁଁ ଯଦି ଖବର ପାଇବି ଯେ ନିକୋଲାଇ ବଲକନ୍‌ସ୍କିର ପୁଅ ନାଗି ବ୍ୟବହାର ତୁମେ କରିନାହଁ, ତେବେ ମୁଁ···ମୁଁ ଲଜ୍ଜିତ ହେବି," ସେ ଆହୁରି ଚିତ୍‌କାର କରିଉଠିଲେ ।

ମୂରୁକି ହସି ପୁଅ କହିଲା, "ମତେ ଏକଥା କହିବା ଦରକାର ନଥିଲା ବାପା—" ବୁଢ଼ା କିଛି କହିଲେ ନାହିଁ ।

ପ୍ରିନ୍‌ସ୍ ଆନ୍ଦ୍ରେ କହିଲେ, "ମୋର ଆପଣଙ୍କୁ ଗୋଟିଏ ଅନୁରୋଧ ଅଛି । ଯଦି ମୁଁ ମରିଯିବି, ଆଉ ଯଦି ମୋର ପୁଅଟିଏ ହେବ, ତେବେ ତାକୁ ଆପଣଙ୍କ ହାତରୁ ଖସି ଚାଲି ଯିବାକୁ ଛାଡ଼ି ଦେବେନାହିଁ, କାଲି ମୁଁ କହିଥିଲି ଆପଣଙ୍କୁ, ସେ ଆପଣଙ୍କ ପାଖେ ମଣିଷ ହେବ, ଏତିକି ମୋ ଅନୁରୋଧ ।"

"ମାନେ, ତୋ ଭାରିଯା ଯେମିତି ତାକୁ ନେଇ ନ ଯିବ ତ ?" ବୁଢ଼ା କହିଲେ, ହସି ପକାଇଲେ ।

ଦୁହେଁ ମୁହାଁ ମୁହିଁ ହୋଇ ଠିଆ ହୋଇ ରହିଲେ । ବୁଢ଼ାଙ୍କର ମୁନିଆଁ ଆଖିର ଚାହାଣି ପୁଅର ଆଖିରେ ସ୍ଥିର ହୋଇ ରହିଥାଏ । ବୁଢ଼ା ପ୍ରିନ୍‌ସ୍‌ଙ୍କ ତଳପାଟି ହଠାତ୍ କମ୍ପି ଉଠିଲା ।" ହଠାତ୍ ସେ କହିଲେ, "ଆମର ବିଦା ବିଦା ସରିଗଲା । ଯା ବାହାରି !" ପଢ଼ାଘର ଦୁଆର ମୁହିଁ ଫିଟାଇ ବଡ଼ ପାଟିରେ ରାଗିଲା ପରି ସ୍ୱରରେ କହିଲେ, "ଯା ପଳା—"

ଦୁଇ ପ୍ରିନ୍‌ସେସ୍ ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ଦେଖି ଧୋବିଲା ଅଙ୍ଗୀ ପିନ୍ଧି-ଥିବା, ଚଷମା ପିନ୍ଧିଥିବା, ମୁଣ୍ଡରେ ପରଚୁଲା ନ ଥିବା ଅବସ୍ଥାରେ ଥିବା ରାଗିଲା ପରି ପାଟି କରୁଥିବା ବୁଢ଼ାଙ୍କ ରୂପକୁ ମୁହୂର୍ତ୍ତିକ ପାଇଁ ଅନାଇଁ ଦେଇ ପଚାରିଲେ, "କଣ ହେଲା ? କଣ ହେଲା ?"

ପ୍ରିନ୍‌ସ୍ ଆନ୍ଦ୍ରେ ଦୀର୍ଘଶ୍ୱାସ ପକାଇଲେ, ଉତ୍ତର ଦେଲେ ନାହିଁ । ସ୍ତ୍ରୀଙ୍କ ଆଡ଼କୁ ବୁଲି ପଡ଼ି ସେ କହିଲେ—"ଏଥର ତେବେ—" "ଏଥର ତେବେ"ଟା ଶୀତଳ ବିଦ୍ରୂପ ପରି ଶୁଭୁଥିଲା, ଯେପରି କି ସେ କହୁଛନ୍ତି, "ଏଥର ତୁମର କ୍ଷୁଦ୍ର ଅଭିନୟଟିକି ଶେଷ କର ।"

ଟିକ ପ୍ରିନ୍‌ସେସ୍ କହିଲେ, "ଆନ୍ଦ୍ରେ, ଆନ୍ଦ୍ରେ—" ତାଙ୍କ ମୁହଁ ଶୁଖିଗଲା । ସେ ଅତି ବିଷାଦରେ ତାଙ୍କ ସ୍ୱାମୀଙ୍କ ଆଡ଼କୁ ଅନାଇଁଲେ, ଆନ୍ଦ୍ରେ ତାଙ୍କୁ ଆଲିଙ୍ଗନ କଲେ । ସେ ଗୋଟାଏ କଳକଳା ବୋବାଳି ଛାଡ଼ି ତାଙ୍କ କାନ୍ଧ ଉପରେ ମୋହ ହୋଇ ପଡ଼ିଗଲେ ।

ତାଙ୍କର ଯେଉଁ କାନ୍ଧରେ ସେ ଢଳି ପଡ଼ିଥିଲେ, ଅତି ହୁସିଆରରେ ସେ କାନ୍ଧକୁ ଆନ୍ଦ୍ରେ ଖସାଇ ନେଲେ, ତାଙ୍କ ମୁହଁକୁ ଅନାଇଁ ଅତି ଯତ୍ନରେ ତାଙ୍କୁ ଆରାମ ଚୌକି ଉପରେ ଶୁଆଇଦେଲେ ।

"ବିଦା ହେଉଚି ମାସା," ସେ ଧୀରେ ତାଙ୍କ ବଡ଼ ଭଉଣୀଙ୍କ କହିଲେ, ଦୁହେଁ ପରସ୍ପରଙ୍କ ହାତକୁ ଚୁମ୍ବନ କଲେ । ତାପରେ ତରତରରେ ପାଦ ପକାଇ ସେ ସେ ଘରୁ ବାହାରି ଚାଲିଗଲେ ।

ଟିକ ପ୍ରିନ୍‌ସେସ୍ ଆରାମ ଚୌକିରେ ପଡ଼ିଥାନ୍ତି, ଶ୍ରୀମତୀ ବୁରିଏନା ତାଙ୍କ କାନମୁଣ୍ଡା ରଗଡ଼ୁଥାନ୍ତି । ପ୍ରିନ୍‌ସେସ୍ ମେରିଆ ଭଉଜକୁ ଧରିଦେଇ ରଖି ଯେଉଁ ଦୁଆର ବାଟେ ପ୍ରିନ୍‌ସ୍ ଆନ୍ଦ୍ରେ ଚାଲି ଯାଇଥାନ୍ତି, ସେହି ଦୁଆର ଆଡ଼କୁ ତଥାପି ଅନାଇଁ ରହିଥାନ୍ତି । ତାଙ୍କର ସୁନ୍ଦର ଆଖିରେ ଲୁହ ଭର୍ତ୍ତି ହୋଇଥାଏ । ସେହି କବାଟ ଆଡ଼କୁ ଲକ୍ଷ୍ୟ କରି ସେ ଛକ ସଙ୍କେତ କଲେ । ପିସ୍ତଲ ଫୁଟେଇଲା ପରି ପଢ଼ା ଘରୁ ବାରମ୍ବାର ରାଗରେ ବୁଢ଼ା ନାକ ଝାଡ଼ିବାର ଶବ୍ଦ ଆସୁଥିଲା । ଠିକ୍ ଯେମିତି ପ୍ରିନ୍‌ସ୍ ଆନ୍ଦ୍ରେ ଯାଇ ସାରିଲେ, ସେମିତି ବୁଢ଼ାଙ୍କ ପଢ଼ାଘର କବାଟ ଭ୍ରଷ୍ଟ କରି ମେଲା ହୋଇଗଲା, ଆଉ ଧଳା ଗାଉନ୍ ପିନ୍ଧା କଠୋର ମୂର୍ତ୍ତି ବୃଦ୍ଧ ସେବାଟେ ଜୁଙ୍କି ମାରିଲେ ।

ମୋହ ଯାଇ ପଡ଼ିଥିବା ପ୍ରିନ୍‌ସେସ୍‌ଙ୍କ ଆଡ଼କୁ ଭୟଙ୍କର ରାଗରେ ଚାହିଁ ଦେଇ ସେ କହିଲେ, "ଗଲାଣି ? ଯାହା ହେଉ ଭାରି ଭଲ କଥାଟିଏ ହେଲା !" ତିରସ୍କାର କଲା ପରି ମୁଣ୍ଡକୁ ହଲେଇ ହଲେଇ ସେ ଧଡ଼୍‌କରି କବାଟ କିଳି ଦେଲେ ।

# ଯୁଦ୍ଧ ଓ ଶାନ୍ତି

## ଦ୍ୱିତୀୟ ଭାଗ

୧୮୦୫ ସାଲର ଅକ୍ଟୋବର ମାସରେ ରୁଷ୍ ସୈନ୍ୟମାନେ ଅଷ୍ଟ୍ରିଆ ପ୍ରଦେଶରେ ସହର ଆଉ ଗାଁ ମାନ ଅଧିକାର କରି ନେଉଥିଲେ ଓ ରୁଷ୍ ଦେଶରୁ ନୂଆ ନୂଆ ସୈନ୍ୟଦଳ ବରାବର ଲଗାତର ଆସୁଥିଲେ ଓ ବ୍ରାଉନାଉ ଦୁର୍ଗ ଚାରି ପଟେ ଛାଉଣି ପକାଉଥିଲେ । ତାଙ୍କ ଖିଆ ପିଆ ରହିବା ଚଳାଚଳ ଦାୟିତ୍ୱ ସ୍ଥାନୀୟ ଲୋକଙ୍କ ଉପରେ ଲଦା ହୋଇଥିଲା । ପ୍ରଧାନ ସେନାପତି କୁତୁଜଭ୍‌ଙ୍କ ପ୍ରଧାନ ମହକୁମା ହୋଇଥିଲା ବ୍ରାଉନାଉ ।

୧୮୦୫ ସାଲର ଅକ୍ଟୋବର ୧୧ ତାରିଖ ଦିନ ଯେଉଁ ପଦାତିକ ସୈନ୍ୟଦଳ ଗୁଡ଼ିକ ବ୍ରାଉନାଉରେ ଆସି ପହଞ୍ଚି ଥିଲେ, ତହିଁରୁ ଗୋଟିଏ ଦଳ ଆସି ବ୍ରାଉନାଉ ସହରଠୁ ଅଧ ମାଇଲଏ ଦୂରରେ ଅଟକି ଥିଲା, ପ୍ରଧାନ ସେନାପତି ସେ ଦଳକୁ ପରିଦର୍ଶନ କରିବେ ବୋଲି । ସେ ଦେଶଟା ରୁଷ୍ ଦେଶ ପରି ମୋଟେ ଦିଶୁ ନଥିଲା କି ପରିସ୍ଥିତି ରୁଷ୍ ଭଳି ଆଦୌ ନୁହେଁ (ଯଥା—ଫଳ ବଗିଚା, ପଥର ପାଚେରି, ଘରମାନଙ୍କରେ ଖପରି ଛାତ, ଖଣ୍ଡେ ଦୂରରେ ପର୍ବତ ମାଳା ଆଉ ଅଚିହ୍ନା ବେଶଭୂଷା ପିନ୍ଧିଥିବା ଚଷାମାନେ ) ସେମାନେ ରୁଷ୍ ସୈନ୍ୟମାନଙ୍କୁ କୁତୂହଳରେ ଚାହିଁ ଦେଖୁଥିଲେ । ରୁଷ୍ ଦେଶର ମଫସଲ ଭିତରେ ଯେ କୌଣସି ସୈନ୍ୟଦଳ ପରିଦର୍ଶନ ପାଇଁ ସଜ ବାଜ ହୋଇଥିଲେ ଯେମିତି ଦିଶେ, ଏ ସୈନ୍ୟଦଳଟା ବି ସେମିତି ଦିଶୁ ନଥିଲା । ସଞ୍ଜବେଳେ ସେମାନଙ୍କ ଯାତ୍ରା ଶେଷ ହେଲାବେଳକୁ ଖବର ଆସିଲା ଯେ ସେନାପତି ପରିଦର୍ଶନ କରିବେ ।

ବହୁତ ଗୁଡ଼ାଏ ଘୋଡ଼ା ଲାଗିଥିବା ଗୋଟାଏ ଡେଙ୍ଗା ନେଳିଆ ଭିଏନା ଗାଡ଼ି ଖୁବ ଜୋରରେ ସଡ଼କ ଉପରେ ଚାଲିଥିଲା । ସେ ଘଡ଼ ଘଡ଼ ହୋଇ ଚାଲିଥିଲା । ସଡ଼କଟା ଓସାର, କିନ୍ତୁ ମାଟି ସଡ଼କ, ପଥରର ନୁହେଁ । ତାର ଦି କଡରେ ଗଛ ଲଗା ହୋଇଥାଏ । ସେହି ଗାଡ଼ି ପଛେ ପଛେ

ସୈନ୍ୟାଧ୍ୟକ୍ଷଙ୍କ ନିଜର ଅଙ୍ଗରକ୍ଷୀ ଦଳ ଓ ଦଳେ ହୋଟ୍ ଦେଶର ସୈନ୍ୟ ଘୋଡ଼ା କଦମ ଦୌଡ଼େଇ ଆସୁଥିଲେ । କୁତୁଜଭ୍‌ଙ୍କ ପାଖରେ ଧଳା ପୋଷାକ ପିନ୍ଧି ଅଷ୍ଟ୍ରିଆ ଦେଶର ସେନାପତି ବସିଥିଲେ । କଳା ଛୁଷ୍ ପୋଷାକ ଗହଳରେ ଧଳା ପୋଷାକଟା ଅଖାଡୁଆ ଦିଶୁଥିଲା । ସୈନ୍ୟଦଳ ପାଖରେ ଗାଡ଼ି ଅଟକିଲା । କୁତୁଜଭ ଓ ଅଷ୍ଟ୍ରିଆର ସେନାପତି ସାନ ପାଟିରେ କଣ କଥାଭାଷା ହେଉଥିଲେ । ଯେମିତି କୁତୁଜଭ୍ ଗାଡ଼ିର ପାଉଛ ଉପରେ ତାଙ୍କର ଓଜନ ପାଦ ଲଦି ଦେଲେ, ସେମିତି ସେ ମୁ ରୁକି ମୁ ରୁକି ହସିଲେ । ଲାଗିଲା, ଯେପରିକି ସେହି ଯେଉଁ ଦୁ' ହଜାର ସୈନିକ ତାଙ୍କ ଆଡ଼କୁ ଓ ସେମାନଙ୍କ ସେନାପତିଙ୍କ ଆଡ଼କୁ ଅଣ ନିଶ୍ୱାସୀ ହୋଇ ଅନାଇଁ ରହିଥିଲେ, ସେମାନେ ସେଠି ଆଦୌ ନାହାନ୍ତି ।

ଆଦେଶର ସ୍ୱର ଠଣ୍ ଠାଣ୍ ହୋଇ ଶୁଭିଲା, ଆଉ ସମଗ୍ର ଦଳଟି ଯାକ ହାତିଆର ଧରି ସାମରିକ ଅଭିବାଦନ ଜଣାଇଲାବେଳକୁ ଏମୁଣ୍ଡ ସେମୁଣ୍ଡ ଥରିଗଲା । ମୃତ୍ୟୁର ନୀରବତା ପରି ନୀରବତା ଭିତରେ ସୈନ୍ୟାଧ୍ୟକ୍ଷଙ୍କ ଦୁର୍ବଳ କଣ୍ଠ ଶବ୍ଦ ପ୍ରାୟ ଶୁଭିଲା ନାହିଁ ନାହିଁ । ସୈନ୍ୟ ଦଳ ରଡ଼ିଲେ "ମହାନୁଭବ ସେନାପତିଙ୍କ ସ୍ୱାସ୍ଥ୍ୟ ଉତ୍ତମ ରହୁ—" ତା'ପରେ ସବୁ ତୁନ ପଡ଼ିଗଲା । ଆଗ କୁତୁଜଭ୍ ଗୋଟିଏ ଜାଗାରେ ଠିଆ ହେଲା, ସୈନ୍ୟ ଦଳ ପାଦ ପକାଇ ପର୍ଟ୍ଆର କରି ଗଲେ । ତାପରେ ସାଧାରଣ ସୈନ୍ୟଙ୍କ ସଙ୍ଗେ ମିଶି କୁତୁଜଭ ପାଦରେ ଚାଲି ଚାଲି ଗଲେ । ତାଙ୍କ ପାଖେ ପାଖେ ସେ ଧଳା ପୋଷାକ ପିନ୍ଧା ସେନାପତି, ପଛେ ପଛେ ଅଙ୍ଗରକ୍ଷୀ ସୈନ୍ୟମାନେ ।

ସେହି ସୈନ୍ୟ ଦଳର ଦଳପତିଙ୍କ ହାବଭାବରୁ ପରିଷ୍କାର ବାରି ହୋଇ ପଡ଼ୁଥିଲା ଯେ ଅଧିନାୟକତ୍ୱ କରିବା କର୍ତ୍ତବ୍ୟ ଅପେକ୍ଷା ତଳିଆ କର୍ମଚାରୀ ହିସାବରେ ସେ ତାଙ୍କର କର୍ତ୍ତବ୍ୟକୁ ବେଶି ଆଗ୍ରହରେ ତୁଲାଉ-ଥିଲେ । ଦଳପତି ଯେତେବେଳେ ପ୍ରଧାନ ସେନାପତିଙ୍କୁ ଅଭିବାଦନ କଲେ, ଆଗ ସେଥିରୁ ତ ଏକଥା ବାରି ହୋଇ ପଡ଼ୁଥିଲା । ଅଭିବାଦନ କରିବା ସମୟରେ ସେ ଅତି ଆଗ୍ରହରେ ପ୍ରଧାନ ସେନାପତିଙ୍କ ଆଡ଼କୁ ଅପଲକ ଆଖିରେ ଚାହିଁଥାନ୍ତି । ସମ୍ମାନ ଦେବା ବିଷୟରେ ଯେତେ ଯେତେ ପଦ୍ଧତି ଅଛି, ସବୁ ସେ ନିକୁଟି ନିକୁଟି କରୁଥାନ୍ତି । ସମ୍ମାନ ଦେଉଥାନ୍ତି ବୋଲି ତାଙ୍କ ପରି ଝାଙ୍କି ହୋଇ ଯାଉଥାନ୍ତି । ସୈନ୍ୟାଧ୍ୟକ୍ଷ ଯେତେବେଳେ ସାଧାରଣ

ସୈନ୍ୟଙ୍କ ସଙ୍ଗେ ମିଶି ଚାଲିଥିଲା, ସେତେବେଳେ ଦଳପତି ଆପଣା ବେକକୁ ଲମ୍ବେଇ ଦେଇ ତାଙ୍କ ଗତିବିଧି ଲକ୍ଷ୍ୟ କରୁଥାନ୍ତି । ତାଙ୍କ ପାଦ ଥରୁଥାଏ ଯେ ବହୁତ ଚେଷ୍ଟା କରି ତାକୁ ଆୟତ୍ତ କରୁ ଥାନ୍ତି । ସୈନ୍ୟାଧ୍ୟକ୍ଷ ପଦେ କଥା କହିଦେଲେ କି ଟିକିଏ ଅଙ୍ଗଭଙ୍ଗୀ କରି ଦେଲେ, ସେ ଚମକି ପଡି କୁଦାଟାଏ ମାରୁଥିଲେ । ଏ ଦଳର ଦଳପତି ଘରେ କଡ଼ା ଓ ଘରେ ପରିଶ୍ରମୀ, ତେଣୁ ବ୍ରେନାଓ୍ୱେରେ ଯେତୋଟି ଦଳ ଏକା ସମୟରେ ଆସି ପହଞ୍ଚିଥାନ୍ତି, ସେମାନଙ୍କ ସମସ୍ତିଙ୍କ ତୁଳନାରେ ଏହି ଦଳଟି ଅତି ଚମତ୍କାର ଅବସ୍ଥାରେ ଥିଲା । ବେମାର ପଡ଼ିଛନ୍ତି ବୋଲି କି ଚାଲି ନ ପାରିଲେ ବୋଲି ଯେତେ ଲୋକ ପଛରେ ରହି ଯାଇଥିଲେ, ସେମାନଙ୍କ ସଂଖ୍ୟା ମୋଟେ ଦୁଇ ଶହ ସତର । ଏମାନେ ଯେଉଁ ଯୋତା ମାଡ଼ି ଥିଲେ, ସେତିକି ଛଡ଼ା ଆଉ ସବୁ ଭଲ ଅବସ୍ଥାରେ ଥିଲା ।

କୁତୁଜଭ୍ ସୈନ୍ୟମାନଙ୍କ ଭିତରେ ଚାଲି ଚାଲି ଗଲାବେଳେ ମଝିରେ ମଝିରେ ଅନେକ ଅନେକ ତୁରସ୍କ ଯୁଦ୍ଧରେ ସେ ଯେଉଁ ଅଫିସର-ମାନଙ୍କୁ ଚିହ୍ନିଥିଲେ, ସେମାନଙ୍କ ସଙ୍ଗେ ବନ୍ଧୁଭାବରେ ପଦେ ପଦେ ମିଠା କଥା କହି କହି ଯାଉଥିଲେ, ସେତିକିବେଳେ ସାଧାରଣ ସୈନ୍ୟଙ୍କ ସଙ୍ଗେ ବି କଥାବାର୍ତ୍ତା ହେଉଥିଲେ । ସେମାନଙ୍କ ବୁଟ୍ ଯୋତାକୁ ଚାହିଁ ଚାହିଁ ସେ ଅନେକ ଥର କରୁଣ ହୋଇ ମୁଣ୍ଡ ହଲାଇଲେ । ସେଗୁଡ଼ାକୁ ଅଷ୍ଟ୍ରିଆର ସେନାପତିଙ୍କୁ ଦେଖାଇ ଦେଲାବେଳେ ଏଭଳି ଭଙ୍ଗୀ କଲେ, ଯେପରିକି ସେ ତୁଣ୍ଡରେ କହି ଥାନ୍ତେ ଯେ ଏଥିପାଇଁ ସେ କାହାରିକି ଦୋଷ ଦେଉ-ନାହାନ୍ତି ସିନା, ତେବେ କେଡ଼େ ଦୁରବସ୍ଥାରେ ସବୁ ଜିନିଷ ଅଛି, ସେ କଥା ସେ ନଦେଖି ରହି ପାରୁ ନାହାନ୍ତି । ଏମିତି ଯେତେ ଥର ସେ କିଛି କହୁ-ଥିଲେ ଦଳର ନାୟକ ଆଗକୁ ଧାଇଁ ଯାଉଥିଲେ, ଡରୁଥାନ୍ତି କାଳେ ଏ ଦଳ ବିଷୟରେ ସୈନ୍ୟାଧ୍ୟକ୍ଷ କେତେବେଳେ କଣ କହିବେ, ଆଉ ସେ ନଶୁଣି ଚାଲିବେ । କୁତୁଜଭ୍‌ଙ୍କ ପଛେ ପଛେ ତାଙ୍କ ଅଙ୍ଗରକ୍ଷିଦଳ ଚାଲୁଥାନ୍ତି, ସେ ପ୍ରାୟ କୋଡ଼ିଏ ଜଣ ହେବେ । ସେମାନେ ଏତେ ପାଖରେ ଥାଆନ୍ତି ଯେ ସେନାପତି ଯାହା କହୁଥିଲେ, ସେ ଯେତେ ଧୀରେ ଧୀରେ କଥା କହିଲେ ବି ସେମାନେ ଶୁଣି ପାରୁଥାନ୍ତି । ଏହି ଅଙ୍ଗରକ୍ଷୀ ଦଳର ଲୋକେ ବି ଆପଣା ଭିତରେ କଥା କୁହାକୋହି ହେଉଥିଲେ ଓ ବେଳେ ବେଳେ ହସାହସି ହେଉଥିଲେ । ସମସ୍ତିଙ୍କ ଭିତରେ ସୈନ୍ୟାଧ୍ୟକ୍ଷଙ୍କ

ଅତି ପାଖରେ ଅତି ସୁନ୍ଦର ଚେହେରାର ଜଣେ ଉପ ସେନାପତି ଚାଲି ଥିଲେ । ସେ ପ୍ରିନ୍ସ୍ ବଲ୍‌କନ୍‌ସ୍କି । ତାଙ୍କ ପାଖେ ପାଖେ ତାଙ୍କ ସଙ୍ଗୀ ନେସଭିତ୍‌ସ୍କି, ଖୁବ୍ ମୋଟା ଆଉ ଡେଙ୍ଗା ହୋଇ ପ୍ରକାଣ୍ଡ ଦେହେରା, ମୁହଁଟି ହସ ହସ, ସୁନ୍ଦର, ଖୁସିବାସିଆ, ଆଖି ଯୋଡ଼ିକ ପାଣିଚିଆ । ନେସ୍‌ଭିତ୍‌ସ୍କି ହସ ରୋକି ପାରୁ ନଥିଲେ । ତାଙ୍କ ପାଖେ ପାଖେ ଅଶ୍ୱାରୋହୀ ବାହିନୀର ଜଣେ ଖୁବ ମୋଟା କର୍ମଚାରୀ ଚାଲିଥାନ୍ତି, ତାଙ୍କ ହାବଭାବ ଦେଖି ନେସ୍‌ଭିତ୍‌ସ୍କିଙ୍କି ହସ ମାଡ଼ୁଥାଏ । ସେହି କର୍ମଚାରୀ ଜଣଙ୍କ ମୁହଁରେ ହସ ନଥାଏ କି ଆଖିରେ ପଲକ ପଡ଼ୁ ନଥାଏ କି ଚାହାଣିର ଭଙ୍ଗୀରେ ପରିବର୍ତ୍ତନ ଘଟୁ ନଥାଏ । ସେ ଗମ୍ଭୀର ମୁହଁ କରି ତାଙ୍କ ଦଳପତିଙ୍କ ପିଠିକି ଲକ୍ଷ୍ୟ ରଖିଥାନ୍ତି ଓ ସେ ଯେତେ ଯେତେ ଅଙ୍ଗଭଙ୍ଗୀ କରୁଥାନ୍ତି, ସବୁ ନକଲ କରୁଥାନ୍ତି । ଯେତେଥର ସେ ଦଳପତି ଦେହ ଥରାଉ ଥିଲେ କି ଆଗକୁ ଝୁଙ୍କି ଯାଉଥିଲେ, ଅବିକଳ ସେହିପରି ଭାବରେ ସେହି କର୍ମଚାରୀ କମ୍ପି ଉଠୁଥିଲେ ଓ ଆଗକୁ ମାଡ଼ି ଯାଉଥିଲେ । ନେସ୍‌ଭିତ୍‌ସ୍କି ହସୁଥିଲେ ଓ ଏ ନକଲ ବଢ଼ିଆ ଦେଖ ଦେଖ ବୋଲି ଠାରି ଅନ୍ୟମାନଙ୍କୁ କେଞ୍ଚୁ ଥିଲେ ।

କୁଟୁଜଭ୍ ଧୀରେ ଧୀରେ ଅନ୍ୟମନସ୍କ ଭାବରେ ଚାଲିଥାନ୍ତି । ହଜାର ହଜାର ଆଖି ତାଙ୍କୁ ଦେଖିବା ପାଇଁ ପ୍ରତ୍ୟେକ କୋଟର ଭିତରୁ ଉପାଡ଼ି ହୋଇ ଯାଉଥାଏ । ତୃତୀୟ ଦଳ ପାଖେ ପହଞ୍ଚି କୁଟୁଜଭ୍ ହଠାତ୍ ଅଟକି ଗଲେ । ପଛରୁ ଆସିଥିବା ଦଳ ଆଗରୁ ଜାଣି ନପାରି ତାଙ୍କର ପ୍ରାୟ ଦେହରେ ଘଷି ହୋଇଗଲେ ।

ନାଲି ନାକ ଏକ କ୍ୟାପ୍ଟେନ୍‌ଙ୍କୁ ଚିହ୍ନି ପକାଇ ସୈନ୍ୟାଧ୍ୟକ୍ଷ କହିଲେ, "କହେ ଟିମୋଖିନ୍!" ସୈନ୍ୟାଧ୍ୟକ୍ଷ ତାଙ୍କ ସଙ୍ଗେ କଥା କହିଲା-ବେଳେ ସେ ଏମିତି ଠେଙ୍ଗା ପରି ସଳଖ ଆଉ ଟାଣ ହୋଇ ଠିଆ ହୋଇ ରହିଲେ ଯେ, ଜଣା ଯାଉଥାଏ, ଯଦି ସୈନ୍ୟାଧ୍ୟକ୍ଷ ତାଙ୍କୁ ଅନାଇଁ ଆଉ ଟିକିଏ ବେଳ ଠିଆ ହୋଇ ରହିବେ ତ କ୍ୟାପ୍‌ଟେନ୍ ଏ ଅଗ୍ନି ପରୀକ୍ଷା ସହି ପାରିବେ ନାହିଁ । ସେଥିପାଇଁ କୁଟୁଜଭ୍ ନିଜର ପଦବୀ କଥା ହେଜି କରି କେବଳ ଟିମୋଖିନ୍‌ଙ୍କ ହିତ ଦୃଷ୍ଟିରୁ ତରତର ହୋଇ ସେଠୁ ଚାଲି-ଗଲେ । କୁଟୁଜଭ୍‌ଙ୍କ ମୁହଁର ଚମ ଓହଳି ପଡ଼ିଥାଏ, ଗୋଟାଏ କ୍ଷତ

ଶାନ୍ତି ବ ତାକୁ ଆଦରର ଲୁଚୁପ କରୁଥାଏ । କୁତୁଜଭ୍‌ଙ୍କ ହସ ସେ ମୁହଁରୁ ବାର ହେଉନାହିଁ ।

କୁତୁଜଭ୍ କହିଲେ, "ସେ ' ସେମାଇଲ୍ ଲଢ଼େଇ ବେଳର ମୋର ଜଣେ ପୁରୁଣା ସାଙ୍ଗ । ଖର ସାହସ, ଖାଟି ବୀରପୁରୁଷ ସେ ।" ତାଙ୍କ ଦଳର ଦଳପତିଙ୍କୁ କୁତୁଜଭ ପଚାରିଲେ, "ତାଙ୍କ କାମ ଆପଣଙ୍କ ମନକୁ ପାଉଚି ନା ?" ଦଳପତି ଜାଣିପାରିଲେ ନାହିଁ ଯେ ତାଙ୍କ ପିଠିଆଡ଼େ ଗୋଟାଏ ଦର୍ପଣରେ ଗୁଳି ପଡ଼ିଲା ପରି ଅଶ୍ୱାରୋହୀ ଦଳର କର୍ମଚାରୀଙ୍କ-କର୍ତ୍ତୃକ ସେ ପ୍ରତିବିମ୍ବିତ ହେଉଛନ୍ତି । କମ୍ପି ଉଠି ଆଗକୁ ଧାଇଁଯାଇ ସେ ଉତ୍ତର ଦେଲେ, ' ଅତି ଚମତ୍କାର ତାଙ୍କର କାମ, ମଣିମା !"

ହସି ଦେଇ ତାଙ୍କ ପାଖରୁ ଚାଲି ଯାଇ କୁତୁଜଭ୍ କହିଲେ, "ଆମ ସମସ୍ତଙ୍କର କିଛି ନା କିଛି ଦୁର୍ବଳତା ଥାଏ, ତାଙ୍କର ଦୁର୍ବଳତା ଥିଲା ଟିକିଏ ମଦ ପ୍ରତି ଆସକ୍ତି ।"

ଦଳପତି ଉତ୍ତର ଦେଲେନାହିଁ । ସେ ଡରିଗଲେ ଯେ ହୁଏ ତ ଏଥିପାଇଁ ତାଙ୍କୁ ଦୋଷ ଦିଆହେବ । ସେତିକିବେଳେ ଅଶ୍ୱାରୋହୀ ବାହିନୀର କର୍ମଚାରୀଙ୍କ ନଜରରେ ପଡ଼ିଗଲେ ସେହି କ୍ୟାପ୍‌ଟେନ୍, ଯାହାଙ୍କର ନାଲି ନାକ, ସେ ଟାଣି ଓଟାରି ପେଟକୁ ଖଙ୍କା କରିଥାନ୍ତି, ଛାଁଟ୍ ଦିଶିବା-ପାଇଁ । ଅଶ୍ୱାରୋହୀ ବାହିନୀର କର୍ମଚାରୀ ତାଙ୍କ ଢଙ୍ଗଢାଙ୍ଗକୁ ଏମିତି ଅନୁକରଣ କଲେ ଯେ ନେସ୍‌ଭିତ୍‌ସ୍କି ହସ ରୋକି ପାରିଲେନାହିଁ । କୁତୁଜଭ ବୁଲିପଡ଼ି ପଛକୁ ଅନାଇଁଲେ । ଲାଗୁଥାଏ, ଅଶ୍ୱାରୋହୀ ବାହିନୀର ସେ କର୍ମଚାରୀଟି ଆପଣା ଇଚ୍ଛା ଅନୁସାରେ ନିଜ ମୁହଁରେ ଯେ କୌଣସି ଭଙ୍ଗୀ ଫୁଟାଇ ପାରନ୍ତି । କୁତୁଜଭ ବୁଲିପଡ଼ିଲାବେଳକୁ ଅତି ଗମ୍ଭୀର ଅତି ମାନ୍ୟ କରୁଥିବା ନିରୀହ ମଣିଷର ମୁହଁର ଭଙ୍ଗୀ ଫୁଟାଇବା ପୂର୍ବରୁ ସେ ଟିକିଏ ଖଚେଇ ହେବାକୁ ବି ଅଳ୍ପ ବେଳ ପାଇଥିଲେ ।

ତୃତୀୟ ସୈନ୍ୟଦଳଟା ଥିଲା ସବାଶେଷରେ । କୁତୁଜଭ୍ କ'ଣ ଭାବୁଥିଲା ପରି ଦିଶୁଥିଲେ, ଯେତେ ଯେପରି କ କୌଣସି ବିଷୟରେ ସ୍ମରଣ କରିବାକୁ ଚେଷ୍ଟା କରୁଛନ୍ତି । ପ୍ରିନ୍‌ସ୍ ଆନ୍ଦ୍ରେ ତାଙ୍କ ଆଡ଼କୁ ଆଗେଇ ଆସି ଫରାସୀ ଭାଷାରେ ଧୀରେ ଧୀରେ କହିଲେ, "ଆପଣ ମତେ କହିଥିଲେ ଯେ ଏ ଦଳରେ ଯେଉଁ ଦୋଲୋହଭ ବୋଲି ଜଣେ କର୍ମଚାରୀ ଅଛନ୍ତି,

ସେହି ଯାହାଙ୍କୁ ନିମ୍ନପଦକୁ ଖସାଇ ଦିଆହୋଇଛି, ତାଙ୍କୁ ଆପଣଙ୍କର ମନେପକାଇ ଦେବାକୁ ।''

"କାହିଁ ସେ ଦୋଲୋହଭ୍ ?'' କୁତୁଜଭ ପଚାରିଲେ । ଦୋଲୋହଭ ଉତ୍ତର ପାଇବା ଯାକେ ଅପେକ୍ଷା କଲାନାହିଁ । ସେ ଜଣେ ସାଧାରଣ ସୈନିକର ପୋଷାକ ପିନ୍ଧିଥିଲା, ମାଟିଆ ବର୍ଣ୍ଣର ଲମ୍ବା କୋଟ୍ । ତାର ସୁନା ବର୍ଣ୍ଣର ବାଳ, ଦେହଟା ସରୁ ଆଉ ଉଶ୍ବାସ, ଆଖି ଯୋଡ଼ିକ ନେଳି ନେଳି । ସେ ଧାଡ଼ିରୁ ବାହାରି ପଡ଼ି ସେନାପତିଙ୍କ ପାଖକୁ ଯାଇ ବନ୍ଧୁକ ତେରି ଧରି ଅଭିବାଦନ ଜଣାଇଲା ।

ମୁହଁରେ ସାମାନ୍ୟ ବିରକ୍ତି ଦେଖାଇ କୁତୁଜଭ୍ ପଚାରିଲେ, "କଣ କିଛି ଫେରାଦ ଜଣାଇବାକୁ ଅଛି ?'' "ପ୍ରିନ୍ସ୍ ଆନ୍ଦ୍ରେ କହିଲେ, "ସେଇ ସେ ଦୋଲୋହଭ୍ ।''

କୁତୁଜଭ କହିଲେ, "ଓ ! ଆଚ୍ଛା ! ମତେ ଲାଗୁଛି, ଏ ଯାହା ହେଲା ଏଥିରୁ ଆପଣ ଉଚିତ ଶିକ୍ଷା ପାଇଯିବେ । ଏଥର ଭଲ କରି କାମ କରନ୍ତୁ । ମହାରାଜାଙ୍କର ଅପାର ଦୟା । ଆପଣ ଯଦି ଉପଯୁକ୍ତ କାମ ଦେଖାଇ ପାରିବେ, ମୁଁ ଆପଣଙ୍କ କଥା ଭୁଲିବିନାହିଁ ।'' ସେହି ଜକ ଜକ ନେଳି ଆଖି ଯୋଡ଼ାକ ଅତି ସାହସରେ ସେନାପତିଙ୍କୁ ଅନାଇଁଲା । ସେନାପତି ଓ ସାଧାରଣ ସୈନିକ ଭିତରେ ଯେଉଁ ଚଳନ୍ତି ମାନ୍ୟତାର ପର୍ଦ୍ଦା ଥିଲା, ସତେ ଯେପରି ତାର ସେ ଚାହାଣିରେ ସେ ପର୍ଦ୍ଦା ଛିନ୍ନଭିନ୍ନ ହୋଇ ଚିରିଗଲା ।

ସେ ତାର ଝଣଝଣିଆ ଟାଣୁଆ ନିଶ୍ଚିତ ସ୍ବରରେ କହିଲା, "ମଣିମାଙ୍କୁ ଗୋଟିଏ ଅନୁରୋଧ ମୁଁ ଭିକ୍ଷା କରୁଛି ଯେ ମୁଁ ଯେଉଁ ଦୋଷ କରିଦେଇଛି, ସେଥିପାଇଁ ପ୍ରାୟଶ୍ଚିତ୍ତ କରି ମହାମାନ୍ୟ ସମ୍ରାଟଙ୍କ ପ୍ରତି ଓ ରୁଷ୍ ଦେଶ ପ୍ରତି ମୋର ଅନୁରକ୍ତିକୁ କାର୍ଯ୍ୟରେ ପ୍ରମାଣ କରିବାପାଇଁ ମତେ ସୁଯୋଗ ଦିଆଯାଉ ।''

କୁତୁଜଭ୍ ବୁଲି ପଡ଼ି ଚାଲିଗଲେ । ତାଙ୍କ ଆଖି ଜକ୍ ଜକ୍ ହେଲା । ଓଠରେ ସେହି ହସ ଥିଲା କ୍ୟାପ୍ଟେନ୍ ଟିମୋହିନ୍‌ଙ୍କଠୁଁ ବୁଲି ପଡ଼ି ଚାଲିଗଲାବେଳେ ଯାହା ଦେଖା ଦେଇଥିଲା ।

ସେ ଅନ୍ୟ ଆଡ଼େ ମୁହଁ ବୁଲାଇ ଭ୍ରୂଲତା କୁଞ୍ଚେଇଲେ । ସେଥିରୁ ଜଣାପଡ଼ୁଥିଲା ଯେ, ସତେ ଯେପରି କି ସେ ବହୁତ ଆଗରୁ ଜାଣି ସାରିଥିଲେ

ସେ କଣ କହିବେ ଓ ଦୋଲୋହଭ୍ ତାଙ୍କୁ କ'ଣ କହିବ ସବୁ, ଆଉ ସେ କଥା ଜାଣିପାରି ବହୁତ ଆଗରୁ ସେ ବିରକ୍ତ ହୋଇ ପଡ଼ିଥିଲେ ଓ ସେ କଥା ଆଉଥରେ ଶୁଣିବାପାଇଁ ତାଙ୍କର ଆଦୌ ଇଚ୍ଛା ନ ଥିଲା । ସେ ଚୁଲିପଟ୍ଟ ଗାଡ଼ ଆଡ଼କୁ ଚାଲିଗଲେ ।

ସୈନ୍ୟଦଳ ଖଣ୍ଡ ଖଣ୍ଡ ଦଳରେ ବିଭକ୍ତ ହୋଇଗଲା । ସୈନ୍ୟମାନେ ଆପଣା ଆପଣା ବସାକୁ ଚାଲିଗଲେ । ବ୍ରାଉନଜ୍‌ଠାରୁ ଅଳ୍ପ ଦୂରରେ ସେମାନଙ୍କ ଲାଗି ବସା ବନ୍ଦୋବସ୍ତ କରାହୋଇଥିଲା । ସେମାନେ ଆଶା କରିଥିଲେ ଯେ ସେ ବସାରେ ସେମାନଙ୍କ ପାଇଁ ଯୋତା ଓ ପୋଷାକ ଥୁଆ ହୋଇଥିବ, ଆଉ ଏତେ କଷ୍ଟରେ ପାଦରେ ଚାଲି ଚାଲି ଏତେ ବାଟ ଆସି ସାରି ସେମାନେ ସେଠି ଯାଇ ବିଶ୍ରାମ କରିପାରିବେ ।

କୁତୁଜଭ୍ ପଛଘୁଞ୍ଚା ଦେଇ ଭିଏନା ସହର ଆଡ଼କୁ ହଟିଗଲେ । ବାଟରେ ପଡ଼ିଲା (ବ୍ରାଉନାଉ ଭିତରେ) ଇନ୍ ନଈ ଉପର ପୋଲ ଓ (ଲିନ୍‌ଜ୍ ସହର ଭିତରେ) ଟ୍ରାଉନ୍ ନଈ ଉପର ପୋଲ, ସେ ପୋଲ ଯୋଡ଼ାକ ସେ ଧ୍ୱଂସ କରି ଦେଇଗଲେ । ଅକ୍ଟୋବର ୨୩ ତାରିଖ ଦିନ ରୁଷ୍ ସୈନ୍ୟ ଏନ୍‌ସ୍ ନଈ ପାରିହେଲେ, ସେ ଦିନ ଦ୍ୱିପ୍ରହରବେଳେ ଏନ୍‌ସ୍ ନଈ ଦୁଇ ପଟେ ରୁଷ୍ ପକ୍ଷର ସୈନ୍ୟମାନଙ୍କ ଜିନିଷବୁହା ଗାଡ଼ି-ସବୁ, ତୋପ କମାଣ ଗୁଡ଼ାକ ଓ ଧାଡ଼ି ଧାଡ଼ି ହୋଇ ସୈନ୍ୟଦଳମାନେ, ହିଉଡ଼ି ଲମ୍ବି ଲମ୍ବି ପରି ଲମ୍ବି ରହିଥାନ୍ତି । ଶରତ୍‌ଋତୁର ଗୋଟିଏ ଦିନ ଭଳି ସେ ଦିନଟି ଉଷୁମ୍ ଲାଗୁଥାଏ, ଅଥଚ ବର୍ଷା ବି ହେଉଥାଏ । ପୋଲକୁ ଜଗିବା ଲାଗି ରୁଷ୍ ପକ୍ଷର ତୋପବନ୍ଧୁକ ସବୁ ଖଞ୍ଜା ହୋଇଥାଏ । ତେରଛା ବର୍ଷା ଧାର ଭେଦି ବେଳେ ବେଳେ ସେଠୁ ସେ ପୋଲଟା ଆଉ ଆଖିରେ ପଡ଼ୁ ନ ଥାଏ । ଗୋଟାଏ ସରୁ ରେଶମ ପର୍ଦ୍ଦା ପରି ପୋଲକୁ ବର୍ଷାଧାର ଉଢ଼ୁଆଳ କରି ରଖିଥାଏ । ଉଜ୍ଜ୍ୱଳ ଖରା ଧାସରେ ଦୂରି ଦୂରର ଜିନିଷ ଖୁବ୍ ପରିଷ୍କାର ହୋଇ ବାରି ହେଉଥାଏ, ଦିଶୁଥାଏ ସହରେ ଅବା ତା ଉପରେ ଜକ ଜକ ବାର୍ଣ୍ଣିସ୍ ବୋଳା ହୋଇଛି । ଧୋବ ଧୋବ ଘର, ତାର ନାଲି ଛାତ, ଗୀର୍ଜା, ପୋଲ୍, ପୋଲ ହି'କରେ ନଈ-ଧାର ବୋହିଗଲା ପରି ରୁଷ୍‌ସେନା । ଦାନ୍ୟୁବ୍ ନଈର ବାଙ୍କରେ ଜାହାଜ ସବୁ ଦିଶୁଥାଏ, ଆଉ ଦିଶୁଥାଏ ନଈ ଭିତରେ ଥିବା ଗୋଟିଏ ଦ୍ୱୀପ, ସେ ଦ୍ୱୀପ ଭିତରେ ଗୋଟିଏ ଦୁର୍ଗ ଓ ଗୋଟିଏ ବଗିଚା । ସେ ଦ୍ୱୀପ

ସ୍ଥଳରେ ପାଣି, ସେଠି ଏନ୍‌ସ୍ ନଈ ଦାନ୍ୟୁବ୍ ନଈରେ ପଡ଼ୁଛି । ଦାନ୍ୟୁବ୍ ନଈ ବାଁ ପାଖେ ଖାଖ ଅଡଡ଼ା, ତହିଁରେ ପାଇନ୍ ଗଛର ଜଙ୍ଗଲ । ଶାଗୁଆ ଶାଗୁଆ ଗଛମାନଙ୍କ ମୁଣ୍ଡି ଆଉ ନେଳନ୍ଥ ନେଳନ୍ଥ ଗିରକନ୍ଦର ସବୁ ଏକାଠି ମିଶି ଦିଶୁଥାଏ ଯେପରି ଦୂର ଦିଗ୍‌ବଳୟପାଖେ ଗୋଟିଏ ଅପରୂପ ଛବିଟିଏ ଖୋଲାହୋଇ ଥୁଆ ହୋଇଛି । ପାଇନ୍ ଜଙ୍ଗଲ ତା ମନକୁ ଉଠିଥିଲା ପରି ଦିଶୁଥାଏ, ସତେ ଯେପରି ତହିଁରେ ମଣିଷ ହାତ କେବେ ଲାଗିନାହିଁ । ଜଙ୍ଗଲ ସେ କରେ ଦିଶୁଥାଏ ଗୋଟିଏ ଘର ଉପରର ଗମ୍ବୁଜ-ଗୁଡ଼ିକ, ସେ ଘରେ ରହନ୍ତି ଅବିବାହିତା ଧର୍ମସାଧିକା କୁମାରୀମାନେ । ସାମ୍ନାରେ ଦୂରରେ ଏନ୍‌ସ୍ ନଈ ଆରପାରି ପାହାଡ଼ ଉପରେ ଦିଶୁଥାନ୍ତି ଶତ୍ରୁପକ୍ଷର ଛଉର ଫଉଜ ।

ପାହାଡ଼ ଉପରେ ତୋପମାନଙ୍କ ମଝିରେ ଜଣେ ସେନାପତି ଓ ତାଙ୍କ ଗହଣରେ ଜଣେ କର୍ମଚାରୀ ଠିଆ ହୋଇ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ତନ୍ନ ତନ୍ନ କରି ଇଲାକାର ଚାରିଆଡ଼େ ଦେଖୁଥାନ୍ତି । ସେନାପତି ଜଣକ ସୈନ୍ୟବାହିନୀର ପଛପଟର ସେନାର ଦାୟିତ୍ୱରେ ଥିଲେ । ତାଙ୍କ ପଛଆଡ଼େ ଖଣ୍ଡେ ଛଡ଼ାରେ ଗୋଟାଏ ତୋପର ଗଣ୍ଡି ଉପରେ ନେସ୍‌ଭିତ୍‌ସ୍କି ବସିଥାନ୍ତି. ମୁଖ୍ୟ ସେନାପତି ତାଙ୍କୁ ପଛ ଆଡ଼ର ସେନାରେ ରହିବାକୁ ହୁକୁମ୍ ଦେଇ ପଠାଇ ଦେଇଥାନ୍ତି । ନେସ୍‌ଭିତ୍‌ସ୍କିଙ୍କ ସଙ୍ଗରେ କ୍ୱସାକ୍ ଜାତିର ସୈନିକଟି ଆସିଥିଲା, ସେ ନେସ୍‌ଭିତ୍‌ସ୍କିଙ୍କ ହାତକୁ ଗୋଟିଏ ମୁଣି ଓ ଗୋଟିଏ ଫ୍ଲାସ୍କ୍ ବଢ଼ାଇ ଦେଉଥାଏ । ନେସ୍‌ଭିତ୍‌ସ୍କି ସୈନିକ କର୍ମଚାରୀମାନଙ୍କୁ ବହୁତ ସୁଆଦିଆ ପୁର-ପିଠା ଓ ଅସଲ ଛୀର କାଢ଼ି କାଢ଼ି ଦେଉଥାନ୍ତି । ସେମାନେ ଭାରି ଆନନ୍ଦରେ ତା ଚାରିକରେ ବେଢ଼ି ଥାନ୍ତି, ଓଦା ଘାସ ଉପରେ କଏ ବସି ପଡ଼ୁଥାଏ ଆଣ୍ଠୁ ମାଡ଼ି, କଏ ଅବା ଚେକାମଣ୍ଡଳ ପକାଇ, ଯେମିତି ପଠାଣମାନେ ବସନ୍ତି ।

ନେସ୍‌ଭିତ୍‌ସ୍କି କହିଲେ, "ଅଷ୍ଟ୍ରିଆ ଦେଶର ଯେଉଁ ରାଜା ଜଣକ ବାଛି ବାଛି ଏଠି ଦୁର୍ଗଟିଏ ତୋଳିଲେ, ନିଶ୍ଚୟ ସେ ଭାରି ବୁଦ୍ଧିଆ କାମଟିଏ କଲେ । ଜାଗାଟା ଚମତ୍କାର । ହଁ, ଆପଣମାନେ ସବୁ ଖାଉ ନାହାନ୍ତି ତ କାହିଁକି ?"

ଜଣେ ସୈନିକ କର୍ମଚାରୀ କହିଲା, "ଆପଣଙ୍କୁ ବହୁତ ଧନ୍ୟବାଦ ରାଜାସାହେବ !" ଏତେ ବଡ଼ ଉପର ପାହ୍ୟାର କର୍ମଚାରୀଜଣଙ୍କ ସଙ୍ଗେ

କଥା କହିବା ସୁଯୋଗ ପାଇ ସେ କର୍ମଗୃହଟି କୃତକୃତ୍ୟ ହୋଇ ଯାଉଥାଏ । କହିଲା, ଅତି ସୁନ୍ଦର ଜାଗାଟିଏ ! ଆମ ସେନାଦଳ ତ ଉଦ୍ୟାନ କରେ କରେ ଆସିଲା, ଆମେ ଯୋଡ଼ିଏ ହରିଣ ଦେଖିଲୁଁ ଆଉ ଏତେ ସୁନ୍ଦର ଘର !"

ଆଉ ଜଣେ କର୍ମଗୃହର ଖୁବ୍ ଲୋଭ ହେଉଥାଏ ସେ ଆଉ ଗୋଟିଏ ପୁରଭରା ପିଠା ମାଗନ୍ତା, କିନ୍ତୁ ତାକୁ ଲାଜ ମାଡୁଥାଏ ଯେ ସେ ବାଁରେଇ ହୋଇ ସେଇ ଗାଉଁଲି ଇଲାକା ଆଡ଼କୁ ଅନାଇଁଥାଏ । କହିଲା, "ଦେଖନ୍ତୁ ରାଜାସାହେବ୍ ହେଇ ଦେଖନ୍ତୁ, ଆମ ପଦାତିକ ବାହିନୀ ଠିକ୍ ଅଇଗ୍ଲ ସେଠି ପହଞ୍ଚି ଗଲେଣି । ହେଇ ସେଠି ସେ ଗାଁ ପଛଆଡ଼ ପଡ଼ିଆ ଉପରେ ସେମାନେ କଣ ଗୋଟାଏ ଓଟାଣି ନେଇ ଗଲଛନ୍ତି । ସେମାନେ ସେ ଜାଗାଟାକୁ ଚୋପମାଡ଼ରେ ସୁନ୍ଦର ସଫା କରିଦେବେ ।" ସେ ଖୁସି ହୋଇ କହୁଥାଏ ।

ନେସ୍‌ଭିଟ୍‌ସ୍କି କହିଲେ, 'ତା' ତ ନିଶ୍ଚୟ । ନାଁ, ମୁଁ ହେଇ-ଥିଲେ—" ତାଙ୍କର ସୁନ୍ଦର ଓଦା ଓଦା ପାଟିରେ ଖଣ୍ଡେ ପୁରଭରା ପିଠା ଚୋବାଉ ଚୋବାଉ ସେ କହିଲେ, "ମୁଁ କଣ କରିଥାନ୍ତି ନା ହେ ସେଥି ଭିତରକୁ ପଶି ଯାଇଥାନ୍ତି ।" ପାହାଡ଼ ଉପରେ ସେ ଯେଉଁ କୁମାରୀ ଧର୍ମସାଧିକାମାନଙ୍କ ଆଶ୍ରମଘରର ଗମ୍ବୁଜମାନ ଦିଶୁଥାଏ, ସେ ସେହି ଘର ଆଡ଼କୁ ହାତ ଠାରିଲେ । ସେ ହସିଦେଲେ. ତାଙ୍କ ଆଖି ଜକ ଜକ ଝଟକୁ ଥାଏ, ମିଞ୍ଜି ମିଞ୍ଜି ହେଉଥାଏ କହିଲେ, "ସେଇଆ କରିଥିଲେ ହିନା ବଢ଼ିଆ ହେଇଥାନ୍ତା, ନହେଁ ?"

କର୍ମଗୃହମାନେ ହୋ ହୋ ହୋଇ ହସିଲେ ।

"କିଛି ନ ହେଲେ ସେ କୁମାରୀମାନଙ୍କର ଟିକିଏ ଚମକାଇ ପଶିଥାନ୍ତା ତ ! ଶୁଣିଚ, ତାଙ୍କ ଭିତରେ ଇଟାଲୀ ଦେଶର ଟୋକୀ ବି ଅଛନ୍ତି । ମୋ ଆୟୁଷରୁ ପାଞ୍ଚ ବର୍ଷ ଗଲେ କମିଯାଆନ୍ତା, ମତେ ସେମିତିଆ ବାଗଟାଏ ମିଳିଯାନ୍ତା କି !"

ହସି ହସି ସାହସ ଦେଖାଇ ଆଉ ଜଣେ କର୍ମଗୃହୀ ଭରସି କରି କହିଲା, "ଟୋକୀଗୁଡ଼ାଙ୍କୁ ବି ସେଠି ଏକୁଟିଆ ଏକୁଟିଆ ବିରକ୍ତ ଲାଗିବଣି ଯେ !"

ଇତ୍ୟବସରରେ, ଆଗରେ ଯେଉଁ ବଡ଼ କର୍ମଚାରୀ ଜଣଙ୍କ ଦୂରବୀକ୍ଷଣ ଯନ୍ତ୍ର ବାଟେ ଦୂରକୁ ଅନାଉଁଥିଲେ ସେ ଗୋଟାଏ ଆଡ଼କୁ ଆଙ୍ଗୁଠିରେ ଦେଖାଇଦେଲେ । ସେନାପତି ଦୂରବୀକ୍ଷଣ ଯନ୍ତ୍ରକୁ ଆଖିରେ ଲଗାଇ ସେହି ଆଡ଼କୁ ଅନାଇଁଲେ । ସେଉଠୁ ଯନ୍ତ୍ରଟିକୁ ଦୂରକୁ ଘୁଞ୍ଚାଇ ଦେଇ ରାଗରେ କହିଲେ,—

"ସତେ ତ ! ଆପଣ ଯାହା କହୁଥିଲେ ସେଇଆ ହେଲା । ନଈ ପାର ହେବା ଘାଟରେ ସେମାନେ ଆମ ସୈନ୍ୟଙ୍କ ଉପରକୁ ଗୁଳି ଚଳେଇବେ ବୋଲି ଜଗି ରହିଲେଣି । ହଉ, ଆଉ ଡେରି କାହିଁକି ? ଗୁଳି ଫୁଟୋଉ ନାହାନ୍ତି କାହିଁକି ?"

ଫରାସୀ ସୈନ୍ୟବାହିନୀ ଓ ତାଙ୍କ ତୋପଗୁଡ଼ାକ ଖାଲି ଆଖିରେ ବି ଦିଶୁଥାଏ । ତୋପଗୁଡ଼ାକ ଉପରୁ ଦୁଧ ପରି ଧୋବ ଧୂଆଁ ବାହାରି ଆକାଶକୁ ଉଠୁଥାଏ, ଧୂଆଁ ପଛେ ପଛେ ଗୋଟାଏ ପ୍ରଚଣ୍ଡ ତୋଇ ଶବ୍ଦ ବି ହେଲା । ଆଉ ସନ୍ଦେହ ରହିଲାନାହିଁ ଯେ ଏ ପାଖରେ ଯେଉଁ ସୈନ୍ୟ ଥିଲେ, ସେମାନେ ନଈ ପାରି ହେବା ଘାଟ ଆଡ଼କୁ ଧାଇଁ ଯାଉଛନ୍ତି ।

ନେସ୍‌ଭିଜ୍‌କି ଧଇଁସଇଁ ଅଣନିଶ୍ୱାସୀ ହୋଇ ଠିଆ ହୋଇ ପଡ଼ିଲେ, ହସି ହସି ସେନାପତିଙ୍କ ପାଖକୁ ଯାଇ କହିଲେ, "ଆପଣ ମହିମା କିଛି ଟିକିଏ ଖାଇ ଦେଇଥିଲେ ଭଲ ହ'ନ୍ତା ପରି ?" ସେନାପତି କୌଣସି ଉତ୍ତର ନ ଦେଇ ମନକୁ ମନ କହିଗଲେ,

'ସବୁ ଏମାନେ ମାଟି କରିଦେଲେ, ଘରି ମଠ କରିଦେଲେ ଆମ ଲୋକେ—"

ନେସ୍‌ଭିଜ୍‌କି କହିଲେ, "ମହିମା ଯଦି ହୁକୁମ୍ ଦିଅନ୍ତେ ତେବେ ମୁଁ ଘୋଡ଼ାରେ ଚଢ଼ି ଚାଲିଯାଇ ସେମାନଙ୍କ ଖବର ବୁଝିଆସନ୍ତି ।"

"ବେଶ୍ ! ଘୋଡ଼ା ଚଢ଼ି ଯାଆନ୍ତୁ । ଘୋଡ଼ସବାର ସୈନ୍ୟଦଳକୁ କହିଦେବେ ଯେ ସମସ୍ତେ ଚାଲିଗଲା ଉତ୍ତାରୁ ସେମାନେ ସବା ଶେଷରେ ନଈ ପାରି ହେବେ ଓ ଗଲାବେଳକୁ ପୋଲଟାକୁ ଜାଳିଦେଇ ଚାଲିଯିବେ । ମୁଁ ଯେମିତି ଯେମିତି ଆଦେଶ ପଠାଉଥିବି ସେମାନେ ସେମିତି କରିବେ । ପୋଲ ଉପରେ ନିଆଁ ଲଗିଲା ଭଳି ଯାହା ଜିନିଷ ଥିବ, ସେମାନେ ଓଟାଇ ପକାଇବେ । କହିଦେବେ ଆପଣ ।"

ଲମ୍ବାଇ ଲମ୍ବାଇ ବର୍ଣ୍ଣନା କରି କରି ଆଗରୁ ଏ ଆଦେଶଟା ଜାରି କରାହୋଇ ଥିଲା; ସେନାପତି ଖାଲି ସେହି କଥାକୁ ଆଉ ଥରେ କହିଲେ ।

"ହଉ, ଭଲକଥା—"ନେସ୍‌ଭିଟ୍‌ସ୍କି କହିଲେ । କୋସାକ୍ ସୈନ୍ୟଟି ତାଙ୍କ ଘୋଡ଼ାକୁ ଧରି ଠିଆ ହୋଇଥିଲା । ସେ ତାକୁ ପାଖକୁ ଡାକି ତା ହାତକୁ ତାଙ୍କ ମୁଣି ଓ ପାଣିପାତ୍ର ବଢ଼ାଇଦେଲେ । ତା ପରେ ତାଙ୍କର ଓଜନ ଦେହଟାକୁ ଅତି ସହଜରେ ହାଲୁକା କରି ଘୋଡ଼ାର ଜିନ୍ ଉପରେ ଲଦିଦେଲେ ।

କର୍ମଚାରୀମାନେ ତାଙ୍କୁ ଅନାଇଁ ଅନାଇଁ ମୁରୁକି ମୁରୁକି ହସୁଥିଲେ । ସେମାନଙ୍କୁ ସେ କହିଲେ, "ଦେଖନ୍ତୁ, ଏଥର ମୁଁ ନିଶ୍ଚୟ ଚାଲିଲି ସେହି ଧର୍ମସାଧିକାମାନଙ୍କ ପାଖକୁ"

ସେନାପତି ତୋପ ବନ୍ଧ;କବାହିନୀର କର୍ମଚାରୀଙ୍କ ଆଡ଼କୁ ବୁଲିପଡ଼ି କହିଲେ, "ଏଥର କ୍ୟାପ୍‌ଟେନ୍, ଚେଷ୍ଟା କରନ୍ତୁ ତ, କେତେଦୂର ଯିବ ଦେଖିବା, ସମୟ କଟାଇବାକୁ ଟିକିଏ ମଉଜ କରନ୍ତୁ, ହଁ, ଲଗାନ୍ତୁ ଦେଖିବା—"

ତୋପବାହିନୀର କର୍ମଚାରୀ ଆଦେଶ ଦେଲେ, "ତୋପ ସାଜ ।" ଆଖି ପିଛୁଡ଼ାକେ ତୋପ ଚଳେଇବା ଲୋକେ ଗୁଜଣୀର ଧୂନି ପାଖରୁ ଖୁସିରେ ଧାଇଁଆସି ବଡ଼ ବଡ଼ ତୋପଗୁଡ଼ାକରେ ଗୁଳି ବାରୁଦ ପୂରାଇଲେ ।

"ଏକ— ।" ସେମାନଙ୍କୁ ଆଦେଶର ଶବ୍ଦ ଶୁଭିଲା । ଏକ ନମ୍ବର ଚଟ୍‌ପଟ୍ ପଛକୁ ଡେଇଁପଡ଼ିଲା । ଏକ ପ୍ରଚଣ୍ଡ କାନଫଟା ଠଣଠଣିଆ ଶବ୍ଦ କରି ତୋପ ଗର୍ଜନ କଲା । ପାହାଡ଼ କରପଟେ ରୁଷ୍ ପକ୍ଷର ଯେଉଁ ସୈନ୍ୟମାନେ ଥିଲେ, ତାଙ୍କ ମୁଣ୍ଡ ଉପରବାଟେ ସିଠି ମାରି ମାରି ତୋପର ଗୁଳି ଉଡ଼ି ଚାଲିଲା । ଶତ୍ରୁପକ୍ଷଙ୍କ ପାଖରେ ପହଞ୍ଚି ନ ପାରି ତାଙ୍କ ପାଖରୁ ବହୁତ ପଛରେ ପଡ଼ିଲା । ଧୂଆଁରୁ ଜଣାଗଲା, କେଉଁଠି ସେଇଟା ପଡ଼ି ଫାଟିଛି ।

ଶବ୍ଦ ଶୁଣିଲା ମାତ୍ରେ ସୈନ୍ୟ ଓ କର୍ମଚାରୀମାନଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା । ସମସ୍ତେ ଉଠିପଡ଼ି ଅତି ବ୍ୟସ୍ତହୋଇ ତଳପଟେ ଥିବା ରୁଷ୍‌ପକ୍ଷର ସୈନ୍ୟମାନଙ୍କ ଗତି ଲକ୍ଷ୍ୟ କଲେ ଓ ଆଗେଇ ଆସୁଥିବା ଶତ୍ରୁପକ୍ଷର ଗତି ଲକ୍ଷ୍ୟକରେ । ହାତପାପୂଲିର ଖାଲରେ ଦିଶିଲା ପରି ସବୁ

ଗୋଟି ଗୋଟି ହୋଇ ଦଶୁଥିଲା । ଠିକ୍ ସେହିକବେଳେ ବଉଦ ଉହାଡ଼ରୁ ସୂର୍ଯ୍ୟ ସମ୍ପୂର୍ଣ୍ଣଭାବେ ପଦାକୁ ବାହାରି ପଡ଼ିଲେ । ସେହି ଗୋଟିକିଆ ତୋପ ଗୁଳିର ଶବ୍ଦ ଓ ଉଜ୍ଜ୍ୱଳ ଖରାର ଝକଝକ ଏକାଠି ଆଉଟି ହୋଇଗଲା ଓ ହାଲୁକା ମନଫୁଲୁଣିଆ ମଉଜ କଥା ମନେ ପକାଇଲା ।

ଶତ୍ରୁ ଲକ୍ଷ୍ୟରେ ଯୋଡ଼ାଏ ତୋପଗୁଳି ପୋଲ ଉପର ଦେଇ ଉଡ଼ିଯାଇ ସାରିଥିଲା । ପୋଲ ଉପରେ ଲୋକଙ୍କ ଗହଳ ବଢ଼ିଗଲା । ପୋଲ ମଝିରେ ଠିଆ ହୋଇଥିଲେ ନେସ୍‌ଭିଟ୍ସ୍କି । ସେ ଘୋଡ଼ାରୁ ଓହ୍ଲାଇ ପଡ଼ିଥିଲେ । ତାଙ୍କ ମୋଟା ଦେହଟା ଲୋକଙ୍କ ଠେଲାରେ ପୋଲର ବାଡ଼ାରେ ଚାପି ହୋଇ ଯାଇଥିଲା । ସେ ହସି ହସି ପଛକୁ ତାଙ୍କ କୋସାକ୍ ପାର୍ଶ୍ୱଚରକୁ ଅନାଇଁଲେ । କୋସାକ୍‌ଟି ଯୋଡ଼ିକଯାକ ଘୋଡ଼ାର ଲଗାମ ଧରି ତାଙ୍କଠୁଁ କେତେ ପାହୁଣ୍ଡ ଅନ୍ତରରେ ତାଙ୍କ ପଛଆଡ଼େ ଠିଆ ହୋଇଥିଲା । ଯେତେଥର ନେସ୍‌ଭିଟ୍ସ୍କି ଆଗକୁ ଯିବାକୁ ଚେଷ୍ଟା କରୁଥିଲେ, ସେତେଥର ପଛଆଡ଼ୁ ଚଳନ୍ତା ସୈନ୍ୟଦଳ ଓ ମାଲବୁହା ଗାଡ଼ିମାନଙ୍କ ଗହଳ ଓ ଠେଲାପେଲା ତାଙ୍କ ଉପରେ ମାଡ଼ି ଆସୁଥିଲା । ଖାଲି ମୁରୁକି ମୁରୁକି ହସିବା ଛଡ଼ା ତାଙ୍କର ଆଉ ଅନ୍ୟ କିଛି ଉପାୟ ନ ଥିଲା ।

ଏକ ମାଲବୁହା ଗାଡ଼ି ମାର୍ଫତିରେ ଥିବା ଜଣେ ସୈନିକ ପଦାତିକ ସୈନ୍ୟମାନଙ୍କ ଭିତରେ ଠେଲାପେଲା ଆପଣା ବାଟ କରିନେବାକୁ ଚେଷ୍ଟା କରୁଥିଲା ସେମାନେ ତା ଗାଡିର ଘୋଡ଼ା ଆଉ ଚକ ଦେହରେ ବାନ୍ଧି ହୋଇ ଯାଇଥିଲେ । ନେସ୍‌ଭିଟ୍ସ୍କିଙ୍କ ପାର୍ଶ୍ୱଚର କୋସାକ୍ ସୈନିକଟି ସେହି ସୈନିକକୁ କହିଲା, "ହୋ ବାବୁ ଶୁଣ, ତେମେ କୁଆଡ଼େ ଯାଉଚ କହିଲ ? ନାଇଁ ନାଇଁ ତେମେ ଟିକିଏ ଥଏ ଧର, ଦେଖୁନ, ସେନାପତି ଠିଆ ହୋଇଚନ୍ତି, ସେ ଆଗକୁ ଯିବେ ପରା !"

କିନ୍ତୁ ସେହି ସୈନିକ ସେନାପତିଙ୍କ ନାଁ ଶୁଣି ବି ତାକୁ କାନରେ ପକାଇଲା ନାହିଁ । ତା ବାଟ ଯେଉଁ ସୈନ୍ୟମାନେ ଓଗାଳିଥିଲେ ସେ ଓଲଟି ତାଙ୍କ ଉପରକୁ ପାଟିକଲା, "ହେଇ ପିଲେ ବାଁପଟେ ରହ, ବାଁପଟେ ରହ, ଟିକିଏ ଅଟକିଯାଅ ।" କିନ୍ତୁ ପିଲେ, କାନ୍ଧକୁ କାନ୍ଧ ଲଗେଇ ତାଙ୍କ ବନ୍ଧୁକର ସଙ୍ଗୀନକୁ ସଙ୍ଗୀନ ମିଶେଇ ଦେଇ ଏକାଠି ଏକ ମେଞ୍ଚା ହୋଇ ପରି ପୋଲ ଉପରେ ମାଡ଼ି ଚାଲିଗଲେ ।

ପ୍ରିନ୍ସ୍ ନେସ୍‌ଭିଟ୍‌ସ୍କି ପୋଲବାଡ଼ା ଉପରେ ବାଟେ ତଳକୁ ଅନାଇଁଲେ । ଏନ୍‌ସ୍ ନଈର ଢେଉ ଦିଶିଲା । ଢେଉଗୁଡ଼ାକ ସେତେ ଉଞ୍ଚ ନୁହେଁ କିନ୍ତୁ ଖୁବ୍ ଖର, ଖୁବ୍ ଶବ୍ଦକରି ପୋଲର ପାହ୍ୟା ଚାରିପାଖେ ବୁଲି ବୁଲି ପରସ୍ପରକୁ ଗୋଡ଼ାଉଥିଲେ । ପୋଲ ଉପରେ ଅନାଇଁ ସେ ଦେଖିଲେ, ସୈନ୍ୟମାନଙ୍କର ଜୀଅନ୍ତା ଢେଉ ନଈ ପରି ବୋଝ ଚାଲିଗଲାବେଳେ ଦିଶୁଥିଲା ସବୁ ସମାନ । ମାଳ ମାଳ ହୋଇ ଟୋପି ଚାଲିଥାଏ, ଉପରେ ଘୋଡ଼ଣି, ମାଳ ମାଳ ମୁଣି,ସଙ୍ଗୀନ, ଲମ୍ବା ବନ୍ଧୁକ । ଟୋପି ତଳେ ତଳେ ଓସାର ଥୋମଣିବାଲା ମୁହଁସବୁ, ଗାଲ ପଶିଯାଇଛି, କ୍ଳାନ୍ତିରୁ ଅନ୍ୟମନସ୍କ-ଭାବ, ପୋଲର ପଟା ଉପରେ ଅଠାଳିଆ କାଦୁଅ ଲାଗିଛି, ତା ଉପରେ ଚାଲିଯାଉଛି ମାଳ ମାଳ ଗୋଡ଼ ବେଳେ ବେଳେ ଏକା ବର୍ଣ୍ଣର ସୈନ୍ୟମାନଙ୍କ ଧାର ଉପରେ ଏନ୍‌ସ୍ ନଈର ଢେଉମୁଣ୍ଡ ଉପରେ ଧଳା ଫେଣ ପରି ଗୋଟିଏ ଗୋଟିଏ ଅଫିସର ଲମ୍ବା କୋଟ ପିନ୍ଧି ଠେଲିପେଲି ମାଡ଼ି ଚାଲିଆସୁଥିଲେ, ସୈନ୍ୟମାନଙ୍କ ମୁହଁଠୁଁ ତାଙ୍କ ମୁହଁର ଚେହେରା ଭିନେ । ବେଳେ ବେଳେ ନଈ ପାଣିରେ ଖଣ୍ଡେ ଡାଙ୍ଗ ଘୂରିଘୂରି ଚାଲିଲାପରି ପୋଲ ଉପରେ ପଦାତିକମାନଙ୍କ ଢେଉ ଭିତରେ ଆସି ପଡ଼ୁଥିଲେ ଘୋଡ଼ାରୁ ଓହ୍ଲାଇ ପଡ଼ିଥିବା ଗୋଟିଏ ଗୋଟିଏ ଅଶ୍ୱାରୋହୀ ସୈନିକ, ନହେଲେ କେଉଁ ବୋଲକର୍, କି ସହରର ବାସିନ୍ଦା କେହି । ବେଳେ ବେଳେ ନଈରେ ଚିରକାଠ ଭାସିଚାଲିଲା ପରି ଚାରିଆଡ଼ୁ ଠେଲାଠେଲି ହୋଇ ସେହି ପୋଲ ଉପରେ ଚାଲିଥାଏ ଗୋଟାଏ କମ୍ପାନୀ ବା ଅଫିସରଙ୍କ ଗାଡ଼ି, ଖୁବ୍ ଉଞ୍ଚଯାକେ ଲଦା ହୋଇଥାଏ, ତା ଉପରେ ଚମଡ଼ା ଘୋଡ଼ଣି ।

କୋସାକ୍ ସୈନ୍ୟଟି ଆଶା ଛାଡ଼ିଦେଇ କହିଲା, "ଆରେ ବାପରେ ! ଏମାନେ ତ କଣ ନଈବନ୍ଧ ଭାଙ୍ଗିଗଲେ ଯେମିତି ସୁଅ ଛୁଟେ, ସେମିତି ଚାଲିଛନ୍ତି ! ଏପଟେ କଣ ଆହୁରି ମଣିଷ ଅଛନ୍ତି ?"

ଛୁଞ୍ଚା କୋଟ୍‌ପିନ୍ଧା ଜଣେ ହସ ହସ ସୈନିକ ଆଖିମିଟିକା ମାରି କହିଲା, "ଏକ ନିୟୁତ ଲୋକରୁ ଗୋଟିଏ ଊଣା —"

ସେ କୁଆଡ଼େ ସେଥିରେ ହଜିଗଲା, ଆଉ ଦିଶିଲା ନାହିଁ । ତାପରେ ଆସିଲା ଆଉ ଜଣେ, ତାର ବୟସ ଟିକିଏ ବେଶି ।

ସେହି ବୁଢ଼ା ସୈନିକ ତାର ସାଙ୍ଗୀ ଆଗରେ ମୁହଁ ଶୁଖେଇ କହିଲା, "ସେ (ଅର୍ଥାତ୍ ଶତ୍ରୁମାନେ) ଯଦି ଅଇଲେ ପୋଲ ଉପରେ ଆସି

ହାବୁଡ଼ିଯିବ, ତେବେ ଦେହ ସଲ ସଲ ହେଉଥିଲେ, ତୁମେ ତୁମ ଦେହକୁ କୁଣ୍ଡେଇବାକୁ ବି ପାସୋରିଯିବ ।"

ସେ ବି ଚାଲିଗଲା । ତା'ପରେ ଆସିଲା ଆଉ ଜଣେ, ସେ ମାଲଗାଡ଼ି ଉପରେ ବସିଥାଏ । ଗାଡ଼ି ପଛପଟେ ଜଣେ ସୈନିକ ଏଠି ସେଠି ହାତ ମାରି ମାରି ପାଟି କରି କରି ଧାଇଁଥାଏ । "ଗୋଡ଼ବନ୍ଧା ପଟିଗୁଡ଼ାକ କୋଉଠି ରଖିଲ ? ଆଚ୍ଛା ମୁଷ୍କିଲ୍ କଥା—" ସେ ବି ସେ ଗାଡ଼ି ସଙ୍ଗେ ସଙ୍ଗେ ଆଗକୁ ଚାଲିଗଲା ।

ତା'ପରେ ଆସିଲେ ଦଳେ ସୈନ୍ୟ ଯେ, ସେମାନେ ମଦପିଇ ଟରର୍ ହୋଇଥିଲେ, ତେଣୁ ସ୍ୱର ହୋ ହୋ କରି ଖୁସିମିଜାଜ୍‌ରେ କଥା କହୁଥିଲେ ।

ଜଣେ ସୈନିକ ବାହାଟାକୁ ଏମୁଣ୍ଡ ସେମୁଣ୍ଡ ହଲେଇ ହଲେଇ କହିଲା, "ଆଚ୍ଛା, ସେ ଜଣକ ବନ୍ଧୁକ ଲଞ୍ଜାକୁ ଟେକ ଧରି ଆରଜଣକ ଦାନ୍ତ ଉପରେ ଯେବେ ଦେଲା କି ନାହିଁ ?"

ଆରଜଣକ ହସିଦେଇ କହିଲା, "ସେଇଟା ଠିକ୍ ଖଣ୍ଡେ ସୁଆଦିଆ ମାଉଁସ ଭଜା ।"

ସେ ହେଲେ ବି ଚାଲିଗଲେ । ନେସ୍‌ଭିତ୍‌ସ୍କି ଜାଣିପାରିଲେ ନାହିଁ ଯେ କାହା ଦାନ୍ତ ଉପରେ ପାହାର ହିଆଗଲା ଆଉ ମାଉଁସ ଭଜାର ବା ତା' ସହିତ କଣ ସମ୍ବନ୍ଧ !

ଜଣେ ସାନ କର୍ମଚାରୀ ରାଗରେ ଶୋଧିଲା ଭଳି କହିଲେ, "ହଁ, ଅଇଚ୍ଛା ଯୋଉ ତରତର ଯେ କହିଲେ ନ ସରେ । ଶତ୍ରୁପକ୍ଷ ଥଣ୍ଡା ସୀସା ଖଣ୍ଡେ ଫୋପାଡ଼ିଦେଲା ବୋଲି ଏମାନେ ଭାବୁଚନ୍ତି ଯେ ପୂ' ସମସ୍ତେ ମରିଯିବେ ।"

ଜଣେ ଟୋକା ସୈନିକ ଆସିଲା, ତା ପାଟିର ହାଉଁ ମସ୍ତବଡ଼ । ସେ ନ ହସି ରହିପାରୁ ନ ଥାଏ । କହିଲା—,

"ଗୁଳିଟା ହୋ; ବୁଝିଲ ମାମୁଁ, ଗୁଳିଟା ମୋ ପାଖବାଟେ ସାଇଁକିନା ଉଡ଼ିଗଲା ଯେ ମୁଁ ତ ମୂକ ହୋଇଗଲି, ଆଉ କ'ଣ ! ଆରେ ବାପ୍‌ରେ ! ଯୋଉ ଡର ମାଡ଼ିଲା ଯେ ! ସତେ ଯୋଉ ଡର !" ସତେ କି ସେ ଡରିଲା ବୋଲି ବି ଗର୍ବ କରୁଥାଏ । ସେ ବି ଗଲା ଚାଲି ।

ସୈନ୍ୟମାନେ ପୂରପାଖକୁ ଅନାଇଁ ପୋଲ ସେମୁଣ୍ଡକୁ ଯିବେ ବୋଲି ଆଗକୁ ଆଗକୁ ଠେଲିପେଲି ହେଉଥିବେଳେ ସେହି ଗହଳି ଭିତରୁ ଏଠୁ ସେଠୁ ସେମାନେ କହୁଥିଲେ, "ହେଇ ଦେଖ, ଜଣେ କର୍ମଚାରୀ ବି ଭିଡ଼ ଭିତରେ ଅଟକି ଯାଇଛନ୍ତି।" ପୋଲ ତଳେ ଏନସ୍ ନଦୀର ପାଣିକି ଅନାଇଁ ନେସ୍‌ଭିଟସ୍କି ଏକ ନୂଆ ଶବ୍ଦ ଶୁଣିଲେ। ସତେ ଯେମିତି କିଛି ଗୋଟାଏ ଚଞ୍ଚଳ ଚଞ୍ଚଳ ପାଖକୁ ମାଡ଼ିଆସୁଛି ତା ପରେ ପାଣିରେ ଛଳ୍ କରି କିଛି ବଡ଼ ଜିନିଷଟାଏ ପଡ଼ିଲା ଭଳି ଶବ୍ଦ ଶୁଭିଲା।

ସେହି ଶବ୍ଦ ଶୁଣି ଜଣେ ସୈନିକ ବୁଲିପଡ଼ି ଅନାଇଲା। ସେ ସେହି ପାଖରେ ଠିଆ ହୋଇଥିଲା। ଗମ୍ଭୀର ହୋଇ କହିଲା, "ଦେଖ, କେତେ ପାଖିକେ ଆସିଲାଣି!"

ଆଉ ଜଣେ ଉଦ୍‌ବିଗ୍ନ ହୋଇ କହିଲା, "ଆମକୁ ଜଲ୍‌ଦି ଜଲ୍‌ଦି ଯିବାକୁ ସେ ଆମକୁ ଜାଣି ଉତ୍ସାହ ଦେଉଛି!"

ନେସ୍‌ଭିଟସ୍କି ବୁଝିଲେ ଯେ ଯେଉଁଟା ପାଣିରେ ପଡ଼ିଲା ସେଇଟା ଗୋଟାଏ ତୋପର ଗୁଳି।

"ହେଇ କୋସାକ୍, ମୋ ଘୋଡ଼ାଟାକୁ ଦେଲ", ସେ କହିଲେ, ପାଟିକଲେ, "ହେଇଓ, ହଟୋ ହଟୋ, ବାଟ ଛାଡ଼, ବାଟ ଛାଡ଼।"

ପ୍ରବଳ ପରିଶ୍ରମ କରି ସେ କୌଣସିମତେ ତାଙ୍କ ଘୋଡ଼ା ପାଖରେ ପହଞ୍ଚିଲେ। ଅନବରତ ପାଟି କରି କରି ସେ ଆଗକୁ ମାଡ଼ିଲେ। ସୈନ୍ୟମାନେ ତାଙ୍କୁ ବାଟ ଦେବେ ବୋଲି ଏକାଠି ଚପିଚୁପି ହୋଇଗଲେ। ପୁଣି ସେମାନେ ତାଙ୍କୁ ଠେଲି ପକାଇଲେ, ତାଙ୍କ ଗୋଡ଼କୁ ଚପି ପକାଇଲେ, ଯେ ତାଙ୍କ ପାଖରେ ଥିଲେ ତାଙ୍କର ବି ଦୋଷ ନାହିଁ, କାରଣ ତାଙ୍କ ପଛରେ ଯେଉଁମାନେ ଥିଲେ ସେ ତାଙ୍କୁ ପଛରୁ ଠେଲୁଥାନ୍ତି।

ଠିକ୍ ସେତିକିବେଳେ ପଛଆଡ଼ୁ କେହି ଜଣେ ଓଦା ଗଳାରେ ପାଟିକରି ଡାକିଲା, "ନେସ୍‌ଭିଟସ୍କି, ହୋ ନେସ୍‌ଭିଟସ୍କି, ହୋ ସଙ୍ଗାତ—"

ନେସ୍‌ଭିଟସ୍କି ବୁଲିପଡ଼ିଲେ। ଦେଖିଲେ ଯେ ପନ୍ଦର ପାହୁଣ୍ଡ ଦୂରରେ ଦିଶୁଛି ଭାସ୍କା ଦେନିସଭ୍‌ର ମୁହଁ, ତାର କଳା କଳା ଆଖି, ଓହଳି ପଡ଼ିଲା ପରି ଗାଲ, ମୁଣ୍ଡ ପଛଆଡ଼େ ଟୋପିଟା ବସିଛି। କାନ୍ଧ ଉପରୁ ଝୁଲୁଛି ଗୋଟାଏ ମୁଣି। ମଝିରେ ମାଡ଼ି ଚାଲିଥିବା ପଦାତିକ

ସୈନ୍ୟଙ୍କ ଚଳନ୍ତା ଗହଳ, ତା ଏକରେ ମେ, ଆଉ ସେକରେ ଭାସ୍କା ଡେନିସଭ ।

ଘୋଡ଼ସବାର ପଉଜ ଦଳ ଭିତରେ କ୍ୟାପଟେନ୍ ଡେନିସଭ୍‌କୁ ଲୋକେ ଜାଣନ୍ତି ଭାସ୍କା ବୋଲି । ପାଭ୍‌ଲୋଗ୍ରାଡ୍‌ସ୍କି ଘୋଡ଼ସବାର ଦଳର ସେ ଦଳପତି । ସେହି ଦଳରେ ନିକୋଲାଇ ରେସ୍ତଭ୍ ମଧ୍ୟ ଜଣେ ସାନ କର୍ମଚାରୀ

ଡେନିସଭ୍ ଖୁବ୍ ଉତ୍ତେଜିତ ଥିବାର ଜଣାପଡ଼ୁଥିଲା । ସେ ରଡ଼ି ଛାଡ଼ିଲା, "ସଇତାନ୍ ବଦ୍‌ମାସଗୁଡ଼ାକ, କହ ତାଙ୍କୁ ସେ ବାଟ ଛାଡ଼ିଦେବେ ।" ସେ ତା ଆଖିଡ଼ୋଳା ବୁଲାଇଲା, କୋଇଲା ପରି କଳା ଆଖି ଡୋଳାଗୁଡ଼ାକରୁ ତେଜ ବାହାରୁଥିଲା । ଆଖିର ଧଳା ଅଂଶରେ ରକ୍ତ ଚଢ଼ି ନାଲି ଦିଶୁଥିଲା । ତା ଖାଲି ହାତ ତାଙ୍କ ମୁହଁ ପରି ନାଲି ଦିଶୁଥିଲା । ଖାଲି ହାତରେ ସେ ଗୋଟାଏ ଖଣ୍ଡା ଧରିଥିଲା ଯେ ସେ ଖଣ୍ଡା ତା ଖୋଲରେ ପଶିଥିଲା ।

ନେସ୍‌ଭିତ୍‌ସ୍କି ଖୁସିରେ ପାଟିକଲେ, 'ହେଇ ଭାସ୍କା, ତୁମେ କୁଆଡ଼େ ବୁଲୁଛ ?"

ଭାସ୍କ ଡେନିସଭ୍ ହିଂସ୍ରକ ଭଙ୍ଗୀରେ ତା' ଦାନ୍ତଗୁଡ଼ାକ ଦେଖାଇ କହିଲା, "ଏମିତି ହେଲେ ସୈନ୍ୟବାହିନୀ ଆଗେଇ ପାରିବନାହିଁ ।" ତା'ର କଳାଘୋଡ଼ାକୁ ସେ ଆଗକୁ ଅଡ଼େଇଲା, ତା' ନାଁ ବେଦୁଇନ୍ । ଯେତେବେଳେ ସୈନ୍ୟମାନଙ୍କ ଗର୍ଜନ ବାଜିଯାଇ ଦେହ ଫୋଡ଼ି ହୋଇଯାଉଥିଲା, ଘୋଡ଼ାଟା କାନ ଠିଆ କରୁଥିଲା, ସଁ ସଁ ହେଉଥିଲା, ପାଟିବାଟେ ଫେଣ ବାହାର କରୁଥିଲା । ପୋଲ ଉପର ପଟାମାନଙ୍କ ଉପରେ ତାର ପାଦ ଏକପ୍ରକାର ଲୁହାଳିଆ ଶବ୍ଦ କରୁଥିଲା । ଲାଗୁଥିଲା ଯେ ଯଦି ତା ସବାର ତାକୁ ଛାଡ଼ି ଦିଅନ୍ତା, ତେବେ ସେ ବାଡ଼ ଉପରେ ଡେଇଁ ପଡ଼ନ୍ତା ।

ସେ ତା' ଖଣ୍ଡାଟାକୁ ଖାପରୁ ଓଟାରି ନେଇ ଖଣ୍ଡା ବୁଲେଇ ବୁଲେଇ ରଡ଼ି ଛାଡ଼ିଲା "ଯୁମଟରେ କଣ କରିବ ? ହଇ ହୋ ? ଖାଲି ମେଣ୍ଢାପଲ ପରି ଧାଇଁ ପଳେଉଛ ! ଏଁ ! ଛୁଞ୍ଚା ମେଣ୍ଢାଗୁଡ଼ାକ ! ପଛକୁ ଯାଅ, ପଛକୁ ଯାଅ, ବାଟ ଛାଡ଼ । ଯାଉ ଏ ଗାଡ଼ି ଚାଲକ ଯାଉ ! ଫେରି ଆଗକୁ ଆସିଲେ ଏ ଖଣ୍ଡାରେ ହାଣି ପକେଇବି ଜାଣିଥା—"।

ସୈନ୍ୟମାନଙ୍କ ମୁହଁ ଉପରେ କଳା ପଡ଼ିଗଲା, ସେମାନେ ଏକାଠି ଲଗି ଲଗି ହୋଇ ମେଞ୍ଚାମାଞ୍ଚି ହୋଇଗଲେ, ଦେନସଭ୍ ବାଟ ପାଇ ନେସ୍‌ଭିତ୍‌ସ୍କି ପାଖରେ ପହଞ୍ଚିଲା ।

ସେ ଆସିଲାରୁ ନେସଭିତ୍‌ସ୍କି ପଚାରିଲେ, "ଏ କେମିତି କଥା, ତୁମେ ଆଜ ନିଶା ପିଇ ମାତି ନା ?"

ଉତ୍ତରେ ଦେନସଭ୍ କହିଲା, "ମଦ ଟିକିଏ ପିଇବାକୁ ହେଲେ କଣ ସେମାନେ ଫୁରସତ ଦେଉଛନ୍ତି ? ସେମାନେ ସାରା ସୈନ୍ୟ ଦଳଟାକୁ ଏ ପାଖରୁ ସେପାଖ କରି ଦିନସାରା ସବୁ ଘୋଷାରି ଲଗିଛନ୍ତି । ଲଢେଇ କାମ ଗାଳି ଭଲ ସିନା, ଇଏ ଘୋଷରାଟା କଣ ସେଇଟା କିଏ ଜାଣିବ ?"

ତା' ଘୋଡ଼ା ଜିନ୍ ଉପରେ ଯେଉଁ ଆସନ ପଡ଼ିହୋଇଥିଲା, ସେଇଟା ଜନ୍ତୁ ଲୋମରେ ତିଆରି, ତା' କାନ୍ଧରୁ ଓହଳିଥିବା ମୁଣି ଅରଖ ନୂଆ । ସେଇଆକୁ ଦେଖି ନେସ୍‌ଭିତ୍‌ସ୍କି କହିଲେ, "ଆଜି କେଉଁ ଟନ୍‌ଛନ୍ ଦିଶୁଛ ତୁମେ !"

ଦେନସଭ୍ ହସିଲା । ଖଣ୍ଡା ଖୋଳ ଭିତରୁ ଗୋଟାଏ ରୁମାଲ ଟେକି ଆଣି ନେସ୍‌ଭିତ୍‌ସ୍କିଙ୍କ ନାକପାଖେ ବଢ଼ାଇ ଦେଲା, ସେ ରୁମାଲରୁ ଅତର ବାସ୍ନା ହେଉଥିଲା ।

"ନିଷ୍ପତ୍ତି" ନିଷ୍ପତ୍ତି" ସେ କହିଲା, "ମୁଁ ଲଢ଼େଇକି ଯାଉଚି ମରି ! ସେଇଥିପାଇଁ ମୁଁ ଖିଅର ହୋଇଛି, ଦାନ୍ତକୁ ସଫା କରିଚି ଆଉ ଦେହସାକ ଅତର ବୋଳିଚି ।"

ନେସ୍‌ଭିତ୍‌ସ୍କିର ପ୍ରକାଣ୍ଡ ଚେହେରା, ତାଙ୍କ ସାଙ୍ଗକୁ ତାଙ୍କ କୋସାକ୍ ଅଙ୍ଗରକ୍ଷୀ, ତା ସଙ୍ଗକୁ ମିଶିଗଲା ଦେନସଭଙ୍କ ଖ୍ୟାମଖିଆଲି, ସେ ଉତ୍ତ୍ୟକ୍ତ ହୋଇ ଚିତ୍କାର କରୁଥାନ୍ତି, ଖଣ୍ଡା ବୁଲାଉଥାନ୍ତି । ତହିଁରେ ଏଭଳି ଫଳ ହେଲା ଯେ ପଦାତିକ ସୈନ୍ୟମାନେ ଅଟକିଗଲେ, ଆଉ ଏ ଦୁହେଁ ପୋଲ ଆରମୁଣ୍ଡକୁ ଗୃଳିଗଲେ । ପୋଲ ମୁଣ୍ଡରେ ଆଉ ଦଳପତି ଥିଲେ, ଯାହାଙ୍କ ପାଖକୁ ସେନାପତିଙ୍କ ଆଦେଶ ଦେଇଦେବାକୁ ନେସ୍‌ଭିତ୍‌ସ୍କି ଯାଇଥିଲେ । କାମ ସାରି ଘୋଡ଼ାଚଢ଼ି ପୁଣି ସେ ଲେଉଟି ଆସିଲେ ।

ପଦାତିକ ଦଳର ଆଉ ଯେତେ ଥିଲେ, ସେମାନେ ସମସ୍ତେ ପୋଲ ମୁହଁରେ ଠାକସୂକ ହେଲେ, ଏକାଠି ଗୋଲହୋଇ ରହି ପୋଲ ଭିତରକୁ

ଅସ୍ଟ୍ରେଇଆନ୍ତ ଆଜ ତରତର ହୋଇ ପୋଲ ଉପରେ ଚାଲିଯାଉଥାନ୍ତି । ଶେଷରେ ସବୁଯାକ ମାଲବୁହା ଗାଡ଼ି ଚାଲିଗଲା, ଭିଡ଼ ପାତଳ ହୋଇଗଲା, ଶେଷରେ ସୈନ୍ୟଦଳଟି ପୋଲ ଉପରକୁ ମାଡ଼ୁଥାନ୍ତି । କେବଳ ଦେନିସଭଙ୍କ ଦଳର ଘୋଡ଼ସୱାର ସୈନ୍ୟମାନେହିଁ ନଈ ଆରପାଖରେ ଶତ୍ରୁପକ୍ଷର ମୁହାଁମୁହିଁ ହୋଇ ଅଟକି ରହିଥାନ୍ତି । ଆରକର ପର୍ବତ ଉପରୁ ଶତ୍ରୁପକ୍ଷ ଦୂରରୁ ଦିଶୁଥାନ୍ତି ସିନା, ଏପର୍ଯ୍ୟନ୍ତ ତଳେ ପୋଲ ଉପରୁ ସେମାନେ ଦିଶା ପଡ଼ୁନଥାନ୍ତି । ଯେଉଁ ଉପତ୍ୟକା ଉପରେ ଦେଇ ନଈ ବୋହି ଯାଉଥାଏ, ସେଠୁ ବି ଦିଶୁ ନଥାନ୍ତି । ହଗବଲଯ୍ଟ୍ର ବାଡ଼ ପରି ପ୍ରାୟ ଅଧମାଇଲ ଦୂରରେ ମୁଣ୍ଡ ଟେକିଥାଏ ଗୋଟାଏ ଟିପ ଜମି । ସାମ୍ନାରେ ବଛେଇ ହୋଇଥାଏ ଖାଲି ଗୋଟାଏ ଚଟା ଜାଗା, ତହିଁରେ ଏଠି ସେଠି ହୋଇ ଦିଶୁଥାନ୍ତି ମୁଠାଏ ଲେଖାଁ ରୁଷ୍ ପଟର କୋସାକ୍ ଉଗର ।

ହଠାତ୍ ଆଗପଟ ଟିପ ଉପରେ ଯେଉଁଠି ରାସ୍ତାଟା ଦିଶୁଥାଏ, ସେଠି ଆଖିରେ ପଡ଼ିଲେ ନେଳି ପୋଷାକପିନ୍ଧା ସୈନ୍ୟଦଳ ଦଳ, ତାଙ୍କ ପଛେ ପଛେ ତୋପ ବନ୍ଧୁକମାନ । ସେମାନେ ଫରାସୀ ସୈନ୍ୟ । ଏକ କୋସାକ ଉଗର ଦଳ ଘୋଡ଼ାକୁ କଦମ ଛୁଟାଇ ପାହାଡ଼ କରିବାଟେ ତଳକୁ ଧାଇଁ ପଳାଇଲେ । ଦେନିସଭର ସୈନ୍ୟବାହିନୀର କର୍ମଚାରୀମାନେ ଓ ସୈନ୍ୟମାନେ ଅନ୍ୟ କଥା ପକାଇବାକୁ ଚେଷ୍ଟା କରୁଥିଲେ ଓ ଅନ୍ୟ-ଆଡ଼େ ଅନାଇଁବାକୁ ଚେଷ୍ଟା କରୁଥିଲେ ସୁଦ୍ଧା ସେହି ପାହାଡ଼ ଡାଲୁରେ ଯାହା ଯେତେବେଳେ ଥାଏ, ସେମାନେ ସବୁବେଳେ ଖାଲି ତାହାର କଥା ଭାବୁଥାନ୍ତି, ଅନ୍ୟକଥା ଭାବୁ ନ ଥାନ୍ତି । ହଗ୍‌ବଲଯ୍ଟ୍ର ଉପରେ ଯେଉଁ କଳା କଳା ମଧାଁ ସବୁ ଆସି ପହଞ୍ଚୁଥିଲା, ଯାହା ଶତ୍ରୁ ପକ୍ଷର ସୈନ୍ୟଦଳର ବଳ ବୋଲି ସେମାନେ ଚିହ୍ନି ପାରୁଥିଲେ, ସେହି ଆଡ଼କୁ ସେମାନେ ବାରମ୍ବାର ଅନାଉଁଥିଲେ । ଦ୍ୱିପ୍ରହର ଉତ୍ତାରୁ ପାଗ ସଫା ହୋଇଯାଇଥିଲା । ସୂର୍ଯ୍ୟ ଯେତେବେଳେ ଦାନ୍ୟୁବ୍ ନଈ ଉପରେ ଆଉ ସେ ନଈକୁ ଘେରି ରହିଥିବା ପାହାଡ଼ମାନଙ୍କ ଉପରବାଟେ ତଳକୁ ଖସୁଥିଲେ, ସେତେବେଳେ ଟାଇଁଟାଇଁ ଖରା ପଡ଼ୁଥିଲା । ପବନ ଥମ୍ଭିଥିଲା । ବେଳେ ବେଳେ ପାହାଡ଼ ସେକରୁ ଶତ୍ରୁପକ୍ଷର ତୂରୀଶବ୍ଦ, ଆଉ କୁହାଟ ଶବ୍ଦ ଭାସି ଆସୁଥିଲା । ଦେନିସଭଙ୍କ ସୈନ୍ୟବାହିନୀ, ଆଉ ଶତ୍ରୁପକ୍ଷ, ଏ ଦୁଇପ ମଝିରେ ଖାଲି କେଇଟା ଉଗରଦଳ ଛଡ଼ା ଆଉ କିଛି ନଥିଲା । ମଝିରେ କେବଳ ଏକ ଧାଙ୍ଗା

ପଡ଼ିଆ, ବାରଣ ହାତ ଓସାର ହେବ । ଶତ୍ରୁପକ୍ଷ ଆଉ ଗୁଳି ଫୁଟାଉ ନଥିଲେ । ଦୁଇପକ୍ଷ ମଝିରେ ଯେଉଁ ଅପହଞ୍ଚ ସନ୍ଧିଭୂଇଁ ଥିଲା, ଯାହାକୁ ଆକ୍ରମଣ ବି କରି ହୁଏନାହିଁ, ଶତ୍ରୁପକ୍ଷରୁ ଗୁଳି ନ ଫୁଟି ଭୂନଭାବ ପଡ଼ିବାରୁ ସେହି ସନ୍ଧିଭୂଇଁରେ ଗମ୍ଭୀର ଆତଙ୍କ ଆହୁରି ତୀବ୍ରଭାବେ ଅନୁଭୂତ ହେଉଥିଲା ।

ଶତ୍ରୁପକ୍ଷକୁ ଦେଖି ପକାଇଲେ ପ୍ରତ୍ୟେକ ଲୋକ ମନ ଭିତରେ କିଛି ଆଲୋଚନା ନ କଲେ ବି ଆପଣା ଆପେ ଏହିପରି ଅନୁଭବ କରୁଥାଏ,

"ହେଲ ସେଇ ସନ୍ଧି ଗାର ସେକରକୁ ପାହୁଣ୍ଡେ ଯାଅ, ସେହି ଗାର ଜୀଅନ୍ତା ଆଉ ମଲା ମଣିଷଙ୍କ ମଝିରେ ବ୍ୟବଧାନ, ସେହି ଗାର ସେକରେ ଅଛି ଯେତେ ଅଜଣା ଯନ୍ତ୍ରଣା ଆଉ ମୃତ୍ୟୁ । କଣ ଅଛି ସେପାଖେ ? କିଏ ଅଛି ସେଠି ? କିଏ ଅଛି ହେଇ ସେ ପଡ଼ିଆ ସେକରେ ? ସେଇ ଗଛ ଆରକରେ ? ଆଉ ସେହି ଘର ଗ୍ଭତମାନଙ୍କ ଉହାଡ଼ରେ, ହେଇ ଯେଉଁ ଘର ଛାତ ଉପରେ ଖରା ପଡ଼ୁଛି ? କ'ଣ ଅଛି ସେଠ ଜାଣିବାକୁ ମଣିଷର ଭାରି ଇଚ୍ଛା ହେଉଛି, ଏଣେ ଡର ମାଡ଼ୁଛି । ମଣିଷ ଜାଣିଛି ଯେ ଯେତେବେଳେ ହେଉ ପଛେ ସେ ଗାର ଟପିବାକୁ ହିଁ ପଡ଼ିବ, ଗାର ସେପଟେ କଣ ଅଛି ଜାଣିବାକୁ ହିଁ ପଡ଼ିବ, ଯେପରି କି ମରଣ ସେପଟେ କଣ ଅଛି ମଣିଷ ତାକୁ ଜାଣିବାକୁ ହିଁ ପଡ଼ିବ, ସେହିପରି । ଅଥଚ ମଣିଷ ଅଇଗ୍ଭ କେଡ଼େ ବଳୁଆ ହୋଇ ଅଛି, କେଡ଼େ ଭଲ ଅଛି, ଖୁସି ଅଛି, ସ୍ନାୟବିକ ଉତ୍ତେଜନାରେ ତେଜ ହୋଇ ରହିଛି. ମଣିଷର ଗ୍ଭରି ପାଖେ ସେମିତି ବଳୁଆ ଲୋକେ ବେଢ଼ି ରହିଛନ୍ତି ।"

ସେହି ଘଡ଼ିରେ ଯାହା ଯେଉଁଠି ଘଟିଯାଏ, ଲୋକ ଯେତେବେଳେ ସେ ବିଷୟରେ ଧାରଣା କରେ, ଏହି ଅନୁଭୂତି ସେ ଧାରଣାକୁ ଏକ ବିଶିଷ୍ଟ ପ୍ରକାରେ ଉଜ୍ଜ୍ୱଳ କରେ, ସେଥିରେ ଲଗାଏ ତୀକ୍ଷ୍ଣ ଆନନ୍ଦ ।

ଦେନିସଭ ଗର୍ଜନ କଲା, "କ'ଣ ସେମାନେ କରିବେ ବୋଲି ବସିଚନ୍ତି କେଜାଣି ! ଆରେ ! ରୋଷ୍ଟଭ !" ରୋଷ୍ଟଭର ହସ ହସ ମୁହଁକୁ ଦେଖି ସେ ପାଟି କଲା, 'ରହ, ବେଶି ସମୟ ଅପେକ୍ଷା କରିବାକୁ ପଡ଼ିବ ନାହିଁ ଯେ ।" ରୋଷ୍ଟଭକୁ ଦେଖି ଅତି ଖୁସି ହୋଇ ପ୍ରଶଂସା କଲା ପରି ସେ ହସିଦେଲା । ରୋଷ୍ଟଭକୁ ଅତି ଆନନ୍ଦ ଲାଗିଲା । ସେତିକିବେଳେ ପୋଲ ଉପରେ ପହଞ୍ଚିଲେ ଦଳପତି । ଦେନିସଭ୍ ଘୋଡ଼ା ଛୁଟାଇ ତାଙ୍କ ପାଖକୁ ଯାଇ କହିଲା,—

"ହଜୁର, ହୁକୁମ୍ ଦିଅନ୍ତୁ ଆମ ତରଫରୁଁ ଚଡ଼ାଉ କରିବା, ଏ ଅଇରଙ୍କି ନପାତ କରିଦେବା—"

ଦଳପତି ମୁହଁକୁ କୁଞ୍ଚୁ କୁଞ୍ଚୁ କରିଦେଲେ, ଗୋଟାଏ ମାଛି ମଣିଷକୁ ବିରକ୍ତ କଲେ ମୁହଁଟା ଯେମିତି ଦିଶେ, ତାଙ୍କ ମୁହଁ ସେମିତି ଦିଶିଲା । ବିରକ୍ତ ସ୍ୱରରେ ସେ କହିଲେ,

"ଚଡ଼ାଉ ନୁହେଁ ତ ଆଉ କଣ ! କାହିଁକି ଆପଣ ଏଠିଟାରେ ଅଟକି ରହିଛନ୍ତି କହିଲେ ? ଦେଖୁଛନ୍ତି ଆମ ସୈନ୍ୟମାନେ କରିରୁ କରିରୁ ପଛକୁ ହଟୁଛନ୍ତି । ପେର ରହିଁଛନ୍ତି କଣ ? ଯାଉନ୍ତୁ ଆପଣଙ୍କ ଦଳଙ୍କୁ ପଛକୁ ନେଇ ଚାଲିଯାଉନ୍ତୁ ।"

ଆଗର ବାହିନୀ ପୋଲ ପାରି ହୋଇ ଶତ୍ରୁପକ୍ଷ ତୋପମାନଙ୍କ ଗୁଳିଠୁଁ ଅପହଞ୍ଚ ଦୂରତାକୁ ଚାଲିଗଲା, ଜଣେ କେହି ମଲେନାହିଁ । ତା ପଛେ ପଛେ ଚଲି ଦିଗ୍‌ଭିସ୍ ବାହିନୀ, ଶେଷରେ ଗଲେ କୋସାକ୍ ଫଉଜ । ନଈ ଆରପଟ ସଫା ହୋଇଗଲା ।

ପାଭ୍‌ଲୋଗ୍ରାଡ଼ ଦଳର ଯୋଡ଼କ ଯାକ ଶାଖା ପୋଲ୍ ପାରି ହୋଇ ଦରେ ଗୋଟାଏ ଦଳ ପଛରେ ଆଉ ଗୋଟାଏ ଦଳ ହୋଇ ପାହାଡ଼ ଉପରକୁ ଉଠେକୁ ଘୋଡ଼ା ଛୁଟାଇ ଉଠି ଚାଲିଗଲେ । ତାର ଦଳପତିଙ୍କ ନାଁ କାର୍ଲ୍ ବୋଗ୍‌ଡାନିଚ୍ ସୁବାର୍ଟ୍ । ସେ ଡେନିସଭର ବାହିନରେ ନିଟିଯାନ୍ତୀ ସେ ଦେସ୍ତ୍ରଭଟ୍ ଅଳ୍ପ ଗୁଡ଼ ମଣିଷ ଗୁଳିଲା ପରି ଆସ୍ତେ ଆସ୍ତେ ଘୋଡ଼ା ଚଳାଉଥାନ୍ତି ।

ପଛ ବାହିନୀର ସେନାପତିଙ୍କ ପାରୁ ଏକ ଆଦେଶନାମା ନେଇ ଡେଙ୍ଗା କାନ୍ଧ ଜେରକଭ୍ ଘୋଡ଼ା ଛୁଟାଇ ତାଙ୍କର ବୁଢ଼ା ଦଳପତିଙ୍କ ପାଖରେ ପହଞ୍ଚିଗଲେ । ଜେରକଭଙ୍କୁ ପାଭ୍‌ଲଗ୍ରାଡ୍ ଘୋଡ଼ସବାର ଫୌଜ୍ ଆଗରୁ ଚିହ୍ନିଥିଲେ, କାରଣ ଜେରକଭ୍ ଆଗେ ତାଙ୍କରି ଦଳରେ ଥିଲେ, ସେ ଦଳ ଛାଡ଼ି ଯିବାର ତାଙ୍କର ବେଶି ଦିନ ହୋଇ ନଥାଏ ।

ମୁହଁ ଶୁଖେଇ ଗମ୍ଭୀରହୋଇ ସର୍ଦ୍ଦାର ଜେରକଭ୍ କହିଲେ, "ଦଳପତି, ହୁକୁମ୍ ଅଛି ଫେର ପଛକୁ ଲେଉଟି ଯାଇ ପୋଲରେ ନିଆଁ ଲଗାଇ ଦେବାକୁ ହେବ ।" କଠୋର ହୋଇ ଦଳପତି କହିଲେ, "ହୁକୁମ୍ ? କାହାକୁ ହୁକୁମ୍ ?"

ସର୍ଦ୍ଦାର ଜେର୍କଭ୍ ଗମ୍ଭୀର ହୋଇ କହିଲେ,

"କାହାକୁ ଏ ହୁକୁମ ସେ କଥା ତ ମୁଁ କହିପାରିବ ନାହିଁ ଆଜ୍ଞା ଦଳପତି ! କେବଳ ମତେ ପ୍ରିନ୍ସ୍ ହୁକୁମ୍ ଦେଲେ, କହିଲେ ଘୋଡ଼ା ଚଢ଼ି ଯାଇ ଦଳପତିଙ୍କୁ କହିଆସ ଯେ ଘୋଡ଼ସବାର ସୈନ୍ୟମାନେ ଜଙ୍ଗଲ ପଛକୁ ଫେରିଆସିବେ ଆଉ ପୋଲକୁ ପୋଡ଼ିଦେବେ ।"

ଜେର୍କଭ୍ଙ୍କ ପଛେ ପଛେ ଘୋଡ଼ାଚଢ଼ି ଆସିଲେ ଆଉ ଜଣେ କର୍ମଚାରୀ, ସେ ସେନାପତିଙ୍କ ଗହଣରେ ରହିବା ଦଳରୁ ଜଣେ, ସେ ବି ସେହି ଆଦେଶ କହିଦେଲେ । ତା' ପରେ ଢଳିଲା କେ·ସାକ୍ ଘୋଡ଼ା ଚଢ଼ି ନେସ୍ଭିଟ୍ସ୍କିଙ୍କ ପ୍ରକାଣ୍ଡ ଶରୀର, ଘୋଡ଼ାଟାର କେଉଁଠି ଅଖଞ୍ଜା ହୋଇ ଯାଇଥିଲା ।

ଦଳପତିଙ୍କ ଆଡ଼କୁ ଧାଇଁ ଧାଇଁ ନେସ୍ଭିଟ୍ସ୍କି ବଡ଼ପାଟିରେ କହିଲେ, "କଣ ହେଲା ଦଳପତି; ମୁଁ ପରା ଆପଣଙ୍କୁ କହିଲି ପୋଲଟାକୁ ଜାଳିଦେବାକୁ ! ଏବେ ଦେଖନ୍ତୁ କଏ ତାକୁ ଓଲଟା ବୁଝିଲା ସେ ହେଇ ସେଠି ସବୁ ଗୋଳମାଳିଆ ଅବାଗିଆ ହୋଇଗଲାଣି, କଣ ହଉଛି କିଛି ବାରି ହେଉନାହିଁ ।"

ଦଳପତି ଧୀରେ ସୁସ୍ଥେ ତାଙ୍କ ଦଳକୁ ଅଟକାଇଲେ । ନେସ୍ଭିଟ୍ସ୍କିଙ୍କ ଆଡ଼କୁ ବୁଲିପଡ଼ି ସେ କହିଲେ,

"ଆପଣ ମତେ କହିଥିଲେ ନିଆଁ ଲଗାଇବା ସାମଗ୍ରୀ ଆଣିବାପାଇଁ, ପୋଲରେ ନିଆଁ ଲଗାଇବା କଥା ଆଦୌ କହି ନ ଥିଲେ ।"

ନେସ୍ଭିଟ୍ସ୍କି ଅଟକିଗଲେ । ମୁଣ୍ଡରୁ ଟୋପି ଖୋଲି ତାଙ୍କର ମୋଟା ହାତରେ ମୁଣ୍ଡବାଳ ଉପରେ ସାଉଁଳି ଆଣିଲେ, ମୁଣ୍ଡବାଳ ଝାଳରେ ଜୁଡ଼ୁବୁଡ଼ୁ ହୋଇଥିଲା । ସେ କହିଲେ,

"ଆରେ ବାବୁ, ପୋଲରେ ନିଆଁ ଲଗାଇବା ଜିନିଷ ଆଣି ଖଞ୍ଜ ବୋଲି କହିଲେ କ'ଣ ହେଲାନାହିଁ, 'ନିଆଁ ଲଗା' ବୋଲି କହିବାର ଆଉ କ'ଣ ଦରକାର ଥିଲା ?"

"ମତେ, 'ଆରେ ବାବୁ' ବୋଲି କହନ୍ତୁ ନାହିଁ ମହାଶୟ । ଉପ-ସେନାପତି, ପୋଲରେ ନିଆଁ ଲଗାଇବାକୁ ମତେ ଆପଣ କେବେ କହିନାହାନ୍ତି । ମୋ କର୍ତ୍ତବ୍ୟ ମୁଁ ବୁଝେଁ, ଆଉ ହୁକୁମ ଯେମିତିକ ସେମିତି ପାଳି କାମକରିବା ମୋର ସ୍ୱଭାବ । ଆପଣ କହିଥିଲେ ଯେ ପୋଲରେ

ନିଆଁ ଲଗାଇ ଦିଆହେବ, କିନ୍ତୁ କିଏ ଲଗେଇବ, ସେ କଥା ମତେ ଜଣା ନ ଥିଲା ।"

ସେନାପତିଙ୍କ ଗହଣରୁ ଆସିଥିବା କର୍ମଚାରୀ ଉପରେ ପଡ଼ି କହିଲେ, "ଦଳପତି ! ଖୁବ ତରତରରେ କାମ ଶେଷକରିବା ଦରକାର ପଡ଼ିଲାଣି, ନ ହେଲେ ଶତ୍ରୁପକ୍ଷ ତାଙ୍କର ଗୁଳିବୃଷ୍ଟି କରିବା ତୋପଗୁଡ଼ାକୁ ଆହୁରି ପାଖକୁ ଘୁଞ୍ଚେଇ ଆଣିବେ ।"

ଦଳପତି ପାଟି ନ ଫିଟାଇ ସେହି କର୍ମଚାରୀଙ୍କ ମୋଟା ନେସ୍‌ଭିଟସ୍କିଙ୍କୁ ଆଉ ଜେରକ୍ଷ୍ଟିଙ୍କୁ ଅନାଇଗଲେ, ମୁହଁ ଭ୍ରୁକୁଟି କଲେ । ଗମ୍ଭୀର ହୋଇ କହିଲେ,

"ମୁଁ ପୋଲକୁ ପୋଡ଼ିଦେବି ।"

ସତେ ଯେପରି କି ସେ ଜଣାଇଦେଲେ ଯେ ସେମାନେ ତାଙ୍କୁ ବିରକ୍ତ କରିବା ପାଇଁ ଯାହା ପଛେ କରନ୍ତୁ, ତାଙ୍କର ଯାହା କର୍ତ୍ତବ୍ୟ ସେ ତା ନିଶ୍ଚୟ କରିବେ ।

ତାଙ୍କ ଘୋଡ଼ା ପିଠିରେ ଡେଙ୍ଗା ଗୋଡ଼ ଦି'ଟାକୁ ବାଡ଼େଇଲେ, ସତେ ଯେପରି ଏସବୁ ପାଇଁ ଘୋଡ଼ାଟାର ହିଁ ସବୁ ଦୋଷ । ଦଳପତି ଆଗକୁ ଚାଲିଯାଇ ଦ୍ୱିତୀୟ ଦଳକୁ ହୁକୁମ ଦେଲେ ପଛକୁ ବୁଲିପଡ଼ି ପୋଲ ପାଖକୁ ଯିବାକୁ । ସେ ଦଳର ଅଧିନାୟକ ଥିଲେ ଡେନିସଭ, ସେ ଦଳରେ ଥିଲା ରୋଷ୍ଟଭ୍ ।

'ସେ ମତେ ପରୀକ୍ଷା କରିବାକୁ ବସିଛନ୍ତି" ରୋଷ୍ଟଭ ଭାବିଲା । ତା'ର ହୃତ୍‌ପିଣ୍ଡ ଥରି ଉଠିଲା ତା'ର ମୁହଁକୁ ରକ୍ତ ଉଠିଗଲା । ଭାବିଲା, ହଉ, ସେ ଦେଖନ୍ତୁ ମୁଁ ଦୁର୍ବଳ କି ନୁହେଁ ।

ସୈନ୍ୟଦଳର ଲୋକମାନଙ୍କର ନିଶ୍ଚିନ୍ତ ମୁହଁରେ ପୁଣି ସେହି ଗମ୍ଭୀର ରେଖା ଫୁଟିଉଠିଲା, ଅବିକଳ ସେହିପରି ଯେପରି ଫୁଟିଥିଲା, ତାଙ୍କ ଉପରେ ଗୁଳି ବର୍ଷା ହେଲାବେଳେ ସେମାନଙ୍କୁ ଆଦେଶ ଶୁଣାଇ ଦିଆଗଲା ।

ତା' ଚାରିପଟେ ଅନେକ ସ୍ୱର ଶୁଭିଲା, "ହୁସିଆର, ହୁସିଆର ।"

ତରତର ହୋଇ ଘୋଡ଼ସବାର ସୈନ୍ୟମାନେ ଓହ୍ଲେଇ ପଡ଼ିଲେ । ସେମାନେ ଧରିଥିବା ଖଣ୍ଡା ଘୋଡ଼ା ଲଗାମ୍‌ରେ ଛନ୍ଦିହୋଇ ଯାଉଥାଏ, ଗୋଡ଼ରେ ବନ୍ଧା ଘୋଡ଼ା କେଞ୍ଚାମାନ ଝଣଝଣେଇ ଉଠୁଥାଏ । ଓହ୍ଲେଇପଡ଼ି କ'ଣ କରିବେ ସେମାନେ କିଛି ଜାଣି ନ ଥାନ୍ତି । ସୈନ୍ୟମାନେ ଆପଣା ଛାତିରେ ବାହା ଛନ୍ଦିଦେଇ ଈଶ୍ୱରଙ୍କୁ ଆତ୍ମସମର୍ପଣ କରିବାର ସଙ୍କେତ

କଲେ । ରୋସ୍ତଭ୍ ଆଉ କର୍ଣ୍ଣେଲଙ୍କୁ ଅନାଇଲା ନାହିଁ, ତାକୁ ବେଳ ନ ଥାଏ । ତା'ର ଛାତି ଧଡ ଧଡ ଯାଉଥାଏ, ଡରମାଡୁଥାଏ, କାଳେ ଘୋଡ-ସବାରମାନେ ଆଗକୁ ଚାଲିଗଲେ ସେ ପଛରେ ପଡ଼ିଯିବ । ଜଣେ ସାଧାରଣ ସୈନିକ ଆଡ଼କୁ ତାର ଘୋଡ଼ାକୁ ସମର୍ପି ଦେଲାବେଳେ ତା'ର ହାତ ଥରୁଥାଏ । ତାକୁ ଲାଗିଲା ଯେପରି କି ଦୁମୁଦୁମୁ ହୋଇ ତାର ହୃତ୍‌ପିଣ୍ଡ ଆଡ଼କୁ ରକ୍ତ ଧାଇଁଛି । ଡେନିସଭ୍ ତା'ର ପାଖେ ପାଖେ ଘୋଡ଼ାରେ ଚଢ଼ି ଚାଲିଥାନ୍ତି, ସେ ପଛକୁ ଝୁଙ୍କି ହେଇଥାନ୍ତି, ଜଣ ପାଟି କରୁଥାନ୍ତି । ରୋସ୍ତଭ୍ ଆଖିକି ଖାଲି ଏତିକି ଦିଶୁଥାଏ ଯେ ତା ଚାରିକଡ଼ରେ ଘୋଡସବାରମାନେ ଖଣ୍ଡା ଝଣଝଣ୍ କରି ପାଦରେ ଘୋଡାକୁ ଝଙ୍କ୍ ଝଣ୍ କରି ଘୋଡାକୁ ଚଳାଇ ଧାଇଁଛନ୍ତି । ଆଉ କିଛି ଦିଶୁ ନ ଥାଏ ।

ପଛଆଡୁ କିଏ ସେ ଜଣେ ପାଟିକଲା, "ଡୋଲି ଆଣ" ।

ଡୋଲି ଦରକାର ହେଲେ ତା'ର ଅର୍ଥ କ'ଣ ସେକଥା ରୋସ୍ତଭ ଭାବିଲା ନାହିଁ । ସେ ଦୌଡ଼ିଲା, ଖାଲି ଚେଷ୍ଟା କରୁଥାଏ କେମିତି ସେ ସମସ୍ତଙ୍କ ଆଗରେ ପହଞ୍ଚନ୍ତା, କିନ୍ତୁ ପାଦକୁ ଧ୍ୟାନ ନ ଦେଇ ଠିକ୍ ପୋଲପାଖେ ସେ ଖସଡା ଚକଟା କାଦୁଅରେ ଗୋଡ଼ ପୁରେଇଦେଇ ଦୁର୍ଭାଗ୍ୟ୍ ହୋଇ ହାତ ମାଡ଼ିଦେଇ ପଡ଼ିଗଲା, ଅନ୍ୟମାନେ ତା' ଆଗକୁ ଦୌଡ଼ି ଚାଲିଗଲେ ।

"ହ' ପାଖପାକ ଲଗାଇ ଦିଅନ୍ତୁ, ଲଗାନ୍ତୁ କ୍ୟାପ୍‌ଟେନ୍," ସେ ଶୁଣିଲା, ଦଳପତି ପାଟି କରୁଛନ୍ତି । ଦଳପତି ଆଗରେ ଘୋଡ଼ାରେ ଚଢ଼ି ଆସି ପୋଲ ପାଖେ ଘୋଡ଼ାକୁ ଠିଆକରିଥାନ୍ତି । ତାଙ୍କ ମୁହଁରେ ବିଜୟର ଉଲ୍ଲାସ ଦିଶୁଥାଏ, ମୁହଁ ଖୁବ୍ ପ୍ରଫୁଲ୍ଲ ଥାଏ ।

ରୋସ୍ତଭ ତା'ର କାଦୁଆ ହାତକୁ ପିନ୍ଧା ପାଇଜାମାରେ ଘଷି ପକାଉଥାଏ । ସେ ଆହୁରି ଆଗକୁ ଦୌଡ଼ିଥାନ୍ତା, ଭାବୁଥିଲା ଯେତେ ଆଗକୁ ଯିବ ସେତେ ଭଲ, କିନ୍ତୁ ବୋଗ୍‌ଡାନିଚ୍ ତାକୁ ଚିହ୍ନି ନ ଥିଲେ କି ଚିହ୍ନି ନଥିଲେ ବି ତାଙ୍କୁ ଡାକି ପକାଇଲେ ।

"କିଏ ଫେର୍ ପୋଲ ମଝିକିମଝି ଦୌଡ଼ୁଚ ହୋ ? ଡାହାଣ-ପଟେ ଦୌଡ଼ୁଚ ? ଫେରିଆସ ହୋ ସୈନିକ ! ଫେରିଆସ !" ସେ ରାଗରେ ପାଟିକଲେ ।

ଦଳପତି ପୁଣି ଡେନିସଭ୍ ଆଡ଼କୁ ବୁଲିପଡ଼ିଲେ । ଡେନିସଭ୍ ସାହସ ଦେଖାଇଲାପରି ବାହାଦୁରି କରି ଘୋଡ଼ାଚଢ଼ି ପୋଲର ପଟା ଉପରେ ପହଞ୍ଚିଗଲେ ।

ବଲପଣ୍ଡ କହିଲେ, "କାହିଁକି ବୃଥା ବିପଦକୁ ଯାଉଛନ୍ତି କ୍ୟାପ୍‌ଟେନ୍, ଆପଣ ଓହ୍ଲେଇ ପଡ଼ନ୍ତୁ।"

'ଭ୍ରାସ୍କା ଡେନିସଭ୍ ଜିନ୍ ଉପରେ କର ଲେଉଟାଇ କହିଲେ, "କିଏ ଦେବ ? ଯେ ଦୋଷୀ ତା' ଦେହରେ ସିନା ଗୁଳି ବାଜିବ ?"

ନେଜ୍‌ଭିତ୍‌ସ୍କି, ଜେରଖଭ୍ ଓ ସେନାପତିଙ୍କ ଗହଣରୁ ଆସିଥିବା କର୍ମଚାରୀ ଏକାଠି ଦୂରେଇ ହୋଇ ଠିଆ ହୋଇ ଦେଖୁଥାନ୍ତି, ସେମାନେ ଯେଉଁଠି ଥାନ୍ତି ସେଠିକି ଶତ୍ରୁ ପକ୍ଷର ଗୁଳି ପହଞ୍ଚିବ ନାହିଁ । ଦେଖୁଥାନ୍ତି କେମିତି ଲୋକେ ପୋଲ ମୁହଁରେ ମହୁମାଛି ପରି ବେଢ଼ି ଯାଇଥାନ୍ତି, ସେଇ ଲୋକେ,-ଯେଉଁମାନେ ପିନ୍ଧିଥାନ୍ତି ହଳଦିଆ ଟୋପି, ଗାଢ଼ ସବୁଜ ଅଂଗା, ଯେଉଁଥିରେ ସୂତାକାମରେ ବେଙ୍ଗର ଛବି ବୁଣାହୋଇଛି, ନେଳିଆ ଘୋଡ଼ା ଚଢ଼ିବା ପୋଷାକ । ଆଉ ଦେଖୁଥିଲେ ନଈ ଆରପାରେ ନେଳି ନେଳି କୋଟ୍‌ମାନ, ଘୋଡ଼ା ଆଉ ମଣିଷ ହୋଇ ଛୋଟ ଛୋଟ ଦଳ ସହଜରେ ବାରି ହେଉଥାଏ ତୋପ ବୋଲି, ଦୂରରେ ଦିଶୁଥାଏ, ପାଖେଇ ପାଖେଇ ଆସୁଥାଏ ।

"ଏମାନେ ପୋଲଟାକୁ ପୋଡ଼ିଦେଇ ପାରିବେ କି ନାହିଁ ? ଆଗ କିଏ ସେଠି ପହଞ୍ଚିବ ? ଆଗ ଏମାନେ ଦୌଡ଼ି ଦୌଡ଼ି ଯାଇ ପୋଲ ପୋଡ଼ିବେ ନା ଫରାସୀସୈନ୍ୟ ଏମାନଙ୍କ ଆଡ଼କୁ ତୋପ ମୋହିଁଦେଇ ଗୁଳିମାଡ଼ରେ ତାଙ୍କୁ ଦେବେ ସଫା କରି ?"

ପୋଲକୁ ଅନାଇଁ ଯେଉଁ ପ୍ରକାଣ୍ଡ ବାହିନୀ ଠିଆ ହୋଇଥାଏ, ସେଥିରେ ଯେତେ ଲୋକ ଥିଲେ, ପ୍ରତ୍ୟେକେ ଦବିଲ ଚିତ୍ତରେ ଆପଣାକୁ ସେହି କଥା ହିଁ ତ ପଚାରୁଥାନ୍ତି । ବେଳବୁଡ଼ ଘଡ଼ିର ଉଜ୍ଜ୍ୱଳ ଆଲୁଅରେ ସେମାନେ ସେହି ପୋଲଟାକୁ ଆଉ ଘୋଡ଼ସୱାରଙ୍କୁ ଦେଖୁଥାନ୍ତି, ଆଉ ଦେଖୁଥାନ୍ତି ନଈ ସେପାରିର ସେହି ନେଳି ନେଳି କୋଟ୍‌ଗୁଡ଼ାକୁ ଯେଉଁଗୁଡ଼ାକ ହାତରେ ବନ୍ଧୁକ ଆଉ ସଙ୍ଗୀନ୍ ଧରି ଆଗକୁ ଆଗକୁ ମାଡ଼ି ମାଡ଼ି ଆସୁଥାଏ ।

"ଆହା, ଘୋଡ଼ସୱାର୍‌ମାନେ ଧରା ପଡ଼ିଗଲେ ରେ !" ନେସଭିତ୍‌ସ୍କି ଭାବୁଥାନ୍ତି, "ଏଥର ସେମାନେ ତୋପଗୁଳିର ପହଞ୍ଚ ଭିତରେ ପଡ଼ିଗଲେ !"

"ସାଙ୍ଗରେ ଏତେ ଲୋକ ନେଇଯାଇ ସେ ଭୁଲ୍ କଲେ," ସେନାପତିଙ୍କ ଗହଣରେ ରହିବା କର୍ମଗୁରୁ କହିଲେ ।

'ବାସ୍ତବିକ," ନେସ୍‌ଭିତ୍‌ସ୍କି କହିଲେ, "ଖାଲି ଦୁ' ଜଣ ସାହସୀ ମଣିଷ କହିଲେ, ପଠେଇ ଦେଇଥିଲେ ଭାରି ଭଲ ହୋଇଥାନ୍ତା ।"

ଜେରକଭ୍ ସେହି ଘୋଡ଼ସଓ୍ବାରମାନଙ୍କୁ ଅନାଇଁ ଅନାଇଁ କହିଲା, "କହୁଛନ୍ତି ଯିବା ହଜୁର୍—"ସେ ସେମିତି ତା'ର ସାଧାରଣ ଠଟ୍ଟାଳି ଢଙ୍ଗରେ କଥା କହୁଥାଏ ଯେଉଁଥିରୁ ବାରି ହେଉ ନ ଥାଏ ସେ ସତରେ କହୁଛି ନା ଏମିତି ଖେଳ । କହିଲା,

"ହଜୁର୍ କହୁଛନ୍ତି ଯିବା ! ହଜୁର ଯୋଉ ବାଗରୁ ବିଷୟଟାକୁ ଦେଖୁଛନ୍ତି ସେଇଥିପାଇଁ । ଦୁ'ଜଣ ମଣିଷଙ୍କୁ ପଠେଇଥାନ୍ତେ ଯଦି, ତା'ହେଲେ ଆମକୁ ଭ୍ଲାଡ଼ିମିର୍ ଆଉ ରଙ୍ଗଫିତାର ସମ୍ମାନ କୋଉଠୁ ମିଳନ୍ତା ? ଅଇଜ୍ଞା ଯାହା ହେଉଛି, ଏଥିରେ ଯଦି ସେ ସମସ୍ତଙ୍କୁ ଶତ୍ରୁ ମାନେ ମଶାଗୁଣ୍ଡ ପରି ଗୁଣ୍ଡା କରି ଦିଅନ୍ତି, ତେବେ ବି ଆମ ସୈନ୍ୟଦଳ ତରଫରୁ ପ୍ରତିନିଧି ହିସାବରେ କେହି ଜଣେ ଯାଇ ରଙ୍ଗଫିତାର ସମ୍ମାନଟାକୁ ହାତରେ ଧରି ନେଇ ଆସିପାରିବ ଯେ ! ଆମର ବନ୍ଧୁ ବଗ୍‌ଡାନିଚ୍ ଜାଣନ୍ତି କେଉଁ କାମ କେମିତି କରିବାକୁ ହୁଏ ।"

ସେନାପତିଙ୍କ ଗହଣର କର୍ମଗୁରୁ କହିଲେ, "ହେଇ ଦେଖ, ଏତ ତୋପର ଗୁଳି !"

ସେ ଫରାସୀ ପକ୍ଷର ତୋପଗୁଡ଼ାକ ଆଡ଼କୁ ହାତ ଦେଖାଇଲେ । ସେଗୁଡ଼ା ସେତେବେଳକୁ ତୋପବୁହା ଗାଡ଼ିରୁ ଓହ୍ଲେଇ ତରତର କରି ସ୍ଥାନାନ୍ତର କରହେଉଥାଏ ।

ଫରାସୀ ପକ୍ଷରେ ଦିଶୁଥାଏ, ଯେଉଁ ଦଳ ପାଖରେ ତୋପ ଥାଏ ସେଠି ଧୂଆଁ ଉଠିଲା । ଫୁଙ୍କ ଧୂଆଁ ପରି ଥରେ, ଦୁ'ଥର, ତିନି ଥର ଲଗେ ଲଗେ ଧୂଆଁ ବାହାରିଲା, ଆଉ ଠିକ୍ ଯେଉଁ ମୁହୂର୍ତ୍ତରେ ସେମାନେ ପ୍ରଥମ ଗୁଳିର ଶବ୍ଦ ଶୁଣିଲେ, ସେହିକ୍ଷଣି ଚତୁର୍ଥ ତୋପର ଧୂଆଁ ଉଠିଲା, ଦୁ'ଟା ଗର୍ଜନ ଗୋଟାକ ପରେ ଗୋଟାଏ ହୋଇ ଶୁଭିଲା, ତା' ପରେ ଆଉ ଗୋଟାଏ ।

ସେନାପତିଙ୍କ ଗହଣର କର୍ମଗୁରୁଙ୍କ ହାତକୁ କଟମଟ କରି ଧରିଲେ ନେସ୍‌ଭିତ୍‌ସ୍କି, ଓଃ ଓଃ ! ହୋଇ ଆର୍ତ୍ତ ଚିତ୍କାର କଲେ, ସତେ ଯେପରି ତାଙ୍କୁ ବହୁତ ଯନ୍ତ୍ରଣା ହେଉଛି । କହିଲେ,

"ଦେଖନ୍ତୁ, ଦେଖନ୍ତୁ, ଜଣେ ମରି ପଡ଼ିଲାଣି, ପଡ଼ିଗଲା, ପଡ଼ିଗଲା !"

"ହେ ଭଗବାନ ପରା—"

ମୁହଁ ବୁଲେଇଦେଇ ନେସ୍‌ଭିଟ୍‌ସ୍କି କହିଲେ, "ମୁଁ ଯଦି ହୋଇଥାନ୍ତି ରୁଷ୍ ଦେଶର ସମ୍ରାଟ ମୁଁ କେବେ ଯୁଦ୍ଧରେ ଯୋଗ ଦେଇ ନ ଥାନ୍ତି ।

ପୁଣି ତରତର କରି ଫରାସୀପକ୍ଷର ତୋପରେ ଗୁଳି ଭର୍ତ୍ତି କରାଗଲା । ନେଳିକୋଟ ପିନ୍ଧା ପଦାତିକ ସୈନ୍ୟ ପୋଲଆଡ଼କୁ ଦୌଡ଼ୁଥାନ୍ତି । ପୁଣି ରହି ରହିକା ଫୁଙ୍କାହେଲା ପରି ଧୂଆଁ ବାହାରିଲା ଆଉ ତୋପର ଗୁଳି ଖଣ୍ଡଖଣ୍ଡ ଖଣ୍ଡଖଣ୍ଡ ହୋଇ ପୋଲ ଉପରେ ବାଡ଼େଇ ହେଲା । କିନ୍ତୁ ସେତେବେଳକୁ ପୋଲ ଉପରେ କଣ ହେଉଛି ନେସ୍‌ଭିଟ୍‌ସ୍କିଙ୍କୁ ଆଉ ତା ଦିଶୁ ନ ଥାଏ । ପୋଲ ଉପରେ ବହଳ ଧୂଆଁର ମେଘ ସୃଷ୍ଟି ହୋଇଥାଏ । ଘୋଡ଼ସବାରମାନେ ପୋଲରେ ନିଆଁ ଲଗାଇବାକୁ ସମର୍ଥ ହୋଇଥାନ୍ତି, ଫରାସୀପକ୍ଷର ତୋପରୁ ସେମାନଙ୍କ ଉପରକୁ ଗୁଳି କରାହେଉଥାଏ, ତାଙ୍କ କାମ ଅଟକାଇବାକୁ ନୁହେଁ ଯେ, ତୋପଗୁଡ଼ାକ ପାଖକୁ ଘୁଞ୍ଚାଇ ଅଣାଯାଇଛି, ତେଣୁ କାହାକୁ ହେଲେ ଲକ୍ଷ୍ୟ କରି ଗୁଳି କରିବାକୁ ପଡ଼ିବ, —କେବଳ ଏଇଥିପାଇଁ ।

ଘୋଡ଼ସବାର ସୈନ୍ୟମାନେ ତାଙ୍କ ଘୋଡ଼ାଙ୍କ ପାଖକୁ ଲେଉଟି ନ ଯାଉଣୁ ତାଙ୍କ ଆଡ଼କୁ ତିନି ଥର ଗୁଳି ବର୍ଷିବା ସକାଶେ ଫରାସୀପକ୍ଷଙ୍କୁ ବେଳ ମିଳିଥିଲା । ଦୁଇଥରର ଲକ୍ଷ ହୋଇ ନ ଥିଲା, ଗୁଳିଗୁଡ଼ାକ ଉପରେ ଉପରେ ଉଡ଼ିଗଲା । ତୃତୀୟ ଥରର ଗୁଳିମାଡ଼ ଘୋଡ଼ସବାର ଦଳର ମଝିରେ ଆସି ପଡ଼ିଲା, ତିନି ଜଣ ସୈନ୍ୟ ଟଳିପଡ଼ିଲେ ।

ରଷ୍ଟ ସେ କରିବ କଣ ଛିର କରି ନ ପାରି ରୋଷ୍ଟଭ୍ ପୋଲ ଉପରେ ଚାଲିଗଲା । କାହାକୁ ଖଣ୍ଡାରେ ହାଣି ପକାଇବ ସେପରି କାହାକୁ ଦେଖିଲା ନାହିଁ । (ସେ ମନେ ମନେ ଯୁଦ୍ଧର ଛବି ଆଙ୍କିଲାବେଳେ ଏଇପରି ଛବି ଆଙ୍କିଥିଲା) । ଅନ୍ୟ ସୈନ୍ୟଙ୍କ ପରି ସେ କୁଟା ବିଡ଼ାଏ ଧରି ଆସିଥିଲା, ତେଣୁ ପୋଲରେ ନିଆଁ ଲଗାଇବା କାର୍ଯ୍ୟରେ ବି ସେ କୌଣସି କାମରେ ଲାଗିପାରିଲା ନାହିଁ । ସେ ଠିଆହୋଇ ଚାରିଆଡ଼କୁ ଅନାଇଲା । ହଠାତ୍ ଗୁଡ଼ାଏ ଟଙ୍କ୍ ଟଙ୍କ୍ ଶବ୍ଦ ହେଲା, ସେତେବେଳେ ଗୁଡ଼ାଏ ଗୁଆ ପୋଟଳା

ହେଉଛି । ତା' ପାଖରେ ଥିବା ଘୋଡ଼ସଓ୍ୱାର ସୈନ୍ୟଜଣକ ଆର୍ତ୍ତଚିତ୍କାର କରି ପୋଲର ବାଡ଼ା ଉପରେ ଟଳିପଡ଼ିଲା । ପୁଣି ଜଣେ କିଏ ପାଟିକଲା,

"ଡେଲ ଆସ—"

ଆହତ ଘୋଡ଼ସଓ୍ୱାର ସୈନିକକୁ ଚାରି ଜଣ ଲୋକ ଧରିପକାଇ ଟେକାଟେକି କରି ଉଠାଇଲେ । ଆହତ ଲୋକଟି ଚିତ୍କାର କରୁଥାଏ,

"ଉହୁ...ମତେ ଛାଡ଼ିଦିଅ, ମୋତେ ଯୀଶୁଖ୍ରୀଷ୍ଟଙ୍କ ରାଣ—"

ତଥାପି ସେମାନେ ତାକୁ ଟେକିନେଇ ଡୋଲିରେ ଶୁଆଇଦେଲେ । ନିକୋଲାଇ ରୋଷ୍ଟଭ ମୁହଁ ବୁଲେଇନେଇ ଏକ ଆଖିରେ ଦୂରକୁ ଅନାଇଲା, ଅନାଇଲା ଦାନ୍ୟୁବ୍ ନଦୀର ପାଣିକୁ, ଆକାଶକୁ, ସୂର୍ଯ୍ୟକୁ, ସତେ ଯେପରି ସେ କଣ ଖୋଜୁଛି । କେତେ ସୁନ୍ଦର ଦିଶୁଥାଏ ସେ ଆକାଶ, କେତେ ନୀଳ, କେତେ ଶାନ୍ତ, କେତେ ଗଭୀର ! ଅସ୍ତ ଯାଉଥିବା ସୂର୍ଯ୍ୟ ଦିଶୁଥାଏ କେତେ ଉଜ୍ଜ୍ୱଳ, କେତେ ବିଜୟୋଲ୍ଲାସ ! ଦାନ୍ୟୁବ୍ ନଦୀର ଦୂରର ପାଣିର ଝକଝକ ଦିଶୁଥାଏ କେତେ ମନଭୁଲା ! ଆହୁରି ସୁନ୍ଦର ଦିଶୁଥାନ୍ତି ଦାନ୍ୟୁବ୍ ନଦୀ ସେପାରି ଦୂରର ପାହାଡ଼ମାନ, ଆଉ ସେହି ଘର, ଯେଉଁଠି ଅଚିହ୍ନା କାରଣିମାନେ ରହୁଛନ୍ତି, ପାହାଡ଼ର ଗହ୍ୱରସବୁ, ଦେଖିଲେ ବିସ୍ମୟ ହୁଏ, ପାଇନ୍‌ଗଛର ବଣସବୁ, ଆଗଯାକେ କୁହୁଡ଼ି ଢାଙ୍କି ହୋଇଛି । ଲାଗୁଥାଏ, ହେଇ ସେ ଦୂରରେ—ସବୁ ଖାଲି ଆନନ୍ଦ ଆଉ ଶାନ୍ତି ।

ରୋଷ୍ଟଭ ଭାବୁଥାଏ, "ଥାଆନ୍ତି କି ସେଠି ମୁଁ, ମୋର ଆଉ କିଛି ଚିନ୍ତା ନ ଥାନ୍ତା । ଖାଲି ମୋର ଭିତରେ ଆଉ ହେଇ ସେ ଖରାରେ ଏତେ ସୁଖ ଅଛି, ଅଥଚ ଏଠି...ଖାଲି ଆର୍ତ୍ତଚିତ୍କାର, ଖାଲି ଯନ୍ତ୍ରଣା, ଏଇ ଅନିଶ୍ଚିତତା, ଏଇ ତରତର...ଏଠି ଏମାନେ ବାରମ୍ବାର କଣ ଗୋଟାଏ ଚିତ୍କାର କରୁଛନ୍ତି...ସମସ୍ତେ ମିଶି ପଛକୁ କୁଆଡ଼େ ଦୌଡ଼ି ପଳେଉଛନ୍ତି, ଆଉ ମୁଁ ବି ଧାଇଁଛି ତାଙ୍କ ସଙ୍ଗେ ସଙ୍ଗେ, ଆଉ ହେଇ ଏଠି ଅଛି ସେଇ, ମୃତ୍ୟୁ,—ମୃତ୍ୟୁ ମୋର ଉପରେ ନଇଁପଡ଼ୁଛି; ଚାରିପାଖେ ବେଢ଼ି ରହୁଛି... ମୁହୂର୍ତ୍ତେ ତ, ତା ପରେ ମୁଁ ଆଉ ସେ ଖରା ଦେଖିପାରିବି ନାହିଁ, ସେ ପାଣି ଦେଖିବି ନାହିଁ, ସେହି ଗିରିଗହ୍ୱର ଦେଖିବି ନାହିଁ—।"

ଠିକ୍ ସେତିକିବେଳେ ମେଘ ପଛଆଡ଼େ ସୂର୍ଯ୍ୟ ଅସ୍ତ ହେଲେ, ରୋଷ୍ଟଭ୍‌ର ଆଗେ ଆଗେ ଆହୁରି ଡୋଲି ଆସିଲା ଦିଶିଲା । ସୂର୍ଯ୍ୟାଲୋକ ଓ

ଜୀବନ ଅନ୍ତର୍ହିତ ହେବାର ଧାରଣା ଏକାଠି ମିଶିଗଲା ଗୋଟାଏ ଉତ୍ପ୍ରାନ୍ତି ଭୂର୍ଣ୍ଣ ଚେତନାରେ ।

ରୋଷ୍ଟଭ୍ ଆପଣା ଛାଏଁ ଫସ୍ ଫସ୍ କରି କହିଲା, "ହେ ଭଗବାନ୍, ତୁମେ ଆକାଶରେ ଅଛ, ପରିତ୍ରାଣ କର, କ୍ଷମାକର, ମତେ ରକ୍ଷାକର ।"

ଘୋଡ଼ସବାରମାନେ ତାଙ୍କ ଘୋଡ଼ା ପାଖକୁ ଧାଇଁଗଲେ, ତାଙ୍କ ପାଟି ଆହୁରି ବଢ଼ିଯାଏଁ ଶୁଭିଲା; ଆହୁରି ଭରସାପୂର୍ଣ୍ଣ. ଗୋଲିଗୁଡ଼ାକ କୁଆଡ଼େ ଗୁଳିଗଲା, ଆଉ ଦେଖିଲା ନାହିଁ ।

ତା' କାନପାଖେ ଖୁସି ଡେନିସଭ୍ ପାଟିକଲା, "କ'ଣ ହୋ ବାବୁ, ବାରୁଦଗନ୍ଧ ନାକରେ ବାଜିଗଲା ପରା—"

ରୋଷ୍ଟଭ୍ ଭାବିଲା, "ସବୁ ସରିଗଲା, କିନ୍ତୁ ମୁଁ ଗୋଟାଏ ଖାଣ୍ଟି କାପୁରୁଷ, ହଁ, ମୁଁ ଏକ ଖାଣ୍ଟି ।" ଏକ ଲମ୍ବା ନିଶ୍ୱାସ ନେଇ ସେ ତାର ଘୋଡ଼ା ରୁକ୍‌କୁ ଯେଉଁ ଲୋକଟି ଧରିଥିଲା, ତାଠୁଁ ନେଇଗଲା । ରୁକ୍ ଗୋଟାଏ ଗୋଡ଼କୁ ଟେକୋଉଥାଏ । ରୋଷ୍ଟଭ୍ ଘୋଡ଼ାପିଠିରେ ବସି ପଡ଼ିଲା ।

"କଣ ସେତେବେଳେ ପଡ଼ିଲା ? ସେଇ କ'ଣ ତୋପ ଗୁଳି ?" ସେ ଡେନିସଭ୍‌କୁ ପଚାରିଲା ।

ଡେନିସଭ୍ ବଡ଼ ପାଟିରେ କହିଲା, "ହଁ ହେଇଥିଆ, ଖୁବ୍ ବଢ଼ିଆ ଏ । ଭାରି ଲୁଣ୍ଠରେ ସେମାନେ ତୋପ ଚଳେଇଦେଲେ । କିନ୍ତୁ ବଡ଼ କଦର୍ଯ୍ୟ ଜିନିଷ ଏଗୁଡ଼ାକ । ଘୋଡ଼ା ଛୁଟେଇ ଚଢ଼େଉ କରିବା ତ ଭାରି ମଜା,—ଯା ତଳେ ହାଣିପକା କୁକୁରଗୁଡ଼ାକୁ । କିନ୍ତୁ ଏ ଯେମିତିକି ସାକ୍ଷାତ୍ ସଇତାନ୍ ନିଜେ ଲକ୍ଷ୍ୟକରି ଗୁଳି ଫୁଟେଇଲା ଭଳି ।"

ରୋଷ୍ଟଭଠୁଁ ଅଳ୍ପଦୂରରେ ଦଳଟିଏ ଠିଆ ହୋଇଥିଲେ, ଡେନିସଭ୍ ତାଙ୍କର ପାଖକୁ ଘୋଡ଼ା ଛୁଟେଇ ଚାଲିଗଲା । ସେ ଦଳରେ ଥିଲେ କର୍ଣ୍ଣେଲ, ନେସ୍‌ଭିତ୍‌ସ୍କି, ଜେରକଭ୍, ଆଉ ସେନାପତିଙ୍କ ଗହଣାରୁ ଆସିଥିବା କର୍ମଚୁଷ ।

ରୋଷ୍ଟଭ୍ ମନେ ମନେ ଭାବୁଥାଏ, "ମତେ ଲାଗୁଚି ମୋ ଦୁର୍ବଳତାଟା କାହାରି ନଜରରେ ପଡ଼ିନାହିଁ ।" ପ୍ରକୃତରେ, କେହି ତାହା କଥାକୁ ଲକ୍ଷ୍ୟ କରିନାହାଁନ୍ତି । ଜଣେ ନୂଆ ସୈନିକ, ସେ ଆଗେ ଗୁଳି ମାଡ଼

କଣ ଭୋଗିନାହାଁନ୍ତି, ପହିଲଥର ଗୁଳି ମାଡ଼ ଅନୁଭବ କଲେ ତାଙ୍କୁ କେମିତି ଲାଗେ, ସମସ୍ତେ ତା' ଜାଣିଥିଲେ ।

ଜେରକଭ୍ କହିଲା, "ଏଥର ଗପିଲା ଭଲଆ ତମୁକୁ ସବୁ ଗୋଟାଏ ଜିନିଷ ମିଳିଗଲା । ମୁଁ କୋଉଠି ଅଛି ଜାଣିବା ଆଗରୁ ଏମାନେ ମୋ ପଦ ଉନ୍ନତି କରିଦେଇ ମତେ ସବ୍ ଲେଫ୍‌ଟନେଣ୍ଟ୍ କରିଦେଇ ସାରିଥିବେ ।"

ଦଳପତି ଭାରି ଆନନ୍ଦରେ ବଜ୍ରପ୍ରୀ ସ୍ୱରରେ କହିଲେ, "ପ୍ରିନ୍‌ସ୍‌ଙ୍କୁ ଖବର ଦିଅନ୍ତୁ ଯେ ମୁଁ ପୋଲଟାକୁ ପୋଡ଼ିଦେଇଛି ।"

"ଆଉ ଯଦି ପ୍ରିନ୍‌ସ୍ ପଚାରିବେ ଏ କାମ ପାଇଁ କେତେ କ୍ଷତି ଦେବାକୁ ପଡ଼ିଲା, କ'ଣ କହିବି ?"

ହସ ହସ ମୁହଁରେ ଦଳପତି କହିଲେ, "ସେମିତି କିଛି କ୍ଷତି ନୁହେଁ କହିଲେ ଭଲ, ମୋଟେ ଦି ଜଣ ଘୋଡ଼ସବାର ସୈନ୍ୟ ଘାତ ପାଇଲେ, ଆଉ ଜଣେ ଯେ ସେଇଠି ମରି କାଠ ହୋଇଗଲା ।" ସେ ତାଙ୍କ ମନର ଆନନ୍ଦ ଲୁଚେଇ ପାରୁ ନ ଥାନ୍ତି ।

ସେନାପତି କୁଟୁଜଭ୍ ଅଧିନାୟକତ୍ୱରେ ଥିବା ପଇଁତିରିଶ ହଜାର ରୁଷ୍ ସୈନ୍ୟର ସୈନ୍ୟବାହିନୀ ତରତର ହୋଇ ଧାଇଁ ପଳାଉଥାନ୍ତି, ପଛେ ପଛେ ଗୋଡ଼ଉଥାଏ ଫରାସୀ ସେନା, ସେଥିରେ ଲକ୍ଷେ ସୈନ୍ୟ, ତାର ଚାଳକ ସ୍ୱୟଂ ବୋନାପାର୍ଟ୍ । ଯୁଆଡ଼େ ଗଲେ ବାସିନ୍ଦା ଲୋକେ ଦେଖାଉଥାନ୍ତି ଶତ୍ରୁତା, ତାର ମିତ୍ରପକ୍ଷର ରାଷ୍ଟ୍ରମାନଙ୍କର ତା' ପ୍ରତି ଆସ୍ଥା ତୁଟିଯାଉଥାଏ । ତାର ବ୍ୟବହାର ପାଇଁ ଦରକାରୀ ଜିନିଷ-ପତ୍ରର ଅନଟନ ସେ ଭୋଗୁଥାଏ । ବାଧ୍ୟରେ ପଡ଼ି ଏଭଳି ଶୋଚନୀୟ ଦୁରବସ୍ଥାରେ ତାଙ୍କୁ କାମ କରିବାକୁ ପଡ଼ୁଥାଏ, ଯାହା ହେବ ବୋଲି ଆଗରୁ କେହି କଳ୍ପନା କରି ନ ଥିଲା । ଡାନ୍ୟୁବ୍ ନଦୀ କୂଳରେ ଖାଲି ଭୁଇଁକି ସେ ତର ତର ହୋଇ ପଳାଇ ଆସିଲା, ଆତ୍ମରକ୍ଷା ପାଇଁ । ସେଇଠି ସେମାନେ ଅପେକ୍ଷା କଲେ । ଶତ୍ରୁପକ୍ଷ ଆସି ସେଇଠି ସେମାନଙ୍କୁ ହାବୋଡ଼ି ଗଲେ । ସେଠି ସେମାନେ ଶତ୍ରୁପକ୍ଷଙ୍କ ସଙ୍ଗେ ଆପଣା ସେନାର ପଛ ପଟେ କେଇଟା ଖଣ୍ଡଯୁଦ୍ଧ ଲଢ଼ିଲେ, ଯେତେ ଦୂର ପାରିଲେ ବଡ଼ ଯୁଦ୍ଧରେ ନ ଲାଗିବାକୁ ଚେଷ୍ଟାକଲେ । ଜିନିଷପତ୍ର ଆଉ ତୋପଗୁଡ଼ିକ ନେଇ ପଳାଇଯିବା ପାଇଁ ଯେତିକି ଯୁଦ୍ଧକଲେ ଚଳିବ, କେବଳ ସେତିକି

ଯୁଦ୍ଧ କଲେ । ଯୁଦ୍ଧରେ ରୁଷ୍ ସୈନ୍ୟ ଖୁବ୍ ସାହସ ଆଉ ଝାଁଣପଣରେ ଲଢ଼ିଲେ ସତ, ସେ କଥା ତ ଶତ୍ରୁପକ୍ଷ ବି ମାନିଲେ, କିନ୍ତୁ ଯେତେ ଲଢ଼ିଲେ ବି ତା'ର ଫଳ ହେଲା ଆହୁରି ତର ତର ହୋଇ ପଳାଇବା । ଅଷ୍ଟ୍ରିୟା ଦେଶର ସୈନ୍ୟବାହିନୀ ଉଲ୍ମ ସହର ପାଖେ ଶତ୍ରୁପକ୍ଷ କବଳରୁ ଖସି ପଳାଇଥିଲା, ଆଉ ଆସି ବ୍ରାଉନାଉ ସହରପାଖେ କୁତୁଜଭଙ୍କ ସୈନ୍ୟବାହିନୀ ସହିତ ମିଶାଯାଇଥିଲା । ଏଥର ସେ ବି ଛାଡ଼ି ଚାଲିଗଲା । କ୍ଳାନ୍ତ ଦୁର୍ବଳ ସୈନ୍ୟବାହିନୀ, କେହି ସାହା ଶାଖା ନାହିଁ, କୁତୁଜଭ୍ ଏହି ପରି ଅବସ୍ଥାରେ ପଡ଼ିରହିଲେ । ଭିଏନା ସହରକୁ ଶତ୍ରୁହାତରୁ ରକ୍ଷା କରିବା କଥା ଏଣିକି ସ୍ୱପ୍ନରେ ବି ଭାବି ହେଲାନାହିଁ । ଖାଲି ଏକା ଲକ୍ଷ୍ୟ ରହିଲା,—ତା' ବି ପ୍ରାପ୍ତି ଅସମ୍ଭବ ଲାଗୁଥିଲା,—କୌଣସି ଉପାୟରେ ସୈନ୍ୟ କ୍ଷୟ ନ କରାଇବା, ଆଉ ରୁଷ୍‌ଦେଶରୁ ଯେଉଁ ନୂଆ ସୈନ୍ୟବାହିନୀ ମାଡ଼ି ଚାଲି ଆସୁଥାଏ, କୌଣସି ମତେ ତା' ସଙ୍ଗେ ମିଶିବା ।

ଅକ୍ଟୋବର ମାସର ୨୮ ତାରିଖ ଦିନ କୁତୁଜଭ୍ ଦାନ୍ୟୁବ୍ ନଦୀ ପାରିହୋଇ ତାଙ୍କ ସୈନ୍ୟବାହିନୀକୁ ଦାନ୍ୟୁବ୍‌ର ବାଁ ପଟକୁ ନେଇଗଲେ । ତା ପରେ ସେ ପହିଲି ଥର ଅଟକିଲେ । ସେତେବେଳକୁ ପାଖେ ତାଙ୍କ ସୈନ୍ୟ ଓ ଆରପାଖେ ଶତ୍ରୁପକ୍ଷର ସୈନ୍ୟ ବଡ଼ ଭାଗକ, ମଝିରେ ଦାନ୍ୟୁବ୍ ନଦୀ । ତିରିଶ ତାରିଖ ଦିନ ସେ ମରଟିଏରଙ୍କ ନେତୃତ୍ୱରେ ଥିବା ସୈନ୍ୟଦଳକୁ ଆକ୍ରମଣ କଲେ, ଏ ଦଳଟା ଦାନ୍ୟୁବ୍ ନଦୀର ବାଁ ପଟେ ରହି ଯାଇଥିଲା । କୁତୁଜଭ୍ ଏ ଦଳକୁ ଯୁଦ୍ଧରେ ହରାଇଲେ । ଏଇ ଅଭିଯାନରେ ଏଇ ପ୍ରଥମ ଥରକ ଯୁଦ୍ଧରେ ବିଜୟସ୍ମାରକମାନ ମିଳିଗଲା,—ଗୋଟାଏ ପତାକା, ଗୁଡ଼ାଏ ତୋପ, ଆଉ ଶତ୍ରୁପକ୍ଷର ଦି'ଜଣ ସେନାପତି । ପନ୍ଦର ଦିନ କାଳ ପଳେଇ ପଳେଇ ଆସି ଏଇ ପହିଲି ଥର ରୁଷ୍‌ଦେଶର ସୈନ୍ୟ ଅଟକିଲେ, ଆଉ ଯୁଦ୍ଧ କରି ଯୁଦ୍ଧକ୍ଷେତ୍ରକୁ ଯେ କେବଳ ମାଡ଼ିବସିଲେ ତା' ନୁହେଁ, ସେଥିରୁ ଫରାସୀସୈନ୍ୟଙ୍କୁ ତଡ଼ି ପାରିଲେ ବି ।

ପହିଲି ନଭେମ୍ବରରେ କୁତୁଜଭ୍ ଜଣେ ଗୁପ୍ତଚରଠୁଁ ସମ୍ବାଦ ପାଇଲେ, ସେଥିରୁ ଜଣାଗଲା ଯେ ସେ ଯେଉଁ ସୈନ୍ୟବାହିନୀର ଅଧିନାୟକତ୍ୱ କରୁଥିଲେ, ତା'ର ଆଉ ବଞ୍ଚିବାର ଆଶାନାହିଁ କହିଲେ ଚଳେ । ଚର ଆସି ସମ୍ବାଦ ଦେଲା ଯେ ଯେଉଁବାଟେ ରୁଷ୍‌ରୁ ନୂଆ ସୈନ୍ୟ କୁତୁଜଭଙ୍କ

ସୈନ୍ୟବାହିନୀ ସଙ୍ଗରେ ମିଶିବେ ବୋଲି ଆସୁଛନ୍ତି, ଫରାସୀସୈନ୍ୟ ଭିଏନାଠି ପୋଲ ଉପରେ ନଈ ପାରହୋଇ ପ୍ରବଳ ଦଳ ହୋଇ ସେହି ବାଟ ଆଡ଼କୁ ମାଡ଼ି ଚାଲିଆସୁଛନ୍ତି । ଯଦି କୁତୁଜଭ୍ ଠିକଣା କରୁଛନ୍ତି ଯେ ସେ କ୍ରେମ୍‌ସ୍‌ରେ ରହିଯିବେ ତ ନେପୋଲିଅନଙ୍କର ଦେଢ଼ଲକ୍ଷ ସୈନ୍ୟ ଆସି ତାଙ୍କ ବାଟ କାଟିଦେବେ, ଆଉ ତାଙ୍କର ଚାଳିଶ ହଜାର କ୍ଲାନ୍ତ ସୈନ୍ୟଙ୍କୁ ଚାରିଆଡ଼ୁ ଘେରରେ ପକାଇ ଦେବେ । ନୂଆ ଆସୁଥିବା ରୁଷ୍ ସୈନ୍ୟମାନଙ୍କ ସଙ୍ଗେ ଯୋଗସୂତ୍ର ହେବାକୁ ଯେଉଁ ବାଟଟି ଅଛି, କୁତୁଜଭ୍ ଯଦି ତାକୁ ଛାଡ଼ିଦେଉଛନ୍ତି ତ ବାଟ ଘାଟ ନାହିଁ, ଅଚିହ୍ନା ଅଞ୍ଚଳ ଭିତରେ ପଶି ତାଙ୍କୁ ବୋହେମିଆର ପାହାଡ଼କୁ ଯିବାକୁ ପଡ଼ିବ, ଶତ୍ରୁପକ୍ଷର ଅସଲ ସୈନ୍ୟମାନେ ତାଙ୍କ ପଛେ ପଛେ ଗୋଡ଼ାଇଥିବେ, ଆଉ ବକ୍‌ସ ହେଭ୍‌ଡ଼େନ୍‌ଙ୍କ ସଙ୍ଗେ ମିଶିବାର ସବୁ ଆଶା ତାଙ୍କୁ ଛାଡ଼ିବାକୁ ପଡ଼ିବ । ଯଦି କୁତୁଜଭ୍ ନିଷ୍ପତ୍ତି କରୁଛନ୍ତି ଯେ ରାସ୍ତାଏ ରାସ୍ତାଏ ଯିବେ କ୍ରେମ୍‌ସ୍‌ରୁ ଓଲମୁଜ୍, ସେଠି ଯାଇ ରୁଷ୍ ଦେଶରୁ ଆସୁଥିବା ନୂଆ ସୈନ୍ୟଙ୍କ ସଙ୍ଗେ ମିଶିବେ, ତେବେ ବି ବିପଦ ଅଛି । ଫରାସୀ ସୈନ୍ୟମାନେ ତ ଭିଏନା ପୋଲ ପାର ହୋଇ ଅାସିଗଲେଣି, ହୁଏ ତ ତାଙ୍କ ଆଗରୁ ସେହିମାନେ ହିଁ ସେ ସଡ଼କରେ ପହଞ୍ଚି ଯାଇଥିବେ ଯେ ତାଙ୍କୁ ହିଁ ହାରୁଡ଼ିବାକୁ ପଡ଼ିବ, ତା' ହେଲେ ବାଟରେ ଯାଉ ଯାଉ ତାଙ୍କ ସଙ୍ଗେ ଲଢ଼େଇ କରିବାକୁ ସେ ବାଧ୍ୟ ହେବେ । ଏଣେ ଆପଣା ସଙ୍ଗରେ ସବୁଯାକ ଜିନିଷପତ୍ର ଆଉ ଗାଡ଼ି, ସେହି ଅବସ୍ଥାରେ ଏଭଳି ଶତ୍ରୁବଳ ସଙ୍ଗେ ଯୁଦ୍ଧ ଯାହାଙ୍କ ସୈନ୍ୟ ସଂଖ୍ୟା ତାଙ୍କ ସୈନ୍ୟର ତିନି ଗୁଣ, ସେ ପୁଣି ତାଙ୍କୁ ଦୁଇ କଡ଼ରୁ ଚାପି ଆଣୁଥିବେ । କୁତୁଜଭ୍ ଏଇ ଶେଷ ଉପାୟଟି ବାଛିନେଲେ ।

ଚର କହିଲା ଭଳି ଫରାସୀସୈନ୍ୟମାନେ ନଈ ପାର ହେଲା ଉତ୍ତାରୁ ତର ତର ହୋଇ ମାଡ଼ି ଚାଲିଥାନ୍ତି ଜ୍ନାଇମ୍‌ଆଡ଼େ । ଜ୍ନାଇମ୍ ଥାଏ କୁତୁଜଭ୍‌ଙ୍କ ଯିବା ବାଟରେ, ସେଠିକି ପହଞ୍ଚିବାକୁ ତେଣିକି କୋଶରୁ ବେଶି ଦୂର । ସେ ନିଜେ ଜ୍ନାଇମରେ ନ ପହଞ୍ଚିଣୁ ଯଦି ଫରାସୀସୈନ୍ୟଙ୍କୁ ସେଠି ଆଗ ପହଞ୍ଚିବାକୁ ଛାଡ଼ି ଦେଉଛନ୍ତି ତ ତାଙ୍କର ସମଗ୍ର ସୈନ୍ୟବାହିନୀ ମୂଳପୋଛ ହେବାର ଆଶଙ୍କା ଥିବ । ଆଉ ଫରାସୀମାନେ ଜ୍ନାଇମ୍ ପହଞ୍ଚିବା ଆଗରୁ ସେ ତାଙ୍କର ସମଗ୍ର ସୈନ୍ୟବାହିନୀ ଧରି ସେଠି ପହଞ୍ଚିବା ତ ଅସମ୍ଭବ । ରୁଷ୍ ସୈନ୍ୟମାନେ କ୍ରେମ୍‌ସରୁ ଜ୍ନୈମ୍ ଯିବାକୁ

ଯେଉଁ ବାଟ, ଫରାସୀସୈନ୍ୟମାନେ ଭିଏନାରୁ ଜ୍ନୈମ୍ ଯିବାବାଟ ତାଠୁଁ ଆହୁରି ପାଖ ଆଉ ସୁବିଧା ବାଟ ।

ଯେଉଁ ରାତିରେ କୁଟୁଜଭ୍ ଚରଠୁଁ ଖବର ପାଇଲେ ସେହି ରାତି ରାତି ସେ ବାଗ୍ରାତିଅନ୍‌ଙ୍କ ଚାରିହଜାରିଆ ଆଗୁଆ ଦଳକୁ ପର୍ବତ ଉପର ବାଟେ ଡାହାଣ ପାଖକୁ କ୍ରେମ୍‌ସ୍ ଜ୍ନୈମ୍ ରାସ୍ତାରୁ ଯାଇ ଭିଏନା-ଜ୍ନୈମ୍ ରାସ୍ତାରେ ଯାଇ ପହଞ୍ଚିବାକୁ ବିଦା କରିଦେଲେ । ବାଗ୍ରାତିଅନଙ୍କୁ ହୁକୁମ୍ ଦିଆଗଲା ସେ ଯେ କୌଣସିମତେ ଛାଣି ଓଟାରି ହୋଇ ଆଗେଇ ଚାଲିଯିବେ, କେଉଁଠି ଅଟକିବେ ନାହିଁ, ଫରାସୀସୈନ୍ୟ ଆସି ପହଞ୍ଚିବା ଆଗରୁ ସେ ଯଦି ସେ ସଡ଼କରେ ପହଞ୍ଚି ଯାଇପାରିବେ, ତେବେ ଯେତେ ସମୟ ପାରିବେ, ସେତେ ସମୟଯାକେ ଫରାସୀସୈନ୍ୟଙ୍କୁ ଅଟକାଇ ରଖିଥିବେ । କୁଟୁଜଭ୍ ନିଜେ ସବୁ ଯାନବାହାନ ସହିତ ସିଧା ଜ୍ନାଇମ୍ ଆଡ଼କୁ ମୋହିଁ ଥା'ନ୍ତି ।

ବାଗ୍ରାତିଅନ୍‌ଙ୍କ ସୈନ୍ୟବାହିନୀ ପନ୍ଦର କୋଶ ବାଟ ଚାଲି ଚାଲି ଗଲେ । ଝଡ଼ ତୋଫାନ ଭିତରେ ରାତି ରାତି ଚାଲିଥାନ୍ତି ପର୍ବତ ଭିତରେ, ବାଟ ଘାଟ ନାହିଁ । ଭୋକିଲା ଫଉଜ, ସୈନ୍ୟମାନଙ୍କ ଗୋଡ଼ରେ ଯୋତା ନାହିଁ । ତିନିଭାଗରୁ ଭାଗେ ସୈନ୍ୟ ପଛରେ ପଡ଼ିଗଲେ । ଫରାସୀମାନେ ଆସି ପହଞ୍ଚିବାର କେଇ ଘଣ୍ଟା ଆଗରୁ ଭିଏନା ଜ୍ନାଇମ୍ ସଡ଼କରେ ହୋଲାବ୍ରୁନ୍‌ଠାରେ ବାଗ୍ରାତିଅନ୍ ପହଞ୍ଚିଲେ । ଫରାସୀସୈନ୍ୟ ଭିଏନାରୁ ହୋଲାବ୍ରୁନ୍‌କୁ ଆସିଲେ । ସବୁ ଯାନବାହାନ ଧରି ଜ୍ନାଇମ୍ ପହଞ୍ଚିବାକୁ କୁଟୁଜଭଙ୍କର ଆହୁରି ଚବିଶି ଘଣ୍ଟା ଦରକାର ଥିଲା । ସେ ଆସି ପହଞ୍ଚିଲେ ବାଗ୍ରାତିଅନ୍‌ଙ୍କ ସୈନ୍ୟବାହିନୀ ଉଦ୍ଧାର ପାଇଯାଆନ୍ତେ । ସେ ପର୍ଯ୍ୟନ୍ତ ବାଗ୍ରାତିଅନ୍‌ଙ୍କର ଚାରିହଜାର ଭୋକିଲା କ୍ଲାନ୍ତ ସୈନ୍ୟଙ୍କ ପକ୍ଷରେ ହୋଲାବ୍ରୁନ୍‌ଠାରେ ତାଙ୍କ ମୁହାଁମୁହିଁ ହାବୁଡ଼ ଥିବା ଶତ୍ରୁପକ୍ଷର ସମଗ୍ର ବାହିନୀକୁ ଚବିଶ ଘଣ୍ଟା ଯାକ ରୋକି ରଖିବା ସମ୍ପୂର୍ଣ୍ଣ ଅସମ୍ଭବ ।

କିନ୍ତୁ ଦୈବଯୋଗକୁ ଅସମ୍ଭବଟା ସମ୍ଭବ ହେଲା । ଫରାସୀ ସେନାପତି ମୁରାଟ ଜ୍ନାଇମ୍ ରାସ୍ତାରେ ବାଗ୍ରାତିଅନ୍‌ଙ୍କ ଦୁର୍ବଳ ଫଉଜକୁ ଯେମିତି ଦେଖିଦେଲେ, ସେମିତି ଭାବିଲେ ଯେ ସେ କୁଟୁଜଭ୍‌ଙ୍କ ଅଧୀନରେ ଥିବା ସମସ୍ତ ସୈନ୍ୟବାହିନୀ । ସେହି ବାହିନୀକୁ ଶେଷ ହରା ହରେଇ ଧ୍ୱଂସ କରିଦେବା ଉଦ୍ଦେଶ୍ୟରେ ସେ ଅପେକ୍ଷା କଲେ ଯେ ଭିଏନା ଆଡ଼ୁ

ଯେଉଁ ସୈନ୍ୟବାହିନୀ ଆସୁଛନ୍ତି, ରାସ୍ତାରେ ଅଛନ୍ତି, ସେ ଆସି ପହଞ୍ଚି ଗଲେ ସେ ଯୁଦ୍ଧ କରିବେ । ସେହି ଉଦ୍ଦେଶ୍ୟ ରଖି ସେ ବାଗ୍ରାତିଅନ୍‌ଙ୍କ ପାଖକୁ ପ୍ରସ୍ତାବ ପଠାଇଲେ ଯେ ତିନ ଦିନ ପର୍ଯ୍ୟନ୍ତ ଯୁଦ୍ଧ ବନ୍ଦ ହୋଇଥାଉ, ସନ୍ଧିର ଏଇଆ ସର୍ତ୍ତ ରହିବ ଯେ ଦୁଇ ପକ୍ଷରୁ କାହାରି ସୈନ୍ୟ ଆପଣା ସ୍ଥାନରୁ ଏଣେ ତେଣେ ହୋଇପାରିବେ ନାହିଁ, ଯେଉଁଠି ଅଛନ୍ତି, ସେଇଠି ରହିବେ । ମୁରାଟ ଝାଣ କରି କହିଲେ ଯେ ସ୍ଥାୟୀ ଶାନ୍ତି ପାଇଁ ତେଣେ କଥାବାର୍ତ୍ତା ଚାଲିଛି । ତେଣୁ ବୃଥାରେ କାହିଁକି ରକ୍ତପାତ ହେବ, ସେଥିପାଇଁ ସେ ଏ ପ୍ରସ୍ତାବ ପଠାଇଛନ୍ତି । ଅଷ୍ଟ୍ରିଆର ସୈନ୍ୟ ବାହିନୀର ସେନାପତି ଥିଲେ ନଷ୍ଟିସ । ସେ ମୁରାଟଙ୍କ କଥାରେ ବିଶ୍ୱାସ କରି ଆପଣା ସୈନ୍ୟବାହିନୀ ନେଇ ସେଠୁ ହଟିଗଲେ, ଫଳରେ ବାଗ୍ରାତିଅନ୍‌ଙ୍କ ଦଳଟି ଅରକ୍ଷିତ ହୋଇ ପଡ଼ି ରହିଲା । ମୁରାଟଙ୍କର ଅନ୍ୟାନ୍ୟ ଡଗରମାନେ ଘୋଡ଼ାରେ ଚଢ଼ି ରୁଷସୈନ୍ୟ ଧାଡ଼ି ପାଖକୁ ଯାଇ ସେହି କଥା କହିଲେ ଯେ ଶାନ୍ତି ହେବ ବୋଲି କଥାଭାଷା ଚାଲିଛି ; କିନ୍ତୁ ବାଗ୍ରାତିଅନ୍ ଜବାବ୍ ଦେଲେ ଯେ ଯୁଦ୍ଧବନ୍ଦ ପ୍ରସ୍ତାବ ନେବା କି ଗ୍ରହଣି ଦେବାକୁ ତାଙ୍କର ଅଧିକାର ନାହିଁ । ଏ ବିଷୟରେ ଗୋଟିଏ ବିବୃତି ଲେଖି କୁତୁଜଭ୍‌ଙ୍କ ହାତରେ ଦେବାକୁ ତାଙ୍କ ପାର୍ଶ୍ୱଚରଙ୍କୁ ପଠାଇଲେ

ଟିକିଏ ସମୟ ପାଇବା, ବାଗ୍ରାତିଅନଙ୍କ କ୍ଳାନ୍ତ ସୈନ୍ୟମାନଙ୍କୁ ବିଶ୍ରାମ ନେବା ପାଇଁ ଟିକିଏ ସୁଯୋଗ ଦେବା, ଯାନବାହାନ ଓ ଓଜନଦାର ଜିନିଷଗୁଡ଼ାକ ଯେ ଫରାସୀମାନଙ୍କଠୁଁ ଲୁଚେଇ ଲୁଚେଇ ନିଆଯାଉଛି' ସେଗୁଡ଼ାକୁ ଆହୁରି ଥୋଡ଼ାଏ ବାଟ ଆଗେଇନେବା ଏସବୁ ସମ୍ଭବ ହେବା ପାଇଁ ଏକମାତ୍ର ଉପାୟ କେବଳ ଯୁଦ୍ଧ ରୁହାଇବା ସୈନ୍ୟବାହିନୀକୁ ବଞ୍ଚାଇ ରଖିବାକୁ ଏକମାତ୍ର ସମ୍ଭାବନା ଦିଶିଲା ଯୁଦ୍ଧ ବନ୍ଦହେବ ବୋଲି କଥାବାର୍ତ୍ତା ଚଳିବାରୁ । ଏ ସୁଯୋଗ ମିଳିବ ବୋଲି କେହି ଆଶା କରି ନ ଥିଲା । ଏ ସମ୍ବାଦ ପାଇଲା ମାତ୍ରେ କୁତୁଜଭ୍ ଶିବିରକୁ ସେନାପତି ଓ୍ୱିନ୍‌ଜେନ୍ ଗେରୋଡ଼ଙ୍କୁ ପଠାଇଦେଲେ, ସେ କୁତୁଜଭ୍‌ଙ୍କ ପାର୍ଶ୍ୱଚର ସୈନ୍ୟ ଦଳର ସେନାପତି । ଓ୍ୱିନ୍‌ଜେନ୍ ଗେରୋଡ଼ଙ୍କୁ ଆଦେଶ ଦିଆହୋଇ-ଥିଲା ଯେ ସେ ଯେ ଖାଲି ଯୁଦ୍ଧବନ୍ଦ ପ୍ରସ୍ତାବ ଗ୍ରହଣ କରିବେ ସେତିକି ନୁହେଁ, ବରଂ କେଉଁ ସର୍ତ୍ତରେ ରୁଷ୍‌ସୈନ୍ୟ ଆତ୍ମସମର୍ପଣ କରିବେ ସେ କଥା ବି ଆଲୋଚନା କରିବେ । ଏଣେ କୁତୁଜଭ୍ ତାଙ୍କ ପାର୍ଶ୍ୱରକ୍ଷୀ-

ମାନଙ୍କୁ ପଛକୁ ଘଉଇଦେଲେ ଯେ ସେମାନେ ଯାଇ ତରତର କରିବେ ଯେପରି କି ତାଙ୍କର ସମଗ୍ର ସୈନ୍ୟବାହିନୀର ଜନିଷପତ୍ର ସବୁ ଝେମ୍‌ସ୍‌ଗ୍ଲେମ୍ ରାସ୍ତାରେ ଅତିଶୀଘ୍ର ଆଗକୁ ପଠାହେବ । ଏକୁଟିଆ ବାଗ୍ରାତିଅନଙ୍କ ଭେକଲ୍ ଘୋଳହୋଇ ପଡ଼ିଲା ସୈନ୍ୟଦଳ ଉପରେ ଭାର ରହିଲା ଯେ ତାଙ୍କଠୁଁ ଆଠଗୁଣ ଅଧିକ ସଂଖ୍ୟାର ଶତ୍ରୁ ସୈନ୍ୟଙ୍କ ମୁହାଁମୁହିଁ ଠିଆହୋଇ ରହି ସେମାନେ ସମୁଦାୟ ସୈନ୍ୟଦଳର ଯାନବାହାନମାନଙ୍କୁ ସାହା ହୋଇ ରହିଥିବେ ।

କୁତୁଜଭ୍ ଠିକ୍ ଆଗକୁ ଭାବିଥିଲେ ଯେ ଆତ୍ମସମର୍ପଣ କେଉଁ ସର୍ତ୍ତରେ ହେବ, ସେ ବିଷୟରେ ଯେଉଁ ପ୍ରସ୍ତାବମାନ ଗୃହୀତ ସେଥିରେ ସେ ବାନ୍ଧି-ହୋଇ ରହିବେ ନାହିଁ, ଅଥଚ ପ୍ରସ୍ତାବ ଗୃହୀତ, ତାଙ୍କ ଯାନବାହାନର ଗୋଟାଏ ଭାଗ ଯାଇ ଜ୍ନାଇମ୍ ପହଞ୍ଚିବ, ଆଉ ମୁରାଟ୍ ଯେଉଁ ଭୁଲ୍ କଲେ, ତା' ବି ଅତିଶୀଘ୍ର ଧରାପଡ଼ିଯିବ । ବୋନାପାର୍ଟ୍ ଥିଲେ ସ୍କନ୍‌ବ୍ରୁନ୍‌ଠାରେ, ସେ ଜାଗା ହୋଲବ୍ରୁନ୍‌ଠୁ ମୋଟେ ୨୫ ଭର୍ଷ୍ଟ ଦୂର । ସେ ଯେମିତି ମୁରାଟଙ୍କଠୁଁ ଚିଠି ପାଇଲେ, ଆଉ ସନ୍ଧି ପୁଣି ଆତ୍ମସମର୍ପଣର ସର୍ତ୍ତ ଆଦି ପଢ଼ିଲେ, ସେ ସଙ୍ଗେ ସଙ୍ଗେ ଫାଙ୍କିଟା ଜାଣିପାରି ମୁରାଟଙ୍କ ପାଖକୁ ଏହି ଚିଠି ଲେଖି ପଠାଇଲେ :

ସ୍କନ୍‌ବ୍ରୁନ୍ ।

ବ୍ରମେଆର ମାସ ୨୫ତାରିଖ, ୧୮୦୫ ସାଲ,

ସକାଳ ଆଠଟାବେଳ ।

ପ୍ରିନସ ମୁରାଟ୍ ପାଇବେ—

"କେଉଁ ଭାଷାରେ ମୋର ବିରକ୍ତି ଆପଣଙ୍କୁ ଲେଖି ଜଣାଇବି ସେ ଭାଷା ଖୋଜି ପାଇବା ହିଁ ଅସମ୍ଭବ । ଆପଣ କେବଳ ମୋର ଆଗିଆଣି ଆଟର ହିଁ ସେନାପତି ଓ ମୋର ବିନା ଆଦେଶରେ ଯୁଦ୍ଧ ଅଟକାଇବାକୁ ଆପଣଙ୍କର କୌଣସି ଅଧିକାର ନାହିଁ । ଆପଣ ଏପରି କାର୍ଯ୍ୟ କଲେ,

ସନ୍ଧିରେ ଏ ସମୁଦାୟ ଅଭିଯାନର ଫଳଟା ହିଁ ଆପଣଙ୍କ ଯୋଗୁଁ ମୁଁ ହରାଇବାକୁ ବସିଛି । ଏ ଚିଠି ପାଇବା ମାତ୍ରେ ସଙ୍ଗେ ସଙ୍ଗେ ଯୁଦ୍ଧ ବନ୍ଦ ପ୍ରସ୍ତାବକୁ ଭାଙ୍ଗି ଦିଅନ୍ତୁ ଓ ଶତ୍ରୁ ପକ୍ଷ ଉପରେ ଚଡ଼ାଉ କରନ୍ତୁ । ସେମାନଙ୍କୁ ଆପଣ ଏକ ଘୋଷଣା କରି ନିଶ୍ଚୟ ଜଣାଇଦେବାକୁ ପଡ଼ିବ ଯେ ତାଙ୍କ ପକ୍ଷର ଯେଉଁ ସେନାପତି ଆତ୍ମସମର୍ପଣ ଦଲିଲରେ ଦସ୍ତଖତ କଲେ, ତାଙ୍କର ସେପରି ଦସ୍ତଖତ କରିବାକୁ କୌଣସି କ୍ଷମତା ନ ଥିଲା ଓ କେବଳ ରୁଷ୍ ଦେଶର ସମ୍ରାଟ ହିଁ ସେପରି ଦସ୍ତଖତ କରିବାକୁ ହକ୍‌ଦାର ।

ଯେତେବେଳେ ରୁଷ୍‌ର ସମ୍ରାଟ ସେହି ସନ୍ଧିକୁ ଗ୍ରହଣ କରିବେ, ମୁଁ ବି ସେତେବେଳେ ତାକୁ ଗ୍ରହଣ କରିବି; କିନ୍ତୁ ଏ ଖାଲି ଗୋଟାଏ ଛଳନା । ମାଡ଼ି ଚାଲନ୍ତୁ, ରୁଷ୍‌ସୈନ୍ୟଙ୍କୁ ଧ୍ୱଂସ କରନ୍ତୁ,···ଆପଣ ସୁବିଧା ଅବସ୍ଥାରେ ଅଛନ୍ତି ଯେଉଁଥିରେ ତାଙ୍କର ସବୁ ଜିନିଷପତ୍ର ଆଉ ତୋପ-କମାଣ ଆପଣ ଛଡ଼ାଇ ନେଇ ପାରନ୍ତେ ।

ରୁଷ୍ ସମ୍ରାଟଙ୍କ ପାର୍ଶ୍ୱରକ୍ଷୀ ସେନାପତି ଗୋଟାଏ···କର୍ମଚାରୀଙ୍କର କ୍ଷମତା ନ ଥିଲେ ସେମାନେ କେଉଁଥିରେ ଗଣା ନୁହନ୍ତି । ସେ ଲୋକଟାର ତ କିଛି କ୍ଷମତା ନାହିଁ । ଭିଏନା ପାଖେ ଆମେ ଯେତେବେଳେ ପୋଲ ଉପରେ ନଈପାରି ହୋଇ ଆସିଲୁଁ, ସେତେବେଳେ ଅଷ୍ଟ୍ରିଆର ସୈନ୍ୟ ବାହିନୀ ଆପେ ଆପେ ଚିଟା କାଟିଦେଲେ, ଆଉ ଆପଣ ଯେ, କଣ ନା ରୁଷ୍ ସମ୍ରାଟଙ୍କର ଜଣେ ପାର୍ଶ୍ୱରକ୍ଷୀ ସେନାପତି ଆପଣଙ୍କୁ ଚିଟାକାଟି ଦେଉଛନ୍ତି ଆପଣ ଚାଲିଏଁ ଚାଲିଏଁ ଠକେଇରେ ପଡୁଛନ୍ତି । ଇତି ।

"ନେପୋଲିଅନ୍"

ମୁରାଟଙ୍କ ପାଖକୁ ଏ ଯେଉଁ ଧମକଦିଆ ଚିଠି ଲେଖାହେଲା, ତାକୁ ନେଇ ନେପୋଲିଅନଙ୍କ ପାର୍ଶ୍ୱରକ୍ଷୀ ଘୋଡ଼ାକୁ ପୁରା କଦମ ଛୁଟେଇ ଧାଇଁ ଚାଲିଗଲେ । ଆଉ ତାଙ୍କ ସେନାପତିମାନଙ୍କ ଉପରେ ବିଶ୍ୱାସ ନ ରଖି ନେପୋଲିଅନ୍ ତାଙ୍କର ସମଗ୍ର ସୈନ୍ୟବାହିନୀକୁ ଧରି ନିଜେ ଯୁଦ୍ଧକ୍ଷେତ୍ର ଆଡ଼କୁ ଆଗେଇ ଚାଲିଲେ । ସେ ଡରୁଥିଲେ, କାଳେ ଜାଲରେ ପଡ଼ିଥିବା ଜନ୍ତୁ ତାଙ୍କ ଆଙ୍ଗୁଠି ସନ୍ଧିରେ ଖସି ପଳାଇଯିବ । ଇତ ·ବସରରେ ବାଗ୍ରାଭିଅନ୍‌ଙ୍କ ସୈନ୍ୟଦଳ ଭିତରେ ଚାରିହଜାର ସୈନ୍ୟ ଘରି ଖୁସିରେ ଅଗି ଲଗାଇ ଓଦାକୁ ଶୁଖେଇଦେଲେ, ଉଷ୍ମ ହେଲେ, ତିନି ଦିନରେ

ପହ୍ବଲଥର ହୋଇ ଜାଉ ଗନ୍ଧଲେ । ତାଙ୍କ ଭିତରୁ କେହି ଜାଣି ନ ଥିଲେ କି ସ୍ବପ୍ନରେ ବି ଭାବି ନ ଥିଲେ ଯେ ତାଙ୍କ କପାଳରେ କ'ଣ ଅଛି ।

ଓପରଓଲ ଗୃରିଟା ନ ବାଜୁଣୁ ପ୍ରିନ୍‌ସ୍ ଆନ୍ଦ୍ରେ ଗ୍ରୁନ୍ତେଠାରେ ପହଞ୍ଚିଯାଇ ବାଗ୍ରାଭିଅନ୍‌ଙ୍କ ସଙ୍ଗେ ମିଶିଗଲେ । ସେନାପତିବେଲଙ୍କୁ ବୋନାପାର୍ଟ ପଠାଇଥିବା ଦୂତ ଆସି ମୁରାଟଙ୍କ ପାଖରେ ପହଞ୍ଚି ନ ଥାନ୍ତି । ବାଗ୍ରାଭିଅନ୍‌ଙ୍କ ଦଳର ଲୋକେ ବାହାରେ କ'ଣ ହେଉଛି, ସେକଥା ଜାଣି ନ ଥାନ୍ତି । ସେମାନେ ଶାନ୍ତି ବିଷୟରେ କଥାଭାଷା ହେଉଥିଲେ, କିନ୍ତୁ ପ୍ରକୃତରେ ଶାନ୍ତି ହୋଇ ପାରିବ, ଏ ବିଶ୍ବାସ ତାଙ୍କର ନ ଥିଲା । ସେମାନେ ଯୁଦ୍ଧ କଥା ବି କଥାଭାଷା ହେଉଥିଲେ, କିନ୍ତୁ ଏ କଥା ବି ଜାଣି ନ ଥିଲେ ଯେ ଯୁଦ୍ଧ ବି ଆସି ଏତେ ପାଖରେ ଲାଗିଗଲାଣି ।

ବାଗ୍ରାଭିଅନ୍ ଜାଣିଥିଲେ ଯେ ବଲକନ୍‌ସ୍କି ଏକ ବିଶ୍ବାସୀ ଓ ଅତିପ୍ରିୟ ପାର୍ଶ୍ବରକ୍ଷୀ । ତେଣୁ ସେ ତାଙ୍କୁ ଯେଉଁ ଭଙ୍ଗୀରେ ଅଭ୍ୟର୍ଥନା କଲେ ସେପରି ବ୍ୟବହାର ଜଣେ ସେନାପତିଙ୍କଠୁଁ ମିଳିବା ଭାରି ବଡ଼କଥା । ସେଥିରେ ପ୍ରଚୁର ଆଦର ସୁଆଗ ଜଣାପଡ଼ୁଥିଲା । ସେ ବଲ୍‌କନ୍‌ସ୍କିଙ୍କୁ କହିଲେ ଯେ ବୋଧହୁଏ ଦିନେ ଦି'ଦିନ ଭିତରେ ଏକ ଲଢ଼େଇ ଲାଗିଯିବାର ସମ୍ଭାବନା ସେ ତାଙ୍କୁ ଅନୁମତି ଦେଲେ ଯେ ଯୁଦ୍ଧ ଲାଗିଥିବା ବେଳେ ବଲ୍‌କନ୍‌ସ୍କି ତାଙ୍କ ପାଖେ ପାଖେ ରହିପାରିବେ, ଆଉ ତାଙ୍କ ସୈନ୍ୟବାହିନୀ ପଛକୁ ହଟି ପଳେଇବା ସମୟରେ ବି ତା ଉପରେ ବଲ୍‌କନ୍‌ସ୍କି ନଜର ଦେଇ ପାରିବେ । ସେଇଟା ବି ଭାରି ଜରୁରି କଥା ।

ସତେ ଯେପରି କି ବଲ୍‌କନ୍‌ସ୍କିଙ୍କ ମନରେ ସାହସ ଆଣିବା ପାଇଁ ବାଗ୍ରାଭିଅନ୍ ତାଙ୍କୁ କହିଲେ,

"କିନ୍ତୁ ଆଜି ବୋଧହୁଏ ଯୁଦ୍ଧ ଲାଗିବାର ସମ୍ଭାବନା ନାହିଁ ।"

ବାଗ୍ରାଭିଅନ୍ ଭାବିଲେ, "ଅନ୍ୟମାନଙ୍କ ପରି ଯେବେ ବି ଯଦି ଜଣେ ଛୋଟିଆ ମୋଟିଆ ଲୋକଦେଖାଣିଆ ହୁକୁମ ବଢେଇବା କର୍ମଚାରୀ ହୋଇଥିବ, ଯେ ଏଠିକି ପଠାହୋଇଛି ଖାଲି ଗୋଟାଏ ନାଁ କମେଇବ ବୋଲି, ଗୋଟାଏ ସମ୍ମାନର ଚିହ୍ନ ଛକି ପଦକ ପାଇବ ବୋଲି, ତେବେ ତ ସେ ପଛପଟେ ସୈନ୍ୟଙ୍କ ସଙ୍ଗେ ରହିଲେ ବି ତା' ପାଇପାରିବ । ଆଉ ଯଦି ପ୍ରକୃତରେ ତାର ଇଚ୍ଛା ସେ ମୋ ପାଖରେ ରହିବ ତ ରହୁ ସେ,…

ସତରେ ଯଦି ସେ ଗୋଟିଏ ସାହସୀ କର୍ମଚାରୀ ହୋଇଥିବ, ତେବେ ତ କାମରେ ଲାଗିବ ।"

ତାଙ୍କ କଥାର ଉତ୍ତର ନଦେଇ ପ୍ରିନ୍ସ୍ ଆନ୍ଦ୍ରେ ପ୍ରିନ୍ସ୍ ବାଗ୍ରାତିଅନ୍‌ଙ୍କ ଅନୁମତି ମାଗିନେଲେ ଯେ ସୈନ୍ୟମାନେ ସେଉଁଠି ଗୁଳି ଭରି ରହିଛନ୍ତି, ସେ ତା ଚାରପଟେ ଘୋଡ଼ାରେ ଚଢ଼ି ଟିକିଏ ବୁଲିଆସି କିଏ କେଉଁଠି ରହିଛନ୍ତି ତା' ଦେଖିଆସିବେ, ତାହେଲେ କାହାକୁ ଗୋଟାଏ ଖବର ଦେବା ଦରକାର ପଡ଼ିଲେ, ସେ ଯାଇ ଖବରଟା କହିଦେଇ ଆସିପାରିବ ।

ଡାକପାଡ଼ିଲା କାମ ଉପରେ ଥିବା ଜଣେ କର୍ମଚାରୀଙ୍କୁ, ଖୁବ୍ ସୁନ୍ଦର ଚେହେରାର ମଣିଷ, ଭାରି ସୁନ୍ଦର ପୋଷାକ ପିନ୍ଧିଥାଏ, ତର୍ଜନୀ ଆଙ୍ଗୁଠିରେ ଗୋଟାଏ ହୀରା ମୁଦି, ସେ ଫରାସୀବୋଲି ଖୁବ୍ ଖରାପ କରି କହୁଥିଲା, କିନ୍ତୁ ଲୋକଟାଠି ଆତ୍ମବିଶ୍ୱାସ ଥିଲା । ତାକୁହିଁ କୁହାଗଲା ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ସଙ୍ଗରେ ନେଇ ବୁଲେଇ ଆଣିବାକୁ ।

ଚାରିପଟେ ସେମାନେ ଦେଖିଲେ, ଓଦା ଜୁଡ଼ୁବୁଡ଼ୁ କର୍ମଚାରୀ ତାଙ୍କ ମୁହଁସବୁ ବିରକ୍ତ ଦିଶୁଥିଲା, ଲାଗୁଥିଲା, ସେମାନେ ସତେକି କ'ଣ ଖୋଜୁଛନ୍ତି । ଆଉ ଦେଖିଲେ, ସୈନ୍ୟମାନେ ଗାଁରୁ ଓଟାର ଓଟାର କବାଟ, ବେଞ୍ଚ, ହତାର ବାଡ଼ ସବୁ ନେଇ ଚାଲି ଆସୁଥାନ୍ତି ।

କର୍ମଚାରୀ କହିଲେ, "ହେଇ ଦେଖନ୍ତୁ ଆଜ୍ଞା, ଏଗୁଡ଼ାଙ୍କୁ ଅଟକେଇ ହେବନାହିଁ । ଦଳପତିମାନେ ତାଙ୍କ ଅଧୀନର ସୈନ୍ୟଙ୍କୁ ତ ଜମା ଆକଟରେ ରଖିପାରୁନାହାନ୍ତି, ମେଲା ଛାଡ଼ି ଦେଉଛନ୍ତି ।"

ଗୋଟାଏ ଜଳଖିଆ ଦୋକାନର ଚାଳଆଡ଼କୁ ହାତ ଦେଖାଇ ସେ କହିଲେ—

"ଦେଖନ୍ତୁ ଏଇଠି ସେମାନେ ସବୁ ଏକାଠି ହୁଅନ୍ତି, ଏଇଠି ବସି ପଡ଼ନ୍ତି । ଆଜି ସକାଳୁ ମୁଁ ଏମାନଙ୍କୁ ସବୁ ଏଠୁ ଘଉଡ଼େଇ ଦେଇଥିଲି, ପୁଣି ଦେଖନ୍ତୁ ଜାଗାଟା ଭର୍ତ୍ତି ହୋଇଗଲାଣି । ଯାଏଁ ଫେର୍ ତାଙ୍କୁ ଡରେଇ ହରେଇ ତଡ଼ି ଦେଇ ଆସେଁ ଆଜ୍ଞା, ଟିକିଏ ରହନ୍ତୁ ମୁଁ ଅଇଲୁ ଆସୁଛି ।"

ପ୍ରିନ୍ସ୍ ଆନ୍ଦ୍ରେ ଏ ପର୍ଯ୍ୟନ୍ତ କିଛି ଖାଇବାକୁ ବେଳ ପାଇ ନ ଥାନ୍ତି, କହିଲେ, "ଆସନ୍ତୁ ଆମେ ହିଁ ଯାଇ ଯିବା, ମୁଁ ସେଠିକି କିଛି ରୁଟି ଆଉ ଛେନା ସାଙ୍ଗରେ ନେଇ ଯିବି ।"

"ମତେ କାହିଁକି କିଛି କହିଲେ ନାହିଁ ପ୍ରିନ୍ସ୍ ? ମୁଁ ତ ଆପଣଙ୍କୁ କିଛି ଖାଇବାକୁ ଦେଇ ପାରିଥାନ୍ତି !" ।

ସେ ଦୁହେଁ ଘୋଡ଼ାରୁ ଓହ୍ଲାଇ ଜଳଖିଆ ଦୋକାନକୁ ଗଲେ ବହୁତ କର୍ମଚାରୀ ଟେବୁଲ ଚାରିପାଖେ ବସିପଡ଼ି ଖାଉଥାନ୍ତି, ମଦ ପିଉଥାନ୍ତି । ସେମାନଙ୍କ କ୍ଲାନ୍ତ ମୁହଁରେ ଉତ୍ସାହ ଫୁଟି ଉଠିଥାଏ ।

କର୍ମଚାରୀ ସେମାନଙ୍କୁ କଥା କହିଲେ । ସେହି କଥା ସେହି କଥା ବହୁତ ଥର ବାରମ୍ବାର କହି କହି ଜଣେ ଲୋକର ସ୍ୱରରେ ଯେପରି ଛିରସ୍କାର ଫୁଟି ଉଠିବ ସେହିପରି ଶୁଭୁଥାଏ ତାଙ୍କ ସ୍ୱର ।

କହିଲେ, "ଏ ସବୁ କ'ଣ ଚାଲିଛି ଆଜ୍ଞା ? ଏମିତି ଆପଣମାନେ ଅନୁପସ୍ଥିତ ରହିଲେ ତ କାମ ଚଳିବନାହିଁ । ପ୍ରିନ୍ସ୍ ତ ଆଦେଶ ଶୁଣାଇ ଦେଇଛନ୍ତି ଯେ କେହି ଆପଣା ଜାଗାରୁ ଲୁଆଡ଼େ ଯିବେ ନାହିଁ ?"

ହାବୁଡ଼େ ପଡ଼ିଲା ଜଣେ ସରୁଆ ଛୋଟିଆ ମଣିଷ, ସେ ତୋପ-ଚାଳକବାହିନୀର କର୍ମଚାରୀଟିଏ, ସେ ଗୋଡ଼ରେ ମୋଜା ପିନ୍ଧିଥାଏ (ସେ ତା' ଓଦାଯୋତା ଯୋଡ଼ାକ ଓହ୍ଲାଇ ପକାଇ ଶୁଖିବାକୁ ସେହି ଦୋକାନୀ ମାଫତ୍ ଦେଇ ଦେଇଥାଏ । ତାକୁ ଦେଖି ସେ କର୍ମଚାରୀ ଠିଆ ହୋଇ ପଡ଼ିଲେ, ହସୁଥାନ୍ତି, କିନ୍ତୁ ହସ ଅସ୍ୱାଭାବିକ ବାଗୁଥାଏ । କର୍ମଚାରୀ ତାକୁ କହିଲେ.

"ଆସନ୍ତୁ ଆଜ୍ଞା କ୍ୟାପ୍‌ଟେନ୍—"

ପୁଣି କହିଲେ,

"ଆପଣଙ୍କୁ ଲାଜ ମାଡ଼ୁନାହିଁ କ୍ୟାପ୍‌ଟେନ୍ ତୁସିନ୍ ? ମୁଁ ସିନା ଭାବିଥିଲି ଯେ ଆପଣ ତୋପ ଚାଳକ ବାହିନୀର କର୍ମଚାରୀ ହିସାବରେ ଅନ୍ୟମାନଙ୍କୁ ଆଦର୍ଶ ଦେଖାନ୍ତେ, ଅଥଚ ଆପଣ ଯୋତା ହିଁ ମାଡ଼ି ନାହାନ୍ତି ! ହଠାତ୍ ଯଦି ସତର୍କ ଘଣ୍ଟି ବାଜି ଉଠିଲେ ଯୋତା ନ ଥାଇ ଆପଣ ଆଚ୍ଛା ଅବସ୍ଥାରେ ପଡ଼ିବେ ତ ! " (କର୍ମଚାରୀ ହସିଦେଲେ),

କର୍ତ୍ତୃତ୍ୱ ଦେଖାଇଲାପରି ଦୃଢ଼ସ୍ୱରରେ ସେ ଡାକ ପକାଇଲେ,

"ଆପଣମାନେ ସମସ୍ତେ ନିଜ ନିଜ ସ୍ଥାନକୁ ଫେରିଯାଆନ୍ତୁ,— ସମସ୍ତେ—ସମସ୍ତେ—"

କ୍ୟାପ୍‌ଟେନ୍ ତୁସିନ୍‌ଙ୍କୁ ଅନାଇଁ ଦେଇ ପ୍ରିନ୍ସ୍ ଆନ୍ଦ୍ରେ ନ ହସି ରହି ପାରିଲେନାହିଁ । କିଛି ନ କହି ହସି ହସିକା ତୁସିନ୍ ଗୋଟାଏ ଖାଲି

ପାଦରୁ ଆଜ ଗୋଟାଏ ଖାଲି ପାଦକୁ ଦେହର ଭାର ବଦଳେଇ ଦେଲେ। ବଡ଼ ବଡ଼ ବୁଦ୍ଧିମାନ୍ ଶାନ୍ତ ଆଖିରେ ପରୁଚଲି ଭଳି ସେ କର୍ମଚ୍ଚାରୀଙ୍କୁ ଆଜ ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ଅନାଇଁ ଗଲେ।

ଲାଜକୁଳା ହସ ହସି କ୍ୟାପ୍ଟେନ୍ ଭୁସିନ୍ କହିଲେ, "ସୈନ୍ୟମାନେ କହନ୍ତି ଖାଲି ଗୋଡ଼ରେ ଆହୁରି ବେଶି ସୁବିଧା ହୁଏ।"

ଦୁରବସ୍ଥାକୁ ପରିହାସରେ ଉଡ଼େଇ ଦେବାପାଇଁ ସେ ବ୍ୟାକୁଳ ଥିବାର ଜଣାଗଲା, କିନ୍ତୁ ମନ କଥା ଭୁଣ୍ଡରୁ ନ ବାହାରୁଣୁ ସେ ବୁଝିଲେ ଯେ ସେ ଥଟ୍ଟା ଚଳିବ ନାହିଁ ଓ ଚଳିଲା ବି ନାହିଁ।

ସେ ବିବ୍ରତ ହୋଇ ପଡ଼ିଲେ।

କର୍ମଚ୍ଚାରୀ ଆପଣା ଗାମ୍ଭୀର୍ଯ୍ୟ ରକ୍ଷା କରିବାକୁ ଚେଷ୍ଟାକରି କହିଲେ, "ଯାଉନ୍ତୁ ସବୁ ଚାଲି ଆପଣା ଆପଣା ଜାଗାକୁ।"

ପ୍ରିନ୍ସ୍ ଆନ୍ଦ୍ରେ ଆହୁରି ଥରେ ସେହି ତୋପ ଚାଳକଦଳର କର୍ମଚ୍ଚାରୀଙ୍କ ବାଙ୍ଗର ଚେହେରାକୁ ଅନାଇଁଲେ। ସେ ଚେହେରାରେ ଏକ ପ୍ରକାର ବିଶିଷ୍ଟତା ଥିଲା। ସୈନିକର ଚେହେରା ପରି ସେ ତ ଆଦୌ ନୁହେଁ, ବରଂ ଦେଖିଲେ ହସ ମାଡ଼ିବ, କିନ୍ତୁ ତାକୁ ଅନାଇଁ ଦେଲେ ଲୋକ ତାଙ୍କ ପ୍ରତି ଆକୃଷ୍ଟ ହେବ।

କର୍ମଚ୍ଚାରୀ ଓ ପ୍ରିନ୍ସ୍ ଆନ୍ଦ୍ରେ ନିଜ ନିଜ ଘୋଡ଼ା ଚଢ଼ି ଚାଲିଗଲେ।

ଘୋଡ଼ାରେ ଚଢ଼ି, ଗାଁ ବାହାରକୁ ଚାଲି ଯାଇ, ନାନା ପଦବୀର ନାନା ଶ୍ରେଣୀର ସୈନିକ ଓ କର୍ମଚ୍ଚାରୀଙ୍କି ବାରମ୍ବାର ଭେଟି, ନହେଲେ ପଛରୁ ଯାଇ ସେମାନଙ୍କ ପାଖରେ ପହଞ୍ଚି, ସେମାନେ ଦେଖିଲେ ଯେ ବାଟ ଘାଟରେ ଗୋଟାଏ ମାଟି ବନ୍ଧ ପକା ହେଉଛି, ନୂଆ ହୋଇ ଖୋଳା ହୋଇଥିବା ମାଟିରେ ସେ ବନ୍ଧ ନାଲି ଦିଶୁଥାଏ। ଶୀତୁଆପବନ ଦେଉଥିଲେ ବି ବହୁତ ବହୁତ ଦଳର ସୈନ୍ୟ କାମିଜ୍ ପିନ୍ଧି ସେହି 'ମାଟିବନ୍ଧ କାମରେ ଉଇ ପରି ଲାଗିପଡ଼ିଥାନ୍ତି। ଭୂଇଁତଳେ ସୈନ୍ୟ ଲୁଚି ରହିବାକୁ ଯେଉଁ ଖାଲ ଖୋଳା ହେଉଥାଏ, ତା' ଭିତରୁ କୋଡ଼ିଭର୍ତ୍ତି ମାଟି ଅଦେଖା ହାତ ଦ୍ୱାରା ପଦାକୁ ଫୋପଡ଼ା ହେଉଥାଏ। ସେମାନେ ସେ ଖାଲ ପାଖକୁ ଗଲେ, ତାକୁ ପରୀକ୍ଷା କଲେ ଓ ଆହୁରି ଆଗକୁ ଗଲେ। ସେମାନେ ଦେଖିଲେ, ପଲ ପଲ ସୈନିକ ସେହି ଖାଲ ପାଖରୁ ପଦାକୁ ଦୌଡ଼ ଦୌଡ଼ ଯା' ଆସ ହେଉଛନ୍ତି। ଗୋଟାଏ ଖୋଲା ପାଇଖାନା ହୋଉଛି ସେ ଜାଗାଟା,

ପବନରେ ସତେ ଅବା ମହାମାରୀର ଦୁର୍ଗନ୍ଧ, ସେ ଦୁର୍ଗନ୍ଧରୁ ରକ୍ଷା ପାଇବାକୁ ସେମାନଙ୍କୁ ନାକକୁ ଚିପି ଧରିବାକୁ ପଡ଼ୁଥିଲା, ଆଉ ଘୋଡ଼ାକୁ କଦମ ଦଉଡ଼େଇବାକୁ ପଡ଼ୁଥିଲା ।

ଆଉ ପାଖର ପାହାଡ଼ ଉପରକୁ ସେମାନେ ଘୋଡ଼ା ଚଢ଼ି ଉଠି ଗଲେ । ସେହି ପାହାଡ଼ ଉପରୁ ସେମାନେ ଫରାସୀ ସୈନ୍ୟଙ୍କୁ ଦେଖି ପାରିଲେ । ପ୍ରିନ୍ସ୍ ଆନ୍ଦ୍ରେ ଅଟକ ଯାଇ ସାମ୍ନାରେ ଯାହା ଦିଶୁଥାଏ ତାକୁ ନିରେଖି ଦେଖିଲେ ।

ସବୁଠୁ ଉଚ୍ଚ ଯାଗା ଆଡ଼କୁ ଆଙ୍ଗୁଠି ଦେଖାଇ କର୍ମଚାରୀ କହିଲେ,

"ହେଇ ଦେଖନ୍ତୁ, ସେଇଠି ଅଛି ଆମର ତୋପ, ସେ ଯେଉଁ ଅଖାଡ଼ୁଆ ଲୋକଟାକୁ ନେଇ ଆସିଲେ, ଯାହା ଗୋଡ଼ରେ ଯୋତା ନ ଥିଲା, ତୋପ ଚଲାଇବାର ଭାର ତାର ହାତରେ । ସେଠୁ ଆପଣ ସବୁ ଦେଖି ପାରିବେ, ଚାଲନ୍ତୁ ସେଠିକି ଯିବା ପ୍ରିନ୍ସ୍ ।"

"ବହୁତ ଧନ୍ୟବାଦ", ପ୍ରିନ୍ସ୍ ଆନ୍ଦ୍ରେ କହିଲେ । ସେ ଭାବୁଥାନ୍ତି ଏ କର୍ମଚାରୀ କେମିତି ତାଙ୍କ ପାଖରୁ ଚାଲି ଯାଆନ୍ତା କି ! କହିଲେ,

"ଏଥର ମୁଁ ଏକୁଟିଆ ଯିବି, ଆପଣ ଆଉ ମୋ ପାଇଁ କଷ୍ଟ କରନ୍ତୁ ନାହିଁ ।

କର୍ମଚାରୀ ତାଙ୍କଠୁଁ ବିଦାୟ ନେଇ ଚାଲିଗଲେ, ପ୍ରିନ୍ସ୍ ଆନ୍ଦ୍ରେ ଏକୁଟିଆ ଘୋଡ଼ାଚଢ଼ି ବୁଲିଲେ ।

ପ୍ରିନ୍ସ୍ ଆନ୍ଦ୍ରେ ଆଗ ଡାହାଣରୁ ବାଁକୁ ସମୁଦାୟ ସୈନ୍ୟବାହିନୀ ଚାରିକରେ ଥରେ ବୁଲିଆସିଲେ । ତା'ପରେ ସେ ଗଲେ ସେହି ତୋପ ପାଖକୁ ଯେଉଁଠୁ ସମୁଦାୟ ଯୁଦ୍ଧକ୍ଷେତ୍ର ଦେଖାଯିବ ବୋଲି ତାଙ୍କୁ ସେ କର୍ମଚାରୀ କହିଗଲେ ।

ସେଠି ପହଞ୍ଚି ସେ ଘୋଡ଼ାରୁ ଓହ୍ଲେଇ ପଡ଼ିଲେ । ଚାରୋଟି ତୋପ ପିଢ଼ି ଉପରୁ ଓହ୍ଲାଇ ରଖା ହୋଇଥାଏ, ତହିଁରୁ ଗୋଟାକର ସେ ମୁଣ୍ଡରେ ଯାଇ ସେ ଠିଆ ହେଲେ । ତୋପମାନଙ୍କ ଆଗରେ ଜଣେ ତୋପ ଚଲାଇବା ଲୋକ ପହରା ଥାଏ । ସେ ଠିକ୍ ତାଙ୍କ ମୁହାଁମୁହିଁ ଅଟକ ଯାଇଥାଏ, କିନ୍ତୁ ତାକୁ ସଙ୍କେତ କରିଦେବା ମାତ୍ରେ ସେ ପୁଣି ତାର ମପାଚୁପା ଘୋରଚେଇ ପୋରଚେଇ ଚାଲି ଆରମ୍ଭ କରିଦେଲା । ତୋପମାନଙ୍କ ପଛଆଡ଼େ ଥୁଆ ହୋଇଥାଏ ସେମାନଙ୍କ ପିଢ଼ିମାନ । ଆହୁରି ପଛକୁ ଥାଏ

ଆଗୁଳ ଦଉଡ଼ମାନ ଓ ତୋପ ଚଳେଇବା ଫଉଜଙ୍କ ଗ୍ଭଉଣୀ ଅଛି। ତୋପମୁଣ୍ଡରୁ ବେଶି ଦୂର ନୁହେଁ ବାଁ ପଟକୁ ଥାଏ ନୂଆ ହୋଇ ଟେକା ହୋଇଥିବା ଗୋଟାଏ ତମ୍ବୁଘର। କର୍ମଚାରୀମାନେ ସେଠି ବଢ଼ି ଘନ ଘନ କଥାବାର୍ତ୍ତା କରୁଥିବାର ଶୁଭୁଥାଏ।

ସେହି ତୋପ ଖଞ୍ଜା ହୋଇଥିବା ସ୍ଥାନଠାରୁ ରୁଷବାହିନୀର ସମୁଦାୟ ଅଂଶ ଦିଶୁଥାଏ ଓ ଶତ୍ରୁପକ୍ଷର ଅଧିକାଂଶ ଭାଗ ଦିଶୁଥାଏ। ତୋପର ସିଧା ସଳଖେ ଆର ପାଖର ପାହାଡ଼ ଉପରର ଦିଗ୍‌ବଳୟରେ ଦିଶୁଥାଏ ସ୍କନ-ଗ୍ରାବେନ୍ ଗାଁ। ବାଁକୁ ଡାହାଣକୁ ଗ୍ଭଉଣୀ ଅଗ୍ନିମାନଙ୍କ ଧୂଆଁ ଭିତର ଦେଇ ତିନ ପାଖେ ଦିଶୁଥାନ୍ତି ଗହଳ ହୋଇ ଫରାସୀ ସୈନ୍ୟ। ତହିଁରୁ ବେଶୀ ଭାଗ ନିଶ୍ଚୟ ପାହାଡ଼ ସେପଟେ ଗାଁ ଭିତରେହିଁ ରହିଥିଲେ। ଗାଁର ବାଁ ପଟେ କ'ଣଟାଏ ଦିଶୁଥାଏ ତୋପ ଗ୍ଭଉଣୀ ଭଳି ଯେ ଖାଲି ଆଖିରେ ସେଇଟା ଭଲକରି ବାରି ହେଉ ନଥାଏ। ରୁଷ୍‌ପକ୍ଷର ଡାହାଣ କଡ଼ ସୈନ୍ୟ ଗୋଟାଏ ଖାଖ ଢିପ ଉପରେ ଥାନ୍ତି, ଫରାସୀ ସୈନ୍ୟଙ୍କର ଠିକ୍ ଉପରେ। ତାର ଚାରିକରେ ସଜା ହୋଇଥାନ୍ତି ରୁଷ୍ ବାହିନୀର ପଦାତିକ ସୈନ୍ୟମାନେ ଢିପ ଉପରେ ଦିଶୁଥାନ୍ତି ଘୋଡ଼ସବାର ସୈନ୍ୟ। ଠିକ୍ ମଝିରେ, ଯେଉଁଠି ତୁସିନ୍‌ଙ୍କ ତୋପମାନ ଖଞ୍ଜା ହୋଇଥାଏ ଆଉ ଯେଉଁଠୁ ପ୍ରିନ୍‌ସ୍ ଆନ୍ଦ୍ରେ ସେ ଆଡ଼କୁ ଦେଖୁଥାନ୍ତି, ସେଠି ଥାଏ ଗୋଟାଏ ଖାଖ ଡାଲୁ, ରୁଷ୍ ସୈନ୍ୟ ଓ ସ୍କନଗ୍ରାବେନ୍ ଗାଁ ମଝିରେ ଯେଉଁ ନଈ ଥାଏ, ଏ ଜାଗାରେ ଝୁଖ ଡାଲୁ ସିଧା ସଳଖେ ସେଇ ନଈରେ ଯାଇ ଛୁଇଁଥାଏ। ବାଁ ପଟେ ରୁଷ୍ ସୈନ୍ୟ ଥାନ୍ତି ଜଙ୍ଗଲ ମଝିରେ ଗୋଟାଏ ଖୋଲା ଜାଗା ପାଖେ, ସେଠି ରୁଷ ପଦାତିକମାନେ କାଠ ହାଣୁଥାନ୍ତି ଓ ସେମାନଙ୍କ ଗ୍ଭଉଣୀ ମଝିରୁ ଧୂଆଁ ଉଠୁଥାଏ। ଫରାସୀସୈନ୍ୟଙ୍କ ଧାଡ଼ି ରୁଷ୍ ସୈନ୍ୟଙ୍କ ଧାଡ଼ି ଅପେକ୍ଷା ଅଧିକ ଓସାର ଦିଶୁଥାଏ ଓ ପରିଷ୍କାର ଜଣାପଡ଼ୁଥାଏ ଯେ ସେମାନେ ସହଜରେ ବାଁ ଡାହାଣ ଦୁଇପଟେ ରୁଷ୍ ସୈନ୍ୟଙ୍କ ପଛଆଡ଼େ ଘେରି କରିପାରିବେ। ରୁଷ୍ ସୈନ୍ୟ ଯେଉଁଠି ଥାନ୍ତି, ତା ପଛଆଡ଼େ ଗୋଟାଏ ଖାଖ ଅତଡ଼ା ଛୁଇଁଥାଏ, ଗୋଟାଏ ଗଭୀର ଖାଲ ଭିତରକୁ, ତେଣୁ ତୋପ ବନ୍ଧୁକ ଓ ଘୋଡ଼ସବାର ସୈନ୍ୟ ଧରି ପଛକୁ ହଟିଯିବା ଖୁବ୍ କଷ୍ଟ ହେବା ଜଣା ପଡ଼ୁଥାଏ।

ପ୍ରିନ୍‌ସ୍ ଆନ୍ଦ୍ରେ ତୋପ ଉପରେ କହୁଣୀ ଭରାଦେଇ ଟିପା ଖାତା ନେଇ ସୈନ୍ୟ ଶ୍ରେଣୀର ନକ୍‌ସା କାଟିଲେ । ସେ ଯେତେବେଳେ ଯାକେ ସେ ତୋପ ଉପରେ ବସିଥିଲେ, ସେତେବେଳଯାକେ ସେହି ତମ୍ବୁ ଘର ଭିତରୁ କର୍ମଚାରୀମାନଙ୍କର ପାଟି ଭୁସ୍ତ ଶୁଣି ପାରୁଥାନ୍ତି, କିନ୍ତୁ ସେମାନେ କଣ କହୁଥାନ୍ତି ସେ କଥା ତାଙ୍କ ମୁଣ୍ଡରେ ପଶୁ ନ ଥାଏ । ହଠାତ୍ ସେ କାହାର ଜଣକର ପାଟି ଶୁଣିଲେ । ସେ ସ୍ୱରରେ ଏପରି ଆନ୍ତରିକତା ଥିଲା ଯେ ସେ ତାକୁ କାନ ନ ଡେରି ରହିପାରିଲେ ନାହିଁ ।

ଗୋଟିଏ ମିଠା ସ୍ୱର, ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ଚହ୍ଲା ଚହ୍ଲା ଲାଗିଲା, ସେହି ସ୍ୱରରେ ଶୁଭିଲା,

"ନାଇଁବାବୁ, ମୁଁ କହୁଛି ମଲା ପରେ କଣ ହେବ ଯଦି ମଣିଷ ଜାଣିପାରନ୍ତା, ତେବେ ଆମ ଭିତରୁ ଆଉ କେହି ମରିବାକୁ ଡରନ୍ତା ନାହିଁ । ଏତିକି ତ କଥା ବାବୁ, ଆଉ କଣ ?"

ସେହି କଥାରେ ବାଧା ଦେଇ ଗୋଟାଏ ଟୋକାଳିଆ ସ୍ୱର କହିବାର ଶୁଭିଲା, "ଡର କି ନଡର ଉଧିରି ଯିବାର ବାଟ ଆଉ ନାହିଁ ।"

ସେ ଦୁହିଁଙ୍କ କଥା ଉପରେ କଥା କହିଲା ଆଉ କିଏ ଜାଣେ, ଗୋଟିଏ ପୁରୁଷ କଣ୍ଠରେ,

'ସବୁବେଳେ ତେମେଗୁଡ଼ାକ ଖାଲି ଗୋଟାସୁଦ୍ଧା ଗ୍ରୁନଆଁ, ମୁଁ ଦେଖିଛି ! ଆରେ ତମ ପାଠୂଆ ଲୋକଗୁଡ଼ାକୁ ଖାଲି ଛୁଁ କହିବ । ଯାହାହେଉ, ତେମେ ତୋପ ଚାଳକ ଦଳର ଲୋକେ ଭାରି ବୁଦ୍ଧିଆ ପଡ଼ିଗଲ ଯେ, ଖାଇବା ପିଇବା ଜନିଷ ସବୁ ତମର ଯାହା ଯାହା ଦରକାର ସବୁ ତେମେ ତମ ସାଙ୍ଗରେ ବୁହାଇ ନେଇ ଗୁଲଛ, ନା କ'ଣ "

ଜଣା ପଡ଼ୁଥାଏ ଯେ ସେହି ପୁରୁଷ କଣ୍ଠଟି ଯାହାର ସେ ପଦାତିକ ସୈନ୍ୟବାହିନୀର ଜଣେ କର୍ମଚାରୀ । ସେ ହସିଲା ।

ପ୍ରଥମ ସ୍ୱର, ସେହି ଯେଉଁ ସ୍ୱର ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ଚହ୍ଲା ଚହ୍ଲା ଲାଗୁଥାଏ, ସେ ପୁଣି କହିଲା

"ତଥାପି ମଣିଷକୁ ଡର ମାଡ଼େ । ଅଜଣାଟାକୁହିଁ ମଣିଷ ଡର ମରେ. ଅସଲ କଥା ସେଇଆ । ଆତ୍ମାଟା ସ୍ୱର୍ଗକୁ ଯାଏ ବୋଲି କହିଦେବାକୁ ତ ପାଟିରେ ବାଟଲ ବାଜବ ନାହିଁ···ତେବେ ଆମ ଖାଲି ଏତିକି ଜାଣିଚୁଁ ଯେ ସ୍ୱର୍ଗ ବୋଲି କଛି ନାହିଁ, ଅଛି ବାୟୁମଣ୍ଡଳ ।"

ପୁଣି ସେ ପରୁଷ କଣ୍ଠସ୍ୱର ତା' କଥାରେ ବାଧା ଦେଇ କହିଲା,

"ଛାଡ଼ ହୋ ସେ କଥା । ଶୁଣ ତୁଷିନ୍, ତୁମଠିଁ ସେ ଯେଉଁ ଜଡ଼ିବୁଟିରେ ତିଆରି ହୋଇଥିବା ମଦ ଅଛି, ଦେଲ ଆମକୁ ଟୋପାଏ ସେଥିରୁ ।"

ସେହି ମେଳାପୀ ଦାର୍ଶନିକର ସ୍ୱରକୁ ଚିହ୍ନିପାରି ପ୍ରିନ୍ସ୍ ଆନ୍ଦ୍ରେ ଭାବିଲେ,

"ଆରେ ସ୍ୱେ ସେହି କ୍ୟାପ୍ଟେନ୍‌ରେ । ସେହି ଯେ ଆପଣା ଯୋତା ହଳକ ଦୋକାନ ଘର ଭିତରେ ଥୋଇ ଦେଇ ଖାଲି ପାଦରେ ଥିଲ ସ୍ୱେ ସେହି ।"

ତୁଷିନ୍ କହିଲା, "ଜଡ଼ିବୁଟିରୁ ତିଆରି ମଦ ତୁମକୁ ମୁଁ ନିଶ୍ଚେ ଦେବି ଯେ, ତେବେ କ'ଣ କି, ଏ ପରି ଜନ୍ମ ବିଷୟଟା ଭାବିଲାବେଳକୁ ଲାଗୁଛି···"

ତା' ବାକ୍ୟଟାକୁ ସେ ଆଉ ଶେଷ କରି ପାରିଲାନାହିଁ । ପବନରେ ଗୋଟାଏ ସର- ସର ଶବ୍ଦ ଶୁଭିଲା । ଶବ୍ଦଟା ଆହୁରି କଡ଼କ କଡ଼କ ତର ତର ହୋଇ ପରିଷ୍କାର ହୋଇ ଭାସି ଭାସିକା ଚାଲିଆସିଲା, ତୋପ ଗୁଳାଟା ଆପଣାର ସବୁ ବକ୍ତବ୍ୟ ଶେଷ ନ କରୁଣୁ ତମ୍ବୁ ଘରଠାରୁ ଅଳ୍ପ ଦୂରରେ ଦୁମ୍ କିନା ମାଟିରେ ପଡ଼ିଲା ଆଉ ରାକ୍ଷସ ପରି ବଳରେ ମାଟିଗୁଡ଼ାକୁ ଭଣିଭଣା କରି ଫୋପାଡ଼ି ଦେଲା । ଜଣା ଯାଉଥାଏ ଯେପରି କି ଗୋଟାଏ ପ୍ରଚଣ୍ଡ ଆଘାତ ପାଇ ବସୁଧା କାନ୍ଦି ଉଠିଲା ।

ଠିକ୍ ସେତିକିବେଳେ, ଅନ୍ୟମାନେ ସେ ଘର ଭିତରୁ ପଦାକୁ ନ ବାହାରୁଣୁ, ଆଗ ବଳପଡ଼ି ଧାଇଁ ବାହାରି ଆସିଲା ଟେଙ୍ଗିଆ ତୁଷିନ୍ । ତା' ମୁହଁରେ ଧୂଆଁ ପିଇବା ଛୋଟିଆ ନଳୀଟିଏ ଥାଏ, ତାର ହସ ଖୁସିମସ୍ତ ମୁହଁଟି ସେତେବେଳେ ଶୁଖିଲା ଦିଶୁଥାଏ । ତା' ପଛେ ପଛେ ଦୌଡ଼ି ଆସିଲେ ସେହି ପରୁଷ ସ୍ୱରର ଅଧିକାରୀ; ସେ ଜଣେ ଅତିକାୟ ମଣିଷ, ପଦାତିକ ବାହିନୀର ଜଣେ କର୍ମଚାରୀ, ସେ ଦୌଡ଼ି ଦୌଡ଼ି ନିଜ ଦଳକୁ ପଳାଇଗଲେ, ଗଲାବେଳେ ତାଙ୍କ କୋଟ୍ ବୋତାମ ମାରି ଦେଉଥାନ୍ତି ।

ପ୍ରିନ୍ସ୍ ଆନ୍ଦ୍ରେ ଘୋଡ଼ାରେ ବସିଲେ, କିନ୍ତୁ ଚାଲି ନଯାଇ ଯେଉଁ ଜାଗାରେ ତୋପ ଖଞ୍ଜା ହୋଇ ରହିଥିଲା ସେଇଠି ସେ ମାଣ୍ଟେଇ ରହିଲେ ।

ସେପାଖେ, ଦୂରରୁ ଯେଉଁଠୁ ତୋପ ଗୁଳଟା ଆସିଥିଲା, ସେଠି ତୋପରୁ ଧୂଆଁ ବାହାରୁଥାଏ । ପ୍ରିନ୍ସ୍ ଆନ୍ଦ୍ରେ ସେହି ଧୂଆଁକୁ ଅନାଇଁ ଥାନ୍ତି ।

ସେହି ସମତଳ ଉପରେ ଅତି ତରତର ହୋଇ ତାଙ୍କ ଦୃଷ୍ଟି ଖେଳି ବୁଲିଲା । ଫରାସୀ ସୈନ୍ୟମାନେ ଆଗେ ଦିଶୁଥିଲେ ଯେପରିକ ସେମାନେ ହଲଚଲ ବି ହେଉ ନାହାନ୍ତି, ଗୋଟାଏ ଜାଗାରେ ଠୁଳ ହୋଇ ଅଚଳ ହୋଇ ରହିଛନ୍ତି, କିନ୍ତୁ ପ୍ରିନ୍ସ୍ ଆନ୍ଦ୍ରେ ବର୍ତ୍ତମାନ ଲକ୍ଷ୍ୟ କରୁଥାନ୍ତି, ଯେ ସେହି ସୈନ୍ୟମାନେ ତେଉ ପରି ଏକର ସେକର ହୋଇ ଖେଳିଯାଉଛନ୍ତି, ଓ ବାଁ ପାଖରେ ସେ ଯେଉଁ ଜାଗାଟା ଦିଶୁଥାଏ, ସେଇଟା ପ୍ରକୃତରେ ତୋପ ଖଞ୍ଜା ହୋଇଥିବା ଘାଟି ଜାଗାଟାଏ । ସେହି ତୋପ ଘାଟି ଉପରପଟେ ସେତେବେଳେ ବି ଧୂଆଁ ଘୋଟି ରହିଥାଏ । ଆଉ ଦିଶୁଥାଏ ଯେ ଫରାସୀ ପକ୍ଷର ଦୁଇଜଣ କର୍ମଚାରୀ—ଦୁଇଜଣ ଦଳପତି ହେବେ ପରା, ସେମାନେ ପାହାଡ଼ ଉପରେ ଉପରେ ଘୋଡ଼ାରେ ବସି ଧାଇଁଥାନ୍ତି । ଫରାସୀ ପକ୍ଷର ସାନ ଧାରଟାଏ ପାହାଡ଼ ତଳ ଆଡ଼କୁ ଓହ୍ଲାଇ ଆସୁଥାଏ ଯେ ଯେପରି ସେମାନଙ୍କ ଧାର ତାହା ବାଣହୋଇ ପଡ଼ୁଥାଏ । ବୋଧହୁଏ ସୈନ୍ୟ ଧାଡ଼ିକୁ ଆହୁରି ବହଳ କରିବା ପାଇଁ ଉପରୁ ଏ ଧାରଟା ମାଡ଼ି ଆସୁଥାଏ ।

ପ୍ରଥମ ତୋପଗୁଳିର ଧୂଆଁ କଟିଯାଇ ନ ଥାଏ, ପୁଣି ସେଠି ଆହୁରି ଧୂଆଁ ଉଠିଲା, ପୁଣି ଆସିଲା ଆହୁରି ଗୋଟାଏ ତୋପଗୁଳି । ଯୁଦ୍ଧ ଲାଗିବା ଆରମ୍ଭ ହୋଇ ଯାଉଥାଏ ।

ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ଘୋଡ଼ାର ମୁହଁ ବୁଲାଇ ଦେଇ ପ୍ରିନ୍ସ୍ ବାଗ୍ରାତିଅନଙ୍କୁ ଖୋଜିବା ସକାଶେ ଗ୍ରନ୍ତେ ଗାଁକୁ ଧାଇଁଗଲେ । ତାଙ୍କ ପିଠିଆଡ଼ୁ ତୋପ ଫୁଟିବା ଶବ୍ଦ ତାଙ୍କୁ ଶୁଭୁଥାଏ । ତୋପମାଡ଼ର ଶବ୍ଦ ଆହୁରି ଜୋରରେ ଶୁଭୁଥାଏ; ତା ପରେ ତା ପରେ ଆହୁରି ଲଗା ଲଗି ହୋଇ ଆହୁରି ପାଖରେ ପାଖରେ ତୋପଶବ୍ଦ ଶୁଭୁଥାଏ । ଜଣାପଡ଼ୁଥାଏ ଯେ ରୁଷ୍ ପକ୍ଷର ସୈନ୍ୟମାନେ ଫରାସୀ ପକ୍ଷର ତୋପମାଡ଼କୁ ପାଲଟା ଉତ୍ତର ଦେବାକୁ ଆରମ୍ଭ କରିଦେଲେଣି । ତଳେ ଯେଉଁଠି ଦୁଇ ପକ୍ଷର ସୈନ୍ୟବାହିନୀ ଅତି ନିକଟ ହୋଇ ରହିଥିଲେ, ସେ ଜାଗାରୁ ବନ୍ଧୁକ ଫୁଟିବା ଶବ୍ଦ ବି ଶୁଭୁଥାଏ ।

ଠିକ୍ ସେତିକବେଳକୁ ଲେ'ମରୋଆ ନେପୋଲିଅନ୍‌ଙ୍କର ଧମକ ଚମକମୟ ଚିଠିଟାକୁ ନେଇ ଘୋଡ଼ାରେ ଚଢ଼ି ମୁରାଟ୍‌ଙ୍କ ପାଖରେ ଆସି

ପହଞ୍ଚି ଯାଇଥିଲେ, ଆଉ ମୁରାଟ୍ ସେ ଚିଠି ପଢ଼ି ଲଜ୍ଜିତ ହୋଇ ଆପଣା ଭୁଲ ସୁଧାରିବାକୁ ବ୍ୟାକୁଳ ହୋଇ ସେହି ସଙ୍ଗେ ସଙ୍ଗେ ତାଙ୍କ ସୈନ୍ୟମାନଙ୍କୁ ଦୁଇ କଡ଼କୁ ଓ ମଝିକୁ ଘଞ୍ଚାଇ ଦେଇଥିଲେ । ମୁରାଟ୍ ଆଶା କରିଥିଲେ ଯେ ସଞ୍ଜ ନବୁଡ଼ୁଣୁ ଓ ସମ୍ରାଟ୍ ନେପୋଲିଅନ୍ ଫଉଜ ନ ଆସୁଣୁ ସେ ତାଙ୍କ ଆଗରେ ଥିବା ସେ ଭୁଚ୍ଛ ରୁଷ୍ ଫଉଜଟାକୁ ମୂଳପୋଛ କରିଦେଇ ପାରିଥିବେ ।

ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ଲାଗୁଥାଏ ଯେପରି ତାଙ୍କ କଲିଜା ଭିତରକୁ ରକ୍ତ ଧପାଇ ହୋଇ ପଶୁଛି, ସେ ଭାବୁଥାନ୍ତି,

"ଆରମ୍ଭ ହୋଇଗଲା, ହେଇ ଆଇଲା, ମାଡ଼ ଆଇଲା !"

ପନ୍ଦରମିନଟ୍ ତଳେ ଯେଉଁ ସୈନ୍ୟଦଳ ସବୁ ଭୋଜନରେ ବସିଥିଲେ, କି ମଦ ପିଉଥିଲେ, ପ୍ରିନ୍ସ୍ ଆନ୍ଦ୍ରେ ଯେତେବେଳେ ସେହି ଦଳମାନଙ୍କ ଭିତରେ ବୁଲି ଦେଇଗଲେ ସେ ସବୁଠି ଦେଖିଲେ ଯେ ଅତି ତରତର ହୋଇ ସୈନ୍ୟମାନେ ଧାଡ଼ି ଧାଡ଼ି ହୋଇ ସାଜ ହୋଇ-ଯାଉଛନ୍ତି ଓ ତାଙ୍କ ବନ୍ଧୁକଗୁଡ଼ାକ ବୋହି ଆଣୁଛନ୍ତି । ପ୍ରିନ୍ସ୍ ଆନ୍ଦ୍ରେ ଆପଣା ହୃଦୟ ଭିତରେ ଯେଉଁ ଆବେଗ ଅନୁଭବ କରୁଥିଲେ, ସେ ଦେଖିଲେ ଯେ ସମସ୍ତିଙ୍କ ମୁହଁର ଛବିରେ ସେହି ଆବେଗ ଓ ଉତ୍ତେଜନା । ପ୍ରତି ସୈନିକର, ପ୍ରତି କର୍ମଚାରୀ ମୁହଁର ଭଙ୍ଗୀ ସତେକି ସେହି ଏକାକଥା କହୁଥିଲା,—

'ହେଇ ଆରମ୍ଭ ହୋଇଗଲା, ହେଇ ଆଇଲା ମାଡ଼ ! କି ଭୟଙ୍କର ! ପୁଣି କେଡ଼େ ସୁନ୍ଦର !"

ମାଟି ଖୋଳା କାମ ଯେଉଁ ଜାଗାରେ ଲାଗିଥିଲା, ସେ ଜାଗାରେ ସେ ଯାଇ ପହଞ୍ଚିବା ପୂର୍ବରୁ ଶରତ୍ ଋତୁର ସେହି ମ୍ଳାନ ଦିନର ସଞ୍ଜ ଆଲୁଅରେ ତାଙ୍କୁ ଦିଶିଲା ଯେ କେତେ ଲୋକ ଘୋଡ଼ା ଚଢ଼ି ତାଙ୍କ ଆଡ଼କୁ ଆସୁଛନ୍ତି । ସବା ଆଗରେ ଯେ ଥିଲେ, ତାଙ୍କ ମୁଣ୍ଡରେ ଟୋପି ପଶମ ଲାଗିଥିବା ମେଣ୍ଢା ଛାଲରେ ତିଆରି, ସେ ଗୋଟିଏ ଲମ୍ବା ଅଙ୍ଗୀ ପିନ୍ଧିଥିଲେ । ସେ ପ୍ରିନ୍ସ୍ ବାଗ୍ରାଡିଅନ୍ । ପ୍ରିନ୍ସ୍ ଆନ୍ଦ୍ରେ ଅଟକି ଯାଇ ପ୍ରିନ୍ସ୍ ବାଗ୍ରାଡିଅନ୍ ତାଙ୍କ ପାଖକୁ ଆସିବାଯାକେ ଅପେକ୍ଷା କଲେ । ପ୍ରିନ୍ସ୍ ବାଗ୍ରାଡିଅନ୍ ଘୋଡ଼ା ଠିଆ କଲେ ଓ ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ଚିହ୍ନିପାରି ତାଙ୍କୁ ଦେଖି ମୁଣ୍ଡ ହଲାଇଲେ । ଯାହା ଯାହା ସେତେବେଳକୁ ଘଟିଲାଣି ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କୁ

ସେସବୁ କଥା କହୁଥିଲବେଳେ ପ୍ରିନ୍ସ୍ ବାଗ୍ରାତିଅନ୍ ତଥାପି ଆଗକୁ ଅନାଇଁ ଅନାଇଁ ଦେଖୁଥାନ୍ତି ।

ପ୍ରିନ୍ସ୍ ବାଗ୍ରାତିଅନ୍‌ଙ୍କର ବାଦାମ ବର୍ଣ୍ଣର ବଳିଷ୍ଠ ମୁହଁରେ ଓ ଅଧବୁଜା ନମ୍ରଭ ନିଦୁଆ ଆଖିରେ ବି ସେହି ମନୋଭାବ ଫୁଟି ଉଠୁଥିଲା, ଦିଶୁଥିଲା—,

"ହେଇ ଆରମ୍ଭ ହୋଇଗଲା ! ହେଇ ଆସୁଛି ମାଡ଼" !

ବିବ୍ରତ ଅଥଚ କୁତୂହଳୀ ହୋଇ ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କର ନିଶ୍ଚଳ ମୁହଁକୁ ଅନାଇଁ ରହି ବୁଝିବାକୁ ଚେଷ୍ଟା କରୁଥାନ୍ତି ।

"ଏ ମଣିଷ କଣ ଚିନ୍ତା କରୁଛି ? ଅନୁଭବ କରିପାରୁଛି ? ତେବେ ଏ ମୁହୂର୍ତ୍ତରେ କଣ ତାର ମନର ଚିନ୍ତା ? କଣ ତାର ହୃଦୟର ଭାବ ? ଏହି ଯେଉଁ ମୁଖାପରି ନିଶ୍ଚଳ କାଠୁଆ ମୁହଁଟା ଦିଶୁଛି, ତା ପଛଆଡ଼େ ସତେ କଣ ଅଛି କିଛି ?"

ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କ ଆଡ଼କୁ ଅନାଇଥାନ୍ତି, ବିସ୍ମୟରେ ଏପରି ଭାବୁଥାନ୍ତି ।

ସତେ ଯେପରି ପ୍ରିନ୍ସ୍ ଆନ୍ଦ୍ରେ ତାଙ୍କୁ କଣ ପଚାରିଛନ୍ତି ଓ ତହିଁରେ ପ୍ରିନ୍ସ୍ ବାଗ୍ରାତିଅନ୍ ତାଙ୍କର ସମ୍ମତି ଜଣାଉଛନ୍ତି, ସେହି ହଁ ଭରିଲା ଠାଣିରେ ମୁଣ୍ଡକୁ ହଲାଇ ହଲାଇ ପ୍ରିନ୍ସ୍ ବାଗ୍ରାତିଅନ୍ କହିଲେ,

"ବେଶ୍ । ଭଲ ।"

କହିଲାବେଳେ ତାଙ୍କ ଭଙ୍ଗୀ ଦେଖି ଜଣା ପଡ଼ୁଥିଲା, ସତେ ଯେପରି ଯାହା ଯେଉଁଠି ଘଟିଗଲା, ଯାହା ଯାହା ତାଙ୍କୁ କୁହାଗଲା, ସେସବୁ ସେମିତି ଘଟିବ ବୋଲି ସେ ଆଗରୁ ଭାବିଥିଲେ ଓ ଅବିକଳ ସେମିତି ସେ ସବୁ ଘଟିଯାଉଛି ବୋଲି ସେ ତାଙ୍କ ଭଙ୍ଗୀରେ ଜଣାଇଁ ଦେଉଛନ୍ତି ।

ପ୍ରିନ୍ସ୍ ଆନ୍ଦ୍ରେ ତରତରରେ ଘୋଡ଼ାରେ ଚଢ଼ି ଆସିଥିଲେ ବୋଲି ତାଙ୍କୁ ଅଣନିଶ୍ୱାସୀ ଲାଗୁଥାଏ, ସେ ହାଁ ହାଁ ହୋଇଯାଉଥାନ୍ତି । ସେ ଚଞ୍ଚଳ ଚଞ୍ଚଳ କଥା କହୁଥାନ୍ତି । ସେ ଯେତେବେଳେ କଥା କହୁଥାନ୍ତି ତାଙ୍କ ଉଚ୍ଚାରଣରେ ପୂର୍ବଦେଶର ଲୋକଙ୍କ ବୋଲିର ଅନୁପ୍ରାସ ଲଗାଇ କଥା କହୁଥାନ୍ତି. ସତେ ଯେପରି ସେ ଜାଣି ଜାଣି ରହି ରହି ବଛା ବଛା ଶବ୍ଦ ଖଞ୍ଜି ଖଞ୍ଜି କହୁଛନ୍ତି ।

ଲାଗୁଥାଏ ଯେପରିକି ପ୍ରିନ୍‌ସ୍ ବାଗ୍ରାତିଅନ୍ ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ଜଣାଇ ଦେଉଛନ୍ତି ଯେ ତରତର ହେବା ଆଦୌ ପ୍ରୟୋଜନ ନାହିଁ । ତଥାପି ପ୍ରିନ୍‌ସ୍ ବାଗ୍ରାତିଅନ୍ ଘୋଡ଼ାକୁ କଦମ ଉଆଇଁ ଭୃଷନ୍‌ର ତୋପ ଘାଟି ଆଡ଼କୁ ଧାଇଁଗଲେ । ତାଙ୍କ ଗହଣରେ ଯେଉଁ ଅନ୍ୟାନ୍ୟ କର୍ମଚାରୀମାନେ ଥିଲେ, ସେମାନଙ୍କ ସଙ୍ଗରେ ମିଶି ପ୍ରିନ୍‌ସ୍ ଆନ୍ଦ୍ରେ ବି ତାଙ୍କ ପଛେ ପଛେ ଘୋଡ଼ା ଦୌଡ଼ାଇ ଦେଲେ ।

ସେ ଦଳଟିରେ ଥିଲେ ସେନାପତିଙ୍କର ଜଣେ ପାର୍ଶ୍ୱଚର ଉପ-ସେନାପତି, ବାଗ୍ରାତିଅନଙ୍କ ପାର୍ଶ୍ୱଚର କର୍ମଚାରୀ ଜେରକଭ୍, ଜଣେ ଅର୍ଡ଼ର୍ଲି କର୍ମଚାରୀ, ଷ୍ଟାଫ ଅଫିସର, ସେ ଗୋଟିଏ ସୁନ୍ଦର ଇଂରେଜ ଦେଶର ଘୋଡ଼ା ଉପରେ ଚଢ଼ି ଥାନ୍ତି ଜଣେ ବେସାମରିକ ଅଫିସର ଓ ଜଣେ ଅର୍ଥ ସମୀକ୍ଷକ, ଯୁଦ୍ଧ ଦେଖିବେ ବୋଲି ସମୀକ୍ଷକଙ୍କର କୁତୂହଳ ହୋଇଥାଏ; ତେଣୁ ସେଥିପାଇଁ ଅନୁମତି ନେଇ ସେ ରହିଥାନ୍ତି । ସମୀକ୍ଷକ ମୋଟା ମଣିଷଟିଏ, ତାଙ୍କ ମୁହଁଟି ମାଉଁସିଆ । ଘୋଡ଼ା ଉପରେ ବସି ବଡ଼ିବଡ଼ କୁତୂହଳରେ ଗୋଟାଏ ଆଶ୍ଚର୍ଯ୍ୟ ପ୍ରକାର ହସ ହସି ଏ ପାଖକୁ ସେ ପାଖକୁ ଦୋହଲି ଦୋହଲିକା ସେ ଚାରିଆଡ଼କୁ ଚାହିଁଥାନ୍ତି । ଗୋଟାଏ ଲମ୍ବା କୋଟ ଗଳାଇ କୋସାକ୍ ସୈନ୍ୟ ଓ ଆଡ୍‌ଜୁଟାଣ୍ଟମାନଙ୍କ ଭିତରେ ସେ ସମୀକ୍ଷକ ବଡ଼ ବେପସନ୍ଦ ଦିଶୁଥାନ୍ତି ।

ସମୀକ୍ଷକଙ୍କ ଆଡ଼କୁ ହାତ ଦେଖାଇ ଜେରକଭ ବଲ୍‌କନ୍‌ସ୍କିଙ୍କୁ କହିଲେ, "ଯେ ଭଦ୍ରଲୋକ ଗୋଟାଏ ଯୁଦ୍ଧ ଦେଖିବେ ବୋଲି ଆସିଛନ୍ତି ସେ ଏତିକିବେଳୁ ତ ତାଙ୍କୁ କଣ ଅଡୁଆ ଲାଗିଲାଣି !"

ସମୀକ୍ଷକ ଉଜ୍ଜ୍ୱଳ ହସଟିଏ ହସିଦେଲେ, ସେ ହସଟି ଯେତିକି ସୁନ୍ଦର, ସେତିକି ଚତୁର । ଜେରକଭ୍ ତାଙ୍କୁହିଁ ଉପହାସର ବସ୍ତୁ କଲେ ବୋଲି ସତେ ଅବା ସମୀକ୍ଷକ ଭାରି ଖୁସି । ଲାଗୁଥାଏ ଯେ ପ୍ରକୃତରେ ସେ ଯେତେ ଓଲି, ତା'ଠାରୁ ବେଶି ଓଲି ବୋଲି ସେ ଦେଖାଇ ହେଉଛନ୍ତି ।

ସେ କହିଲେ, "ଛାଡ଼ନ୍ତୁ, ଆଉ କହନ୍ତୁ ନାହିଁ ।"

ଷ୍ଟାଫ୍ ଅଫିସର କହିଲେ, "ଏତ ଭାରି ଆଶ୍ଚର୍ଯ୍ୟ କଥା ଆଜ୍ଞା ! ପ୍ରିନ୍‌ସ୍ !"

ତାଙ୍କର ଅଳ୍ପ ଟିକଏ ଟିକଏ ମନେ ପଡ଼ୁ ଯାଉଥାଏ ଯେ ପ୍ରିନ୍ସ୍ ଶବ୍ଦଟାର ଫରାସୀ ଭାଷାରେ ଗୋଟାଏ କଣ ପ୍ରତିଶବ୍ଦ ଅଛି; କିନ୍ତୁ କଣ ସେ ଶବ୍ଦଟା ତା' ତାଙ୍କର ମନେ ପଡ଼ୁନଥାଏ । ସେତେବେଳକୁ ତୁଷିନ୍‌ର ତୋପ ଘାଟି ପାଖରେ ସେମାନେ ପହଞ୍ଚିଗଲେଣି । ହଠାତ୍ ତାଙ୍କ ସାମ୍ନାରେ ଭୂଇଁ ଉପରେ ଗୋଟାଏ ତୋପଗୁଳି ଆସି ପଡ଼ିଗଲା ।

ସମୀକ୍ଷକ ଉଦାର ହସ ହସି କହିଲେ,

"କଣଟାଏ ପଡ଼ିଲାକି ସେଇଟା ?"

ଜେରକଭ କହିଲେ,

"ସେ ଗୋଟାଏ ଫରାସୀ ଦେଶର ପିଠାଟିଏ ପଡ଼ିଲା ।"

ସମୀକ୍ଷକ କହିଲେ,

"ଓ ! ଏଇଆ ସେମାନେ ଆପଣମାନଙ୍କ ଉପରକୁ ଫୋପାଡ଼ନ୍ତି ପରା ! ଭାରି ଭୟଙ୍କର କଥା ତ !" ଖୁସି ଆନନ୍ଦରେ ସେ ସତେକି ଫୁଲିଗଲେ । ତାଙ୍କ ତୁଣ୍ଡରୁ ଏକଥା ବାହାରିଛି କି ନାହିଁ ପୁଣି ଗୋଟାଏ ସରସର ଶବ୍ଦ ହେଲା, ତାପରେ ଗୋଟାଏ ଗୁମ୍‌କିନା ଶବ୍ଦ ହେଲା, ସତେ ଯେପରିକି ନରମ ଜିନିଷଟାଏ କଣ ତଳେ ପଡ଼ିଗଲା, ସମୀକ୍ଷକଙ୍କ ଡାହାଣ କଡ଼କୁ ତାଙ୍କର ଟିକଏ ପଛରେ ଜଣେ କୋସାକ୍ ସୈନ୍ୟ ଘୋଡ଼ାଚଢ଼ି ଆସୁଥିଲା ଯେ ସେ ଘୋଡ଼ା ଉପରୁ କଚାଡ଼ି ହୋଇ ତଳେ ପଡ଼ିଗଲା । ଜେର୍କଭ୍ ଓ ଷ୍ଟାଫ୍ ଅଫିସର ଦୁହେଁଯାକ ନିଜ ନିଜ ଜିନ୍ ଉପରେ ଆଗକୁ ନଇଁପଡ଼ି ଘୋଡ଼ାଙ୍କ ମୁହଁକୁ ବୁଲାଇ ଦେଲେ ।

ସମୀକ୍ଷକ ସେହି ପଡ଼ିଯାଇଥିବା କୋସାକ୍ ସୈନିକ ଆଡ଼କୁ ମୁହଁକରି ଅଟକିଗଲେ ଓ କୁତୂହଳରେ ତାକୁ ଅନାଇଁ ରହିଲେ । କୋସାକ୍ ସୈନିକଟି ମରିଯାଇଥାଏ, ତାର ଘୋଡ଼ାଟା ଛଟପଟ ହେଉଥାଏ ।

ପ୍ରିନ୍‌ସ ବାଗ୍ରାତିଅନ୍ ତଳକୁ ମୁହଁ ପୋତିଲେ, ପଛକୁ ଅନାଇଁ ଦେଖିଲେ, କାହିଁକି ଡେରି ହେଲା, ତା'ର କାରଣ ଜାଣିପାରି ସୁଦ୍ଧା କିଛି ନଜାଣିଲା ପରି ମୁହଁ ବୁଲାଇଦେଲେ । ଲାଗୁଥାଏ ଯେ ସେ ହୁଏତ କହିବେ,

"ଏସବୁ ଛୋଟ ଛୋଟ କଥାକୁ ଚିନ୍ତା କରୁଛ କାହିଁକି ?"

ଅତି ନିପୁଣ ଅଶ୍ୱଚାଳକ ପରି ସେ ଘୋଡ଼ାକୁ ରୋକିଦେଲେ; ଖଣ୍ଡାଟା କୋଟ୍‌ରେ ଛନ୍ଦି ହୋଇଥାଏ ଯେ ଅଳ୍ପ ନଇଁପଡ଼ି ତାକୁ ମୁକ୍ତ କଲେ । ସେ ପୁରୁଣା ଅମଳର ଖଣ୍ଡାଟାଏ, ସେତେବେଳେ ଆଉ ସେମିତି

ଖଣ୍ଡା କେହି ବ୍ୟବହାର କରୁ ନଥିଲେ । ପ୍ରିନ୍ସ୍ ଆନ୍ଦ୍ରେ ଗୋଟିଏ ଘଟନା ମନେ ପକାଇଲେ,— ସେ ଖଣ୍ଡାକୁ ସୁଭରଭ୍ ଇଟାଲି ଦେଶରେ ବାଗ୍ରାତିଅନ୍‌ଙ୍କୁ ପୁରସ୍କାର ଦେଇଥିଲେ । ସେତିକି ବେଳେ ସେହି କଥା ହେଜ କରିବାକୁ ତାଙ୍କୁ ବିଶେଷରେ ଭଲ ଲାଗିଲା ।

ପ୍ରିନ୍ସ୍ ଆନ୍ଦ୍ରେ ସମୁଦାୟ ଯୁଦ୍ଧକ୍ଷେତ୍ରକୁ ଘୋଡ଼ା ଉପରୁ ଯେଉଁ ତୋପଘାଟିରୁ ନିରେଖି ଦେଖିଥିଲେ, ସେତେବେଳକୁ ସେମାନେ ଘୋଡ଼ାଚଢ଼ି ଯାଇ ଠିକ୍ ସେହି ତୋପଘାଟିରେ ପହଞ୍ଚି ଗଲେଣି ।

ଗୁଳିବାରୁଦ ବାକ୍ସ ପାଖରେ ଯେଉଁ ତୋପ ଚଳାଇବା ଲୋକଟି ଠିଆ ହୋଇଥିଲା, ପ୍ରିନ୍ସ୍ ବାଗ୍ରାତିଅନ୍ ତାକୁ ପଚାରିଲେ,

"କିଏ ଏଘାଟିର ଦଳପତି ?"

ତୋପଚାଳକ ଆଗକୁ ଧାଇଁ ଆସୁ ଆସୁ ଖୁବ ଉତ୍ସାହରେ କହିଲା,

ଏ ଘାଟିର ଦଳପତି କ୍ୟାପ୍‌ଟେନ୍ ତୁଷିନ୍, ମଣିମା" ।

ତା ମୁଣ୍ଡବାଳ ନାଲିଆ ଓ ମୁହଁଯାକ ବ୍ରଣ ।

ବାଗ୍ରାତିଅନ୍ ଆଉ କେଉଁ କଥା ଭାବୁଥିଲେ, କହିଲେ,

"ଅବଶ୍ୟ । ଅବଶ୍ୟ ।"

ତୋପମାନଙ୍କର ପିଢ଼ି ସବୁ ଥିଆ ହୋଇଥାଏ । ସେହି ପିଢ଼ିମାନଙ୍କ କରେ କରେ ଘୋଡ଼ା ଚଳାଇ ସେ ସେମୁଣ୍ଡର ସବା ଶେଷ ତୋପ ପାଖକୁ ଗଲେ । ସେ ତୋପ ପାଖରେ ସେ ଯାଇ ପହଞ୍ଚିବାମାନେ ତୋପ ଫୁଟିଲା । ସେହି ଶବ୍ଦରେ ତାଙ୍କର ଓ ତାଙ୍କ ଗହଣରେ ଥିବା କର୍ମଚାରୀ-ମାନଙ୍କର କାନ ବଧିର ହୋଇଗଲା, ହଠାତ୍ ଯେଉଁ ଧୂଆଁ ତୋପ ଚାରିକରେ ଭର୍ତ୍ତି ହୋଇଗଲା, ତା ଭିତରେ ଦିଶୁଥାଏ ଯେ ତୋପ ଚଳାଇବା ଲୋକମାନେ ତୋପଟାକୁ ଘୋଷାରୁଥାନ୍ତି, ତାକୁ ଓଟାରି ଓଟାରି ପୁଣି ଯେମିତି ଥିଲା ସେମିତି ରଖି ଦେଉଥାନ୍ତି ।

ଏକ ଅସୁର ଆକୃତିର ପ୍ରକାଣ୍ଡ ସୈନିକ, ସେ ଏକନମ୍ବର ତୋପ ଚଳେଇବା ଲୋକ, ତା'ର ଓସାର କାନ୍ଧ, ମୁଣ୍ଡରେ ପୁଳାଏ ବେଣ୍ଡି, ସେ ତୋପର ଚକପାଖକୁ ଖରବେଗରେ ଧାଇଁଯାଇ ସେଠି ଖୁଣ୍ଟ ପୋତିଲା ପରି ଠିଆହେଲା, ଦି'ଗୋଡ଼ ଫାଙ୍କକଟେଇଲା । ଦୁଇନମ୍ବର ତୋପ ଚଳେଇବା ଲୋକ ଥର ଥର ହାତରେ ତୋପ ପାଟିରେ ବାରୁଦ ଭର୍ତ୍ତି କଲା । କର୍ମଚାରୀ ତୁଷିନ୍,—ଛୋଟିଆ ମଣିଷଟିଏ, କାନ୍ଧ ଦି'ଟି ଓହଳି ପଡ଼ିଲା ପରି, ସେ

ତୋପ ଦେହରେ ଝୁଣ୍ଟି ପୁଣି ଆଗକୁ ଧାଇଁଗଲା, ସେନାପତିଙ୍କୁ ଦେଖିପାରିଲା ନାହିଁ, ତା'ର ସାନ ପାପୁଲିରେ ଆଖି ଉପରେ ଘୋଡାଇ କରି ଦୂରକୁ ଅନାଇଲା ।

"ଆଉ ଦୁଇପଏଣ୍ଟ୍ ଟେକିଦିଅ ଠିକ୍ ହେବ,"

ସେ ଏକ ଭୟଙ୍କର କାନଅତଡା ଛାଟିରେ ଚିର୍ଚ୍ଛିରେଇଲା; ସେ ତା'ର ସ୍ୱରକୁ ଆହୁରି ଫୁଲେଇ ଫୁଲେଇ ଗର୍ଜନ କଲା, ସେ ସ୍ୱର ତା'ର ଟିକି ଚେହେରା ସଙ୍ଗେ ଖାପୁ ନଥାଏ । ଗର୍ଜନ କଲା,

"ଦିଅ ଉଡ଼େଇ ଦିଅ ମେଦ୍‌ଭେଏଦେଭ୍—"

ବାଗ୍ରାତିଅନ୍ ସେ କର୍ମଚାରୀକ ପାଖକୁ ଡାକିଲେ । ତୁଷିନ୍ ଗଲା । ଡରି ଡରି ତାର ଟୋପିର ଧାରରେ ତିନୋଟି ଆଙ୍ଗୁଠି ଲଗାଇ ଦଣ୍ଡବତ କଲା, ତା'ର ଦଣ୍ଡବତ କରିବା ଭଙ୍ଗୀ ଅବାଗିଆ ଦିଶୁଥାଏ, ଜଣେ ସୈନିକ ସାମରିକ ଦଣ୍ଡବତ କଲାପରି ଦିଶୁ ନଥାଏ ଯେ ଜଣେ ପୁରୋହିତ ଆଶୀର୍ବାଦ କଲାପରି ଦିଶୁଥାଏ । ତୁଷିନ୍‌ର ବନ୍ଧୁକମାନ ତଳର ଉପତ୍ୟକା ଉପରକୁ ଗୁଳି ଫୋପାଡ଼ିବା ଚୁଳଲ ନିର୍ଦ୍ଦେଶରେ, କିନ୍ତୁ ସେ ଗୁଳି ଚଳାଉଥିଲା ସ୍କନଗ୍ରାବେନ୍ ଗାଁ ଉପରକୁ, ସେଠି ପ୍ରକାଣ୍ଡ ପ୍ରକାଣ୍ଡ ଫରାସୀ ସୈନ୍ୟଦଳ ଠୁଳ ହୋଇଥିଲେ ।

ତୁଷିନ୍‌କୁ କେହି ହୁକୁମ୍ ଦେଇନଥାନ୍ତି କାହାକୁ ଗୁଳିମାରିବ କି କେଉଁଠି ତୋପରେ ଗୁଳିମାରିବ, ସେ ତାର ସାର୍ଜେଣ୍ଟ ଜାହାରଚେଂକୋ ସଙ୍ଗେ ପରାମର୍ଶ କରିଥାଏ, ଜାହାରଚେଂକୋ ପ୍ରତି ତାର ବହୁତ ସମ୍ମାନ । ସେ ଠିକଣା କରି ନେଇଥାଏ ଯେ ସେ ଗାଁରେ ନିଆଁ ଲଗାଇ ଦେଲେ ଖୁବ ଭଲ କାମ ହେବ । ସେ କଣ କରିଛି କହିଲା ପରେ ବାଗ୍ରାତିଅନ୍ କହିଲେ, "ବେଶ୍ ଭଲ ହେଲା ।"

ତା'ପରେ ବାଗ୍ରାତିଅନ୍ ସମଗ୍ର ଯୁଦ୍ଧଭୂମିକୁ ଅନାଇଁ ଦେଖିଲେ । ସମଗ୍ର ଯୁଦ୍ଧଭୂମି ତାଙ୍କ ଆଖି ଆଗରେ ମେଲା ହୋଇ ପଡ଼ିଥାଏ । ସେ ମନେ ମନେ କଣ ଭାବୁଥାନ୍ତି । ଡାହାଣ ପଟେ ଫରାସୀ ସୈନ୍ୟ ଆଗକୁ ମାଡ଼ିଆସି ରୁଷ୍ ସେନାର ଖୁବ୍ ପାଖକୁ ଚାଲିଆସିଥାନ୍ତି । ଯେଉଁ ଖାଲରେ ନଈ ବୋହିଯାଉଥାଏ ଅର୍ଥାତ୍ କଏଭର ସୈନ୍ୟଦଳ ଯେଉଁ ଟିପଉପରେ ଥିଆନ୍ତି, ତାର ଠିକ୍ ତଳୁ ବନ୍ଧୁକ ଫୁଟିବା ଶବ୍ଦ ଖୁବ୍ ଜୋରରେ ଶୁଭୁଥାଏ, ସେ ଶବ୍ଦ ଅତି ପ୍ରଚଣ୍ଡ । ଡାହାଣ ପଟେ ଆହୁରି ଦୂରରେ

ଘୋଡ଼୍ ସଓ୍ୱାର୍ ସୈନ୍ୟମାନଙ୍କ ପିଠିଆଡ଼େ ଗୋଟାଏ ଫରାସୀ ସୈନ ଦଳ ରୁଷ୍ ସୈନ ଦଳ ପଛଆଡ଼େ ଘେର କର ନେଇଥାନ୍ତି, ବାଗ୍ରାତିଅନ୍ଙ୍କ ଗହଣରେ ଥିବା କର୍ମଚାରୀ ସେଇ ଆଡ଼କୁ ହାତ ଦେଖାଇ ବାଗ୍ରାତିଅନ୍ଙ୍କୁ ତାକୁ ଦେଖାଇ ଦେଲେ । ବାଁପଟେ ହଟ୍‌ବେଲଗ୍ରୁରେ ଦିଶୁଥାଏ ବଣଖଣ୍ଡକ ।

ବାଗ୍ରାତିଅନ୍ ହୁକୁମ୍ ଦେଲେ ଯେ ସୈନ୍ୟମଝିରୁ ଦୁଇଦଳ ସୈନ୍ୟ ଡାହାଣ ପାଖକୁ ଯାଇ ସେପଟର ରୁଷ୍ ସୈନ୍ୟଙ୍କୁ ସାହା ଦେବେ । ତାଙ୍କ ଗହଣର କର୍ମଚାରୀ ସାହସ କରି ତାଙ୍କୁ କହିଲେ ଯେ ସେମିତି କଲେ ତୋପକୁ ଜଗିବାକୁ ଆଉ କେହି ନଥିବେ । ପ୍ରିନ୍‌ସ୍ ବାଗ୍ରାତିଅନ୍ ଯେ କର୍ମଚାରୀଙ୍କ ଆଡ଼କୁ ବୁଲିପଡ଼ି କିଛି ନକହି ତାଙ୍କୁ ନିସ୍ପ୍ରଭ ଆଖିରେ ଅନାଇଁ ରହିଲେ । ପ୍ରିନ୍‌ସ୍ ଆନ୍ଦ୍ରେ ମନେ ମନେ ଭାବିଲେ ଯେ ସେ କର୍ମଚାରୀ ଯାହା କହିଲେ ତା' ଠିକ୍ କଥା, ସେ କଥାକୁ ଉତ୍ତର ନାହିଁ ।

କିନ୍ତୁ ଠିକ୍ ସେତିକବେଳେ ଜଣେ ଘୋଡ଼ସଓ୍ୱାର ଦୂତ ମୋଳ ତଳେ ଥିବା ରେଜିମେଣ୍ଟ୍ ( ସୈନ୍ୟଦଳ )ର କର୍ଣ୍ଣେଲଙ୍କ ପାଖରୁ ଖବର ନେଇ ଆସି ପହଞ୍ଚିଲା ଯେ ବହୁ ସଂଖ୍ୟାରେ ଫରାସୀ ସୈନ୍ୟ ତାଙ୍କ ସୈନ୍ୟଙ୍କ ଉପରକୁ ମାଡ଼ି ଆସୁଛନ୍ତି, ଆଉ ସୈନ୍ୟମାନେ ଛତ୍ରଭଙ୍ଗ ହୋଇ ପଛରେ ଥିବା କିଏଭ୍‌ର ବନ୍ଧୁକୀମାନଙ୍କ ଆଡ଼କୁ ଠେଲି ପେଲି ହୋଇ ପଳାଇ ଆସୁଛନ୍ତି । ପ୍ରିନ୍‌ସ୍ ବାଗ୍ରାତିଅନ୍ ମୁଣ୍ଡ ହଲେଇଲେ ଯାହା ଘଟୁଛି ସେଥିରେ ସେ ଖୁସି, ଆଉ ସେଥିକି ତାଙ୍କର ସମ୍ମତି ଅଛି ବୋଲି ସେ ଜଣାଇଁ ଦେଲେ । ସେ ମଣିଷ ଚାଲିଲା ଚାଲିରେ ଆସ୍ତେ ଆସ୍ତେ ଘୋଡ଼ା ଚଳାଇ ଡାହାଣ ପଟକୁ ଗଲେ, ଆଉ ଦୂତଙ୍କୁ ଖବର ଦେଇ ପଠାଇ ଦେଲେ ଯେ କିଏଭର ବନ୍ଧୁକୀମାନେ ଫରାସୀ ସୈନ୍ୟଙ୍କୁ ଆକ୍ରମଣ କରନ୍ତୁ; କିନ୍ତୁ ଅଧଘଣ୍ଟାଏ ପରେ ଦୂତ ଖବର ନେଇ ଫେରିଆସିଲା ଯେ ଘୋଡ଼ସଓ୍ୱାର ଦଳର ଦଳପତି ସୈନ୍ୟ ଧାଡ଼ି ପଛଆଡ଼କୁ ହଟି ଆସି ସାରିଲେଣି, କାରଣ ତାଙ୍କ ଉପରେ ଫରାସୀ ସୈନ୍ୟମାନେ ଭୟଙ୍କର ଗୁଳିମାଡ଼ ଆରମ୍ଭ କରିଦେଲେ । ତେଣୁ ବୃଥାରେ ତାଙ୍କର ଲୋକକ୍ଷୟ ହେବାରୁ ସେ ତାଙ୍କର ସୈନ୍ୟଙ୍କୁ ନେଇ ବଣ ଭିତରେ ଆସନ ଜମେଇଲେ ।

"ଖୁବ୍ ଭଲ ହେଲା," ବାଗ୍ରାତିଅନ୍ କହିଲେ ।

ଯେତେବେଳେ ସେ ତୋପ ଖଞ୍ଜା ହୋଇଥିବା ଘାଟିରୁ ଲେଉଟି ଆସୁଥାନ୍ତି ସେତେବେଳେ ବାଁ ପଟରେ ବଣ ଆଡ଼ୁ ବନ୍ଧୁକ ଫୁଟିବାର ଶବ୍ଦ ଆସିଲା, ସେ ଜାଗାଟା ବାଁ ପଟେ ଖୁବ୍ ଦୂରରେ ଥାଏ, ସେଠିକି ତାଙ୍କର ନିଜେ ଯିବା ସମ୍ଭବ ନ ଥିଲା, ତେଣୁ ସେ ଜେର୍‌କଭ୍‌ଙ୍କୁ ଉପରସ୍ଥ ସେନାପତିଙ୍କ ପାଖକୁ ତାଙ୍କ ଆଦେଶ ନେଇ ଯିବାକୁ କହିଗଲେ । ସେ ସେହି ସେନାପତି ଯାହାଙ୍କ ସୈନ୍ୟଦଳକୁ କୁତୁଜଭ ବ୍ରାଉନାଉଠାରେ ପରିଦର୍ଶନ କରିଆସିଥିଲେ । ସେ ସମ୍ବାଦ ପଠାଇଲେ ଯେ ସେନାପତି ଯେତେଶୀଘ୍ର ପାରନ୍ତି, ସେତେଶୀଘ୍ର ପାହାଡ଼ ଖୋଲ ପଛକୁ ହଟି ଯାଆନ୍ତୁ, କାରଣ ଡାହାଣପଟର ସୈନ୍ୟ ଶତ୍ରୁ ସୈନ୍ୟଙ୍କୁ ଆଉ ବେଶି ବେଳ ଅଟକାଇ ରଖି ପାରିବେନାହିଁ । ସେ ଟୁଷିନ୍‌କୁ ଭୁଲିଗଲେ । ଟୁଷିନ୍ ଆଉ ଯେଉଁ ସୈନ୍ୟ ଦଳ ଟୁଷିନ୍‌ର ତୋପ ଘାଟିକୁ ରକ୍ଷା କରନ୍ତେ, ସେ ସବୁ କଥା ସେ ପାସୋରି ଦେଇଲେ ।

ପ୍ରିନ୍‌ସ୍ ବାଗ୍ରାତିଅନ୍ ସେନାପତିମାନଙ୍କ ସଙ୍ଗେ ଯାହା ଯାହା କଥା ଭାଷା ହେଲେ, ତାଙ୍କୁ ଯାହା ଯାହା ହୁକୁମ୍ ଦେଲେ, ସେ ସବୁ କଥା ଖୁବ୍ ମନଦେଇ ପ୍ରିନ୍‌ସ୍ ଆନ୍ଦ୍ରେ ଶୁଣୁଥାନ୍ତି, ସେ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କଲେ ଯେ ପ୍ରକୃତରେ ପ୍ରିନ୍‌ସ୍ ବାଗ୍ରାତିଅନ କାହାକୁ କିଛି ହୁକୁମ୍ ଦେଉ ନାହାନ୍ତି, କିନ୍ତୁ କେବଳ ଏତିକିରେ ତାଙ୍କ କାମ ସୀମାବଦ୍ଧ ଯେ, ଯାହା ଯେଉଁଠି ଆବଶ୍ୟକ ପଡ଼ିବା ମାତ୍ରେ ତା ମନକୁ ମନ ହୋଇଯାଉଛି, କି କର୍ମଚାରୀମାନେ ଆପଣା ମନ ଇଚ୍ଛାରେ କରି ଯାଉଛନ୍ତି, ସେ ସବୁ ତାଙ୍କ ହୁକୁମ୍ ଅନୁସାରେ ନ ହେଲେ ବି ତାଙ୍କ ଉଦ୍ଦେଶ୍ୟ ଅନୁସାରେ ହୋଇ ଯାଉଛି, ବୋଲି ସେ ଦେଖାଇ ହେଉଛନ୍ତି । ପ୍ରିନ୍‌ସ୍ ଆନ୍ଦ୍ରେ କିନ୍ତୁ ଲକ୍ଷ୍ୟ କଲେ ଯେ, ଯେଉଁଠି ଯାହା ଘଟୁଛି ସେ ସବୁ ଅକସ୍ମାତ୍ ଘଟି ଯାଉଛି ସତ, ସେନାପତିଙ୍କ ଆଦେଶ ଅନୁସାରେ ଘଟୁନାହିଁ ସତ, କିନ୍ତୁ ପ୍ରିନ୍‌ସ୍ ବାଗ୍ରାତିଅନ୍ ଯେମିତି ଅଳୌକିକ ଚତୁରର ବାଗରେ ବ୍ୟବହାର କରୁଛନ୍ତି, ସେଥିରେ ତାଙ୍କ ଉପସ୍ଥିତିଟା ହିଁ ବହୁତ ମୂଲ୍ୟବାନ୍ । ଯେତେ ଯେତେ ଦଳପତିସେନାପତି ବାଗ୍ରାତିଅନ୍‌ଙ୍କ ପାଖକୁ ଘୋଡ଼ାରେ ଚଢ଼ି ଆସିଲାବେଳେ ହତୋତ୍ସାହ ଦିଶୁଛନ୍ତି, ସେମାନେ ପୁଣି ତାଙ୍କ ଉତ୍ସାହ ଫେରି ପାଉଛନ୍ତି, ସୈନିକମାନେ ଓ କର୍ମଚାରୀମାନେ ଭାରି ଆନନ୍ଦରେ ତାଙ୍କୁ ଦଣ୍ଡବତ୍ କରୁଥାନ୍ତି, ସେ ଦେଖାପଡ଼ିଲେ ତାଙ୍କର ଉତ୍ସାହ ବଢ଼ି ଯାଉଥାଏ ଓ ତାଙ୍କ ଆଗରେ

ଆପଣା ହସ ଦେଖାଇବାକୁ ପ୍ରକୃତରେ ସେମାନେ ଖୁବ୍ ବ୍ୟାକୁଳ ହୋଇ ପଡ଼ୁଥାନ୍ତି ।

ରୁଷ୍ ସେନାମାର ଡାହାଣ ପଟେ ସବୁଠୁ ଉଚ୍ଚ ଘାଟି ଉପରକୁ ଘୋଡାରେ ଚଢ଼ି ଯିବାପରେ ପ୍ରିନ୍ସ୍ ବାଗ୍ରାତିଅନ୍ ପାହାଡ ତଳକୁ ଓହ୍ଲାଇଲେ । ସେଠି ଅନବରତ ବନ୍ଧୁକ ଫୁଟିବା ଶବ୍ଦ ଲାଗି ରହିଥାଏ, ଧୂଆଁରେ କିଛି ଦିଶୁ ନ ଥାଏ । ସେମାନେ ଖାଲ ପାଖକୁ ଯେତିକି ଯେତିକି ଯାଉଥାନ୍ତି ସେତିକି ଅଳ୍ପ ତାଙ୍କୁ ଦିଶୁଥାଏ ଓ ସେତିକି ସ୍ପଷ୍ଟ ଭାବେ ସେମାନେ ବୁଝି ପାରୁଥାନ୍ତି ଯେ ପ୍ରକୃତ ଯୁଦ୍ଧକ୍ଷେତ୍ରର ପାଖକୁ ପାଖ ସେମାନେ ଯାଉଛନ୍ତି ।

ଯୁଦ୍ଧରେ ଆହତ ହୋଇଥିବା ସୈନ୍ୟ ସେମାନଙ୍କର ଆଖିରେ ପଡ଼ିଲେ । ଦୁଇ ଜଣ ସୈନ୍ୟ ଜଣେ ଆହତ ସୈନ୍ୟଙ୍କୁ ଦୁଇ ପାଖକୁ ଟେକ ଦେଇ ଘୋଷାର ଘୋଷାର ଆଣୁଥାନ୍ତି । ତାର ମୁଣ୍ଡଯାକ ରକ୍ତ ଲାଗିଥାଏ, ମୁଣ୍ଡରେ ଟୋପି ନ ଥାଏ, ସେ କାଶୁଥାଏ, ଆଉ ଛେପ ପକାଉ ଥାଏ । ଜଣା ପଡୁଥାଏ ଯେ ବନ୍ଧୁକ ଗୁଳିଟା ତା ପାଟିରେ ବା ତଣ୍ଟି ଭିତରେ ପଶି ଯାଇଛି ।

ଆଉ ଜଣେ ଏକୁଟିଆ ସାହସ କରି ସେମାନଙ୍କ ଆଡ଼କୁ ଆସିଲା, ତା ହାତରେ ବନ୍ଧୁକ ନ ଥାଏ, ସେ ବଡ଼ ଜୋର୍‌ରେ ଯନ୍ତ୍ରଣାରେ ଗଁ ଗଁ ହେଉ ଥାଏ, ହାତକୁ ଝୁଲଉଥାଏ, ତାର କ୍ଷତସ୍ଥଳରୁ ରକ୍ତ ବୋହୁ ଥାଏ, ସତେ କି ବୋତଲରୁ ବୋହିଲାପରି, ତାର ପିନ୍ଧା କୋଟ୍‌ଯାକେ ଜୁଡ଼ୁବୁଡ଼ୁ ହୋଇ ଯାଉଥାଏ । ତା ମୁହଁରେ ଯନ୍ତ୍ରଣା ଅପେକ୍ଷା ଭୟର ଚିହ୍ନ ହିଁ ବେଶି ବାରି ହୋଇ ପଡୁଥାଏ । ଅଳ୍ପ ଟିକଏ ଆଗରୁ ତା ଦେହରେ ଗୁଳିଟ ବସିଥାଏ ।

ସଡ଼କ ପାରି ହୋଇ ସେମାନେ ଗୋଟାଏ ଅତଟ ଗଡ଼ାଣିରେ ଓହ୍ଲାଇଲେ । ଗଡ଼ାଣି ମୁଣ୍ଡରେ ଦେଖିଲେ କେତେ ଗୁଡ଼ଏ ସୈନ୍ୟ ତଳେ ପଡ଼ିଛନ୍ତି । ଦଳେ ସୈନ୍ୟ ସେମାନଙ୍କ ଆଡ଼କୁ ଆସିଲେ । ତାଙ୍କ ଭିତରେ ଆହତ ନ ହୋଇଥିବା ସୈନ୍ୟ ବି ଥିଲେ । ସୈନ୍ୟ ମାନେ ତରତର ହୋଇ ପାହାଡ଼ ଉପରକୁ ଚଢ଼ି ଯାଉଥାନ୍ତି, ନିଶ୍ବାସ ବନ୍ଦ ହୋଇ ସଁ ସଁ ହୋଇ ଯାଉଥାନ୍ତି, ସେନାପତି ଉପସ୍ଥିତ ଥିଲେ ବି ସେମାନେ ବଡ଼ ପାଟିରେ କଥା ଭାଷା ହେଉଥାନ୍ତି ଓ ବାହା

ହଲେଇ ହଲେଇ ବିଚିତ୍ର ଅଙ୍ଗଭଙ୍ଗୀ କରୁଥାନ୍ତି । ଆଗରେ ଯେଉଁ ଧୂଆଁ ଦିଶୁଥାଏ, ତା' ଭିତରେ ସେମାନେ ସୈନ୍ୟପିନ୍ଧା ଲମ୍ବା କୋର୍ଟଗୁଡ଼ିକ ବାରି ପାରିଲେ । ଦଳପତି ବାଗ୍ରାତିଅନ୍‌ଙ୍କୁ ଦେଖିପାରି ଯେଉଁ ସୈନ୍ୟମାନେ ପଳାଇ ଯାଉଥାନ୍ତି, ସେ ତାଙ୍କ ପଛେ ପଛେ ଧାଇଁଗଲେ, ତାଙ୍କୁ ଫେରି ଆସିବାକୁ ଡାକ ପକାଇଲେ । ବାଗ୍ରାତିଅନ୍ ଘୋଡ଼ାଚଢ଼ି ସୈନ୍ୟଦଳଙ୍କ ଆଡ଼କୁ ଚାଲିଗଲେ । ସୈନ୍ୟଙ୍କ କଥାଭାଷା ଓ କର୍ମଚାରୀଙ୍କ କୁହାଟ ଶବ୍ଦକୁ ବୁଡ଼େଇ ଦେଇ ସେଠି ମଝିରେ ମଝିରେ ବନ୍ଧୁକ ଫୁଟିବାର ଠୋ ଠା ଶୁଭୁଥାଏ । ପବନରେ ବାରୁଦଧୂଆଁର ଗନ୍ଧ । ସୈନ୍ୟମାନଙ୍କ ମୁହଁଯାକ ବାରୁଦ କଳା ଲାଗିଯାଇଥାଏ, ସେ ମୁହଁରେ ଥାଏ ଉତ୍ତ୍ୟକ୍ତତାର ଛବି । କେତେ ସୈନ୍ୟ ବନ୍ଧୁକ ସଜୋଉଥାନ୍ତି, ଆଉ କେତେ ବନ୍ଧୁକରେ ରଞ୍ଜକ ଲଗାଉଥାନ୍ତି, ମୁଣିରୁ ବାରୁଦ ବାହାର କରୁଥାନ୍ତି ଆଉ କେତେକ ତାଙ୍କ ବନ୍ଧୁକ ଫୁଟାଉଥାନ୍ତି । ଧୂଆଁ ଉହାଡ଼ରୁ କାହାକୁ ଲକ୍ଷ୍ୟ କରି ସେମାନେ ଗୁଳି ଫୁଟାଉଥାନ୍ତି ତା ଦେଖିବା ଅସମ୍ଭବ ହୋଇଥାଏ । ପବନ ସେ ଧୂଆଁକୁ ଉଡ଼ାଉ ନ ଥାଏ । ଗୁଳି ଚାଲିଲା ବେଳର ମିଠାଳିଆ ଗୁଣୁଗୁଣୁ ସାଇଁ ସାଇଁ ଶବ୍ଦ ବାରମ୍ବାର ଶୁଭୁଥାଏ । ସୈନ୍ୟଦଳ ପାଖକୁ ଘୋଡ଼ାରେ ଚଢ଼ି ଧାଇଁଗଲାବେଳେ ପ୍ରିନ୍‌ସ୍ ଆନ୍ଦ୍ରେ ମନେ ମନେ ଭାବିଲେ, "କଣ ଏ ? ଏତ ଆଗ ଧାଡ଼ି ନୁହେଁ, କାରଣ ସେମାନେ ଏଠି ଏକାଠି ଗୋଷ୍ଠି ହୋଇ ଠୁଳ ହୋଇଛନ୍ତି । ଏମାନେ ଚଡ଼ାଉ କରିବା ଦଳ ବି ନୁହଁନ୍ତି, କାରଣ ଏମାନେ ମାଡ଼ୁ ନାହାନ୍ତି, ଯେଉଁଠି କି ସେଇଠି । ଏତ ଚଉଖୁଣ୍ଟ୍ ବ୍ୟୂହ ନୁହେଁ, କାରଣ ଏମାନେ ସେମିତି ଠିଆ ହୋଇନାହାନ୍ତି । ତେବେ ଏ କଣ ?"

ଜଣେ ପାତଳ ଦୁର୍ବଳ କର୍ଣ୍ଣେଲ ପ୍ରିନ୍‌ସ୍ ବାଗ୍ରାତିଅନ୍‌ଙ୍କ ପାଖକୁ ଘୋଡ଼ାରେ ଚଢ଼ି ଆସି ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ, ସତେ ଅବା ଜଣେ ସମ୍ମାନିତ ଅତିଥିଙ୍କୁ ସେ ଆପଣା ଘରକୁ ନିମନ୍ତ୍ରଣ କରି ଆଣୁଛନ୍ତି । କର୍ଣ୍ଣେଲ ବୁଢ଼ା ଲୋକ ପରି ଜଣା ପଡ଼ୁଥାନ୍ତି, ହସଟି ଭାରି ମିଠା, ତାଙ୍କର ବସୁସ୍କ ଆଖି ଯୋଡ଼ିକୁ ଆଖିପତା ଅଧା ଘୋଡ଼େଇଥାଏ ଯେ ସେ ଜଣେ ଶାନ୍ତ ଲୋକପରି ଦିଶୁଥାନ୍ତି । ସେ ପ୍ରିନ୍‌ସ୍ ବାଗ୍ରାତିଅନ୍‌ଙ୍କୁ କହିଲେ ଯେ ତାଙ୍କ ଦଳ ଉପରେ ଫରାସୀ ଘୋଡ଼ସୱାର ସୈନ୍ୟମାନେ ଚଢ଼ାଉ କଲେ, ତେଣୁ ତାଙ୍କ ଦଳରୁ ଅଧିକରୁ ବେଶି ଲୋକ ମରିଗଲେ । ସେ

କହିଲେ ଯେ ସେ ଚଢ଼ୋଉକୁ "ଘଉଡ଼ାଇ ଦିଆହୋଇଛି" । ସେ ଭାବିଲେ ଯେ ଯାହା ଘଟିଛି ତାକୁ ସାମରିକ ଭାଷାରେ "ଘଉଡ଼ାଇ ଦିଆହେଲା" ବୋଲି ବୋଧହୁଏ କୁହାଯାଏ । କିନ୍ତୁ ସେହି ଅଧଘଣ୍ଟାକ ଭିତରେ ତାଙ୍କ ଅଧୀନରେ ଥିବା ସୈନ୍ୟଦଳର କି ଅବସ୍ଥା ହେଲା, ସେ ପ୍ରକୃତରେ ତା ନିଜେ ଜାଣି ନଥିଲେ । ଜାଣିଥିଲେ କହିପାରି ନ ଥାନ୍ତେ ଯେ ଚଢ଼ାଉକୁ ଘଉଡ଼ାଇ ଦିଆହେଲା କି ଚଢ଼ୋଉ ଫଳରେ ସୈନ୍ୟଦଳଟା ମାଡ଼ଖାଇ ପଛକୁ ହଟି ଆସିଲା । ସେ କେବଳ ଏତକ ଜାଣି ପାରିଥିଲେ ଯେ ଯେମିତି ଚଢ଼ୋଉ ଆରମ୍ଭ ହେଲା, ସେମିତି ତାଙ୍କ ଦଳ ଉପରେ ଚୁଆଡ଼େ ଖାଲି ଗୁଳି ଆଉ ବୋମା ବର୍ଷିଲା, ଲୋକେ ମରି ପଡ଼ିଲେ, ସେତିକିବେଳେ କିଏ ଜଣେ ପାଟିକଲା "ହେଇ ଘୋଡ଼ସୱାର ସୈନ୍ୟ", ଆଉ ସଙ୍ଗେ ସଙ୍ଗେ ରୁଷ୍ ସୈନ୍ୟମାନେ ଗୁଳି ଚଳେଇଲେ । ସେମାନେ ସେ ପର୍ଯ୍ୟନ୍ତ ବି ଗୁଳି ଚଳେଉଥିଲେ; ତେବେ ଘୋଡ଼ସୱାର ସୈନ୍ୟଙ୍କୁ ନୁହେଁ, ଘୋଡ଼ସୱାର ସୈନ୍ୟ ତ ଅନ୍ତର୍ଧ୍ୟାନ ହୋଇସାରିଥିଲେ, ସେମାନେ ଫରାସୀ ପଦାତିକ ସୈନ୍ୟଙ୍କ ଉପରକୁ ଗୁଳି ଚଳେଉଥିଲେ । ଫରାସୀ ପଦାତିକ ସୈନ୍ୟ ସେତେବେଳକୁ ଖାଲରେ ଥିବାର ଦିଶୁଥାନ୍ତି ଓ ରୁଷ୍ ସୈନ୍ୟଙ୍କ ଆଡ଼କୁ ଗୁଳି ମାରୁଥାନ୍ତି ।

ପ୍ରିନ୍ସ୍ ବାଗ୍ରାତିଅନ୍ ମୁଣ୍ଡ ହଲେଇ ଜଣାଇ ଦେଲେ ଯେ ଯାହା ଘଟିଛି ଠିକ୍ ସେମିତି ଯାହା ହେଉ ବୋଲି ସେ ଚାହିଁଥିଲେ ଓ ହେବ ବୋଲି ଜାଣିଥିଲେ, ଠିକ ସେଇଆ ଘଟିଛି । ଗୋଟିଏ ଦୂତ ଆଡ଼କୁ ବୁଲିପଡ଼ି ସେ ତାକୁ ହୁକୁମ୍ ଦେଲେ ଯେ ପାହାଡ଼ ଉପରେ ଯେ ଷଷ୍ଠ ଚୁସର ଦଳର ଯେଉଁ ଦୁଇଦଳ ସୈନ୍ୟଥିଲେ ସେ ତାଙ୍କୁ ସେଠିକି ଘେନିଆସିବ । ଆସିଲା-ବେଳେ ତାଙ୍କର ପାଖବାଟେ ସେମାନେ ଆସିଥିଲେ । ପ୍ରିନ୍ସ୍ ବାଗ୍ରାତିଅନ୍‌ଙ୍କ ମୁହଁର ଢାଞ୍ଚିରେ ଯେଉଁ ପରିବର୍ତ୍ତନ ହୋଇଥାଏ, ତାକୁ ଦେଖି ପ୍ରିନ୍ସ୍ ଆନ୍ଦ୍ରେ ଅଭିଭୂତ ହୋଇପଡ଼ିଲେ । ଗୋଟାଏ ଗରମ ଦିନରେ ପାଣିକି ଡେଇଁ ପଡ଼ିବା ଆଗରୁ ଜଣେ ଲୋକ ସେତେବେଳେ ଶେଷଥର ଦୌଡ଼ଯାଏ, ତା ମୁହଁ ଯେପରି ଦିଶେ, ସେହିପରି ନିବିଷ୍ଟ ଧ୍ୟାନ ଓ ଉତ୍‌ଫୁଲ୍ଲ ପ୍ରତିଜ୍ଞାର ଛବି ତାଙ୍କ ମୁହଁରେ ଫୁଟି ଉଠିଥିଲା । ଆଗେ ତାଙ୍କ ଆଖିରେ ଯେଉଁ ନିଦୁଆ ନିଦୁଆ ନିଷ୍ପ୍ରଭ ଚାହାଣି ଦିଶୁ ଥିଲା, ଯେଉଁ ଗମ୍ଭୀର ଭାବନାର ଛାଇ ତାଙ୍କ ମୁହଁକୁ ଢାଙ୍କି ଥିଲା, ସେ କୁଆଡ଼େ ଉଭେଇ ଯାଇଥାଏ । ତାଙ୍କର ଗୋଲ

ଗୋଲ ଟାଆଁସିଆ ଇଗଲ୍ ଚଢ଼େଇ ଆଖିପର ଆଖି ଦିଟା ଉଚ୍ଛ୍ୱସିତ ଆନନ୍ଦରେ ସତେ ଅବା ତାଙ୍କ ଭ୍ରୂଲତାରେ ଆଗକୁ ଅନାଇଁଥାଏ, ଜଣା ପଡ଼ୁଥାଏ ସେ ଦୃଷ୍ଟି କୌଣସି ଜିନଷ ଉପରେ ଭର ଦେଉନାହିଁ; କିନ୍ତୁ ତାଙ୍କ ମପାଚୁପା ଚାଲଚଳଣରେ ଆଗର ସେହି ନିଷ୍ଠିତପଣ ରହିଥାଏ ।

କର୍ଣ୍ଣେଲ୍ ପ୍ରିନ୍ସ୍ ବାଗ୍ରାତିଅନ୍ ଆଗରେ ଅଳ୍ପ କଣ ତାଙ୍କୁ ପଛକୁ ଚାଲିଯିବାକୁ କହିଲେ, କାରଣ ସେ ସ୍ଥାନ ଭାରି ବିପଦର ସ୍ଥାନ । ସେ କହୁଥାନ୍ତି,

"ମୁଁ ହାତ ଯୋଡ଼ୁଚି ହଜୁର୍, ଆପଣଙ୍କୁ ଠାକୁରଙ୍କ ଶପଥ !"

ତାଙ୍କ କଥାରେ ସା' ଦେବାପାଇଁ ସେ ସେନାପତିଙ୍କ ଗହଣରେ ଥିବା କର୍ମଚାରୀଙ୍କ ଆଡ଼କୁ ଅନାଇଁଲେ, ସେ କର୍ମଚାରୀ ମୁହଁ ବୁଲେଇ ଦେଲେ ।

"ଖାଲି ଟିକିଏ ଅନାନ୍ତୁ ହଜୁର୍ !" ଯେଉଁସବୁ ଗୁଳି ଚାଲିଥାଏ ସେ ସବୁବେଳେ ସର୍ ସର୍ ସାଇଁ ସାଇଁ ଶବ୍ଦ କରି ଗୀତ ବୋଲିଲା ପରି ସେମାନଙ୍କ ପାଖକରେ ଚାଲି ଯାଉଥାଏ, ସେହି ଆଡ଼କୁ ଦୃଷ୍ଟି ଦେବାକୁ ସେ ତାଙ୍କୁ ଅନୁନୟ କଲେ । ଜଣେ ଭଦ୍ରଲୋକ ଗୋଟାଏ ବାଉଁଶି ଉଠେଇ ନେଲେ । ବଡ଼େଇ ଯେଉଁ ସ୍ୱରରେ ଆପତ୍ତି ଆଉ ଅନୁନୟ ଜଣାଏ ସେଇ ସ୍ୱରରେ ସେ କଥା କହୁଥାନ୍ତି । ଯେପରିକି,

"ଆମର ତ ଏସବୁ ଅଭ୍ୟାସ ହୋଇ ଗଲାଣି, ଆପଣ ପିନା ଖାଲି ଆପଣଙ୍କ ଆଙ୍ଗୁଠି ଖଣ୍ଡିଆ କରିବେ !"

ସେ ଏପରି କଥା କହୁଥାନ୍ତି, ଯେପରିକି ଏସବୁ ବନ୍ଧୁକ ଗୁଳି ତାଙ୍କୁ ମାରି ପାରିବ ନାହିଁ । ତାଙ୍କର ଅଧାବୁଜା ଆଖିର ଚାହାଣି ତାଙ୍କ କଥାକୁ ଆହୁରି ସାକୁଲେଇଲା ଭଳି ଜୋର୍ ଦେଉଥାଏ । ସେନାପତିଙ୍କ ଗହଣରେ ଥିବା କର୍ମଚାରୀ ମଧ୍ୟ କର୍ଣ୍ଣେଲ୍‌ଙ୍କ କଥା ସହିତ ନିଜର ଆପତ୍ତି ମିଶାଇ ଦେଲେ ।

କିନ୍ତୁ ବାଗ୍ରାତିଅନ୍ ସେମାନଙ୍କୁ କୌଣସି ଉତ୍ତର ଦେଲେନାହିଁ । ସେ ଖାଲି ହୁକୁମ୍ ଦେଲେ ଗୁଳି ନ ଫୁଟାଇ ଏକାଠି ଧାଡ଼ି ବାନ୍ଧିବାକୁ । ତା' ହେଲେ ପଛରୁ ଯେଉଁ ଦୁଇଦଳ ସୈନ୍ୟ ଅଣାହେଉଛନ୍ତି ସେମାନଙ୍କ ପାଇଁ ଜାଗା ହୋଇ ପାରିବ ।

ସେ କଥା କହୁଥିଲାବେଳେ ହଠାତ୍ ଯେପରିକି ଏକ ଅଦେଖା ହାତ ସେହି ଖୋଲ ଉପରେ ଜମିଥିବା ଧୂଆଁକୁ ଟେକିନେଇ ନେଲା । ପବନରେ ସେ ଧୂଆଁ ଡାହାଣ ଆଡ଼ୁ ବାଁ ଆଡ଼କୁ ଉଡ଼ିହୋଇ ଗଲା । ସାମ୍ନାର ପାହାଡ଼ଟା ଏଥର ଦିଶିଲା, ବାଁ' ଉପରେ ଫରାସୀ ସୈନ୍ୟମାନେ ଏକରୁ ସେକର ଚାଲିଥାନ୍ତି । ଗୁଆଁ କୁ ଛାଡ଼ି ଏ ସବୁ ଆଖି ସେହି ଫରାସି ସୈନ୍ୟଙ୍କ ଧାର ଉପରେ ଲାଗିଗଲା, ସେହି ଯେଉଁ ସୈନ୍ୟଧାର ଚାଲି ବଙ୍କେଇ ଡିପ ଖାଲ ଡେଇଁ ତାଙ୍କର ଉପରକୁ ମାଡ଼ି ଆସୁଥାନ୍ତି । ଫରାସୀ ସୈନିକମାନଙ୍କର ପଶମ ଟୋପିମାନ ସେମାନେ ଦେଖିପାରୁଥାନ୍ତି, ତାଙ୍କ ଭିତରେ ସାଧାରଣ ସୈନ୍ୟ କିଏ କର୍ମଚାରୀ କିଏ ବାରିପାରୁଥାନ୍ତି । ଦଣ୍ଡ ଉପରେ ତାଙ୍କ ପତାକା ଫର୍ ଫର୍ ହେଉଥାଏ ଦେଖିପାରୁଥାନ୍ତି ।

ବାଗ୍ରାଟିଅନଙ୍କ ଦଳର କିଏ ଜଣେ କହିଲା,

"କେଡ଼େ ସୁନ୍ଦର ସେମାନେ ଧାଡ଼ି ଦେଉଛନ୍ତି !"

ସେହି ମାଡ଼ି ଆସୁଥିବା ସୈନ୍ୟଦଳର ଆଗ ଭାଗଟା ଖାଲ ଭିତରକୁ ଗଡ଼ପଡ଼ ସାରିଥାଏ । ଜଣାପଡ଼ୁଥାଏ ଅଚଡ଼ା ଏକରେଖି ଲଢ଼େଇଟା ଲାଗିଯିବ ।

ରୁଷ ସୈନ୍ୟର ଯେଉଁ ଦଳଟି ଲଢ଼ିଥିଲେ ସେଥିରୁ ଯେଉଁମାନେ ନ ମରି ରହିଥିଲେ ସେମାନେ ତର ତର ହୋଇ ଡାହାଣକୁ ଚାଲିଗଲେ । ଷଷ୍ଠ ଚସର ବଳର ଯୋଡ଼କଯାକ ଦଳ ସୁନ୍ଦରଭାବେ ମାଡ଼ି ଚାଲି-ଆସିଲେ, ପଛରେ ଯେଉଁମାନେ ପଡ଼ିଯାଉଥିଲେ, ତାଙ୍କୁ ତାଙ୍କ ଆଗେ ଆଗେ ତଡ଼ି ତଡ଼ି ନେଇ ଆସିଲେ । ସେମାନେ ବାଗ୍ରାଟିଅନ୍‌ଙ୍କ ପାଖରେ ପହଞ୍ଚି ନଥାନ୍ତି କିନ୍ତୁ ସେ ଦଳର ସମସ୍ତେ ଏକା ସାଙ୍ଗରେ ପାଦ ପକାଉଥାନ୍ତି ଯେ ସେମାନଙ୍କର ଓଜନ ପାଦଶବ୍ଦ ଶୁଭୁଥାଏ ।

ବାଁ ପଟେ ବାଗ୍ରାଟିଅନ୍‌ଙ୍କର ସବୁଠୁ ପାଖରେ ଦଳପତି ମାର୍ଚ୍ଚ କରୁଥାନ୍ତି, ଗୋଲ ମୁହଁ ହୋଇ ପ୍ରକାଣ୍ଡ ଆକାରର ଜଣେ ମଣିଷ ମୁହଁର ଠାଣି ଖୁସି ଖୁସି ଆଉ ଓଲପରି । ସେ ସେହି ପଦାତିକ କର୍ମଚାରୀ ଯେ ତମ୍ବୁ ଘର ଭିତରୁ ଡୁସିନ୍ ପଛେ ପଛେ ଦୌଡ଼ି ପଳାଇଥିଲା । ସେ ସେତେବେଳେ କୌଣସି କଥା ଭାବୁନଥିଲା ପରି ଜଣାପଡ଼ୁଥିଲା । ଖାଲି ଏତିକି ହେତୁ କରୁଥିଲା ଯେ ସେନାପତିଙ୍କ ଆଗରେ ଖୁବ୍ ସୁଠାମ ଭଙ୍ଗୀରେ ସେ ମାର୍ଚ୍ଚ କରି ଯାଉଛି । ପ୍ୟାରେଡ଼୍‌ରେ ଚାଲିଥିଲାବେଳେ ମଣିଷ ଯେମିତି ନିଶ୍ଚିନ୍ତ

ହୋଇ ଗ୍ଭଲେ ସେହି ଠାଣିରେ ସେ ତା'ର ମାଂସପେଶୀମୟ ଗୋଡ଼ରେ ନାଚଲା ପରି ଗ୍ଭଲଥାଏ । କିଛି ପରିଶ୍ରମ ନ କରି ଆପେ ଆପେ ଦେହକୁ ଓଟାରି ଗ୍ଭଣ୍ଟ୍ କରି ଗ୍ଭଲଥାଏ ଯେମିତି କ ଦୋଳରେ ଝୁଲୁଛି । ତା' ପାଦ ସାଙ୍ଗେ ପାଦ ମିଳାଇ ସୈନ୍ୟମାନେ ଯେ ଗ୍ଭଲଥିଲେ ତାଙ୍କର ଗ୍ଭଲି ଓଜନ ଓଜନ କିନ୍ତୁ ତା'ର ଗ୍ଭଲି କେଡ଼େ ସହଜ ଆଉ ଲକଲକଆ ଗ୍ଭଲି, ସେମାନଙ୍କ ଗ୍ଭଲଠୁଁ ତା' ଗ୍ଭଲି ବାରି ହୋଇ ପଡ଼ୁଥାଏ । ତା' ଗୋଡ଼କୁ ଲଗି ଗୋଟାଏ ଖଣ୍ଡା ଝୁଲୁଥାଏ । ଖଣ୍ଡାଟା ଖୋଲଥାଏ, ଏକ ସରୁ ପାତଳ ଖଣ୍ଡା (ସାନ ହୋଇ ବଙ୍କା ହୋଇ ଖଣ୍ଡାଟିଏ, ଅସ୍ତ୍ର ପରି ଦିଶୁ ନ ଥାଏ ବରଂ ଖେଳେଣା ଖଣ୍ଡା ପରି ଦିଶୁଥାଏ ) । ସେ ଚ୍ଭରିପାଖକୁ ଅନାଉଁଥାଏ କେତେବେଳେ ସେନାପତିଙ୍କ ଆଡ଼କୁ କେତେବେଳେ ତା' ପିଠିଆଡ଼କୁ । ସେ ତା' ପାଦର ଛନ୍ଦ ନ ଭାଙ୍ଗି ଏଣେ ତେଣେ ଗ୍ଭହିଁଲବେଳେ ତା'ର ମୋଟା ତାଗଡ଼ା ଦେହଟାକୁ ଏକଦମ୍ ମୋଡ଼ି ଦେଉଥାଏ, ଜଣାପଡ଼ୁଥାଏ ଯେପରିକ ତା'ର ଆତ୍ମାର ସବୁଯାକ ଶକ୍ତି ଖାଲି ଏଇ କାର୍ଯ୍ୟରେ ଲଗିଛି ଯେ ସେ ସେନାପତିଙ୍କ ପାଖରେ ସବୁଠୁ ଭଲ ଠାଣିରେ କେମିତି ପାହୁଣ୍ଡ ପକାଇ ଯାଇ ପାରିବ । ତା' ହୋଇ ପାରୁଛି ଏ କଥା ସେ ବୁଝିପାରୁଥାଏ ଓ ସେଥିପାଇଁ ଖୁସିଥାଏ । ପ୍ରତି ହ' ହ' ପାହୁଣ୍ଡରେ ଥରେଲେଖାଁ ସେ ଯେପରିକ ମନେ ମନେ ବାରମ୍ବାର କହିଲଗିଥାଏ, "ବାଁ—ବାଁ—ବାଁ—" ।

ସେହି ଏକ ଛନ୍ଦରେ ଗ୍ଭଲଥାଏ ସୈନ୍ୟ ଚେହେରାମାନଙ୍କର ନୋଟାଏ ଜାକି । ସୈନ୍ୟମାନେ ତାଙ୍କ ମୁଣି ଓ ବନ୍ଧୁକ ବୋଝରେ ନଇଁ ପଡ଼ିଥାନ୍ତି, ତାଙ୍କ ମୁହଁସବୁ ଭିନ୍ନ ଭିନ୍ନ ପ୍ରକାରେ ଗମ୍ଭୀର ଦିଶୁଥାଏ । ଜଣେ ମୋଟା ମେଜର୍ ସଡ଼କ ଉପରେ ଗୋଟାଏ ବୁଦା କରଚରେ ବୁଲିଗଲେ, ସେ ଧଇଁ ସଇଁ ହୋଇଯାଉଥାଏ, ପାହୁଣ୍ଡକୁ ଏକରି ସେକରି କରୁଥାଏ । ଜଣେ ସୈନ୍ୟ ପଛରେ ପଡ଼ିଯାଇଥିଲି ଯେ ସେ ଦଳ ପଛେ ପଛେ ଦୌଡ଼ି ଦୌଡ଼ି ଆସୁଥାଏ । ଆପେ ପଛେଇ ଯାଉଛି ବୋଲି ଆତଙ୍କରେ ଅଭିଭୂତ ହେଲପରି ଦିଶୁଥାଏ । ଗୋଟାଏ ତୋପଗୁଳି ପବନ ଭିତରେ ସାଇଁ ସାଇଁ ହୋଇ ଆସି ପ୍ରିନ୍ସ୍ ବାଗ୍ରାତିଅନ୍ ଓ ତାଙ୍କ ଦଳର ମୁଣ୍ଡ ଉପର ଦେଇ ଉଡ଼ିଗଲି ଓ "ବାଁ—ବାଁ—ବା" ବୋଲି ଯେଉଁ ଛନ୍ଦ ଲଗିଥିଲି, ତାହାରି ସଙ୍ଗେ ମିଶିଯାଇ ସେହି ସୈନ୍ୟଧାଡ଼ି ଭିତରେ ପଡ଼ିଗଲି ।

କ୍ୟାପ୍‌ଟେନ୍‌ର ନର୍ଖ୍‌କ ସ୍ୱର ଶୁଭିଲା,

"ଧାଡ଼ି ମିଶିଯାଅ"

ଗୁଳିଟା ଯେଉଁଜାଗାରେ ପଡ଼ିଥିଲା ସେଠି କଣଟାଏ ଥାଏ ଯେ ତା କରପଟ ଦେଇ ଅର୍ଦ୍ଧବୃତ୍ତ ଆକାରରେ ସୈନ୍ୟମାନେ ଧାଡ଼ି ଦେଇ ଚାଲି-ଗଲେ । ଜଣେ ପୁରୁଣା ଘୋଡ଼ସଓ୍ୱାର ସୈନିକ,—ସେ ଜଣେ ସାନ କର୍ମଚାରୀ, ମଲା ଲୋକଙ୍କ କଡରେ ସେ ମାଣ୍ଡେଇ ରହିଥିଲା, ସେ ତାର ଦଳକୁ ଧରିପକାଇ ଡେଇଁପଡ଼ି ତାର ଚାଲି ବଦଳାଇ ସମସ୍ତଙ୍କ ସଙ୍ଗେ ପାଦ ମିଳାଇ ଚାଲିଲା ଆଉ ରାଗରେ ପଛଆଡ଼କୁ ଅନାଇଁଲା ।

ସେହି ଭୟଙ୍କର ନିସ୍ତବ୍‌ଧତା ଭିତରୁ 'ବାଁ ବାଁ—ବାଁ" ଶବ୍ଦର ଯେପରିକି ପ୍ରତିଧ୍ୱନି ଉଠୁଥାଏ, ଆଉ ଶୁଭୁଥାଏ, ଭୂଇଁ ଉପରେ ଏକାଠି ଏତେ ପାଦର ଶବ୍ଦ ।

"ସାବାସ୍ ପିଲାଏ—",

ପ୍ରିନ୍‌ସ୍ ବାଗ୍ରାତିଅନ୍ କହିଲେ ।

"ହଜୁରଙ୍କୁ ସମ୍ମାନ ଜଣାଉଛୁଁ !",

ସୈନ୍ୟମାନେ 'କୁହାଟ ମାରିଲେ ।

ବାଁପଟେ କଦମ୍ ପକାଇ ଚାଲିଥିଲା ଜଣେ ଟିଣିଟିଣା ସୈନିକ, ସେ କୁହାଟ ମାରିଲାବେଳେ ବାଗ୍ରାତିଅନ୍‌ଙ୍କ ଆଡ଼କୁ ଏପରି ଚାହାଣିରେ ଅନାଇଁଲା—ଯେଉଁଥିରୁ ଜଣା ପଡୁଥିଲା ଯେ ତାର ଚାହାଣି କହିଦେଉଛି,

"ତେମେ ନକହିଲେ ବି ଆମେ ଜାଣିପାରୁଚୁ ଆମେବାହାଦୂର୍—" ।

ଆଉ ଜଣେ ବଡ଼ଧାଏଁ ପାଟି ମେଲାକରି ନ ଅନାଇଁ କୁହାଟ ଛାଡ଼ି ଚାଲିଗଲା, ସତେ କି ତାକୁ ଡର ମାଡୁଥାଏ କାଳେ ତାର ନିଘା ଅନ୍ୟଆଡ଼େ ଚହଲିଯିବ । ହୁକୁମ୍ ହିଆଗଲା, ଅଟକଯାଇ ତାଙ୍କ ମୁଣିସବୁ ଖୋଲି ଥୋଇ ଦେବାକୁ ।

ଯେଉଁ ସୈନ୍ୟମାନେ ବାଗ୍ରାତିଅନ୍‌ଙ୍କ କରେ କରେ ମାର୍ଚ୍ଚ୍ କରି ଯାଇଥିଲେ—ସେମାନେ ଧାଡ଼ି ଧାଡ଼ି ହୋଇ ଠିଆ ହୋଇଥାନ୍ତି, ବାଗ୍ରାତିଅନ୍ ତାଙ୍କ ଚାରିପଟେ ଘୋଡ଼ାରେ ଚଢ଼ି ବୁଲିଆସିଲେ । ତାପରେ ସେ ଘୋଡ଼ା ଉପରୁ ଓହ୍ଲାଇ ପଡ଼ିଲେ । ଘୋଡ଼ାର ଲଗାମ୍‌କୁ ଜଣେ କୋସାକ୍ ସୈନ୍ୟ ହାତକୁ ବଢ଼ାଇ ଦେଲେ, ପିନ୍ଧିଥିବା ଲମ୍ବା କୋଟ୍‌କୁ ଖୋଲି ତା ହାତକୁ ବଢ଼ାଇ ଦେଲେ, ଗୋଡ଼ ଲମ୍ବେଇଲେ, ମୁଣ୍ଡ ଉପରେ ସଳଖ କରି

ଟୋପିକୁ ପିନ୍ଧିଲେ । ସେତିକିବେଳେ ସାମ୍ନାରେ ପାହାଡ଼ ତଳେ ଦିଶିଲେ ଫରାସି ସୈନ୍ୟ ଓ ତାଙ୍କ କର୍ମଚାରୀମାନେ ।

"ଭଗବାନ ଆମକୁ ସହାୟ ହେବେ",
ବାଗ୍ରାତିଅନ୍ ଚିତ୍କାର କଲେ ।

ତାଙ୍କ ସ୍ୱର ଶୁଭୁଥିଲା ଦୃଢ଼ ଓ ଗମ୍ଭୀର ଝଙ୍କାରମୟ । ସେ ମୁହୂର୍ତ୍ତେ ସାମ୍ନାର ସୈନ୍ୟ ଧାଡ଼ି ଆଡ଼କୁ ବୁଲିପଡ଼ିଲେ, ଦୁଇ ବାହାକୁ ଅଳ୍ପ ଦୋହଲାଇ ଦେଲେ । ଯେଉଁ ଲୋକ ସବୁବେଳେ ଘୋଡ଼ାରେ ଚଢ଼ି ବୁଲେ, ତାଦରେ ଚାଲିଲେ ସେ ଯେପରି ବେଢଙ୍ଗ ହୋଇ ଶଗଡ଼ ଚଢ଼ିଲା ପରି ମାଡ଼ିଚାଲେ, ସେହିପରି ସେ ଡ଼ିପଖାଲ ଜମି ଉପରେ ଆଗକୁ ଚାଲିଲେ ।

ପ୍ରିନ୍ସ୍ ଆନ୍ଦ୍ରେ ଅନୁଭବ କଲେ ଯେ କୌଣସି ଅଦେଖା ଶକ୍ତି ତାଙ୍କୁ ଆଗକୁ ଠେଲି ନେଇ ଚାଲିଛି ଓ ତାଙ୍କର ଭାରି ଆନନ୍ଦ ହେଲା ।

ଫରାସୀ ପକ୍ଷ ପାଖ ହୋଇଥାନ୍ତି । ବାଗ୍ରାତିଅନ୍ଙ୍କ ପାଖେ ପାଖେ ଚାଲି ପ୍ରିନ୍ସ୍ ଆନ୍ଦ୍ରେ ଫରାସି ସୈନ୍ୟଙ୍କ ପୋଷାକର ରଙ୍ଗକୁ, ଏପରିକି ତାଙ୍କ ମୁହଁକୁବି ବାରି ପାରୁଥାନ୍ତି । (ସେ ଜଣେ ବୁଢ଼ା ଫରାସି କର୍ମଚାରୀଙ୍କୁ ପରିଷ୍କାର ଦେଖି ପାରିଲେ, ତାଙ୍କ ଗୋଡ଼ ଯୋଡ଼ିକ ବଙ୍କା ବଙ୍କା, ସେ ହେସିଆନ୍‌ର ବୁଟ୍ ପିନ୍ଧି କଷ୍ଟେମଷ୍ଟେ ପାହାଡ଼ ଉପରକୁ ଚଢ଼ୁଥାନ୍ତି, ଗଛମାନଙ୍କୁ ଧରି ଧରି ଚଢ଼ୁଥାନ୍ତି) ।

ପ୍ରିନ୍ସ୍ ବାଗ୍ରାତିଅନ୍ କୌଣସି ନୂଆ ହୁକୁମ ଦେଲେ ନାହିଁ, ସେମିତି ଚୁପଚାପ ହୋଇ ସୈନ୍ୟମାନଙ୍କ ଧାଡ଼ି ଆଗରେ ଚାଲି ଆସୁଥାନ୍ତି । ହଠାତ୍ ଫରାସି ସୈନ୍ୟଙ୍କ ମଝିରୁ ଗୋଟାଏ ବନ୍ଧୁକ ଗୁଳି ଫୁଟିବାର ଶବ୍ଦ ଶୁଭିଲା, ତାପରେ ଆଉ ଗୋଟାଏ ପୁଣି ଆଉ ଗୋଟାଏ । ଧୂଆଁ ଉଠିଲା । ଶତ୍ରୁପକ୍ଷର ଭଙ୍ଗା ଭଙ୍ଗା ଧାଡ଼ିମାନଙ୍କର ଚାରିଆଡ଼ୁ ଗୁଳି ଫୁଟିବା ଶବ୍ଦ ଶୁଭିଲା । ରୁଷ୍ ପକ୍ଷରେ ଅନେକ ସୈନ୍ୟ ମରିପଡ଼ିଲେ, ତା ଭିତରେ ସେହି ଗୋଲ୍ ମୁହଁ ଅଫିସର ଯେ, ଭାରି ହସିଆର ହୋଇ ନିଶ୍ଚିନ୍ତ ହୋଇ ମାର୍ଚ୍ଚ୍ କରୁଥିଲେ । କିନ୍ତୁ ସେହି ପହିଲା ଗୁଳି ଶବ୍ଦ ଶୁଭିବା ମାତ୍ରକେ ବାଗ୍ରାତିଅନ୍ ଚାରିଆଡ଼େ ଆଖି ବୁଲେଇ ଆଣି ପାଟିକଲେ,

"ଜୟ ! ଜୟ ! (ହୁରେ) !"

ରୁଷ୍ ସୈନ୍ୟର ଧାଡ଼ିକା ଧାଡ଼ି ଚାରିଆଡ଼େ ଏକ ଅଛିଣ୍ଡା ଗର୍ଜନ ଉଠିଲା,

"ଜୟ ! ଜୟ !

ତାପରେ ଧାଡ଼ି ଭାଙ୍ଗିଦେଇ ଅତି ଆଗ୍ରହରେ ଆନନ୍ଦରେ ବାଗ୍ରାତିଅନଙ୍କୁ ଟପି ପୁଣି ବାଦବୁଦିଆ ହୋଇ ଜଣେ ଆଉ ଜଣକୁ ଟପିବାକୁ ଚେଷ୍ଟାକରି ଏକାଠି ଗୋଷ୍ଠ ହୋଇ ରୁଷ୍ ସୈନ୍ୟ ପାହାଡ଼ ଉପରୁ ତଳକୁ ଦୌଡ଼ି ଦୌଡ଼ି ଫରାସି ସୈନ୍ୟଙ୍କୁ ଘଉଡ଼େଇ ନେଲେ, ଫରାସୀ ସୈନ୍ୟ ପଳାଇଲେ, ରୁଷ୍ ସୈନ୍ୟ ଗୋଡ଼େଇଗଲେ ।

ଛ'ନମ୍ବର ଚସର ବାହିନୀର ଆକ୍ରମଣ ଯୋଗୁଁ ଡାହାଣପଟ ସୈନ୍ୟବାହିନୀର ପଛଘୁଞ୍ଚା ଆଖି ଆଢ଼ୁଆଳରେ ରହିଗଲା । ମଝିରେ ଥାଏ ତୁସିନ୍‌ର ତୋପ ଘାଟି, ତାକୁ ସମସ୍ତେ ଭୁଲିଯାଇଥାନ୍ତି, ତାର ସାହାପକ୍ଷ ହୋଇ କେହି ନ ଥାନ୍ତି । ତୁସିନର ପ୍ରଚଣ୍ଡ ତୋପମାଡ଼ ସ୍କନ୍‌ଗ୍ରାବେନ୍ ଗାଁରେ ନିଆଁ ଲଗାଇ ଦେଇଥାଏ ଓ ଫରାସି ସୈନ୍ୟଙ୍କ ଆଗକୁ ମାଡ଼ିବା ଅଟକାଇ ଦେଇଥାଏ । ପବନରେ ନିଆଁ ମାଡି ଉଠୁଥାଏ, ଫରାସି ସୈନ୍ୟ ନିଆଁ ନିଭାଇବାକୁ ଅଟକି ଗଲେ, ତେଣୁ ପଛକୁ ହଟିଯିବାପାଇଁ ରୁଷ୍ ସୈନ୍ୟଙ୍କୁ ସମୟ ମିଳିଲା । ଗମ୍ଭୀର ଖାଲ ଟପି ମଝିର ସୈନ୍ୟଦଳ ଯେତେବେଳେ ଆରପଟକୁ ଘୁଞ୍ଚି ପଳାଇଲେ, ସେତେବେଳେ ସେମାନେ ବଡ଼ ତରବରରେ ଗଲେ, ବନ୍ଧୁକ ଶବ୍ଦ ଶୁଭୁଥାଏ, କିନ୍ତୁ ଭିନ୍ନ ଭିନ୍ନ ଦଳ ପରସ୍ପରଠୁଁ ଛଡାରେ ଛଡାରେ ଚାଲିଯାଉଥାନ୍ତି । ବାଁ ପାଖ ସୈନ୍ୟବାହିନୀରେ ଥାଆନ୍ତି ଆଜଭସ୍କି ଓ ପଦଲସ୍କି ପଦାତିକ ଦଳ, ପାଭ୍‌ଲୋଗ୍ରାଡ୍ ଘୋଡସବାର ଦଳ । ଏଇ ବାହିନୀର ଚାରିପଟେ ଫରାସି ସୈନ୍ୟ ବେଢ଼ି ଯାଇ ଆକ୍ରମଣ କଲେ, ସେଥି ସଙ୍ଗେ ସଙ୍ଗେ ପୁଣି ସାମ୍ନାପଟୁ ବି ତାଙ୍କ ଉପରେ ଚଢ଼ାଉ ହେଲା । ଫରାସି ସୈନ୍ୟଙ୍କ ଭିତରେ ଯେଉଁମାନେ ବଳ୍ଗ ବୃଦ୍ଧ ଆଉ ସବୁଠୁଁ ନାଁଡାକ, ସେହିମାନେ ଯୁାଙ୍କୁ ଆକ୍ରମଣ କଲେ, ସେ ସେନାର ଅଧିନାୟକ ଥିଲେ ଲାନେସ୍ । ଏମିତି ଅକସ୍ମାତରେ ପଡ଼ି ସେହି ରୁଷ୍ ସୈନ୍ୟବାହିନୀଟି ଅଳିଆ ଅର୍ଦ୍ଧାଉଳିଆ ହୋଇପଡ଼ିଲା । ସେହି ସୈନ୍ୟବାହିନୀର ସେନାପତିଙ୍କ ପାଖକୁ ବାଗ୍ରାତିଅନ୍ ଜେର୍‌କଭ୍‌ଙ୍କୁ ପଠାଇଥାନ୍ତି, ଆଦେଶ ପଠାଇଥାନ୍ତି ଯେ ସଙ୍ଗେ ସଙ୍ଗେ ପଛକୁ ହଟିଯିବାକୁ ପଡ଼ିବ ।

ଜେରକଭ୍ ଟୋପିରେ ହାତ ପାପୁଲି ଛୁଆଁଇ ସେନାପତିଙ୍କୁ ଦଣ୍ଡବତ କରିଥିଲେ, ଟୋପିରେ ହାତ ସେମିତି ଲାଗିଥାଏ, ସେ ତରତର ହୋଇ ଘୋଡ଼ା ଛୁଟାଇ ଧାଇଁ ଯାଇଥିଲେ, କିନ୍ତୁ ବାଗ୍ରାତିଆନଙ୍କ ଦୃଷ୍ଟିର

ଅନ୍ଧାର ହେଲାମାତ୍ରେ ତାଙ୍କ ସାହସ ଛୁଟିଗଲା । ଗୋଟାଏ ପ୍ରବଳ ଗ୍ଲାନିଆଁରେ ସେ ଆକ୍ରାନ୍ତ ହୋଇପଡ଼ିଲେ, ସେଥିରୁ ଲୁଚିବାକୁ ତାଙ୍କର ବଳ ପାଇଲା ନାହିଁ କିମ୍ବା ଯେଉଁଠି ବିପଦ ସେଠିକି ଯିବାକୁ ତାଙ୍କଠିଁ ଶକ୍ତି ନଥିଲା ।

ରୋଷ୍ତଭ୍ ଯେଉଁ ଘୋଡ଼ସବାର ଦଳରେ ଥିଲା, ସେ ଦଳର ସୈନ୍ୟମାନେ ଘୋଡ଼ାରେ ବସିବାକୁ ବେଳ ନପାଉଣୁ ସେମାନଙ୍କ ଆଗରେ ଶତ୍ରୁପକ୍ଷ ଆସି ହାଜିର ହୋଇଗଲେ । ପୁଣି ସେହି ଏନ୍‌ସ୍ ନଈ ପୋଲ ଉପରେ ଯେପରି ହୋଇଥିଲା, ସେହିପରି, ସୈନ୍ୟଦଳ ଓ ତାଙ୍କ ଆଗରେ ଶତ୍ରୁଦଳ —ଏ ମଝିରେ ଆଉ କେହି ନ ଥିଲେ । ଦୁହିଁଙ୍କ ମଝିରେ ଥିଲା ଭୟ ଓ ଅନିଶ୍ଚିତତାରେ ସେହି ଭୟଙ୍କର ସନ୍ଧିଗାର, ଯେପରିକି ତାର ଗୋଟାଏ ପାଖେ ମୃତ୍ୟୁ ଓ ଆରପାଖେ ଜୀବନ । ସବୁ ସୈନ୍ୟ ସେହି ଗାର ବିଷୟରେ ସଚେତ ଥିଲେ । ସେ ଗାର ଟପିବେ କି ନା, ଟପିଲେ କି ଉପାୟରେ ଟପିବେ ଏହିଆ ଭାବନାବେଳକୁ ତାଙ୍କ ମନରେ ଉତ୍ତେଜନା ପୂରି ଯାଉଥିଲା ।

ସେ ଦଳର ଦଳପତି ଘୋଡ଼ାରେ ଚଢ଼ି ସାମ୍ନାକୁ ଗଲେ, ସୈନ୍ୟମାନେ ଯାହା ପଚାରିଲେ ତାର ଉତ୍ତରରେ ରାଗିକରି କଣ କହିଲେ, ସତେଅବା ଜଣେ ଲୋକ ମରସର ଲାଗିପଡ଼ିଛି ନିଜର ହକ୍ ବଜାୟ ରଖିବା । କଣ ଆଦେଶ ବି ଦେଲେ । କେହି ପରିଷ୍କାର କରି କୌଣସି କଥା କହିଲେ ନାହିଁ କିନ୍ତୁ ଦଳର ଏମୁଣ୍ଡ ସେମୁଣ୍ଡ ଗୋଳମାଳିଆ ହୋଇ ଗୋଟାଏ ଖବର ରଟିଗଲା ଯେ ଆକ୍ରମଣ କରିବାକୁ ପଡ଼ିବ । ସାଜ ହୋଇ ଧାଡ଼ି ବାନ୍ଧିବାକୁ ହୁକୁମ ଶୁଭିଲା ବଡ଼ ପାଟିରେ, ତାପରେ ଖାପ ଭିତରୁ ଖଣ୍ଡା ଓଟାରି ହେବାର ଶବ୍ଦ ଶୁଭିଲା । ତଥାପି କେହି ଚଂକିଲେ ନାହିଁ । ବାଁ ପଟ ବାହିନୀର ସୈନ୍ୟମାନେ, କି ପଦାତିକ କି ଘୋଡ଼ସବାର, ସମସ୍ତେ ଅନୁଭବ କରୁଥାନ୍ତି ଯେ କଣ କରିବାକୁ ହେବ ସେକଥା ତାଙ୍କ ଦଳପତିମାନଙ୍କୁ ବି ଜଣା ନାହିଁ । ଦଳପତିମାନଙ୍କ ଅନିଶ୍ଚିତତା ସୈନ୍ୟମାନଙ୍କ ଭିତରକୁ ଚହଟିଗଲା ।

"ଆଃ ! ଯାହା କରିବା କଥା ତାକୁ ଜଲ୍‌ଦି କରନ୍ତେ କି ! ଜଲ୍‌ଦି କରନ୍ତେ କି !"

ଏହିପରି ଭାବୁଥାଏ ରୋଷ୍ତଭ୍ । ତାକୁ ଲାଗୁଥାଏ ଯେ ଆକ୍ରମଣର ସୁଆଦ ଚାଖିବା ବେଳ ଏତେବେଳକେ ଆସିଲା ସେ ବିଷୟରେ ସେ ତା'ର ସାଙ୍ଗମାନଙ୍କଠୁଁ ଆଗରୁ ବହୁତ ଶୁଣିଥିଲା ।

ଜେନସଭର ବଡ଼ପାଟି ଶୁଭିଲା,

"ମାଡ଼ିଚାଲ ପିଲେ, ଭଗବାନ ଆମକୁ ସହାୟ ।"

ଆଗ ଧାଡ଼ିର ଘୋଡ଼ାଙ୍କ ପିଠି ଚହଲି ଉଠିଲା । ରୁକ୍ ତା' ଘୋଡ଼ା ଲଗାମ୍‌କୁ ଢ଼ଡ଼ ଓଟ୍ଟାର ହୋଇ ଆପଣା ଆପେ ଚାଲିଲା ।

ଡାହାଣପଟେ ରୋଷ୍ଟୋଭ୍ ଦେଖିଲା ତା' ନିଜ ଦଳର ଘୋଡ଼ାମାନଙ୍କର ଆଗ ଆଗ ଧାଡ଼ିମାନଙ୍କୁ, ଆହୁରି ଦୂରରେ ତାକୁ ଦିଶିଲା ଅନ୍ଧାରୁଆ ହୋଇ କଣ ଗାରଟାଏ । କ'ଣ ସେ ବୋଲି ବାରି ପାରିଲା ନାହିଁ । ଅନୁମାନ କଲା ସେ ବୋଧହୁଏ ଶତ୍ରୁପକ୍ଷ ହୋଇଥିବ । ଗୁଳି ଶବ୍ଦ ଶୁଣିଲା; କିନ୍ତୁ ସେ ଦୂରରେ ଦୂରରେ ।

"ଆହୁରି ବେଶି, ଆହୁରି—!"

ଆଦେଶର ଶବ୍ଦ ଠଣ୍ ଠଣ୍ ହୋଇ ଶୁଭିଲା ।

ରୋଷ୍ଟୋଭ୍‌କୁ ଲାଗିଲା, ତା' ଘୋଡ଼ା ରୁକ୍‌ର ପଛପାଖ ଦବି ଦବି ଗଲା, ଘୋଡ଼ା କଦମ୍ ଛୁନ୍ଦ ଦୌଡ଼ିବାକୁ ଆରମ୍ଭ କଲା । ତାକୁ ଲାଗୁଥାଏ, ଘୋଡ଼ାଚଢ଼ି କଦମ୍ ଦୌଡ଼ିବାର ମଉଜ ହେଇ ଆସିଗଲା, ତାକୁ ଆହୁରି ଫୁର୍ତ୍ତି ଲାଗିଲା । ଆଗରେ ମୁହଁପଟେ ଗୋଟାଏ ଗୋଟିକିଆ ଗଛ ଦେଖିଲା । ତା' ସାମ୍ନାରେହିଁ କରି ଗଛଟା ଥିଲା, ଯେଉଁ ସନ୍ଧି ଗାର ତାକୁ ଏତେ ଭୟଙ୍କର ଜଣାପଡ଼ୁଥିଲା ତା'ରି ଠିକ୍ ମଝିରେ, କିନ୍ତୁ ସେମାନେ ହେଇ ତ ତାକୁ ପାରି ହୋଇ ଆଗକୁ ଚାଲିଗଲେ, କାହିଁ ଭୟଙ୍କରତ କିଛି ଘଟିଲା ନାହିଁ ! ଓଲଟି ପ୍ରତି ମୁହୂର୍ତ୍ତରେ ବେଳକୁ ବେଳ ତାକୁ ଅଧିକ ଉସତ ଅଧିକ ଫୁର୍ତ୍ତି ଲାଗିଲା । ତା' ତରବାରିର ମୁଠାକୁ ଟାଣି କରି ମୁଠେଇଧରି ସେ ଭାବୁଥାଏ.

"ଦେବି ନା ହଗର କରି, ନା ଛାଡ଼ିବି ?"

ଚାରିଆଡ଼ୁ "ଜୟ ! ଜୟ !" ରଡ଼ି ଶୁଭୁଥାଏ ।

ରୋଷ୍ଟୋଭ୍ ତା'ର ଘୋଡ଼ା ପେଟରେ ଗୋଡରେ କେଞ୍ଚା ଭୁଷିଦେଇ ମନେ ମନେ ଭାବିଲା, .

"ଏଥର, ଆସୁ ଯେ ଆସିବ, ଦେଖିନେବି ଯେ !"

ଅନ୍ୟମାନଙ୍କୁ ପଛରେ ପକାଇ ସେ ଘୋଡ଼ାକୁ ଆଗେ ଆଗେ ଦୌଡ଼େଇଲା । ଶତ୍ରୁପକ୍ଷ ସେତେବେଳକୁ ସାମ୍ନାରେ ଦିଶିଲେଣି । ହଠାତ୍ ଗୋଟାଏ ଓସାର ଛାଞ୍ଚୁଣିରେ ଓଲେଇଲା ପରି ସମଗ୍ର ସୈନ୍ୟବାହିନୀ ଉପରେ

ଯେମିତ କ କ'ଣ ଗୋଟାଏ ଖଭକ ଦେଇଗଲା । ସ୍ନେଟ ହାଣିବାକୁ ତିଆରି ହୋଇ ରୋଷ୍ଟଭ୍ ତା'ର ତରବାରୀ ଟେକିଲା । ଠିକ୍ ସେତିକିବେଳେ ସୈନିକ ନିକିଟେଙ୍କୋ ଘୋଡ଼ାରେ ଚଢ଼ି ଆଗକୁ ଧାଇଁଗଲା ତା' ପାଖରେ ରହିଲା ନାହିଁ । ରୋଷ୍ଟଭକୁ ଲାଗିଲା ଯେପରିକି ସେ ସ୍ୱପ୍ନ ଦେଖୁଛି । ଏତେ ଚଞ୍ଚଳକିଏ ତାକୁ ଆଗକୁ ନେଇ ପକୋଉଛନ୍ତି ଯେ ମଣିଷ ସେତେ ବେଗି ଯାଏନାହିଁ, ସେ କୌଣସି ଆଧିଭୌତିକ ଶକ୍ତି । ଅଥଚ ତାକୁ ଲାଗିଲା ସେ ଯେଉଁଠି ଥିଲା ସେଇଠି ଅଛି । ପଛଆଡୁ ଘୋଡାଚଢ଼ି ଘୋଡାକୁ କଦମ୍ ଉଆଁଇଁ ଠିକ୍ ତା' ଉପରକୁ ମାଡ଼ି ଆସିଲା ଜଣେ ଘୋଡ଼ସୱାର ସୈନ୍ୟ, ତା' ନାଁ ବାନ୍ଦାରଚୁକ୍ । ସେ ଆସି ରାଗରେ ତାକୁ ଅନାଇଁଲା, ପୁଣି ତାର ଘୋଡା ଗୋଟାଏ କରକୁ ଚମକି ଗଲା ଆଉ ବାନ୍ଦାରଚୁକ୍ ଘୋଡାକୁ କଦମ୍ ଉଆଇଁ ଚାଲିଗଲା ।

"କ'ଣ ମୋର ହେଇଚି ? ମୁଁ ତ କାହିଁ ହାଲ୍‌ଚାଲ୍ ହଉନାହିଁ ? ମୁଁ ପଡ଼ିଗଲି..."

ଏକ ମୁହୂର୍ତ୍ତରେ ରୋଷ୍ଟଭ ନିଜକୁ ନିଜେ ପଚାରି ନିଜେ ତା'ର ଉତ୍ତର ଦେଲା ।

ସେ ଏକୁଟିଆ ଯୁଦ୍ଧକ୍ଷେତ୍ର ମଝିରେ ଥାଏ । ଚଳନ୍ତା ଘୋଡା ଆଉ ଘୋଡସୱାରଙ୍କ ପିଠି ପରିବର୍ତ୍ତେ ସେ ତା'ର ଚାରିପଟେ ଆଖି ବୁଲାଇ ଦେଖିଲା ନିଶ୍ଚଳ ମାଟି ଆଉ କଟା ହୋଇଥିବା ମୂଳଖୁଣ୍ଟମୟ ଖାଲି କ୍ଷେତ । ତା' ନିଜ ତଳେ ଥିଲା ଉଷୁମ୍ ରକ୍ତ ।

"ନାଁ, ମୁଁ ଘାତ ପାଇଯାଇଛି, ମୋ' ଘୋଡା ମରି ଯାଇଚି ।" ଘୋଡା ରୁକ୍ ତା'ର ଆଗ ଗୋଡରେ ଠିଆହେବାକୁ ଚେଷ୍ଟା କଲା, ପୁଣି ପଡ଼ିଗଲା ଯେ ତା' ଗୋଡ଼ତଳେ ତା' ଆରୋହୀର ଗୋଡ ଚାପି ହୋଇ ରହିଗଲା । ଘୋଡା ମୁଣ୍ଡରୁ ରକ୍ତ ବୋହୁଥାଏ । ଘୋଡ଼ା ଉଠିବାକୁ ଚେଷ୍ଟା କଲା, ପାରିଲା ନାହିଁ ।

ରୋଷ୍ଟଭ୍ ଉଠିବାକୁ ଚେଷ୍ଟାକଲା, ସେ ବି ପଡ଼ିଗଲା । ତା'ର ଖଣ୍ଡା ଖୋଳ ଘୋଡା ଜିନ୍‌ରେ ଛନ୍ଦିହୋଇ ଯାଇଥାଏ । ରୁଷ୍ ସୈନ୍ୟମାନେ କୁଆଡେ ଗଲେ, ଫରାସୀ ସୈନ୍ୟମାନେ କୁଆଡେ ଗଲେ ସେ ଜାଣି ନ ଥିଲା । ତା' ଚାରିପଟେ କେହି କୁଆଡେ ନ ଥାନ୍ତି ।

ଗୋଡ଼କୁ ଟାଣି ଓଟାରି ବାହାର କରି ସେ ଠିଆ ହୋଇ ପଡ଼ିଲା ।

"କାହିଁ କୁଆଡ଼େ ଗଲା ମଝିର ସେ ଫାଙ୍କା ଗାର ଯାହାର ଦୁଇ ଦିଗେ ଦୁଇ ପକ୍ଷଙ୍କର ସୈନ୍ୟ ଥିଲେ ?"

ନିଜକୁ ନିଜେ ସେ ପଚାରିଲା, କିଛି ଉତ୍ତର ପାଇଲା ନାହିଁ ।

ମୋର କେଉଁଠି କଣ ହୋଇଛି ପରା ? ଏମିତି ଘଟଣା ସବୁ ଘଟେ ନା କଣ ? ଏପରି ଅବସ୍ଥାରେ କଣ କରିବା ଉଚିତ ?

ସେ ଉଠ୍ ଉଠ୍ କାବା ହୋଇ ଏମିତି ଭାବିଲା ।

ଠିକ୍ ସେତିକିବେଳେ ସେ ଅନୁଭବ କଲା ଗୋଟାଏ ଅଦରକାଣ୍ଡ ଜିନିଷ ତାର ମାଡ଼ଲା ପଡ଼ିଯାଇଥିବା ବାଁ ହାତରୁ ଓହଳୁଛି । ଲାଗିଲା ତାର ବାଁ କଚଟିମା ତାର ନୁହେଁ । ସେ ତାର ବାଁ ହାତକୁ ଅନାଇଁଲା, ଅତି ଯତ୍ନରେ ନିରେଖି ନିରେଖି ଦେଖିଲା, କାଳେ ସେଥିରୁ ରକ୍ତ ବୋହୁଥିବ । ଦେଖିଲା ତା ଆଡ଼କୁ ଥୋଡ଼ାଏ ଲୋକ ଦୌଡ଼ି ଦୌଡ଼ି ଆସୁଛନ୍ତି ।

ଆନନ୍ଦରେ ଭାବିଲା, "ହୋଇତ କେତେ ମଣିଷ ଆଇଲେଣି । ସେମାନେ ମତେ ସାହାଯ୍ୟ କରିବେ ଯେ !"

ସେହି ଲୋକଙ୍କ ଆଗେ ଆଗେ ଗୋଟିକିଆ ହୋଇ ଜଣେ ଧାଇଁଥାଏ, ତାର ଗୋଟାଏ ଅଦ୍ଭୁତ ପ୍ରକାର ପାଇଜାମା, ଗୋଟାଏ ନେଳିଆ କୋଟ୍ ପିନ୍ଧିଥାଏ, ମାଉଁସିଆ ମୁହଁ ଖରାରେ ସିଝି କଳା ପଡ଼ି ଯାଇଛି । ବଙ୍କା ନାକ । ତା ପଛଆଡ଼େ ଆଉ ଦି'ଜଣ ଧାଇଁଥାନ୍ତି । ତାଙ୍କ ପଛଆଡ଼େ ଆହୁରି ମଣିଷ । ତାଙ୍କ ଭିତରୁ ଜଣେ କଣ ଅଡ଼ୁଆ ଭାଷାରେ କଥା କହିଲା, ସେ ଭାଷା ରୁଷ୍ ଭାଷା ନୁହେଁ । ସେମିତି ପୋଷାକ ପିନ୍ଧା ଏକା ଚେହେରାର କେତେ ଜଣ ଲୋକଙ୍କ ମଝିରେ ଠିଆ ହୋଇଥାଏ ଜଣେ ରୁଷ୍ ଘୋଡ଼ସୱାର ସୈନ୍ୟ, ତା ପଛଆଡ଼େ ସେମାନେ ତାର ଘୋଡ଼ାକୁ ବି ଧରି ରଖିଥାନ୍ତି ।

"ସେ ନିଶ୍ଚୟ ଆମ ପଟର କେହି, ତାକୁ ଯୁଦ୍ଧରେ ବନ୍ଦୀ କରିଛନ୍ତି······ହଁ, ତେବେ ଏମାନେ ମତେବି ତ ବନ୍ଦୀ କରି ପାରନ୍ତି ? କେମିତିଆ ଲୋକ ଏମାନେ ?"

"ରୋଷ୍ଟଭ ମନେ ମନେ ଭାବୁଥାଏ, ଆପଣା ଆଖିକୁ ବିଶ୍ୱାସ କରିପାରୁ ନଥାଏ ।

"ଏଇମାନେ କଣ ଫରାସୀ !" ଫରାସୀ ଲୋକେ ପାଖକୁ ପାଖକୁ ଆସୁଥାନ୍ତି, ସେ ସେମାନଙ୍କ ଆଡ଼କୁ ଅନାଇଁ ଥାଏ । ଟିକିଏ ବେଳ ଆଗରୁ

ତାର ଘର ମନ ହେଉଥିଲା ଯେ ସେମାନଙ୍କ ପାଖରେ କେମିତି ଯାଇ ପହଞ୍ଚିଗଲେ ସେ ତାଙ୍କୁ ଖଣ୍ଡାରେ ଗ୍ରେଠ ଗ୍ରେଠ କରି ହାଣି ପକାଇବ, ଅଥଚ ସେମାନେ ଏତେ ପାଖରେ ଆସି ହେଲେଣି ଭାବି ତାକୁ ଏତେ ଡର ମାଡ଼ିଲା ଯେ ସେ ନିଜ ଆଖିକି ବିଶ୍ୱାସ କରି ପାରିଲା ନାହିଁ ।

"କିଏସେ ଏମାନେ? କାହିଁକି ଦୌଡ଼ି ଦୌଡ଼ି ଆସୁଛନ୍ତି? କ'ଣ ମୋର ପାଇଁ? ଏ କ'ଣ ମୋର ପାଖକୁ ଦୌଡ଼ି ଦୌଡ଼ି ଆସୁଚନ୍ତି? କାହିଁକି? ମତେ ମାରିଦେବାକୁ? ମତେ! ଯାହାକୁ ଲୋକେ ଏତେ ଭଲ ପାଆନ୍ତି?"

ସେ ତାର ମା'ର ସ୍ନେହ ମନେ ପକାଇଲା, ପୁଣି ତାର ବନ୍ଧୁ-କୁଟୁମ୍ବଙ୍କ ସ୍ନେହ ଆଦର, ତାର ବନ୍ଧୁମାନଙ୍କ ସ୍ନେହ ହେତୁକଲା । ତା'ର ଶତ୍ରୁମାନେ ତାକୁ ଜୀବନରୁ ମାରି ଦେବେ, ଏ ଧାରଣା ତାକୁ ଅସମ୍ଭବ ଲାଗିଲା । ପୁଣି ଭାବିଲା

"ତେବେ ସେମାନେ ମନ କଲେ ମତେ ଜୀବନରୁ ମାରି ଦେଇ ପାରନ୍ତି ।"

ଦଶ ସେକେଣ୍ଡ ଯାକେ ସେ ଠିଆ ହୋଇ ରହିଲା, ସେ ଜାଗାରୁ ଚଳିଲା ବି ନାହିଁ, ଆପଣା ଅବସ୍ଥା ବୁଝି ବି ପାରିଲା ନାହିଁ । ଆଗରେ ଥିବା ଫରାସୀ ଲୋକ, ସେହି ଯାହାର ବଙ୍କା ନାକ, ସେ ଏତେ ପାଖରେ ହୋଇ ଯାଇଥିଲା ଯେ ରୋଷ୍ଟଭ୍ ତାର ମୁହଁର ଭାବ ଭଙ୍ଗୀ ବି ଦେଖି ପାରୁଥିଲା । ସେ ଲୋକର ବିଦେଶୀ ମୁହଁରେ ଉତ୍ତେଜନା ଦିଶୁଥିଲା, ଅଣନିଶ୍ୱାସୀ ହୋଇ ହାଲୁକା ହୋଇ ସେ ତା ଆଡ଼କୁ ଧାଇଁ ଆସୁଥିଲା, ସଙ୍ଗୀନ୍‌କୁ ନୁଆଇଁ ଧରିଥିଲା, ତାକୁ ଦେଖି ରୋଷ୍ଟଭ ଭୟରେ ଅଧୀର ହୋଇଗଲା । ସେ ତାର ପିସ୍ତଲ ଉଠେଇ ନେଲା ଆଉ ପିସ୍ତଲ ଫୁଟାଇବା ପରିବର୍ତ୍ତେ ତାର ସବୁବଳ ଦେଇ ପିସ୍ତଲ୍‌ଟାକୁ ସେ ଫରାସୀ ଲୋକ ଆଡ଼କୁ ଫୋପାଡ଼ି ମାରି ବୁଦା ଗହଳକୁ ଦୌଡ଼ି ପଳାଇଲା ।

ଦୌଡ଼ିଲାବେଳେ ଏନ୍‌ସ୍ ନଦୀ ପୋଲ ଉପରେ ଧାଇଁଲା ବେଳର ସନ୍ଦେହ କି ଦ୍ୱନ୍ଦ ତା ମନରେ ନଥିଲା, ଠେକୁଆ ଯେମିତି କୁକୁର ମୁହଁ ଆଗରୁ ଦୌଡ଼ି ପଳାଏ, ତା' ମନରେ ସେହି ଭାବ ହିଁ ଥିଲା । ତାର ସମଗ୍ର ଅସ୍ତିତ୍ୱ ଆବୋରି ଅଧିକାର କରି ବସିଲା ଭୟ, ତା'ର ତରୁଣ ସୁଖୀ ଜୀବନ ପାଇଁ ଭୟ । ଖେଳ ଖେଳିଲାବେଳେ ଯେମିତି ବେପରୁଆ ହୋଇ ସେ ଡିଆଁ ମାରି

ଧାଇଁଯାଏ, ସେମିତି ସେ ବାଡ଼ଗୁଡ଼ାକ ଉପରେ ଡେଇଁ ଡେଇଁ ଚାଲିଗଲା । ବେଳେ ବେଳେ ସେ ତା'ର ଖୁସିବାସିଆ ପିଲାଳିଆ ମୁହଁଟିକୁ ବୁଲାଇ ପଛକୁ ଦେଖୁଥାଏ । ତା'ର ବେଁଶିର ହାଡ଼ର ମଞ୍ଜା ଭିତରେ ଶୀତୁଆ ଭୟରେ କୋଲମାର ଯାଉଥାଏ ।

ନାଁ, ନ ଅନେଇଁଲେ ଭଲ,'' ସେ ଭାବିଲା, କିନ୍ତୁ ବୁଦାଗହଳ ପାଖ ହେବାରୁ ସେ ଆଉଥରେ ପଛକୁ ଅନାଇଁଲା । ଫରାସୀମାନେ ଆଉ ଧାଇଁ ନ ଥାନ୍ତି ଆଉ ଠିକ୍ ଯେତିକବେଳେ ସେ ପଛକୁ ଅନାଇଁଲା, ସେତେବେଳକୁ ଆଗେ ଆଗେ ଦୌଡୁଥିବା ମଣିଷ ଜଣକ ଦୌଡ଼ିବା ଛାଡ଼ିଦେଇ ଖାଲି ଚାଲିବାକୁ ଆରମ୍ଭ କଲାଣି ? ସେତେବେଳେ ପଛ ମଣିଷକୁ ସେ ପାଟିକରି କ'ଣ କହୁଥାଏ ।

''ନିଶ୍ଚୟ କିଛି ଗୋଟାଏ ଭୁଲ୍ ହୋଇ ଯାଇଛି,'' ରୋଷ୍ଟଭ୍ ଭାବିଲା, ''ଏ କଥା କେବେ ନୁହେଁ ଯେ ମତେ ମାରିବା ତାଙ୍କ ଉଦ୍ଦେଶ୍ୟ ଥିଲା ।''

ଏଣେ ତା' ବାଁ ହାତ ଏତେ଼ଭାରି ଭାରି ଲାଗୁଥାଏ, ସତେ ଯେପରିକି ପଚିଶ ସେରିଆ ଓଜନଟାଏ ତା' ହାତରୁ ଓହଳିଛି । ସେ ଆଉ ଦୌଡ଼ି ପାରିଲା ନାହିଁ । ଫରାସୀ ଲୋକଟା ବି ଅଟକି ଯାଇ ତାକୁ ଅନାଇଁଲା ରୋଷ୍ଟଭ୍ ମୁହଁ ଭ୍ରୂକୁଟି କରି ନଇଁ ପଡ଼ିଲା । ଆଗ ଗୋଟାଏ ଗୁଳି ତାପରେ ଆଉଗୋଟାଏ ସାଁ ସାଁ ହୋଇ ତା' କରେ କରେ ଉଡ଼ି ପଳାଇଲା । ସେ ତା'ର ବାଁ ହାତଟିକୁ ଡାହାଣ ହାତରେ ଧରିଲା, ତା'ପରେ ଶେଷ ଚେଷ୍ଟା କରି ବୁଦାବଣଯାଏକ ଦୌଡ଼ି ପଳାଇଲା । ବୁଦାବଣରେ ରୁଷ୍ ପକ୍ଷର ବନ୍ଧୁକିଆ-ମାନେ ଥିଲେ ।

ପଦାତିକ ସୈନ୍ୟମାନେ ବଣ ଭିତରେ ଚଇଲାରେ ଥିଲେ, ହଠାତ୍ ଶତ୍ରୁପକ୍ଷ ତାଙ୍କ ହାବୋଡ଼ ଯିବାରୁ ସେମାନେ ଧାଇଁ ପଳାଇଲେ । ଭିନ୍ନ ଭିନ୍ନ ଦଳର ସୈନ୍ୟମାନେ ଗୋଳଆମିଶା ହୋଇ ଅଳିଆ ଦଳିଆ ଅବସ୍ଥାରେ ପଛକୁ ହଟିଲେ । ଗୁନିଆଁ ହୋଇ ଜଣେ ସୈନିକ ପାଟିକରି ଉଠିଥିଲା,

''ଆରେ ଦଳଛଡ଼ା ହେଇଗଲୁଁରେ !''

ଯୁଦ୍ଧରେ ଏ କଥା କେଇପଦ ଅତି ଭୟଙ୍କର ଅଥଚ ନିରର୍ଥକ । ଏତିକି କଥାରେ ଯେତେ ସୈନ୍ୟ ସେ ଦଳଟାଯାକରେ ଥିଲେ ସମସ୍ତଙ୍କ

ଦେହରେ ଗୁଳିଆଁ ପଶି ଯାଇଥିଲା । ସେମାନେ ଦୌଡ଼ ଦୌଡ଼ ପଳାଉଥାନ୍ତି, ଆଉ ପାଟି କରୁଥାନ୍ତି,

"ପଛକୁ ମାଡ଼ ଆଇଲେରେ ! ଆରେ ଆମେ ଦଳଛଡ଼ା ହୋଇ ଗଲୁଁରେ ! ସବୁ ସରିଗଲା ରେ···!"

ସେ ଦଳର ସେନାପତି ଯେମିତି ପଛଆଡ଼ୁ ଏଇ ଚିତ୍କାରର ଶବ୍ଦ ଆଉ ଗୁଳି ଶବ୍ଦ ଶୁଣିଲେ ସେ ଭାବିଲେ ସେଠି ଗୋଟାଏ କ'ଣ ଭାରି ଭୟଙ୍କର କାଣ୍ଡ ଘଟୁଛି । ସେ ଭାବିଲେ ଯେ— ତାଙ୍କ ଉପରସ୍ଥ କର୍ମଚାରୀ ତାଙ୍କ ଉପରେ ଗୋଟାଏ ଖରାପ ଧାରଣା କରି ପାରନ୍ତି ଯେ ସେ ତାଙ୍କ ସୈନ୍ୟମାନଙ୍କୁ ଆକଟରେ ରଖି ପାରିଲେ ନାହିଁ କି ଭଲକରି ତାଙ୍କୁ ଶିକ୍ଷା ଦେଇ ପାରିଲେ ନାହିଁ । ତାଙ୍କଭଳି ଆଦର୍ଶ କର୍ମଚାରୀ, ଏତେ ଏତେ ବର୍ଷ ସେ କାମ କଲେଣି, କେଉଁଠି ଟିକିଏ ସାମାନ୍ୟ ଦୋଷତ୍ରୁଟି ବି କେବେ ଦେଖାନାହିଁ, ଅଥଚ କାଳେ ତାଙ୍କ ଉପରେ ହାକିମ ତାଙ୍କ ବିଷୟରେ ଏପରି ଭାବିବେ ଏଇ ଚିନ୍ତା ତାଙ୍କଠିଁ ଏତେବେଶୀ ବେଶିଗଲା ଯେ ସେନାପତି ହୋଇ ତାଙ୍କର କିଭଳି ମହତରେ ଚଳିବା ଦରକାର, ସେ ତାହା ଏକଦମ ଭୁଲିଗଲେ । ତାଙ୍କ ନିଜକୁ କ'ଣ ବିପଦ ପଡ଼ିପାରେ, ସେ କଥା ବି ସେ ପାଶୋରି ଦେଲେ । ଆପଣାକୁ ବଞ୍ଚାଇବାକୁ ମଣିଷର ଯେଉଁ ସ୍ୱାଭାବିକ ପ୍ରବୃତ୍ତି, ତାକୁ ବି ସେ ଭୁଲିଗଲେ ।

ସେ ତାଙ୍କ ଘୋଡ଼ା ଜିନ୍‌ର ଦଣ୍ଡିକୁ ମୁଠରେ ଧରି ଘୋଡ଼ା ପେଟରେ ଖେଞ୍ଚା ମାରି ଘୋଡାକୁ ଦୌଡ଼େଇ ତାଙ୍କ ସୈନ୍ୟଦଳ ଆଡ଼କୁ ଛୁଟିଲେ । ଅବିକଳ କୁଆପଥର ମାଡ଼ ହେଲାପରି ବନ୍ଧୁକଗୁଳି ଗୁଡ଼ାକ ବର୍ଷୁଥାଏ, ତା'ରି ଭିତରେ ସେ ଯାଉଥାନ୍ତି, ତାଙ୍କର ଭାଗ୍ୟ ଭଲ, ତାଙ୍କ ଦେହରେ ଗୁଳି ବସିଲା ନାହିଁ । ଗୋଟିଏ ଉଦ୍ଦେଶ୍ୟ ତାଙ୍କୁ ଧରି ବସିଥିଲା ଯେ, ସେ ଯିବେ ଦେଖିବେ, କେଉଁଠି କ'ଣ ବିଗିଡ଼ିଛି । ତା'ପରେ ଯାହା ବିଗିଡ଼ିଥାଉ ପଛେ ତା' ତାଙ୍କର ଦୋଷରେ ଘଟିଥିଲେ ସେ ତାକୁ ସୁଧାରିବେ, ତା'ହେଲେ ସେ ଦୋଷ ପାଇଁ ବି ତାଙ୍କୁ କେହି ଦାୟୀ କରିବ ନାହିଁ । ତାଙ୍କର ତ ହେଲାଣି ବାଇଶି ବର୍ଷ ଚାକିରି, ଆଦର୍ଶ ତାଙ୍କ ଚାକିରି ଜୀବନ । କେବେ କୌଣସି କାମ ପାଇଁ ଟାଣ କଥା ପଦେ ବି ଶୁଣିବାକୁ ହୋଇନାହିଁ ।

ଫରାସୀ ସୈନ୍ୟଙ୍କ ସଙ୍ଗରେ ଘୋଡ଼ାରେ ଚଢ଼ି ଧାଇଁ ପଳାଇ ଚାଇଲ ପଛଆଡ଼ ଝେଡରେ ସେ ଯାଇ ପହଞ୍ଚିଗଲେ । ସେହି କ୍ଷେତ ଉପରେ ସେତେବେଳେ ତାଙ୍କ ସୈନ୍ୟମାନେ ଧାଇଁ ପଳାଉଥିଲେ ଯେ ସେମାନେ ହୁକୁମ ଶବ୍ଦକୁ କାନରେ ପକାଉ ନ ଥିଲେ । ସେହି ବେଳ ଆସିଥାଏ, ଯେତେବେଳେ ମଣିଷ ମତ ଉପରେ ମନ ଥୟ କରି ନ ପାରି ଏପଟ ସେପଟ ହେଉଥାଏ, ସେତିକବେଳେ ଯୁଦ୍ଧରେ କିଏ ଜିତିବ ତା ଠିକ୍ ହୋଇଯାଏ ।

ପଲ ପଲ ହୋଇ ଏହି ଯେଉଁ ସୈନ୍ୟମାନେ ଅର୍ଦ୍ଧାଉଳଆ ହୋଇ ଧଉଡ଼ ପଳେଉଛନ୍ତି, ସେମାନେ ତାଙ୍କ ସେନାପତିଙ୍କ ହୁକୁମ୍ ମାନିବେ ନା ପଛକୁ ତାଙ୍କ ଆଡ଼କୁ ମୁହଁ ଦେଇ ଆହୁରି ଆଗକୁ ଆଗକୁ ଦୌଡ଼ି ପଳାଇବେ ?

ହତାଶ ହୋଇ ସେ ଚିର୍ଚ୍ଚିରେଇ ଚିର୍ଚ୍ଚିରେଇ ଡାକ ପକାଇଥାନ୍ତି । ଆଗେ ତାଙ୍କ ସୈନ୍ୟମାନେ ତାଙ୍କୁ ଏତେ ଡରୁଥିଲେ, ଅଥଚ ତାଙ୍କର ସେ ମୁହଁ ନାଲି ପଡ଼ିଯାଇଥାଏ, ଏଭଳି ବିକୃତ ଦିଶୁଥାଏ ଯେ ତାଙ୍କ ମୁହଁ ବୋଲି ଚିହ୍ନି ହେଉ ନଥାଏ । ସେ ତାଙ୍କ ଖଣ୍ଡା ହଲଉ ଥାନ୍ତି । ତଥାପି ଏସବୁ ସତ୍ତ୍ୱେ ସୈନ୍ୟମାନେ ଦୌଡ଼ିଥାନ୍ତି, ଆଉ ନିଜ ଭିତରେ କଥାଭାଷା ହେଉଥାନ୍ତି । ଯେଉଁ ନୈତିକ ନିକିତିରେ ଯୁଦ୍ଧର ଫଳାଫଳ ତଉଲା ହୁଏ, ସେ ଠିକ୍ ଯେପରିକ ଘୁନଆଁ ହେବା ପଟକୁ ଝୁଙ୍କି ପଡ଼ିଥାଏ ।

ସେନାପତି ଚିତ୍କାର ଶୁଣି ଶୁଣି ବାରୁଦ ଗନ୍ଧରେ ଅଣନିଶ୍ବାସୀ ହୋଇଯାଇ ହତାଶାରେ ହା'ପଶିଯାଇ ଖୁଣ୍ଟ ପରି ଠିଆ ହୋଇଥିଲେ । ଅବସ୍ଥା ତ ଶେଷ ହୋଇଗଲା ପରି ଲାଗୁଥିଲା, କିନ୍ତୁ ଠିକ୍ ସେତିକବେଳେ ଯେଉଁ ଫରାସୀ ସୈନ୍ୟମାନେ ରୁଷ୍ ସୈନ୍ୟମାନଙ୍କ ଆଡ଼କୁ ମାଡ଼ ମାଡ଼ିକା ଆସୁଥିଲେ, ସେମାନେ କାହିଁକି ଚକିତାଣି ପଛକୁ ଧାଇଁ ପଳାଇଲେ ଓ ତଇଲା ଧାଡ଼ରୁ କୁଆଡ଼େ ଅନ୍ତର୍ହିତ ହୋଇଗଲେ ଓ ରୁଷ୍‌ପକ୍ଷର ଲାଖବନ୍ଧାଳ ବାନ୍ଧୁକା ସେ ତଇଲାରେ ଆସି ପହଞ୍ଚିଗଲେ । ସେମାନେ ଟିମୋହିନ୍‌ର ଦଳର ଲୋକେ । ତଇଲା ଭିତରେ ଯେତେ ଦଳଥିଲେ, ସମସ୍ତଙ୍କ ଭିତରେ ଏଇମାନେ ଏକା ଆପଣା ଶୃଙ୍ଖଳା ରଖିଥିଲେ । ତଇଲା ପଛଆଡ଼େ ଯେଉଁ ଖୋଲଥିଲା, ଏମାନେ ସେଇଠି ଲୁଚିକରି ରହିଯାଇଥିଲେ, ତାପରେ ହଠାତ୍ ଫରାସୀ ସୈନ୍ୟଙ୍କୁ ଆକ୍ରମଣ କରିଥିଲେ । ଟିମୋହିନ୍

କଜେ ଗୋଟାଏ ପ୍ରଚଣ୍ଡ କଳକଳା ବୋବ ଛାଡ଼ିଦେଇ ଫରାସୀ ସୈନ୍ୟଙ୍କୁ ଆକ୍ରମଣ କରିଥିଲା । ହାତରେ କେବଳ ଗୋଟାଏ ଖଣ୍ଡାଧରି ସେ ଏଭଳି ମଦୁଆ କି ପାଗଳ ପରି ତୋଫାନ ଝପଟରେ ଶତ୍ରୁମାନଙ୍କ ଉପରେ ଚଢ଼ାଉ ଲଗାଇଦେଲା ଯେ ଫରାସୀ ସୈନ୍ୟମାନେ ତାଙ୍କ ହାତ-ହତିଆରମାନ ଫୋପାଡ଼ି ଦେଲେ ଆଉ ତାକୁ ପୁଣି ଗୋଟେଇ ନେବାକୁ ନ ଅଟକି ଏକାଥରେ ଧାଇଁ ପଳାଇଗଲେ ।

ଟିମୋହ୍ନିନ୍‌ର ପାଖେ ପାଖେ ଡୋଲୋହଭ୍ ଧାଇଁଥାଏ, ସେ ଜଣେ ଫରାସୀ ସୈନ୍ୟ ପାଖକୁ ଯାଇ ତାକୁ ମାରି ପକାଇଲା । ଫରାସୀ ପକ୍ଷର ଜଣେ ଅଫିସର ଆତ୍ମସମର୍ପଣ କରିବାରୁ ଡୋଲୋହଭ୍ ତା' ପୋଷାକର ବେକରୁ ଆଗ ବଳପୂର୍ବକ ଧରିପକାଇଲା । ଯେଉଁ ରୁଷ୍ ସୈନ୍ୟମାନେ ଧାଇଁ ପଳାଉଥିଲେ ସେମାନେ ସମସ୍ତେ ପୁଣି ଲେଉଟି ଆସିଲେ, ପୁଣି ସୈନ୍ୟମାନଙ୍କ ଦଳ ସବୁ ଗଢ଼ା ହେଲା । ବାଁ ପଟରେ ଥିବା ରୁଷ୍ ସୈନ୍ୟବାହିନୀକୁ ଫରାସୀ ସୈନ୍ୟମାନେ ତ ପ୍ରାୟ ହରାଇ ଦେବା ଅବସ୍ଥାରେ ଥିଲେ; କିନ୍ତୁ ଅନ୍ତତଃ ସେତିକିବେଳ ସକାଶେ ସେମାନଙ୍କୁ ଅଟକାଇ ଦିଆ ହୋଇ ପାରିଲା । ରୁଷ୍ ପକ୍ଷର ଯେତେ ବଳକା ସୈନ୍ୟ ଅଲଗା ରଖା ହୋଇଥିଲେ, ସେମାନେ ଚାଲିଆସି ସୈନ୍ୟବାହିନୀରେ ମିଶିଗଲେ, ସେଥିପାଇଁ ତାଙ୍କୁ ବେଳ ମିଳିଗଲା, ଯେଉଁମାନେ ଦୌଡ଼ି ପଳାଉଥିଲେ ତାଙ୍କୁ ଅଟକାଇ ଦିଆ ହେଲା । ମେଜର ଏକନମଭ୍‌ଙ୍କ ସଙ୍ଗରେ ସେନାପତି ବୋଲ ପାଖରେ ଠିଆ ହୋଇ ଅନାଇଁଥାନ୍ତି କେମିତି ସୈନ୍ୟମାନେ ଦଳ ଦଳ ହୋଇ ପଛଘୁଞ୍ଚା ଦେଇ ଚାଲିଯାଉଛନ୍ତି । ସେତିକିବେଳେ ଜଣେ ସୈନିକ ତାଙ୍କ କତିକି ଦୌଡ଼ି ଆସି ତାଙ୍କ ଗୋଡ଼ ଯେଉଁଥିରେ ଘୋଡ଼ା ଉପରେ ବସିଲାବେଳେ ଝୁଲୁଥାଏ, ସେଇଆକୁ ଧରି ପକାଇ ସେଥିରେ ପ୍ରାୟ ଲାଖିଗଲା । ସୈନିକ ଜଣକ ଭାରି ସୁନ୍ଦର ନେଳି କନାର କୋଟ୍‌ଟିଏ ପିନ୍ଧିଥାଏ । ତାଠିଁ ମୁଣି ନଥାଏ, କି ତା ମୁଣ୍ଡରେ ଟୋପି ନଥାଏ, ତା ମୁଣ୍ଡରେ ପଟି ବନ୍ଧା ହୋଇଥାଏ । ତା କାନ୍ଧରୁ ଗୋଟାଏ ଫରାସୀ ସୈନ୍ୟଙ୍କ ଗୁଳି ରଖିବା ମୁଣି ଝୁଲୁଥାଏ । ଅଫିସର ଯେଉଁ ଖଣ୍ଡା ଧରନ୍ତି ସେହିପରି ଖଣ୍ଡାଟିଏ ତା ହାତରେ ଥାଏ ।

ସୈନିକ ଶୁଖିଲା ହସୁଥାଏ । ତାର ନେଳିଆ ନେଳିଆ ଆଖି ବେଲଜ୍ଜ ଭାବରେ ସେନାପତିଙ୍କ ମୁହଁକୁ ଅନାଇଁଥାଏ, କିନ୍ତୁ ତା ପାଟି

ହସୁଥାଏ । ସେନାପତି ସେତେବେଳେ ମେଜର୍ ଏକନମଭଙ୍କୁ ନିର୍ଦ୍ଦେଶ ଦେଉଥାନ୍ତି, ସେହି କାମରେ ସେ ବ୍ୟସ୍ତ ରହିଥିଲେ ବି ସେ ଏ ସୈନିକକୁ ଲକ୍ଷ୍ୟ ନକରି ରହିପାରିଲେ ନାହିଁ ।

ଫର୍ଗର୍ସା ସୈନିକର ଗୁଳିରଖିବା ମୁଣି ଓ ଖଣ୍ଡାକୁ ହାତ ଦେଖାଇ ଡୋଲୋହଭ୍ କହିଲା,

"ହଜୁର୍, ହେଇ ଦେଖିବା ହଜୁରୁ ମୁଁ ଯୋଡ଼ାଏ ସମ୍ପକ ଆଣିଚି । ଜଣେ ଅଫିସର ମୋ ହାତରେ ବନ୍ଦୀ ହେଲା, ମୁଁ ସୈନ୍ୟଦଳକୁ ଅଟକାଇ ଦେଲି ।"

— କ୍ଳାନ୍ତ ହୋଇ ପଡ଼ିଥିଲା ବୋଲି ଡୋଲୋହଭ୍ ଟାଣିଓଟାରି ନିଶ୍ୱାସ ମାରୁଥିଲା, ସେ ଖଣ୍ଡଖଣ୍ଡିଆ କରି କହିଗଲା, "ସମଗ୍ର ସେନ୍ୟଦଳ ମୋର ସାକ୍ଷୀ । ହଜୁରଙ୍କୁ ମୋର ପ୍ରାର୍ଥନା ମତେ ଭୁଲିଯିବେ ନାହିଁ ।"

"ଆ—ଛା, ଆଚ୍ଛା," ସେନାପତି କହିଲେ ଓ କହିଦେଇ ମେଜର୍ ଏକନମଭ୍ ଆଡ଼କୁ ବୁଲିପଡ଼ିଲେ, କିନ୍ତୁ ଡୋଲୋହଭ ତାଙ୍କୁ ଛାଡ଼ିଲା ନାହିଁ । ତା' ମୁଣ୍ଡରେ ଯେଉଁଠି ଖଣ୍ଡିଆ ହୋଇଥିଲା ବୋଲି ପଟି ବନ୍ଧା ହୋଇଥିଲା ସେ ସେପଟି ଖୋଲି ପକାଇ ତାଙ୍କୁ କ୍ଷତସ୍ଥାନ ଦେଖାଇଲା, ସେଠି ରକ୍ତ ବାହାରି ବସିଯାଇ ଶୁଖି ଯାଇଥିଲା । ଡୋଲୋହଭ୍ କହିଲା,

"ଏଠି ସଙ୍ଗୀନ୍ ମୁନରେ ଭୁଷାମାଡ଼ ବସିଥିଲା । ଲଢ଼େଇବେଳେ ମୁଁ ମୋ ଜାଗାରୁ ହଟିନାହିଁ ହଜୁର୍ ମତେ ମନେ ରଖିଥିବେ ।"

ଭୁଷିନ୍‌ର ତୋପଗୁଡ଼ିକ କଥା କାହାରି ମନେ ନଥିଲା । ଲଢ଼େଇ ସରିଲାବେଳକୁ ପ୍ରିନ୍‌ସ୍ ବାଗ୍ରାତିଅନ୍‌ଙ୍କର ଖିଆଲ ହେଲା ଯେ ଯେଉଁଠି ରୁଷ୍‌ପକ୍ଷର ସୈନ୍ୟଙ୍କ ଆଗୁଆ ଧାଡ଼ି ଆଗେ ଥିଲା, ତା ମଝି ଜାଗାରୁ ସେତେବେଳେ ବି ତୋପମାନଙ୍କରୁ ଗୁଳି ଫୁଟୁଛି । ଆଉ ଡେରି ନକରି ତୋପଗୁଳିକ ସୈନ୍ୟଦଳଟି ଯେତେଶୀଘ୍ର ପାରିବ ସେତେ ଶୀଘ୍ର ପଛକୁ ହଟି ଆସିଲାଉ, ଏଇ ଆଦେଶ ତାକୁ ଶୁଣାଇଦେବା ସକାଶେ ପ୍ରିନ୍‌ସ୍-ବାଗ୍ରାତିଅନ୍ ଆଗ ତାଙ୍କ ଷ୍ଟାଫ୍ ଅଫିସରଙ୍କୁ ବରଗି ଦେଲେ, ତାପରେ ପଠାଇଲେ ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ । ଭୁଷିନ୍‌ର ତୋପଗୁଳିକ ଦଳକୁ ରକ୍ଷା କରିବାପାଇଁ ତୋପ ଘାଟି ପାଖରେ ଅନ୍ୟ ଗୋଟିଏ ସୈନ୍ୟଦଳକୁ ଆଗରୁ ରଖା ହୋଇଥିଲା କିନ୍ତୁ ଯେତେବେଳେ ଘମାଘୋଟ ଲଢ଼େଇ ଲାଗିଥାଏ ସେତେବେଳେ କିଏ ଜଣେ ସେ ସୈନ୍ୟଦଳକୁ ହୁକୁମ୍ ଦେଇଥାନ୍ତି ଯେ ତାଙ୍କ

ହୁକୁମ୍ ଅନୁସାରେ ସେ ସୈନ୍ୟଦଳ ସେ ଜାଗା ଛାଡ଼ିଦେଇ ପଛକୁ ହଟି ପଳାଇଥାଏ । ସାହା ହେବାକୁ କେହି ନାହିଁ, ତଥାପି ସେ ତୋପଚାଳକ ସୈନ୍ୟଦଳଟି ତୋପ ଫୁଟାଇ ଲାଗିଥାଏ । ତାର ଏଭଳି ଅରକ୍ଷ ଅବସ୍ଥାରେ ଫରାସି ସୈନ୍ୟବାହିନୀ ସେ ତୋପଘାଟିକୁ ଅଧିକାର କରି ନେଇ ପାରିଥାନ୍ତା କିନ୍ତୁ ମୋଟେ ଚାରିଟା ତୋପ କାମି ଥାଇ ତା'ର ଅନ୍ୟ କେହି ସାହାଯ୍ୟ ନଥାଇ ସେ ତୋପଘାଟି ଖାଲି ଛୁଞ୍ଚା ହୁଣ୍ଡା ଦୁଃସାହସିକତା ବଳରେହିଁ ଆକ୍ରମଣ ଚାଲୁରଖିଛି ଏକଥା ଫରାସୀ ସୈନ୍ୟବାହିନୀ କଳ୍ପନା କରିପାରି ନଥିଲା । ସେ ତୋପଘାଟିରୁ ଘନ ଘନ ଗୁଳିମାଡ଼ର ତୋଡ଼ ଦେଖି ଫରାସି ପକ୍ଷ ଓଲଟି ଭାବିଥିଲେ ଯେ ସେହି ତୋପଘାଟିଟା ସମଗ୍ର ରୁଷ୍ ସେନାବାହିନୀର ଅଧିକାଂଶ ସୈନ୍ୟଙ୍କ କେନ୍ଦ୍ରସ୍ଥଳ, ସେଇଠି ରୁଷ୍ ସୈନ୍ୟମାନେ ବେଶି ସଂଖ୍ୟାରେ ଠୁଳ ହୋଇ ଗହଳି କରି ରହିଛନ୍ତି । ତେଣୁ ଫରାସି ସୈନ୍ୟବାହିନୀ ଦୁଇଥର ସେହି ତୋପଘାଟି ଉପରେ ଆକ୍ରମଣ ଚଳେଇଲେ, କିନ୍ତୁ ଆଉ କେହି କୁଆଡ଼େ ନାହିଁ ନିଛାଟିଆ ଡିପ ଉପରେ ସେହି ଯେଉଁ ଚାରିଟା ତୋପ ଖଞ୍ଜା ହୋଇଥାଏ, ତହିଁରୁ ଏଭଳି ଗୁଳିମାଡ଼ ହେଲା ଯେ ସେ ଦୁଇଥରଯାକ ଫରାସି ସୈନ୍ୟବାହିନୀର ଚଢ଼ାଉ ପସର ଫାଟି ଯାଇ ଫରାସିମାନେ ହଟି ପଛଉଡ଼ା ହେଲେ । ପ୍ରିନ୍ସ୍ ବାଗ୍ରାତିଅନ୍ ଆଗ ଯେତେବେଳେ ସେ ତୋପ ଘାଟି ବୁଲି ଚାଲି ଚାଲି ଆସିଥିଲେ ଠିକ୍ ତା ପଛେ ପଛେ ତୁଷିନ୍ ତୋପମାଡ଼ରେ ସ୍କୋନ୍-ଗ୍ରାବେନ୍ ('ସୁନ୍ଦର ଖାଇ') ଗାଁରେ ନିଆଁ ଲଗାଇ ଦେଇଥିଲା ।

ତୋପଚାଳକମାନଙ୍କ ସାହସ ଓ ମନର ଫୁର୍ତ୍ତି ତେଜି ଉଠିଥାଏ । ସେ ଗାଁରେ ନିଆଁ ଲାଗିଗଲା ଦେଖି ସେମାନେ ଖୁସି ହୋଇ ପାଟି କରୁଥାନ୍ତି ।

"ଆରେ ଦେଖ ଦେଖ ! ସେମାନେ କେମିତି ହଟହଟାରେ ପଡ଼ିଲେଣି ଦେଖ ହୋ ! ଗାଁଟା ହୁତୁ ହୁତୁ ହେଇ ଜଳିଲାଣି ! ଆଃ ! କେତେ ଧୂଆଁ ! ଭାରି ସୁନ୍ଦର କାମଟାଏ ହେଲା । ବଢ଼ିଆ ! ବଢ଼ିଆ ! ବାଃ ! କି ଧୂଆଁ ! କି ଧୂଆଁ !"

କେହି ହୁକୁମ୍ ଦେଇନାହିଁ, କିନ୍ତୁ ସେ ଯେଉଁପଟୁ ଧୂଆଁ ଉଠୁଥାଏ ଛାଁକୁ ଛାଏଁ ସବୁ ତୋପତକ ସେହି ଆଡ଼କୁ ମୋହିଁ ଦେଇ ଗୁଳି ଫୁଟା ହେଉଥାଏ । ସତେ ଯେମିତି ତୋପଚାଳକ ସୈନ୍ୟମାନେ ଜଣେ ଆରଜଣକୁ

ମଚାଇ ଲାଗିଥାନ୍ତି, ପ୍ରତିଥର ଯେମିତି ତୋପରୁ ଗୁଳି ଫୁଟେ ସେମିତି ସେମାନେ ରଡ଼ି ଛାଡ଼ୁଥାନ୍ତି—

"ବାଃ ବାଃ ! ହେଲା ଯା' ହେଉ କିଛି ଗୋଟାଏ ବଢ଼ିଆ !"

ପବନରେ ବାଙ୍କି ହୋଇ ହୋଇ ନିଆଁଟା ଆହୁରି ତେଜିଲା । ଫରାସୀ ପକ୍ଷରେ ସୈନ୍ୟମାନେ ଯେ ଦଳ ଦଳ ହୋଇ ଗାଁଠୁ ଦୂରକୁ ଚାଲିଯାଇଥିଲେ ସେମାନେ ପୁଣି ଲେଉଟି ଗଲେ । କିନ୍ତୁ ସତେ ଅବା ସେମାନେ ଭାବିଲେ ଯେ ଏ ଯେଉଁ ପରାଭବ ମିଳିଲା ସେଥିପାଇଁ ପ୍ରତିଶୋଧ ନେବା ଦରକାର, ତେଣୁ ସେମାନେ ସେ ଗାଁଠୁ ଟିକିଏ ଛଡ଼ାରେ ଗାଁର ଡାହାଣ ପଟେ ଦଶଟା ତୋପ ବସାଇ ଦେଲେ ଓ ସେ ତୋପରୁ ତୁଷିନ୍‌ର ତୋପ ଘାଟି ଉପରକୁ ଗୁଳି ବର୍ଷି ଲାଗିଲେ ।

ଶତ୍ରୁ ପକ୍ଷର ଏ ତୋପଗୁଡ଼ାକୁ ରୁଷ୍ ପକ୍ଷର ବନ୍ଧୁକିମାନେ ଆଗ ଲକ୍ଷ୍ୟ କରି ପାରିଲେ ନାହିଁ; କାରଣ ଗାଁରେ ତାଙ୍କ ପକ୍ଷରୁ ତୋପମାଡ଼ ଫଳରେ ନିଆଁ ଲାଗିଗଲା ବୋଲି ଦେଖି ସେମାନେ ପିଲାଙ୍କ ପରି ଖୁସିରେ କୁରୁଳୁଥିଲେ ଓ ତାଙ୍କ ତୋପମାଡ଼ କାଟୁକଲା ବୋଲି ସେମାନେ ଭାରି ଉତ୍ତେଜିତ ହୋଇ ପଡ଼ୁଥିଲେ । କିନ୍ତୁ ଫରାସୀ ପକ୍ଷ ଆଡ଼ୁ ପ୍ରଥମେ ଯୋଡ଼ାଏ ତୋପଗୁଳି ଆସି ରୁଷ୍ ପକ୍ଷର ତୋପମାନଙ୍କ ସନ୍ଧିରେ ପଡ଼ିଲା, ତା ପଛେ ପଛେ ଆଉ ଚାରିଟା ତୋପଗୁଳି ପଡ଼ିଲା ଯେ ତହିଁରୁ ଗୋଟାକରେ ଯୋଡ଼ିଏ ଘୋଡ଼ା ଛତରଛୁଉକ୍ ହୋଇଗଲେ ଓ ଆଉ ଗୋଟାକରେ ଜଣେ ବନ୍ଧୁକିର ଗୋଟାଏ ଗୋଡ଼ ଉଡ଼ିଗଲା । ରୁଷ୍ ସୈନ୍ୟଙ୍କ ଆଣ୍ଟ ଓ ମନୋବଳ ତେଜି ଉଠିଥିଲା, ସେ ଆକ୍ରମଣ ତାଙ୍କୁ ଦବାଇ ପାରିଲା ନାହିଁ । ବରଂ ତାଙ୍କ ଉତ୍ସାହ ଉତ୍ତେଜନା ନୂଆ ବାଟ ଧରିଲା । ତୋପଗୁଳି ବୋହିବା ଗାଡ଼ିରୁ ଯୋଡ଼ିଏ ଘୋଡ଼ାଙ୍କୁ ସଙ୍ଗେ ସଙ୍ଗେ ଫିଟାଇ ଅଣାଗଲା ଓ ମରିଯାଇଥିବା ଘୋଡ଼ାଙ୍କ ସ୍ଥାନରେ ତାଙ୍କୁ ଯୋଡ଼ି ଦିଆଗଲା । ଆହତ ସୈନିକଙ୍କୁ ସେ ସ୍ଥାନରୁ ଉଠେଇ ନିଆଗଲା । ଚାରିଟିଯାକ ତୋପର ମୁହଁକୁ ଫରାସୀ ପକ୍ଷର ତୋପମାନଙ୍କ ଆଡ଼କୁ ମୁହଁକରି ବୁଲେଇ ଥୁଆ ଗଲା । ସେଠି ଯେଉଁ ଅନ୍ୟ କର୍ମଚାରୀଜଣକ ଥିଲେ, ସେ ଥିଲେ ତୁଷିନ୍‌ର ସହକର୍ମୀ । ଯୁଦ୍ଧ ଆରମ୍ଭ ହେଉ ହେଉ ସେ କର୍ମଚାରୀ ମରି ଯାଇଥିଲେ । ଏକ ଘଣ୍ଟା ପରେ ଦେଖାଗଲା ଯେ ସେ ତୋପମାଡ଼ ଦଳରେ ଯେଉଁ ଚାଳିଶ ଜଣ ବନ୍ଧୁକି ସୈନ୍ୟ ଥିଲେ, ତାଙ୍କ ଭିତରୁ ସତର ଜଣ ସୈନିକ ଆହତ ହୋଇ

ଅକର୍ମଣ୍ୟ ହୋଇ ପଡ଼ଲେଣି । ତଥାପି ସେମାନଙ୍କ ମନ ପ୍ରଫୁଲ୍ଲ ଥାଏ, ମନର ସଚେତତା ଊଣା ପଡ଼ ନ ଥାଏ, ଆଗେ ଯେମିତି ଥିଲା ଅବିକଳ ସେମିତି । ଦୁଇ ଦୁଇ ଥର ଫରାସୀ ସୈନ୍ୟ ଆସି ସେମାନେ ଯେଉଁଠି ଥିଲେ ଠିକ୍ ତା ତଳେ ପହଞ୍ଚି ଯାଇଥିଲେ, ଦୁଇଥର ଯାକ ରୁଷ୍ ସୈନ୍ୟମାନେ ସେମାନଙ୍କ ଉପରକୁ ତୋପରୁ ଗୁଳି ବର୍ଷିଥିଲେ । ତୁଷିନ୍ ଆକାରରେ ଖର୍ବ, ତାର ଅଙ୍ଗଭଙ୍ଗୀ ଶ୍ରୀହୀନ, କମ୍ଜୋର, ତାକୁ ଦେଖିଲେ ଲାଗିବ, ତା ଦେହରେ ବଳ ବି ନାହିଁ । କିନ୍ତୁ ଯୁଦ୍ଧରେ ମାତିଲା ବେଳେ ସେ ଭିନେ ମଣିଷ । ଥରକୁ ଥର ସେ ତାର ସେବାକାରୀ ସୈନିକକୁ କହୁଥାଏ—

"ଆଣ, ମୋ ପାଇପ୍‌ଟା ବଢ଼େଇଦିଅ । ବଢ଼ିଆ ମାଡ଼ଟାଏ ବସେଇଦେଲା ଏଥର ଆମ ତୋପ, ଖୁସିରେ କଲେ ଧୂଆଁ ଟାଣାଯାଉ ।"

ପାଇପ୍ ମୁଠେଇ ଆଣି ଶୋଷି ଶୋଷି ଧୂଆଁ ପକ ଟାଣୁ ଟାଣୁ ସେ ନିଆଁ ଗୁଳି ଛୁଟକାଉଥାଏ ଓ ତାର ଟିକି ପାପୁଲି ସନ୍ଧିବାଟେ ଫରାସୀ ପକ୍ଷର ସୈନ୍ୟଙ୍କ ଆଡ଼କୁ ଅନାଉଁଥାଏ । କହି ଲାଗିଥାଏ,—

"ତାଙ୍କୁ ଦିଅ ଭସ୍ମ କରିଦେ ପିଲେ ।"

ସେ ନିଜେ ଯାଇ ତୋପଗୁଡ଼ାକର ଚକମାନଙ୍କୁ ଟାଣକରି ଘୁପି ଧରିଲା ଆଉ ଚକମାନଙ୍କ ପେଚଗୁଡ଼ାକ ଢ଼ିଲା କରିଦେଲା । ଗୁଳିଫଟା ଧୂଆଁ ଭିତରେ ପଶିଯାଇ ତୁଷିନ୍ ଗୋଟାଏ ତୋପ ପାଖକୁ ଆଉ ଗୋଟାଏ ତୋପ କଡକୁ ଦଉଡ଼ ଧାପଡ଼ କରୁଥାଏ । ଅନବରତ ତୋପଗୁଡ଼ାକରୁ ଗୁଳି ଫାଟୁଥାଇ ଗୁଳିଥାଏ, ଶବ୍ଦରେ କାନ ଅତରା ପଡୁଥାଏ । ଥରେ ତୋପଟାଏ ଫୁଟିଲେ ତୁଷିନ୍ ଚମକ ପଡ଼େ । ତାର ଧୂଆଁପିଆ ପାଇପ୍‌ଟା ସବୁବେଳେ ତା' ପାଟିରେ ଲାଗି ରହିଥାଏ, କେତେବେଳେ ହେଲେ ତୁଣ୍ଡଛଡ଼ା ହେଉ ନଥାଏ ।

କେତେବେଳେ ସେ ତୋପରେ ଲକ୍ଷ କରୁଥାଏ, କେତେବେଳେ ସେ କଣ୍ଟୁଥାଏ, ତୋପରେ ଆଉ କେତେ ବାରୁଦ ରହିଲା. ଯେତେବେଳେ ତୋପଗାଡ଼ିର ଘୋଡ଼ା ଶତ୍ରୁପକ୍ଷର ଗୁଳିରେ ଆହତ ହେଉଥାନ୍ତି କି ମରି ଯାଉଥାନ୍ତି, ସେମାନଙ୍କୁ ସେ ବଦଳାଉ ଦେଉଥାଏ, ଅହରହ ସେ ତାର ଦୁର୍ବଳ ଥର ଥର ଚିଁ ଚିଁଆ ସ୍ୱରରେ ରଡ଼ ଛାଡ଼ୁଥାଏ । ତା ମୁହଁରେ ବଳି ବେଶି ବେଶି ଆଗ୍ରହର ଚିହ୍ନ ଫୁଟୁଥାଏ ।

ଖାଲି ଯେତେବେଳେ କେହି ଆହତ ହେଉଥାନ୍ତି କି ମରୁଥାନ୍ତି ସେତିକିବେଳେ ସେ ଭ୍ରୂକୁଞ୍ଚନ କରୁଥାଏ, ସେତେବେଳେ ସେ ମୃତ୍ଦେହଗୁଡ଼ାକ ଆଉ ମୁହଁ ବୁଲେଇ ନେଇ ଅନ୍ୟମାନଙ୍କ ଉପରେ ପାଟି କରୁଥାଏ, ସେଠି ପଡ଼ିଥିବା କେଉଁ ଆହତ ସୈନିକଙ୍କୁ କି ମୃତ ସୈନିକର ଶବକୁ ସେଠୁ ଉଠେଇ ନେଇ ଯାଅ ବୋଲି କହୁଥାଏ। କିନ୍ତୁ ଲୋକେ ସବୁବେଳେ ମଠ ମଠ କରୁଥାନ୍ତି।

ତୋପଗୁଳିକ ସୈନ୍ୟମାନେ ସାଧାରଣତଃ ସୁନ୍ଦର ଚେହେରାର ଲୋକ। ଡେଙ୍ଗା ଡେଙ୍ଗା ଲୋକ, ସେମାନେ ସେମାନଙ୍କ ଉପରସ୍ଥ କର୍ମଚାରୀଙ୍କଠୁଁ ଆହୁରି ବ'ଢ ମୁଣ୍ଡ ଉଞ୍ଚ, ଗୁଡ଼ର ତୋଳେଇ ମାପରେ କର୍ମଚାରୀଙ୍କ ମାପଠୁଁ ସେମାନେ ଦ୍ୱି' ଦ୍ୱି' ଗୁଣ। ଅଥଚ ସାନ ପିଲାମାନେ ଅକଡ଼ରେ ପଡ଼ିଲେ ଯେମିତି ଗୁହାଁଣିରେ ଅନାନ୍ତି, ସେମାନେ ତାଙ୍କ ଉପରସ୍ଥ କର୍ମଚାରୀ ଭୁଷିନ୍ ମୁହଁକୁ ସେମିତି ଅନାଉଁଥାନ୍ତି, ତା ମୁହଁରେ ଯେତେବେଳେ ଯେଉଁ ଠାଣି ଉକୁଟୁଥାଏ, ସଙ୍ଗେ ସଙ୍ଗେ ସେମାନଙ୍କ ମୁହଁରେ ତା ପ୍ରତିଫଳିତ ହେଉଥାଏ।

ଭୟଙ୍କର ଘୋ ଘୋ ଗର୍ଜନ ଆଉ ଗୋଳମାଳ ଶୁଭୁଥାଏ। ସେଭଳି ପରିସ୍ଥିତିରେ ଦରକାର ପଡ଼ୁଥାଏ- ଅସମ୍ଭବ ପ୍ରକାରେ କ୍ଷିପ୍ରତା, ପୁଣି ଗମ୍ଭୀର ମନୋନିବେଶ। ଭୁଷିନ୍‌କୁ ତେଣୁ ଟିକିଏ ବୋଲି ଡର ମାଡ଼ୁ ନ ଥାଏ, ଆଦୌ ଅଖାଡ଼ୁଆ ଲାଗୁ ନ ଥାଏ। କାଳେ ସେ ଆହତ ହେବ ଅଥବା କାଳେ ସେ ନିହତ ହେବ, ଏ ଧାରଣା ତାର ମୁଣ୍ଡରେ ପଶି ବି ପାରୁ ନ ଥାଏ। ଓଲଟି ତାକୁ ସେ ପରିସ୍ଥିତି ଚମତ୍କାର ଭାବେ ଚିତ୍ତାକର୍ଷକ ବୋଲି ଲାଗୁଥାଏ। ତାକୁ ଲାଗୁଥାଏ, ଶତ୍ରୁପକ୍ଷକୁ ଯେତେବେଳେ ସେ ଆଗ ଦେଖିଥିଲା, ତା ଉପରକୁ ପ୍ରଥମେ ଗୁଳି ମାରିଥିଲା, ସେ ବେଳ ତ କେତେ ପଛର କଥା, ସତେ ଅବା ସେ ହେଲାଣି ଗଲାକାଲର କଥା। ଆଉ, ଲାଗୁଥାଏ, ଯେଉଁ ଭୂଇଁ ଖଣ୍ଡକ ଉପରେ ସେ ଠିଆହୋଇଛି ସତେ ଅବା ସେ ଭୂମି ସଙ୍ଗେ ତାର ଘନିଷ୍ଠ ପରିଚୟ ଅଛି। ଆପଣା ଘର ପରି ସେ ସ୍ଥାନ ତାକୁ ଆରେଇ ଯାଉଥାଏ।

ଡରଭୟ ତା ମୁଣ୍ଡରେ ପଶୁ ନ ଥାଏ ସତ, ସେ ଅବସ୍ଥାରେ ପଡ଼ିଥିଲେ ସବୁଠୁ କାମିକା କର୍ମଚାରୀ ଯାହା ଯେଉଁଭଳି କରିଥାନ୍ତା, ଭୁଷିନ୍ ଅବିକଳ ସେଇଆ ସେହିପରି କରିଯାଉଥାଏ ସତ, ତଥାପି, ସେତେବେଳେ

ତା ମନର ଅବସ୍ଥାକୁ ଜ୍ୱର କୋପରେ ବାଉଳା ରୋଗୀର ମନର ଅବସ୍ଥା ସଙ୍ଗେ କି ଗୋଟାଏ ମାତାଲର ମୁଣ୍ଡ ସଙ୍ଗେ ତୁଳନା କରାଯାଇ ପାରିବ ।

ସେତେବେଳେ ସେଠି ସେ ଥାଏ ଗୋଟାଏ ବିଚିତ୍ର ସ୍ୱତନ୍ତ୍ର ଦୁନିଆଁ ଭିତରେ । ସେ ଦୁନିଆଁରେ ତା' ଚାରିପଟେ ତା ନିଜ ଘାଟିର ତୋପଗୁଡ଼ାକ କାନଫଟା ଗର୍ଜନ କରି ଫୁଟୁଥାଏ, ଶତ୍ରୁପକ୍ଷର ତୋପ ଗୁଳି ବଡ଼ ସାଇଁ ସାଇଁ ଗର୍ଜି ଆସୁଥାଏ ତୁ ତା ହୋଇ ଫୁଟୁଥାଏ । ତୋପମାନଙ୍କ ଚାରିକରେ ଝାଳନାଳ ହୋଇ ତୋପଚାଳକମାନେ ଧାଇଁଥାନ୍ତି, ତାଙ୍କ ମୁହଁସବୁ ନାଲି ପଡ଼ିଯାଇଥାଏ । ମଣିଷମାନଙ୍କ ଦେହରୁ ଘୋଡ଼ାମାନଙ୍କ ଦେହରୁ ରକ୍ତ ବୋହୁଥାଏ । ବିପକ୍ଷର ପଟରେ ଶତ୍ରୁସୈନ୍ୟ ପଟେ ଧୂଆଁ ଉଠୁଥାଏ ସେ ଥରେ ସେପଟେ ଧୂଆଁ ଉଠିଲେ ତା' ପଛେ ପଛେ ସେପଟରୁ ଏପଟକୁ ଗୋଟାଏ ତୋପଗୁଳି ଉଡ଼ିଆସେ ଭୂଇଁରେ ପଡ଼େ, ନ ହେଲେ ମଣିଷ ଉପରେ କି ଘୋଡ଼ା ଉପରେ କି ଏ ପଟର କେଉଁ ତୋପ ଉପରେ ଆସି ପଡ଼େ । ଏସବୁ ଦୃଶ୍ୟ ଏକାଠି ମିଶି ତା ସେ ସ୍ୱତନ୍ତ୍ର ଦୁନିଆଁ । ସେ ଦୁନିଆଁରେ ସେ ଆନନ୍ଦ ଉପଭୋଗ କରୁଥାଏ । ସେ ସତେ ଅବା କଳ୍ପନାରେ ଦେଖୁଥାଏ, ଯେ ଶତ୍ରୁପକ୍ଷର ତୋପଗୁଡ଼ାକ ତୋପ ନୁହେଁ, ସେଗୁଡ଼ାକ ଧୂଆଁ ପିଇବା ପାଇପ୍‌ । ସେହି ପାଇପ୍ ବାଟେ ମଝିରେ ମଝିରେ କେଉଁ ଅଦୃଶ୍ୟ ଧୂଆଁ ପିଆଳି ଦମେ ଲେଖାଁ ଧୂଆଁ ଟାଣି ଛାଡ଼ୁଛି । ତୁଷିନ୍ ଦେଖୁଥାଏ, ଧୂଆଁର ମେଘ ଖଣ୍ଡେ ପାହାଡ଼ର ଗାଲୁଏ ଗାଲୁଏ ଗଡ଼ିଆସିଲା ଓ ଗୋଟାଏ ହାଲୁକା ପବନରେ ବାଁ ପଟକୁ ଶୂନ୍ୟେ ଶୂନ୍ୟେ ଟେକି ହୋଇ ଉଡ଼ି ଚାଲିଗଲା । ତାକୁ ଦେଖି ତୁଷିନ୍ କହିଲା—

"ଦେଖିଲଣି ! ପୁଣି ସେ ଧୂଆଁ ଛାଡ଼ିଲା । ହଉ, ଏଥର ପକା ତ ତମ ବଲ୍‌ଟାକୁ ଆରପଟକୁ !"

ତା' କଡରେ ତୋପଚାଳକ ଠିଆ ହୋଇଥିଲା, ତୁଷିନ୍ କଣ ଭୁଟୁଭୁଟୁ ହେଉଛି ଶୁଣିପାରି ପଚାରିଲା,

"କଣ କହିବା ହେଲେ ହଜୁର !"

"କିଛି ନୁହେଁ ମ" ତୁଷିନ୍ କହିଲା, "ତୋପଗୁଳିଟାଏ । ହଁ । ଚାଲ ଏଥର ମାତ୍‌ଭେୟନା, ମାର୍ ଦନାଦନ୍ !" ସେ ମନକୁ ମନ କହିହେଲା । 'ମାତ୍‌ଭେୟନା' ନାଁଟା ସେ ଦେଇଥିଲା, ଗୋଟାଏ ତୋପକୁ,

ପୁରୁଣାକାଳିଆ ଘୁଙ୍ଗରେ ସେଇଟା ତିଆରି ହୋଇଥାଏ, ଟିଆ ହୋଇଥାଏ ଧାଡ଼ର ସବା ସେମୁଣ୍ଡରେ ।

ଫରାସୀ ସୈନିକମାନେ ବସିଥାନ୍ତି, ସତେ ଅବା ସେମାନଙ୍କ ତୋପ ସ୍ୱଳକରେ ପିମ୍ପୁଡ଼ିଗୁଡ଼ାଏ ବେଢ଼ିଛନ୍ତି ଯେମିତି । ଚିନ୍ତନ୍ତି ତୋପର ପ୍ରଥମ ତୋପଚାଳକ ଜଣକର ଚେହେରା ସୁନ୍ଦର । ସେ ମଦ ପିଇ ନିଶାରେ ମାତିଥାଏ, କଳ୍ପନାରେ ସେ ଦେଖୁଥାଏ ତା ମାମୁଁକୁ ଆଉ ତା ମାମୁଁ କଥା ଭାବୁଥାଏ । ତୁସିନ୍ ଅନ୍ୟମାନଙ୍କଠୁଁ ବେଶି ତାହାରି ଆଡ଼କୁ ଅନାଉଁଥାଏ, ତାର ପ୍ରତି ଅଙ୍ଗଭଙ୍ଗୀ ତୁଷିନ୍ ଆଖିକି ଭଲ ଲାଗୁଥାଏ । ପାହାଡ଼ତଳୁ ଗୁଳି ଫୁଟିବା ଶବ୍ଦ ବେଳେ ବେଳେ କମି କମି ଯାଇ ଥମ୍ଭି ଯାଉଥାଏ, ପୁଣି ତେଜ ଉଠୁଥାଏ, ଶୁଭୁଥାଏ ଗୋଟାଏ ଜନ୍ତୁର ନିଶ୍ୱାସ ଶବ୍ଦ ପରି । ସେ ଶବ୍ଦ କମିବା ବଢ଼ିବାକୁ ବି ତୁଷିନ ନିଘା ଦେଇ ଶୁଣୁଥାଏ ।

ସେ ମନକୁ ମନ କହି ହେଲ, "ଦେଖତ ! ପୁଣି ଥରେ ସେ ନିଶ୍ୱାସ ମାଇଲାଣି ।"

ତା' ନିଜ କଳ୍ପନାରେ ସେ ନିଜକୁ ଦେଖୁଥାଏ ସତେ ଯେମିତି ସେ ଅତି ପ୍ରକାଣ୍ଡ ଆକାରର ମାଲଟାଏ, ଯେ ଦି ହାତରେ ଫରାସୀ ସୈନ୍ୟଙ୍କ ଉପରକୁ ତୋପଗୁଳି ଫୋପାଡ଼ି ଲାଗିଛି ।

ତୋପଠୁଁ ଦୂରକୁ ଘୁଞ୍ଚିଯାଇ ସେ କହୁଥାଏ, "ମାତ୍ୟେଭନା, ଆମ ସାଙ୍ଗେ ସାଙ୍ଗେ ଥିବୁ ।"

ଏତିକିବେଳେ ଗୋଟିଏ ଅଚିହ୍ନା ପାଟିରେ କଥା ଶୁଭିଲା, "କ୍ୟାପ୍ଟେନ୍ ତୁଷିନ୍ ! କ୍ୟାପଟେନ୍—" ତୁଷିନ୍ ଲଜରା ହୋଇ ବୁଲପଡ଼ି ଚାହିଁଦେଲା । ଦେଖିଲା, ସେ ସେହି ଉଚ୍ଚପଦସ୍ଥ କର୍ମଚାରୀ, ମୁଖ୍ୟ ସେନାପତିଙ୍କ ଗହଣରେ ଥାନ୍ତି, ଯେ ଥରେ ଗ୍ରୁନ୍ଥେ ସହରରେ ତାକୁ ଦୋକାନ ଭିତରୁ ପଦାକୁ ତଡ଼ି ଦେଇଥିଲେ ।

ଗଇଁସଇଁ ହୋଇ ସେ କର୍ମଚାରୀ ତା ଉପରେ ତୋଡ଼ କରୁଥାନ୍ତି, "ଆପଣଙ୍କର ମୁଣ୍ଡ ବଗିଡ଼ିଲାଣି ନା କଣ ? ହଇ ହୋ ? ଦି'ଥର ହେଇଗଲା, ଆପଣଙ୍କୁ ହୁକୁମ ଦିଆଗଲାଣି ସେ ସ୍ଥାନ ଛାଡ଼ି ପଳାଇଯାନ୍ତୁ, ଆଉ ତଥାପି—"

ତୁଷିନ୍ ଡରରେ ଡରରେ କାଠ ହୋଇଯାଇ ତାଙ୍କ ଆଡ଼କୁ ଅନାଇଁଥାଏ, ଆଶ୍ଚର୍ଯ୍ୟ ହୋଇ ଭାବୁଥାଏ, ପୁଣି କାହିଁକି ଏମାନେ ସବୁ ମୋ ପାଛରେ ଲାଗିଲେଣି କେଜାଣି !

ତାଙ୍କୁ ସମ୍ମାନ ଦେଖାଇ ସେ ସାମରିକ ଗଣ୍ଡରେ ତା' ଟୋପି ଆଗରୁ ଯୋଡ଼ାଏ ଆଙ୍ଗୁଠି ଛୁଆଁଇଲା, କହିବାକୁ ଆରମ୍ଭ କଲା,—"ନାଇଁ... ମୁଁ...ନାଇଁ..."

କିନ୍ତୁ ଉଚ୍ଚପଦସ୍ଥ କର୍ମଚାରୀ ଜଣକ ତୁଷିନ୍‌କୁ ଯାହା ଯାହା କହିବେ ବୋଲି ଭାବିଥିଲେ, ସେ ସବୁ କିଛି କହିଲେ ନାହିଁ, ଠିକ୍ ତାଙ୍କ ପାଖ ବାଟେ ଗୋଟାଏ ତୋପଗୁଳି ଉଡ଼ି ଚାଲିଗଲା ଯେ ସେ ତାଙ୍କ ଘୋଡ଼ା ଉପରେ ପେଟେଇ ପଡ଼ିଲେ। କଥା ନ କହି ସେ ଅଟକି ଗଲେ। ତା ପରେ ପୁଣି କଣ କହିବାକୁ ବସିଲେ, କିନ୍ତୁ ଆଉରି ଗୋଟାଏ ତୋପଗୁଳି ମାଡ଼ିଆସିଲା, ସେ ଚୁପ ହେଲେ; ସେଇଠୁ ସେ ତାଙ୍କ ଘୋଡ଼ାର ମୁହଁ ବୁଲେଇ ଦେଇ ଘୋଡ଼ା ଦଉଡ଼େଇ ଦେଇ ପଳାଇଗଲେ।

ଦୂରରୁ ସେ ପାଟିକଲେ, "ପଛକୁ ପଳେଇ ଯାଅ ସମସ୍ତେ ପଛକୁ ପଳେଇ ଯାଅ।"

ତାଙ୍କ କଥା ଶୁଣି ସୈନିକମାନେ ହସି ହସି ଗଡ଼ିଲେ। ମିନିଟିଏ ନ ଯାଉଣୁ ପୁଣି ସେହି ଆଦେଶ ଶୁଣାଇବାକୁ ଅନ୍ୟ ଜଣେ ଦୂତ ଆସି ପହଞ୍ଚିଲେ, ସେ ପ୍ରିନ୍‌ସ୍ ଆନ୍ଦ୍ରେ।

ତୁଷିନ୍‌ର ତୋପମାନ ଖଞ୍ଜାହୋଇ ଥୁଆ ହୋଇଥିବା ଜାଗା ଉପରେ ପ୍ରିନ୍‌ସ୍ ଆନ୍ଦ୍ରେ ଆଗ ଯାହା ଦେଖିଲେ ସେ ଗୋଟାଏ ଘୋଡ଼ା, ସେ କୌଣସି ତୋପବୁହା ଗାଡ଼ିରେ ଯୋଚା ହୋଇ ନଥାଏ। ତା' ଗୋଡ଼ ଭାଙ୍ଗି ଯାଇଥାଏ। ଯୋଚା ହୋଇଥିବା ଘୋଡ଼ାମାନଙ୍କ ପାଖରେ ରହି ସେ ବୋବାଳି ଛାଡ଼ୁଥାଏ, ତା ଗୋଡ଼ରୁ ରକ୍ତର ଅଛିଣ୍ଡା ଧାର ସୁଅ ପରି ନିଗିଡ଼ି ଯାଉଥାଏ। ତୋପ ଖଞ୍ଜା ହୋଇଥିବା ପିଣ୍ଡି ଆଖପାଖରେ ବହୁତ ମୁର୍ଦ୍ଦାର ପଡ଼ିଥାନ୍ତି। ପ୍ରିନ୍‌ସ୍ ଆନ୍ଦ୍ରେ ଯେତେବେଳେ ଘୋଡ଼ାରେ ଚଢ଼ି ସେଠିକି ଆସୁଥାନ୍ତି, ସେତେବେଳେ ତାଙ୍କ ଉପର ବାଟେ ଗୋଟାକ ପରେ ଗୋଟାଏ ହୋଇ ତୋପଗୁଳି ସବୁ ଉଡ଼ି ଚାଲିଯାଉଥାଏ। ତାଙ୍କୁ ଲାଗୁଥାଏ। ସତେ ଯେମିତି ତାଙ୍କ ବେଁଗିରି ହାଡ଼ବାଟେ ଗୋଟାଏ ଥଣ୍ଡା ପଶିଲା ଭଳି କମ୍ପ ତଳକୁ ତଳକୁ ମାଡ଼ି ମାଡ଼ି ଯାଉଛି, କିନ୍ତୁ "ମୁଁ ଡରୁଛି" ଏତିକି ଭାବିଲାବେଳକୁ ପୁଣି ତାଙ୍କ ଦେହରେ ତେଜ ଚଢ଼ିଉଠୁଥାଏ।

"ମୁଁ କଦାପି ଡରି ନ ପାରେଁ" ସେ ଭାବିଲେ। ସେ ଜାଣି ଜାଣି ତୋପମାନଙ୍କ ମଝିରେ ଘୋଡ଼ାରୁ ଓହ୍ଲେଇଲେ। ସେ ଯେଉଁ ଆଦେଶ

ଜଣାଇଦେବାକୁ ସେଠିକି ଆସିଥିଲେ ତା ତ କହିଦେଲେ, କିନ୍ତୁ ତା ପରେ ଆଉ ତୋପଦଳଟି ପାଖରୁ ଚାଲିଗଲେ ନାହିଁ । ସେ ନିଷ୍ପତ୍ତି କଲେ ଯେ ସେ ସେଇଠି ରହିବେ ଓ ତୋପଗୁଡ଼ାକ ସେଠୁ ଅନ୍ୟସ୍ଥାନକୁ ଘୁଞ୍ଚାଇ ନେବା କାର୍ଯ୍ୟରେ ସେ ସାହାଯ୍ୟ କରିବେ । ଫରାସୀ ସୈନ୍ୟଙ୍କ ପଟରୁ ଯେଉଁ ଭୀଷଣ ଗୁଳମାଡ଼ ଆସୁଥାଏ ତାହାର ଭିତରେ ବୁଲି ବୁଲି ମୃତ୍ୟୁ ମାନଙ୍କ ଉପରେ ଡେଇଁ ଡେଇଁ ଯାଇ ସେ ତୋପଗୁଡ଼ାକ ଘୁଞ୍ଚାଇ ନେବା ଲାଗି ପ୍ରସ୍ତୁତ କରିବା କାର୍ଯ୍ୟରେ ତୁଷିନ୍‌ଙ୍କୁ ସାହାଯ୍ୟ କରୁଥାନ୍ତି ।

ଜଣେ ତୋପଚାଳକ ସୈନିକ ତାଙ୍କୁ କହିଲା,

"ବର୍ତ୍ତମାନ ଟିକିଏ ଆଗରୁ ଯେଉଁ ଉପରିସ୍ଥ କର୍ମଚାରୀଜଣକ ଏଠିକି ଆସିଥିଲେ ନା,—ସେ ଯେତେବେଳେ ତରତରରେ ଆସି ପହଞ୍ଚିଲେ ତାଙ୍କ ଆହୁରି ଚଞ୍ଚଳ ସେ ଏଠୁ ଧାଇଁ ପଳେଇଲେ । ହଜୁରଙ୍କ ପରି ସେ ନୁହଁନ୍ତି ।"

ପ୍ରିନ୍ସ୍ ଆନ୍ଦ୍ରେ ତୁଷିନ୍ ସଙ୍ଗରେ କଥାଭାଷା ହେଲେ ନାହିଁ । ଦୁହେଁ କାମରେ ଏପରି ମଜ୍ଜି ରହିଥାନ୍ତି ଯେ ଦୁହେଁ ଦୁହିଁଙ୍କି ଆଦୌ ଦେଖିଛନ୍ତି ଏଭଳି ଲାଗୁ ନ ଥାଏ ।

ଚାରୋଟି ତୋପ ଅକ୍ଷତ ଥାଏ । ଚକିରୁ ଯୋଡ଼ାଏ ତୋପକୁ ଖୋଲି ସେମାନେ ପିଣ୍ଡି ଉପରେ ଥୁଆଇଲେ । ସେଉଠୁ ସେମାନେ ତାଲୁଏ ତାଲୁଏ ତଳକୁ ଚାଲିଲେ । (ଗୋଟାଏ ତୋପ ଫାଟି ଚୂନା ହୋଇ ଯାଇଥିଲା । ଆଉ ଗୋଟାଏ, ସେଇଟା ସାନ ତୋପଟାଏ, ତାକୁ ସେମାନେ ପଛରେ ଛାଡ଼ିଦେଇ ଆସିଲେ ।)

ସେତିକିବେଳେ ପ୍ରିନ୍ସ୍ ଆନ୍ଦ୍ରେ ତୁଷିନ୍ ଆଡ଼କୁ ହାତ ବଢ଼ାଇ ଦେଲେ । କହିଲେ,

"ଯାଉଛି । ନମସ୍କାର । ପୁଣି ଦେଖାହେବାଯାକେ ରହିଲି ।"

"ଆଜ୍ଞା ନମସ୍କାର । ବିଦାୟ ।" ତୁଷିନ୍ କହିଲା । କହୁ କହୁ ହଠାତ୍ ତା ଆଖିରେ ଲୁହ ପୂରିଗଲା, କାହିଁକି କେଜାଣି ।

ପବନ ଅଟକି ଥିଲା । ଯୁଦ୍ଧଭୂଇଁ ଉପରେ ଆକାଶରେ କଳା କଳା ମେଘ ଲଦାଲଦି, ସତେ ଅବା ତୋଫାନ ଆଗରୁ ଆକାଶ । ଦୂର ଦିଗ୍‌ବଳୟରେ କଳା ମେଘ ମିଶିଥିଲା ବାରୁଦ ଧୂଆଁର ମେଘରେ । ଅନ୍ଧାର ଘୋଟିଥାଏ, ଅନ୍ଧାରରେ ବାରି ହେଉଥାଏ ଦୁଇ ଠା'ରେ ନିଆଁ

ଜନ୍ତୁଛି । ତୋପ ଫୁଟିବାର ଗୁମ୍ ଗୁମ୍ ଡାଇ ଡାଇ ଶବ୍ଦ କ୍ଷୀଣ ହୋଇ ଯାଇଥାଏ କିନ୍ତୁ ପଛପଟେ ଓ ଡାହାଣ ଆଡ଼େ ବନ୍ଧୁକର ଡୋ ଡା ବଢ଼ିବଢ଼ି ଶୁଭୁଥାଏ ଯେପରି ସେ ଶବ୍ଦ ପାଖକୁ ପାଖକୁ ମାଡ଼ିମାଡ଼ିକା ଆସୁଛି ।

ତୁଷିନ୍ ତାର ତୋପଗୁଡ଼ିକ ସଙ୍ଗେ ସଙ୍ଗେ ଏକର ସେକର ଗାଡ଼ି ଚଳାଇ ଚଳାଇ ହତାହତ ସୈନ୍ୟଙ୍କ ଘେର ବୁଲି ବୁଲି ଚାଲିଥାଏ; ବାରମ୍ବାର ହାବୁଡ଼ୁ ଥାଏ ହତାହତମାନଙ୍କୁ । ସେ ଗୋଟିଏ ଖୋଲ ଭିତରକୁ ଓହ୍ଲାଇଗଲା, ସେ ଜାଗା ଶବ୍ଦ ପ୍ରକୃରେ ବନ୍ଧୁକ ଓ ତୋପମାନଙ୍କ ଗୁଳିର ପହଞ୍ଚ ବାହାରେ । ଯେମିତି ସେଠି ସେ ପହଞ୍ଚିଛି, ସେମିତି ଉଚ୍ଚପଦସ୍ଥ କର୍ମଚାରୀମାନେ ତାକୁ ଭେଟିବାକୁ ଆସି ପହଞ୍ଚିଗଲେ । ସେମାନଙ୍କ ଭିତରେ ଥାଆନ୍ତି ପାଞ୍ଚଜଣ ଷ୍ଟାଫ୍ ଅଫିସର ଓ ଜେରକଭ୍ । ତୁଷିନ୍‌ର ତୋପଘାଟିକୁ ଯିବାକୁ ସେମାନଙ୍କୁ ଦୁଇଥର ବରଗା ହୋଇଥିଲା କିନ୍ତୁ ସେମାନେ ଥରେ ବି ସେଠିକି ଯାଇ ନ ଥିଲେ । ବର୍ତ୍ତମାନ ତୁଷିନ୍‌କୁ କିଏ କି ହୁକୁମ୍ ଦେବ ସେଥିପାଇଁ, ସେମାନେ ସଚେ କି ଆପଣା ଭିତରେ ପ୍ରତିଯୋଗିତା ଆରମ୍ଭ କରିଦେଲେ । ତୁଷିନ୍ ଏହା ପରେ କେଉଁଠିକି ଯିବା ଦରକାର, ସେ କେମିତି ଯିବା ଉଚିତ, ସେମାନେ ସେହିସବୁ କଥା ତାକୁ କହୁଥାନ୍ତି ଓ ତା ଦୋଷ ବାଛୁଥାନ୍ତି । ତୁଷିନ୍ କୌଣସି କଥାର ଜବାବ୍ ଦେଉ ନ ଥାଏ, ପାଟି ଫିଟାଇବାକୁ ତାକୁ ଡର ମାଡ଼ୁଥାଏ । କେଜାଣି କାହିଁକି,—ସେ ଭାବୁଥାଏ ଯେ ସେ ମୁହଁ ଖୋଲିଲେ ଭେଁ କିନା କାନ୍ଦ ପକାଇବ । ତେଣୁ ସେ ତା ତୋପମାନଙ୍କ ପଛେ ପଛେ ଘୋଡ଼ା ଚଢ଼ି ଭୁନଭାନ ଚାଲିଥାଏ ।

ଆଦେଶ ମିଳିଥାଏ ଯେ ଯେଉଁମାନେ ଆହତ ହୋଇଛନ୍ତି, ଅନ୍ୟମାନେ ସେମାନଙ୍କୁ ଛାଡ଼ିଦେଇ ଚାଲିଯାଉନ୍ତୁ । କିନ୍ତୁ ଅନେକ ଆହତ ଲୋକ କଷ୍ଟେମଷ୍ଟେ ଟାଣିଓଟାରି ହୋଇ ସୈନ୍ୟମାନଙ୍କ ପଛେ ପଛେ ଚାଲିଥାନ୍ତି, ତାଙ୍କୁ ତୋପ ଉପରେ ବସାଇ ଗାଡ଼ିରେ ନେଇଯିବାପାଇଁ ସେମାନେ ନେହୁରା ହେଉଥାନ୍ତି । ଯୁଦ୍ଧ ଆରମ୍ଭ ହେବାର ଠିକ୍ ପୂର୍ବରୁ ପଦାତିକ ବାହିନୀର ଯେଉଁ ଗଜାଭେଣ୍ଡିଆ କର୍ମଚାରୀଜଣକ ତୁଷିନ୍‌ର ତୋପଘାଟିରେ ଥିବା ଜଳଖିଆ ଦୋକାନକୁ ଧାଇଁ ଧାଇଁ ଚାଲିଯାଇଥିଲା, ତା ପେଟରେ ଗୁଳି ପଶିଥାଏ ଯେ ତାକୁ "ମାଟ୍ୟୋଭ୍ନା" ତୋପର ଗାଡ଼ି ଉପରେ ଶୁଆଇ ଦେଇ ନିଆ ହେଉଥାଏ ।

ପାହାଡ଼ ତଳେ ଜଣେ ଅଶ୍ୱାରୋହୀ ବାହିନୀର କର୍ମଚାରୀ ଲୁଷିନ୍ ପାଖକୁ ଆସି ତା ଗାଡ଼ିରେ ତାଙ୍କୁ ବସେଇ ନେବାକୁ ବହୁତ ଅନୁନୟ କଲା । ତା ଚେହେରା ଶୁଖିଲା ଦିଶୁଥାଏ, ସେ ଗୋଟାଏ ହାତରେ ତା ଆରହାତକୁ ଧରି ଧରି ଆସିଥାଏ, ଡରି ଡରି କହିଲା,

"ଆପଣଙ୍କୁ ଠାକୁରଙ୍କ ହାହି, କ୍ୟାପ୍‌ଟେନ୍, ମତେ ଟିକିଏ ବସେଇ ନେଇଯାଆନ୍ତୁ । ମୋ ହାତରେ ଗୁଳି ମାଡ଼ ବସିଛି । ମୁଁ ଚାଲି ପାରୁନାହିଁ । ଆପଣଙ୍କୁ—" ।

ଲୋକଟିର ଢ଼ଙ୍ଗ କହି ଦେଉଥାଏ, ସେ ବସିକରି ଯାଆନ୍ତା ବୋଲି ଟିକିଏ ଜାଗା ଦେବାକୁ ସେ ଯେ ଏଇ ପ୍ରଥମଥର କାହାକୁ ନିଉଛାଳ ହେଲା ନା ନୁହେଁ, ଆଗରୁ ବି ଚେଷ୍ଟା କରିଛି; କିନ୍ତୁ ଯେତେଥର ଯାହାକୁ କହିଛି ସମସ୍ତେ ତାକୁ ମନା କରିଦେଇ ଚାଲିଯାଇଛନ୍ତି । ଥଙ୍ଗେଇ ଥଙ୍ଗେଇ ହୋଇ ସେ କହିଲା, "ଆପଣଙ୍କୁ ଭଗବାନଙ୍କ ହାହି; କହନ୍ତୁ ଟିକିଏ ସେମାନଙ୍କୁ ଯେ ସେମାନେ ମତେ ଗାଡ଼ିରେ ବସିବାକୁ ଦେବେ ।"

ଲୁଷିନ୍ ତା ଲୋକଙ୍କୁ କହିଲା,—

"ନେଇଯା ତାଙ୍କୁ ଗାଡ଼ିରେ, ତାଙ୍କୁ ବସେଇ ନିଅ ।" ସେ ତା'ର ଜଣେ ବିଶ୍ୱାସୀ ସୈନିକକୁ ଡାକି କହିଲା,

"ଶୁଣ ମାମୁଁ, ପ୍ୟେ ବିଚରାର ଦେହ ତଳେ ଖଣ୍ଡେ କୋଟ୍ ପାରିଦିଅ ।" ପଚାରିଲା,

"ଆଚ୍ଛା ସେ ଯେଉଁ ଆର ଜଣକ ଆହତ ହୋଇଥିଲା ସେ କାହିଁ ?"

କିଏ ଜଣେ ଉତ୍ତର ଦେଲା, "ସେ ମରିଗଲା । ଫୋପାଡ଼ି ଦେଲୁଁ ।"

"ହଉ ହଉ, ସ୍ୟାଙ୍କୁ ଟିକିଏ ସାହାଯ୍ୟ କର । ବସ ତୁମେ, ବସ । ଆଣ୍ଟୋନଭ୍, କୋଟ୍‌ଖଣ୍ଡିକ ଏପଟେ ପାରିଦେଲ ।"

ସେ ଯେଉଁ କର୍ମଚାରୀଟି ଗୋଟାଏ ହାତରେ ଆର ହାତକୁ ଧରିଥାଏ, ସେ ରୋଷ୍ଟଭ୍ । କଳାକାଠ ପଡ଼ିଯାଇଥାଏ । ତା ତଳପାଟି ଥରୁଥାଏ । ଲାଗୁଥାଏ ସତେ ଯେମିତି ସେ ଜ୍ୱରରେ ଥରୁଛି । ମାଡ୍ୟେଭ୍ନା ତୋପ ଉପରେ ବସିବାକୁ ତାକୁ ଜାଗା ଦିଆଗଲା । ସେହି ତୋପ ସେ

ଯାହା ଉପରେ ଶୁଆଇ ଆଣୁଥିବା ଆହତ ସୈନକଟି ମରିଯିବାରୁ ତା ଶବକୁ ଭୁଷିନ୍‌ର ଲୋକେ ଫିଙ୍ଗିଦେଇ ଚାଲିଯାଇଥିଲେ ।

ରୋଷ୍ଟଭ ଯେଉଁ କୋଟ୍ ଉପରେ ବସିଲା ତହିଁରେ ରକ୍ତ ଲଗିଥିଲା । ରୋଷ୍ଟଭ୍‌ର ହାତଯାକ ରକ୍ତ, ପାଇଜାମାଯାକ ରକ୍ତରେ ଜୁଡୁବୁଡୁ ।

'ଆରେ ! ଆରେ ! ତମ ଦେହରେ ବ ଗୁଳି ବସିଚ ନା କ'ଣ ?'' ରୋଷ୍ଟଭ୍ ଯେଉଁ ତୋପ ଉପରେ ବସିଥିଲା ସେଠିକି ଚାଲିଯାଇ ଭୁଷିନ୍ ପଚାରିଲା ।

''ନାହିଁ ଆଜ୍ଞା, ଖାଲି ଜଖମ୍‌ଟାଏ ହୋଇଚ ।''

''ତେବେ ଏଥିରେ ରକ୍ତ ଲଗିଲା କେମିତି ?'' ଭୁଷିନ୍ ପଚାରିଲା ।

ଜଣେ ତୋପଚାଳକ ସୈନକ ନିଜେ ପିନ୍ଧିଥିବା କୋଟ୍‌ର ହାତପଟେ ଘଷି ଦେଇ ସେଠୁ ସେ ରକ୍ତକୁ ପୋଛି ପକାଇଲା, ତୋପ ଉପରଟା ଅସନା ହେବାରୁ ସତେ ଅବା ସେ କାଇଲ୍ ହୋଇ କ୍ଷମାମାଗୁଛି ସେହିପରି ଭାବ ଦେଖାଇ ସେ କହିଲା,

''ସେ ଯେଉଁ କର୍ମଚାରୀ ଏଠି ଶୋଇଥିଲା ତାର ରକ୍ତ ଏଥିରେ ଲାଗିଯାଇଛି ହଜୁର୍ ।''

ପଦାତିକ ସୈନକମାନଙ୍କ ସାହାଯ୍ୟରେ ଅତି କଷ୍ଟରେ ସେମାନେ ତୋପଗୁଡ଼ାକ ପାହାଡ଼ ଉପରକୁ ଓଟାରି ନେଇଗଲେ । ସେମାନେ ଗୁନ୍ଟେର୍‌ସ୍‌ବର୍ଗ୍ ଗାଁରେ ପହଞ୍ଚିଲା ପରେ ଅଟକଲେ । ସେତେବେଳକୁ ଏଡ଼େ ଅନ୍ଧାର ହୋଇଯାଇଥାଏ ଯେ ଦଶ ପାହୁଣ୍ଡ ଦୂରରେ ଥିବା ସୈନକର ପୋଷାକ ବ ସେ ଅନ୍ଧାରରେ ବାରି ହେଉ ନ ଥାଏ । ବନ୍ଧୁକ ଫୁଟିବା ଶବ୍ଦ ବ କମି କମି ଆସୁଥାଏ ।

ପୁଣି ହଠାତ୍ ଶୁଭିଲା ଡାହାଣ ଆଡ଼ୁ ଗୁଳିଫୁଟିବା ଶବ୍ଦ ଓ ପାଟିଭୁଣ୍ଡ ଘୋ ଘା । ଅନ୍ଧାରରେ ବନ୍ଧୁକ ଫୁଟୁଥାଏ ଯେ ନିଆଁ ଦିଶୁଥାଏ ।

ଏଇ ଥରଟା ଫରାସୀ ସୈନ୍ୟମାନଙ୍କର ଶେଷ ଆକ୍ରମଣ । ରୁଷ୍ ପକ୍ଷର ସୈନ୍ୟମାନେ ଗାଁରେ ଘରମାନଙ୍କରେ ଲୁଚି ରହିଥିଲେ, ସେମାନେ ଫରାସୀ ସୈନ୍ୟଙ୍କୁ ପ୍ରତିଆକ୍ରମଣ କଲେ । ପୁଣି ସମସ୍ତେ ସେ ଗାଁ ଭିତରୁ ପଦାକୁ ଧାଇଁଲେ ।

କିନ୍ତୁ ଭୁଷିନ୍‌ର ତୋପଗୁଡ଼ିକ ସେତେବେଳକୁ ଅଚଳ । ଭୁଷିନ୍ ତୋପଚାଳକମାନେ ଓ ଆହତଙ୍କୁ ନେଇଥିବା ଆହତ କର୍ମଚାରୀ ଏମାନେ ସମସ୍ତେ ଆପଣା ଭାଗ୍ୟ କଥା ଭାବି ପରସ୍ପରର ମୁହଁ ଚାହିଁଚାହିଁ ହେଲେ ।

ପୁଣି ଦୁଇ ପକ୍ଷର ଗୁଳିଫୁଟା କମିଗଲା । ପାଖ ଗଳିରୁ କେତେ ଗୁଡ଼ାଏ ସୈନିକ ଖୁସି ହୋଇ କଥା କହି କହି ପଦାକୁ ବାହାରିଲେ ।

ଜଣେ ପଚାରୁଥାଏ, "ପେଟ୍ରଭ୍ ଦେହରେ ଗୁଳି ବାଜି ନାହିଁ ତ ?"

ଆଉ ଜଣେ କହୁଥାଏ, "ଆମେ ତାଙ୍କୁ ଆଚ୍ଛାକରି ପାନେ ଦେଇଛୁ । ଆଉ ଲାଗିବେ ଆମ ସାଙ୍ଗରେ !"

"ଅନ୍ଧାର ତ ହୋଇଛି । କିଛି ତ ଜମା ଦିଶୁନାହିଁ । ସେମାନେ ତ ତାଙ୍କର ପକ୍ଷର ସୈନ୍ୟଙ୍କ ଉପରକୁ ଗୁଳି ଚଳାଉଥାନ୍ତି ! ଅନ୍ଧାରରେ କିଛି ଦିଶୁନାହିଁ ମଇଦେ; ପିଇବାକୁ ରଖିଛ ନା କିଛି ?"

ଶେଷଥରକ ଫରାସୀ ସୈନ୍ୟଙ୍କୁ ଘଉଡ଼ାଇ ଦିଆ ହୋଇଥାଏ । ପୁଣି ଆଗକୁ ଚାଲିଲେ ଭୁଷିନ୍‌ର ତୋପମାନେ, ଅମୁହାଁ ଅନ୍ଧାର ଭିତରେ । ତୋପମାନଙ୍କୁ ବେଢ଼ିରହି ପଦାତିକ ସୈନିକମାନେ ଚାଲିଥାନ୍ତି, ଫୁସୁରୁ ଫାସୁରୁ କଥା ଭାଷା ହେଉଥାନ୍ତି ।

ସେମାନେ ସମସ୍ତେ ମିଶି ଏକାଠି ଯେତେବେଳେ ଚାଲିଥାନ୍ତି, ଲାଗୁଥାଏ ସତେ ଯେପରି ଘନ ଅନ୍ଧାର ଭିତରେ ଗୋଟିଏ ବିଷଣ୍ଣ ନଈଟିଏ ଏକମୁହାଁ ହୋଇ ବୋହି ଚାଲିଯାଉଛି । ମଣିଷଙ୍କ ଚୂପ୍ ଚୂପ୍ ଫୁସୁରୁ ଫାସୁରୁ, ଏଣୁ ତେଣୁ ଗପ, ଘୋଡ଼ାମାନଙ୍କ ଟପ୍‌ଟାପ୍ ଟାପୁମାଡ଼, ଗାଡ଼ିମାନଙ୍କ ଚକ ଘଡ଼ଘଡ଼, ସବୁ ଶବ୍ଦ ଏକାଠି ମିଶି ସେ ନଈରୁ ଗୋଟାଏ ହାଉଯାଉ କୋଳାହଳ ଉଠୁଥାଏ । ସେହି ହୋହା ହାଉଯାଉ ଭିତରେ ଆହତ ଲୋକଙ୍କ ଆର୍ତ୍ତନାଦ କାନରେ ବାଜିଗଲେ ସତେ ଯେମିତି ଶୁଣିବା ଲୋକର ହୃଦୟ ଭିତରର ଗୋଳ ହୋଇଯାଉଥାଏ ।

ଟିକଏ ପରେ, ଚାଲିଥିବା ମଣିଷଙ୍କ ଭିତରେ କଣ ଯେପରି କି ଉତ୍ତେଜନା ଖେଳିଗଲା । ସେହି କରପଟେ ଜଣେ କିଏ ଧଳା ଘୋଡ଼ାରେ ବସି ଚାଲିଗଲେ, ତାଙ୍କ ପଛେ ପଛେ ଗଲା ଗୋଟିଏ ଶ୍ରେଷ୍ଠ ଦଳ । ଗଲାବେଳେ ଧଳାଘୋଡ଼ା ଚଢ଼ିଥିବା ଜଣକ କଣ କହିଦେଇ ଗଲେ ସେଥିପାଇଁ ସେ ଉତ୍ତେଜନା ।

"କ'ଣ ସେ କହିଲେ ହୋ ?

ଆଚ୍ଛା, ଆମେ ଏବେ ଯାଉଛୁଁ କୋଉଠିକି ?

କ'ଣ କହିଲେ ?

କହିଗଲେ ଏଇଠି ଅଟକି ରହ ?

ଆମକୁ ଧନ୍ୟବାଦ ଦେଇ ଦେଇ ଚାଲିଗଲେ ?

କ'ଣ ହେଲା କହୁଛନ୍ତି ?"

ଚାରିଆଡ଼ୁ ଏମିତି ପଚାରି ପଚାରି ନାନା ପ୍ରଶ୍ନ । ସତେ ଅବା ଚାଲିଥିବା ସୈନ୍ୟବାହିନୀ ଗୋଟାକଯାକ ଆପଣା ଗୋଡ଼କୁ ଗୋଡ଼ କଣ୍ଟକ କଣ୍ଟ ଲାଗି ଲାଗି ଯକାଯକ ହୋଇଗଲା । (ଜଣାଯାଉଥାଏ ଯେ ସବା ଆଗରେ ଯେଉଁମାନେ ଚାଲିଥାନ୍ତି ସେମାନେ ଅଟକିଲେଣି ।) ସୈନ୍ୟବାହିନୀ-ଯାକ ଗୋଟାଏ ଜନରବ ଖେଳିଗଲା ଯେ ଆଉ ଆଗକୁ ଯିବାକୁ ହେବ ନାହିଁ, ଅଟକିବାକୁ ଆଦେଶ ମିଳିଲାଣି । ଯେ ଯେଉଁଠି ଥିଲେ, ସେଇଠି ସେହି ଅବସ୍ଥାରେ କାଦୁଆ ବାଟରେ ଅଟକି ରହିଗଲେ ।

ଏଠି ସେଠି ନିଆଁ ଟିଏମାନ ଜଳିଉଠିଲା । କଥାଭାଷା ଆହୁରି ପରିଷ୍କାର ହୋଇ ଶୁଭିଲା । କ୍ୟାପ୍‌ଟେନ୍ ତୁଷିନ୍ ତାର ତୋପଚାଳକ ସୈନ୍ୟ ଦଳକୁ ପ୍ରୟୋଜନୀୟ ନିର୍ଦ୍ଦେଶମାନ ଦେଲା । ତା'ପରେ, ତା' ସଙ୍ଗରେ ଯେଉଁ ଆହତ କର୍ପୋରାଲଟିକୁ ଆଣିଥିଲା, ତା'ର ଚିକିତ୍ସା ପାଇଁ ରୋଗୀବୁହା ଖଟିଆ ଆଣିବାକୁ ନ ହେଲେ ଡାକ୍ତର ଡାକି ଆଣିବାକୁ କହି ମଣିଷ ବରଗି ଦେଲା । ତା' ପରେ ଯାଇ ବାଟକରରେ,ତା' ଦଳର ସୈନିକମାନେ ଯେଉଁ ନିଆଁ ଜାଳିଥିଲେ ତାହାରି କରରେ ବସି ପଡ଼ିଲା ।

ରୋଷ୍ଟଭ ବି ଟାଣି ଓଟାରି ହୋଇ ସେହି ନିଆଁ ପାଖକୁ ଘୁଞ୍ଚି ଆସି ବସିଲା । ଏକେ ଯନ୍ତ୍ରଣା, ତହିଁରେ ଶୀତ ; ତହିଁରେ ପୁଣି ଓଦା ପଚ୍ ପଚ୍, ସବୁଆଡ଼ୁ ସବୁଆଡ଼ୁ ହୋଇ ତା ଦେହ ଗୋଟାକଯାକ ଠକ୍ ଠକ୍ ହୋଇ ଥରୁଥାଏ । ନିଦରେ ତା ଆଖି ମାଡ଼ି ହୋଇ ପଡ଼ୁଥାଏ, କିନ୍ତୁ ତା' ବାହୁରେ ଆଘାତ ଲାଗିଥିବାରୁ ତାକୁ ଏତେ କଷ୍ଟ ହେଉଥାଏ ଯେ ସେ ଶୋଇପାରୁ ନ ଥାଏ । ସେ ଆଖି ବୁଜିଦେଲା, ପୁଣି ଆଖି ଖୋଲି ନିଆଁ ଆଡ଼କୁ ଅନାଇଁ ରହିଲା । ତାକୁ ଲାଗୁଥାଏ ନିଆଁ ଟା ନାଲି ଟହ ଟହ ଆଖି ଝଲସା ନାଲି ।

ସେ ତୁଷିନ୍‌ର କ୍ଷୀଣ ଶରୀରକୁ ଚାହିଁଲା । ତୁର୍କୀ ଲୋକଙ୍କ ପରି ଚେକା ମାରିଲି ପକାଇ ତୁଷିନ୍ ତାର କଡ଼ରେ ବସିଥାଏ, ତାର ବଡ଼ ବଡ଼

ଆଖିରେ ଦୟା ପୂରିଥାଏ, ବୁଦ୍ଧିମାନ ଆଖି ଯୋଡ଼ିକର ଚାହାଣି ସହାନୁଭୂତି ଓ କରୁଣାରେ ଜୁଳୁ ଜୁଳୁ ହୋଇ ତାହାରିଠି ଲାଗିରହିଥାଏ । ସେ ଦେଖିଲା, କୁଟିଜ୍ ସହାନୁଭୂତିରେ କାମନା କରୁଛି, କେମିତି ତାର କିଛି କାମରେ ଲାଗନ୍ତା କି, ଅଥଚ କୌଣସି ଉପକାର କରିବା ଭଳି ତାଠି ସାମର୍ଥ୍ୟ ନାହିଁ । ।

ପଦାତିକ ସୈନିକଙ୍କ ପାଦଶବ୍ଦ ଓ କଥାଭାଷାର ଚହଳ ସବୁଆଡ଼ୁ ଶୁଭୁଥାଏ । ସେ ସୈନିକମାନେ ଯା ଆସ କରୁଥାନ୍ତି ଓ ସେ ଦୁହିଙ୍କ ଚାରିକଡ଼େ ବସିପଡ଼ୁଥାନ୍ତି । ଗୋଟାଏ ପ୍ରଚଣ୍ଡ ହୋ ହା, କେତେବେଳେ ବଢ଼ିଯାଉଛି, କେତେବେଳେ କମିଯାଉଛି, ତାହାର ଭିତରେ ଶୁଭୁଛି ମଣିଷଙ୍କ ପାଟିତୁଣ୍ଡ, ପାଦଶବ୍ଦ, କାଦୁଅରେ ମଚ୍ ମଚ୍ ହୋଇ ଘୋଡ଼ା ଟାପୁ ଶବ୍ଦ, ପାଖରେ ଦୂରରେ ହୋଇ ଯେଉଁ ନିଆଁ ଜଳୁଛି, ସେଠି କାଠର ଠୋ ଠା, ସବୁ ଶବ୍ଦ ଏକାଠି ଆଉଟା ଆଉଟି ।

ଧିବେ ଅନାଇଲେ ଦିଶୁଥିଲା, ଯେମିତି ଅନ୍ଧାରେ ଅନ୍ଧାରେ ନଈ ସୁଅ ବୋହିଯାଉଛି, ଆଖିକୁ ଦିଶୁନାହିଁ । ଏବେ ଆଉ ସେମିତି ଦିଶୁନାହିଁ । ଦିଶୁଛି ସତେ ଅବା ଗୋଟାଏ ଅନ୍ଧାର ସମୁଦ୍ର, ତୋଫାନ ଘୋଟିଥିଲା, ଆଉ ନାହିଁ । ସମୁଦ୍ର ଶାନ୍ତ ହୋଇଯାଉଛି, ସମ୍ପୂର୍ଣ୍ଣ ଶାନ୍ତ ହୋଇନାହିଁ । ରୋଷ୍ଟଭ୍ ବଲବଲ କରି ଚାହିଁ ରହିଥାଏ । ତା ଦୃଷ୍ଟିରେ ଭାଷା ନାହିଁ । ଆଗରେ ଯାହା ଯାହା ଘଟୁଛି, ପୁଣି ତା ଚାରିକରେ ଯାହା ଯାହା ଘଟୁଛି, ସେହି ଘଟନାର ଶବ୍ଦକୁ କାନ ଡେରିଥାଏ ।

ଜଣେ ପଦାତିକ ସୈନିକ ନିଆଁ ପାଖକୁ ଚାଲିଆସି ଚେକାମାଡ଼ି ବସିପଡ଼ିଲା । ନିଆଁଆଡ଼କୁ ହାତ ବଢ଼େଇଦେଇ ମୁହଁ ବୁଲେଇଦେଇ କହିଲା—

' ଏଠି ନିଆଁ ପୁଇଁଲେ ହଜୁରଙ୍କର ଆପତ୍ତି ନାହିଁ ତ ?''

ସେ ଚାଇଁକନା ଭୁଷିନ ଆଡ଼କୁ ଅନାଇଁ ଦେଲା ତା ଚାହାଣୀ ପ୍ରଶ୍ନ ପଚାରୁଥାଏ । କହିଲା ''ହଜୁର୍ ମୁଁ ମୋ ଦଳରୁ ଅଲଗା ହୋଇଯାଇଛି । ସେମାନେ କୁଆଡ଼େ ଗଲେ, ମୁଁ ବା ଆସି କୋଉଠି, କିଛି ଜାଣିପାରୁନାହିଁ । କେଡେ ଭୟାନକ କଥା !''

ସେହି ଲୋକଟି ସଙ୍ଗରେ ପଦାତିକ ବାହିନୀର ଜଣେ ସେନାପତିକ ବି ଥିଲେ । ସେ ବି ନିଆଁ ପୁଇଁବାକୁ ଆସିଥାନ୍ତି । ତାଙ୍କ ମୁହଁରେ ପଟି ବନ୍ଧାହୋଇଥାଏ । ଗୋଟିଏ ତୋପକୁ ଟିକିଏ ଘୁଞ୍ଚାଇଦେଇ ଜାଗା କରିଦେବାକୁ ସେ ତୁଷିନ୍‌କୁ ଅନୁରୋଧ କଲେ, କାରଣ ମାଲ୍ ବୋଝେଇ ଗାଡ଼ିଟିଏ ଯିବ ବୋଲି ବାଟ ଦେବା ଦରକାର ପଡ଼ୁଥାଏ । ତାଙ୍କ ପଛେ ପଛେ ଦି’ ଜଣ ସୈନିକ ଦୌଡ଼ି ଦୌଡ଼ି ଆସି ପହଞ୍ଚିଗଲେ । ସେ ଦିହେଁ ବଡ଼ ପାଟିରେ ଗାଳି ଦିଆଦେଇ ହୋଇ ମାଡ଼ ମରାମରି ହେଉଥାନ୍ତି । ପଟେ ଜୋତାକୁ ସେ ତା ହାତରୁ ସେ ୟା ହାତରୁ, ଭିଡ଼ା ଓଟରା କରୁଥାଏ । ଜଣେ ପାଟିକଲା “ବାଃ ! କୁହାଳିଆଟାଏ ତ ! ବାଟରେ ପଡ଼ିଥିଲା ଗୋଟେଇ ନେଲୁ ପରା !” ସେଇଠୁ ଆଉ ଜଣେ ସୈନିକ ଆସି ପହଞ୍ଚିଲା । ସରୁଆ ମଣିଷ, ଶେଥା, ନିରକ୍ତିଆ, ହତାଶ ଦିଶୁଥାଏ । ତୁଷିନ୍‌ର ଦଳଠୁଁ ପିଇବାକୁ ମନ୍ଦାଏ ପାଣି ମାଗି କହିଲା—

“କହିଲେ ଭଲ, ବୁଲା କୁକୁରଙ୍କୁ ଗୁଳିକରି ମାଇଲେ ଯେମିତି ମରିପଡ଼ୁଥାନ୍ତି କି ଅପରାଧରୁ ମଣିଷ ସେମିତି ମରୁଛନ୍ତି ?” ସେ ଲୋକଟିକୁ ପାଣି ଆଣିଦେବାକୁ ତୁଷିନ୍ ତା ଦଳର ସୈନିକମାନଙ୍କୁ ବରଗିଦେଲା ।

ତା ଉତ୍ତାରୁ ନିଆଁ ଟିକିଏ ନେଇଯିବ ବୋଲି ଆଉ ଗୋଟିଏ ସୈନିକ ଆସି ପହଞ୍ଚିଲା । ଭାରି ମେଳାପୀ ମଣିଷଟିଏ । ଉତ୍ତନିଆଁ ଥିବା ଜଳେଣୀ କାଠଖଣ୍ଡେ ନେଇ ଅନ୍ଧାରରେ ଚାଲିଯାଉଯାଉ କହି ଦେଇଗଲା—

“ତେମେ ନିଆଁ କରିଥିଲ ବୋଲି ସେଥିରୁ ହେଲେ କିଛି ପଦାତିକ ସୈନ୍ୟଙ୍କ କାମରେ ଆସିଲା ତ । ନୁହେଁ ? ସୈନ୍ୟବାହିନୀ ଅଟକି ଯାଇ ଗୁଡ଼ଉଣିକଲାବୋଲି କେଡ଼େ ଭଲହେଲା । ନିଆଁ ଟିକିଏ ଦେଲ । ବହୁତ ଧନ୍ୟବାଦ । ଆମେ ଧାରୁଆ ହେବୁନାହିଁ ଯେ, ସୁଧ ମୂଳ ମିଶେଇ ଶୁଝେଇଦେବୁ ।”

ଆଉ ଚାରିଜଣ ସୈନିକ ଗଲେ । ଗୋଟାଏ ଓଭରକୋଟ୍‌ରେ ଗୁରେଇ ସେମାନେ କ’ଣ କିଛି ଓଜନ ଜିନିଷ ବୋହି ନେଉଥିଲେ, ଜଣେ ଝୁଣ୍ଟି ପଡ଼ିଲା । ଆଉ ଜଣେ କହିଲା—

"ଆଚ୍ଛା କଥା ! ସେତ ମଲାଣି, ମୁର୍ଦ୍ଦାରଟାକୁ ବୋହିନେଇ କିଏ ହେବ ?"

"ଚାଲ ଚାଲ !" କହିଦେଇ ସେମାନେ ତାଙ୍କ ବୋଝ ବୋହି ଅନ୍ଧାର ଭିତରେ କୁଆଡ଼େ ଉଭେଇଗଲେ ।

ଭୁଷିନ୍ ରୋଷ୍ଟଭ୍ କାନ ପାଖେ ଫୁସ୍ ଫୁସ୍ ହେଲା, "ବହୁତ କଷ୍ଟ ହେଉଛି, ନା ?"

"ହଁ ଘରେ କାଟୁଛି ।"

ଜଣେ ବନ୍ଧୁକ୍ଧାରୀ ସୈନିକ ଭୁଷିନ୍ ପାଖକୁ ଦୌଡ଼ି ଦୌଡ଼ି ଆସିଲା । କହିଲା, 'ହଜୁରଙ୍କୁ ସେନାପତି ଡକେଇଛନ୍ତି । ସେ ଏଇ କତିରେ ଅଛନ୍ତି, ଗୋଟିଏ କୁଡ଼ିଆ ଭିତରେ ।"

"ହଉ ହଉ, ତୁଣ୍ଡକାକେ ଆସି ପହଞ୍ଚୁଛି ।" କହି ଦେଇ ଭୁଷିନ୍ ଉଠିପଡ଼ିଲା, ନିଆଁ ପାଖକୁ ଗଲା । କୋଟ୍‌ରେ ବୋତାମ ବନ୍ଦକଲା । ସଳଖହୋଇ ଠିଆ ଚାଲି ଚାଲି ଚାଲିକା ସେ ଗଲା ।

ତୋପ-ଚାଳକ ଦଳର ସୈନିକମାନେ ଯେଉଁଠି ନିଆଁ ଜାଳିଥାନ୍ତି, ସେଠୁ ଅଳ୍ପଦୂରରେ ଗୋଟିଏ କୁଡ଼ିଆ ଭିତରେ ପ୍ରିନ୍‌ସ୍ ବାଗ୍ରାତିଅନ୍ ରହିବେବୋଲି ଜାଗା ହୋଇଥାଏ । ଭୁଷିନ୍ ଗଲାବେଳକୁ ସେ ଖାଇ ବସିଥାନ୍ତି, ତାଙ୍କୁ ବେଢ଼ି କେତେଜଣ ସେନାପତି ବସିଥାନ୍ତି । ପ୍ରିନ୍‌ସ୍ ବାଗ୍ରାତିଅନ ସେମାନଙ୍କ ସଙ୍ଗେ କଥା ଭାଷା ହେଉଥାନ୍ତି । ସେ ଯେଉଁ ବୁଢ଼ା କର୍ଣ୍ଣେଲ୍ ଜଣକ, ଆକାରରେ ବାଙ୍ଗର, ଆଖିଯୋଡ଼ିକ ଅଧା ଅଧା ବୁଜିଲାପରି, ସେ ବି ସେଠି ଥିଲେ, ଖୁବ୍ ଶରଧାରେ ଖଣ୍ଡେ ମେଣ୍ଢା ହାଡ଼ ଚୋବେଉଥାନ୍ତି । ବାଇଶି ବର୍ଷ କାମ କଲେଣି କିନ୍ତୁ ଜୀବନଯାକରେ କେଉଁଠି ମଳି ଧୂଳି ବି ଲାଗିନାହିଁ ଏପରି ଜଣେ ସେନାପତି ବି ଥାନ୍ତି, ଖାଇସାରି ଗିଲାସେ 'ଭଦ୍‌କା' ମଦ ପିଇଦେଇ ସେ ସତେକି ଫୁଲି ଯାଇଥାନ୍ତି ।

ଆଜ୍ଞାପତ୍ରିକାରେ ମୁଦ କରିବାକୁ ସ୍ୱାକ୍ଷର ମୁଦ ଯାହାଙ୍କ ମାର୍ଫତରେ ଥାଏ ସେ ଷ୍ଟାଫ୍ ଅଫିସର ବି ସେଠି ଥାନ୍ତି । ସେଠି ଜେର୍‌କଭ୍ ବି ଥାଏ, ସେ ଥରକୁ ଥର ତରତର ଚାହିଁରେଇ ଚାହିଁରେଇ ସମସ୍ତଙ୍କୁ ଚାହିଁ-ଦେଉଥାଏ । ପ୍ରିନ୍‌ସ୍ ଆନ୍ଦ୍ରୁ ବି ସେଠି ଥିଲେ, ଶୁଖିଲା ଦିଶୁଥିଲେ ।

ଓଠରେ ଓଠ ଚାପ ପଡ଼ିଯାଇଥାଏ, ଜଳୁଆ ମନ୍ଦ ଆଖି ଯେମିତି ହସେ ତାଙ୍କ ଆଖି ସେମିତି ଜକଜକ ଦିଶୁଥାଏ ।

ସେ କୁଡ଼ିଆର ଗୋଟାଏ କଣରେ ଫରାସି ସୈନ୍ୟବାହିନୀର ପତାକା-ଟାଏ ଥୁଆ ହୋଇଥାଏ, ସେଇଟା ରୁଷ ସୈନ୍ୟବାହିନୀର ହାବୁଡ଼େ ପଡ଼ିଯାଇଥିଲା ଯେ, ତାକୁ ସେମାନେ ଛଡ଼ାଇ ଆଣିଥିଲେ । ଯୁଦ୍ଧ ଦେଖିବେ ବୋଲି ଯେଉଁ ଅଡ଼ିଟର ଜଣକ ଆସିଥିଲେ, ଯାହାଙ୍କ ମୁହଁର ଭଙ୍ଗୀ କଅଁଳ, ସେ ସେହି ପତାକା କତିରେ ଠିଆହୋଇଥାନ୍ତି, ଦେଖୁଥାନ୍ତି କେଉଁ ଜିନିଷରେ ସେ ପତାକାଟା ତିଆରି ହୋଇଛି । କିଛି ଜାଣି ପାରୁ-ନାହାନ୍ତି ଏହି ଭଙ୍ଗୀରେ ସେ ମୁଣ୍ଡ ହଲଉଥିଲେ । ଏପରି ବି ସମ୍ଭବ ଯେ ପତାକା ଦେଖିବାକୁ ତାଙ୍କର ବହୁତ ଇଚ୍ଛା । ନହେଲେ, ଏଭଳି ବି ସମ୍ଭବ ଯେ ଅନ୍ୟମାନେ ଖାଇ ବସିଛନ୍ତି ଦେଖି ତାଙ୍କୁ ଭଲ ଲାଗୁ ନଥାଏ କାରଣ ସେଠି ତାଙ୍କୁ ଖାଇବାକୁ ଦେବାକୁ ଜାଗା କରାହୋଇ ନଥିଲା । ଫରାସୀ ପକ୍ଷର ଯେଉଁ କର୍ଣ୍ଣେଲ ଜଣକୁ ବନ୍ଦୀ କରାହୋଇଥିଲା, ଯାହାଙ୍କୁ ଅଶ୍ୱାରୋହୀ ସୈନିକମାନେ ଧରି ପକାଇ ନେଇ ଆସିଥିଲେ ତାଙ୍କୁ ପାଖର ଅନ୍ୟ କୁଡ଼ିଆ ଘରେ ରଖା ହୋଇଥାଏ ଯେ ତାଙ୍କୁ ଦେଖିବାକୁ ରୁଷ ସୈନ୍ୟମାନଙ୍କର ଭିଡ଼ ଭିଡ଼ ହୋଇଥାଏ । ପ୍ରିନ୍ସ୍ ବାଗ୍ରାତିଅନ ନାନା ସୈନିକ ଦଳର ସେନାପତିମାନଙ୍କୁ ଧନ୍ୟବାଦ ଜଣାଉଥାନ୍ତି ଓ ଯୁଦ୍ଧର ଠିକଣକି ଖବର, କ୍ଷତିର ହିସାବ ପଚାରି ପଚାରି ବୁଝୁଥାନ୍ତି । ବ୍ରାଉନାଉ ସହରରେ ପ୍ରିନ୍ସ୍ ବାଗ୍ରାତିଅନ୍ ଯେଉଁ ସେନାପତିଙ୍କ ସେନାକୁ ପରିଦର୍ଶନ କରିଥିଲେ, ସେ ପ୍ରିନ୍ସ୍‌ଙ୍କୁ କହିଲେ ଯେ ଲଢ଼େଇ ଲାଗିଯିବା ମାତ୍ରେ ସେ ଉପତ୍ୟକା ଭିତରୁ ପଛକୁ ହଟି ଆସି ତାଙ୍କ ସୈନିକମାନଙ୍କୁ ଏକାଠି ଠୁଳକଲେ, ସୈନିକମାନେ ସେତେବେଳେ କାଠ ହାଣୁଥାନ୍ତି, ଶତ୍ରୁ ସୈନ୍ୟ ତାଙ୍କ କରିବାଟେ ଗଲାବେଳେ ସେ ଜାଣି ଜାଣି କିଛି କଲେ-ନାହିଁ । ସେଥିପାଇଁ ଯୋଡ଼ିଏ ବ୍ୟାଟାଲିଅନ୍ ନେଇ ଆଗକୁ ମାଡ଼ିଯାଇ ବନ୍ଧୁକ ସଙ୍ଗୀନରେ ଆକ୍ରମଣ କରି ଫରାସି ସୈନ୍ୟଙ୍କୁ ସେ ତଡ଼ିଦେଲେ । କହିଲେ—

"ହଜୁର୍, ଯେମିତି ଦେଖିଲି ଯେ ଆଗରେ ଥିବା ବ୍ୟାଟାଲିଅନଟା ଛତରଭଙ୍ଗ ହୋଇଗଲା, ମୁଁ ସଡ଼କରେ ଠିଆହୋଇ, ଭାବିଲି "ଆଗ ସେ ମାଡ଼ିଯାଉନ୍ତୁ, ଅଇଟ୍ଟା କିଛି କରିବି ନାହିଁ, ସେଥିପାଇଁ ତାଙ୍କ ଉପରକୁ ଗୁଳି ଚଳେଇବ । ସେଇଆ ହିଁ କଲି ।"

ସେନାପତି ଜଣକ ଏଇଆ କରିବେ ବୋଲି ବହୁତ ଆଶା କରିଥିଲେ, କରିପାରି ନଥିଲେ, ତେଣୁ ମନଦୁଃଖ କରୁଥିଲେ । ବର୍ତ୍ତମାନ ସେ ଭାବୁଥାନ୍ତି ଯେ ଯାହା ଭାବିଥିଲେ, ସେଇଆ ହେଲା । ସତେ ତ ! ଏ ଯେଉଁ ହାଉଯାଉ । ସ୍ୱା ଭିତରେ କ'ଣ ହେଲା କ'ଣ ନହେଲା କାହାକୁ ଜଣା ? ଯାହା ସେ ଭାବିଥିଲେ ସେଇଆ ନ ହୋଇଥିବ ବା କାହିଁକି ? ସେଥିରେ ଅସମ୍ଭବ କଣ ?

ଡୋଲୋହଭ୍ କୁତୁଜଭ୍‌ଙ୍କୁ ଯାହା କହିଥିଲା, ସେ କଥା ତାଙ୍କର ମନେ ପଡ଼ିଗଲା । ଡୋଲୋହଭର ପଦ ନ୍ୟୂନ କରିଦେବା ପରେ ତା' ସଙ୍ଗେ ତାଙ୍କର ସାକ୍ଷାତ୍କାରବେଳେ ଯାହାଯାହା କଥାଭାଷା ହୋଇଥିଲା, ସେ କଥା ବି ତାଙ୍କର ମନେପଡ଼ିଗଲା । ସେଇଥିପାଇଁ ସେ କହିଗଲେ,

"ଆଉ ଗୋଟିଏ କଥା ମୁଁ କହିବା ଉଚିତ ହଜୁର୍ । ଡୋଲୋହଭ୍ ବୋଲି ଯେଉଁ କର୍ମଚାରୀଙ୍କୁ ପଦନ୍ୟୂନ କରି ସାନ ପାହ୍ୟା ଦିଆହୋଇଥିଲା ମୁଁ ନିଜେ ଦେଖିଛି ଯେ ସେ ଜଣେ ଫରାସୀ କର୍ମଚାରୀକୁ ବନ୍ଦୀକଲେ, ସେ ଖୁବ ବାହାଦୁରୀ ଦେଖାଇ କାମ କରିଛନ୍ତି ହଜୁର୍, ମୁଁ ଆଖିରେ ଦେଖିଛି ।"

ଜେରକଭ୍ ଗ୍ରିଆଡ଼କୁ ତରକି ତରକି ଅନାଇଁଦେଇ କହିଲା, "ପାଉଲୋଗ୍ରାଡ୍ ଅଶ୍ୱାରୋହୀ ସୈନ୍ୟଦଳ ଏଇ ଜାଗାରେ ଯେତେବେଳେ ଶତ୍ରୁପକ୍ଷକୁ ଆକ୍ରମଣ କଲେ, ମୁଁ ପରା ଆଖିରେ ଦେଖିଛି ଶତ୍ରୁପକ୍ଷର ଯୋଡ଼ାଏ ଗ୍ୟରକଣିଆ ବ୍ୟୂହକୁ ସେମାନେ ଛିନଭିନ କରି ଭାଙ୍ଗିଦେଲେ ।" ଜେର୍‌କଭ୍ ସେ ଦିନଯାକ ଅଶ୍ୱାରୋହୀ ସୈନିକଙ୍କୁ ଆଦୌ ଦେଖି ନଥାଏ । ଜଣେ ପଦାତିକ ସୈନିକଠାରୁ ସେ କାହାଣୀଟା ଶୁଣିଥାଏ । ସେ କଥା କହିବ ବୋଲି ପାଟି ଖୋଲିଲେ ସମସ୍ତେ ମୁରୁକି ହସନ୍ତି । ସମସ୍ତେ ଜାଣନ୍ତି ଯେ ସେ ହସେଇଲାଭଳିଆ କିଛି କହିବ । ତେଣୁ ସେ କଥା କହିବାକୁ ଆରମ୍ଭ କରୁ କରୁ ସେମାନେ ମୁରୁକି ମୁରୁକି ହସିଲେ, କିନ୍ତୁ ଯେମିତି ଜାଣିଲେ ଯେ ସେ ଯାହା କହୁଛି ଏଥିରେ ହସିବ କଥା ନାହିଁ, ତାଙ୍କ ସେନାବାହିନୀର ଗୌରବର କଥାହିଁ ଅଛି, ସେମିତି ସମସ୍ତିଙ୍କ ମୁହଁ ଗମ୍ଭୀର ହୋଇଗଲା, ଯଦିଚ ତାଙ୍କ ଭିତରୁ ବହୁତ ଲୋକ ଜାଣିଥିଲେ ଯେ ସେ ଭିତ୍ତିହୀନ କଞ୍ଚା ମିଛଗୁଡ଼ାଏ ଗପୁଛି ।

ପ୍ରିନ୍ସ୍ ବାଗ୍ରାଷନ ବୁଢ଼ା କର୍ଣ୍ଣେଲଙ୍କ ଆଡ଼କୁ ମୁହଁ ବୁଲେଇ କହିଲେ---

"ଆପଣମାନଙ୍କୁ ସମସ୍ତିଙ୍କୁ ମୋର ଧନ୍ୟବାଦ, ପଦାତିକ, ଅଶ୍ୱାରୋହୀ, ତୋପମାରୁ ଏହିପରି ସୈନ୍ୟବାହିନୀର ସବୁ ବିଭାଗର ଲୋକେ ଖୁବ ସାହସ ଓ ବୀରତ୍ୱ ଦେଖାଇ କାମ କରିଛନ୍ତି ।" କାହାକୁ ଖୋଜିଲା ଖୋଜିଲା ଭଳି ଏଣିକି ତେଣିକି ଅନାଇଁ ଅନାଇଁ ପଚାରିଲା, "ଲଢ଼େଇ ଜାଗାର ମଝିରେ ଯୋଡ଼ାଏ ତୋପ ଆମର ଛାଡ଼ିଦେଇ ଆସିଲୁ ଆମେ, କି କାରଣରୁ ?" (ବାଁ କଡ଼ରେ ଯେତେ ତୋପ ଥିଲା, ପ୍ରିନ୍ସ୍ ବାଗ୍ରାଷନ ତା କଥା ଆଦୌ ପଚାରିଲେ ନାହିଁ । ସେ ଜାଣିଥିଲେ ଯେ ଲଢ଼େଇ ଆରମ୍ଭ ହେଉ ହେଉ ରୁଷପକ୍ଷ ସେ ତୋପଗୁଡ଼ିକୁ ଛାଡ଼ିଦେଇ ଚାଲିଯାଇଥିଲେ ।) ଷ୍ଟାଫ୍ ଅଫିସରଙ୍କୁ ଅନାଇଁ ଦେଇ ପଚାରିଲେ, "ମୋର ମନେ ପଡ଼ୁଛି ମୁଁ ତ ଆପଣଙ୍କୁ ସେଠିକି ପଠାଇଥିଲି ।"

ଷ୍ଟାଫ୍ ଅଫିସର କହିଲେ "ଗୋଟାଏତ ମାଡ଼ ବାଜି ବିଗିଡ଼ି ଯାଇଥିଲା । ଆରଟା କାହିଁକି ରହିଗଲା ମୁଁ କହିପାରିବି ନାହିଁ । ଯୁଦ୍ଧ ଚାଲିଥିବାଯାକେ ସବୁବେଳେ ମୁଁ ତ ସେଇଠି ଥିଲି, ଆଦେଶ ଦେଉଥାଏଁ, ଆଉ ମୁଁ ସେଠୁ ଆସୁ ଆସୁତ..." ତାପରେ ବିନୟ ସହକାରେ କହିଲେ "ଲଢ଼େଇଟା ଅବଶ୍ୟ ଖୁବ୍ ଗରମାଗରମ୍ ହୋଇଥିଲାଯେ—"

ଜଣେ କିଏ କହିଲେ ଯେ ତୋପମାରୁ ଦଳର ଦଳପତି ଟୁଷିନ୍ ତ ସେହି ପାଖରେ ଠାଏ ରହିଛନ୍ତି ଓ ତାଙ୍କୁ ଡକେଇ ପଠାହୋଇଛି ।

ପ୍ରିନ୍ସ୍ ବାଗ୍ରାଷଅନ୍ ପ୍ରିନ୍ସ ଆନ୍ଦ୍ରେଙ୍କୁ କହିଲେ, "ସତେତ ! ଆପଣ ତ ସେ ଜାଗାକୁ ଯାଇଥିଲେ ।" ଷ୍ଟାଫ୍ ଅଫିସର ପ୍ରିନ୍ସ ଆନ୍ଦ୍ରେଙ୍କ ଆଡ଼କୁ ଅନାଇ ମିଠା ହସଟିଏ ହସିଦେଇ କହିଲେ, "ହଁ, ନିଶ୍ଚୟ, ଆମେ ଦୁହେଁ ପରା କଡ଼ିକି କଡ଼ି ହୋଇ ଘୋଡ଼ା ଛୁଟେଇ ଚାଲିଗଲୁ ।"

ତାଙ୍କ କଥାରେ ବାଧାଦେଇ ଅଧୈର୍ଯ୍ୟ ସ୍ୱରରେ ପ୍ରିନ୍ସ ଆନ୍ଦ୍ରେ କହିପକାଇଲେ, "ନାହିଁତ, କାହିଁ ଆପଣଙ୍କୁ ସେଠି ଦେଖିବା ସୌଭାଗ୍ୟ ତ ମୋର ଘଟିନଥିଲା !"

ସମସ୍ତେ ଚୁପ୍ ହୋଇଗଲେ ।

ଦୁଆର ମୁହଁରେ ଲୁଷିନ୍‌ର ଚେହେରା ଦଶିଲା । ସେନାପତିମାନଙ୍କ ପିଠିଆଡ଼େ ଡରି ଡରିକା ସେ ଗଳାଲା ପରି ଆସିଯାଇଥାଏ । ମଣିଷ ଖୁନ୍ଦା ଖୁନ୍ଦ ବଖରାଟା ଭିତରେ ସେନାପତିମାନଙ୍କ କରପଟେ ଆସି ପହଞ୍ଚିଥାଏ । ଉପରିସ୍ଥ ହାକିମମାନଙ୍କ ମୁହାଁମୁହିଁ ପଡ଼ିଗଲେ ସେ ସବୁଦିନେ ଆବା କାବା ହୋଇଯାଏ । ତହିଁରେ ପୁଣି ସେ ପତାକାଟାକୁ ଦେଖି ନପାରି ଝୁଣ୍ଟି ପଡ଼ିବାରୁ କେତେଜଣ ବଡ଼ ପାହ୍ୱାଆ କର୍ମଚାରୀ ଠୋ ଠା ହସିଥିଲେ ।

ପ୍ରିନ୍‌ସ୍ ବାଗ୍ରାତିଅନ୍ ଭ୍ରୂକୁଟୀ କଲେ । ଲୁଷିନ୍‌କୁ ଦେଖି ବିରକ୍ତ ହେଲେ ତା ନୁହେଁ ଯେ ଯେଉଁ କର୍ମଚାରୀମାନେ ହସୁଥିଲେ ତାଙ୍କରି ଉପରେ ବିରକ୍ତ ହେଲେ । ଜେର୍‌କଭ୍‌ର ହସ ଶବ୍ଦ ସବୁଠୁ ବେଶି ଚଡ଼ାପାଟିରେ ଶୁଭୁଥାଏ । ବାଗ୍ରାତିଅନ୍ ପଚାରିଲେ—

"କ'ଣ ଏମିତି ହେଲା ଯେ ଆମର ଗୋଟାଏ ତୋପ ଛାଡ଼ି ଦେଇ ଆସିବାକୁ ପଡ଼ିଲା ?"

ଏତେବେଳକେ ଏଇ ବିରକ୍ତ ଦିଶୁଥିବା ସେନାପତିଙ୍କ ଆଗରେ ଠିଆ ହୋଇ ପ୍ରଥମ ଥରକ ଲୁଷିନ୍ ଅନୁଭବ କଲା ଯେ ଯୋଡ଼ାଏ ତୋପ ତାକୁ ଯାହା ଛାଡ଼ି ଦେଇ ଆସିବାକୁ ପଡ଼ିଲା ସେଇଟା ଗୋଟାଏ ଅପରାଧ, ଅତି ଗୁରୁତର ଅପରାଧ, ସେଇଟା ଗୋଟାଏ ଅତି ଲଜ୍ଜାକର କାର୍ଯ୍ୟ, ଯୁଆଡ଼ୁଁ ଭଲ ହୋଇଥାନ୍ତା ସେ ମରିଥିଲେ । ଯୁ ଆଗରୁ ସେ ଏଭଳି ଉତ୍ତେଜିତ ଅବସ୍ଥାରେ ଥିଲା ଯେ ଏ ଭଳି ଭାବିବାକୁ ଯୁ ପୂର୍ବରୁ ତାକୁ ବେଳ ବି ମିଳିନଥିଲା । ଅଫିସରଗୁଡ଼ାକଙ୍କ ହସ ତାକୁ ଆହୁରି ବିବ୍ରତ କରି ଦେଇଥିଲା । ସେ ବାଗ୍ରାତିଅନଙ୍କ ଆଗରେ ଠିଆ ହୋଇଥାଏ, ତାର ତଳ ପାଟି ଥରୁଥାଏ, ସେ କଥା କହି ପାରୁନଥାଏ ।

"ମତେ ଜଣାନାହିଁ···ହଜୁର୍···ମୋ କତିରେ ଲୋକ ନ ଥିଲେ ହଜୁର୍ ।"

"ଯେଉଁ ବ୍ୟାଟାଲିଅନ୍‌ଗୁଡ଼ାକ ଆପଣଙ୍କ ତୋପ ଘାଟିକୁ ଜଗିରହି ରକ୍ଷା କରିଥାଆନ୍ତି, ଆପଣ ତ ସେ ସବୁ ବ୍ୟାଟାଲିଅନ୍‌ରୁ ମଣିଷ ନେଇ ପାରିଥାନ୍ତେ ।"

କୌଣସି ବ୍ୟାଟାଲିଅନ୍ ଯେ ତୋପ ଘାଟିକୁ ଜଗି ନଥିଲେ ଏ ସତ କଥା, କିନ୍ତୁ ଲୁଷିନ୍ ସେ କଥାତ କହିଲାନି ନାହିଁ । କହିଦେଲେ ଆଉ

ଜଣେ ଅଫିସର୍ ମୁଣ୍ଡରେ ବିପଦ ପଡ଼ିଯିବ ଏହି ଆଶଙ୍କାରେ ସେ ତୁନି ହେଲା । ପଦେ ମାତି ନ ପାରି ହୋଇ ସେ ବାଗ୍ରାଟିଅନଙ୍କ ମୁହଁକୁ ଅନାଇଁ ଠିଆ-ହୋଇଥାଏ, ମୁହଁରେ ସେହି ଭଙ୍ଗୀ ଯେପରି ମାଷ୍ଟର ଆଗରେ ପିଲାଟିଏ ଠିଆହୋଇଛି, ମାଷ୍ଟର କ'ଣ ପ୍ରଶ୍ନ ପଚାରୁଛି, ପିଲାକୁ ଆସୁନାହିଁ, ମୁଣ୍ଡ ଗୋଳମାଳ ହୋଇଯାଉଛି ।

ତୁନିଚାପ ବେଳ ଅସ୍ୱାଭାବିକ ଭାବେ ଲମ୍ବି ଗଲା । ରୁକ୍ଷ କଠୋର ହୋଇ କିଛି କରିବାକୁ ପ୍ରିନ୍ସ୍ ବାଗ୍ରାଟିଅନଙ୍କର ଇଚ୍ଛା ନଥାଏ, ତାଙ୍କର କିଛି କରିବାକୁ ନଥାଏ । ଆଉ କିଛି କେହି କହିବାକୁ ସାହସ କରୁ-ନଥାନ୍ତି । ପ୍ରିନ୍ସ୍ ଆନ୍ଦ୍ରେ ଭ୍ରୂଲତା ଟେକିବା ସହ ତୁଷିନ୍ ମୁହଁକୁ ଅନାଇ କରିଥାନ୍ତି ଓ ତାଙ୍କ ଆଙ୍ଗୁଠି ଥରୁଥାଏ, ସେ ବିଚଳିତ ହୋଇପଡ଼ିଥାନ୍ତି ।

ହଠାତ୍ ସେହି ତୁନିଚାପ ଭଙ୍ଗ ଦେଇ ପ୍ରିନ୍ସ୍ ଆନ୍ଦ୍ରେ କହିଲେ, 'ହଜୁର, ମତେ ଆପଣ କ୍ୟାପଟେନ ତୁଷିନଙ୍କ ତୋପଘାଟିକୁ ପଠେଇଥିଲେ । ମୁଁ ପହଞ୍ଚି ଦେଖିଲି ଯେ ତାଙ୍କ ଦଳର ତିନିଭାଗରୁ ଦୁ'ଭାଗ ମଣିଷ, ଦୁ'ଭାଗ ଘୋଡ଼ା ମରିଯାଇଛନ୍ତି । ଯୋଡ଼ାଏ ତୋପ ମାଡ଼ ବାଜି ଅଖଣ୍ଡ ହୋଇ ପଡ଼ିଛି । ତୋପ ଘାଟିକୁ ରକ୍ଷାକରିବାକୁ କିଡରେ କୌଣସି ସେନାଦଳ ନାହାନ୍ତି ।''

ପ୍ରିନ୍ସ୍ ବାଗ୍ରାଟିଅନ୍ ଓ ତୁଷିନ୍ ଉଭୟେ ସମାନ ଆଗ୍ରହରେ ପ୍ରିନ୍ସ୍ ଆନ୍ଦ୍ରେଙ୍କ ମୁହଁକୁ ଚାହିଁଥାନ୍ତି, ପ୍ରିନ୍ସ୍ ଆନ୍ଦ୍ରେ ହୃଦୟର ଆବେଗକୁ ଦାବି ରଖି କହିଯାଉଥାନ୍ତି,

''ହଜୁରଙ୍କ ଅନୁମତି ହେଲେ ମୁଁ ମୁକ୍ତକଣ୍ଠରେ ମୋ ମତ ଓ ମୋ ପ୍ରଶଂସା ଜଣାଇଁ କହିବି ଯେ ଆଜିକା ବିଜୟ ପାଇଁ ଆମେ ସମସ୍ତେ ତୁଷିନଙ୍କର ସେହି ତୋପ ଘାଟିଟି ପାଖରେ ଓ କ୍ୟାପ୍ଟେନ୍ ତୁଷିନ୍ ଓ ତାଙ୍କ ସୈନ୍ୟଦଳର ବୀରତ୍ୱ ପାଖରେ ଯେଉଁ ପରିମାଣରେ ଋଣୀ, ଆଉ କାହାରି ପାଖରେ ସେତେ ଋଣୀ ନୋହୁଁ ।'' କହିଦେଇ ଉଠିପଡ଼ି ଟେବୁଲ ପାଖରୁ ସେ ଦୂରକୁ ଚାଲିଗଲେ, ଉତ୍ତରକୁ ଅପେକ୍ଷା କଲେନାହିଁ ।

ପ୍ରିନ୍ସ୍ ବାଗ୍ରାଟିଅନ୍ ତୁଷିନ ମୁହଁକୁ ଚାହିଁଲେ । ପ୍ରିନସ୍ ଆନ୍ଦ୍ରେଙ୍କ ଆଶୁ ମତରେ ଅବିଶ୍ୱାସ କରିବାକୁ ତାଙ୍କର ଇଚ୍ଛା ହେଉନଥାଏ, କି ସେଥିରେ ସେ ସମ୍ପୂର୍ଣ୍ଣ ବିଶ୍ୱାସ ବି କରିପାରୁ ନଥାନ୍ତି । ସେ ମୁଣ୍ଡକୁ ଟେକିକୁ

ଯୋଡ ତୁଷିନ୍‌କୁ ଯିବାକୁ କହିଲେ । ପ୍ରିନ୍‌ସ୍ ଆନ୍ଦ୍ରେ ତାଙ୍କ ପଛେ ପଛେ ଗଲେ ।

ତୁଷିନ୍ ତାଙ୍କୁ କହିଲା "ଆଜି ଯାହା ଆପଣ ମୋର କଲେ ! କେଡ଼େ ବିପଦରୁ ରକ୍ଷାକଲେ ।"

ପ୍ରିନ୍‌ସ୍ ଆନ୍ଦ୍ରେ ତୁଷିନ୍ ମୁହଁକୁ ଅନାଇଁଲେ । ପଦେ ପାଟି ନ ଫିଟାଇ ତୁନି ହୋଇ ଚାଲିଗଲେ । ତାଙ୍କୁ ଉଦାସ ଓ ତିକ୍ତ ଲାଗୁଥାଏ । ତାଙ୍କୁ ଲାଗୁଥାଏ—କି ଅଦ୍ଭୁତ କି ଉଦ୍ଭଟ ଏସବୁ ! ସେ ତା ଭାବିଥିଲେ ଆଉ ହେଉ ହେଲା କ'ଣ !

ରୋଷ୍ଟଭ୍‌ର ଆଖି ଆଗରେ ଛାଇପରି ରୂପ ଚାଲିଯାଉଥାନ୍ତି । ସେହି ଆଡ଼କୁ ଆଖି ଡେରି ସେ ଭାବୁଥାଏ; "ଏମାନେ ସବୁ କିଏ ? କୁଆଡ଼େ ଏଠିକି ଆଇଲେ ? କେବେ ହେଉ ଶେଷ ହେବ ?"

ତା ହାତର ଯନ୍ତ୍ରଣା ଆହୁରି ବଢ଼ିଯାଉଥାଏ, ପୁଣି ତହିଁରେ ତା ଉପରେ ନିଦ ମାଡ଼ି ବସୁଥାଏ । ଆଖି ଆଗରେ ନାଲି ନାଲି ଗୋଲ ଗୋଲ ହୋଇ ଗୁଡ଼ାଏ, କ'ଣ ସେ ଗୁଡ଼ାକ ଡେଉଁଛି । ଯାହା ଯାହା କଥାଭାଷା ଶୁଭୁଛି, ଯେଉଁ ମୁହଁ ଗୁଡ଼ାକ ଦିଶୁଛି, ଯେମିତି ନିଗୁଛିଆ ନିଗୁଛିଆ ଲାଗୁଛି ସବୁ ଅନୁଭୂତି ଏକାଠି ମିଶିଯାଉଛି, ଆଉ ତହିଁରେ ତା ଯନ୍ତ୍ରଣା ବଢ଼ି ବଢ଼ି ଯାଉଛି । ଆହତ ହୋଇ କ୍ଷତବିକ୍ଷତ ହୋଇଥାନ୍ତୁ କି ଅକ୍ଷତ ରହିଥାନ୍ତୁ, ଯେଉଁସୈନିକଗୁଡ଼ାକ ତା ଆଖିରେ ପଡ଼ୁଛନ୍ତି,—ତାକୁ ଲାଗୁଛି ସେମାନେ ସବୁ ତାରି ଉପରେ ଅଣ୍ଡାଡ଼ିହୋଇ ପଡ଼ୁଛନ୍ତି, ତାକୁ ଚିପି ଚୁପି ଗୁଣ୍ଡ ଗୁଣ୍ଡ କରି ପକାଉଛନ୍ତି, ତାର ଯେଉଁ ବାହୁରେ ଓ କାନ୍ଧରେ ଚୋଟ ବାଜିଛି, ସେଠିକା ଶିରାପ୍ରଶିରାଗୁଡ଼ାକୁ, ସ୍ନାୟୁଗୁଡ଼ାକୁ ଏହିମାନେହିଁ ମୋଡ଼ି ମକଚି ପକାଉଛନ୍ତି, ତା ମାଂସରେ ନିଆଁ ଲଗାଉଛନ୍ତି ।

ଢୁଳୁକାଏ କେତେବେଳେ ଟିକିଏ ଛାଇ ନିଦରେ ସେ ଗାଲେଇ ପଡ଼ିଲା, କିନ୍ତୁ ତାହାରି ଭିତରେ ସେ ନାନା ସ୍ୱପ୍ନ ଦେଖିଲା, ଦେଖିଲା ତା ମା'କୁ, ମା'ର ବଡ଼ ହାତ ପାପୁଲିକି ଧୋବ ଫରଫର ଦିଶୁଥାଏ, ଦେଖିଲା ସୋନିଆର ପାତଳ କାନ୍ଧକୁ, ନାତାଶାର ଆଖିଯୋଡ଼ିକୁ ଓ ହସକୁରା ମୁହଁକୁ । ଡେନିସଭ୍‌କୁ ଦେଖିଲା, ତା ହସକୁ ହସକୁ ବି ।

ଆଖି ଖୋଲି ଦେଲା । ଉପରକୁ ଅନେଇଁଲା । ନିଆଁ ଧାସର ଅଳ୍ପ କେତେହାତ ଉପରେ କଳା ଅନ୍ଧାରର ବସ୍ତ୍ରଟି ଟାଙ୍ଗି ହୋଇ ଝୁଲୁଛି ।

ସରୁ ସରୁ କାଚପରି ଗୁଣ୍ଡା ବରଫ ଝଡ଼ୁଛି । ଆଲୁଅରେ ଦିଶୁଛି ଚଡ଼େଇପରି ପରି ଫଡ଼ ଫଡ଼ ହୋଇ ଦଳ ଦଳ ଝଡ଼ୁଛି । ତୁଷିନ୍ ଫେରିନାହିଁ । ଡାକ୍ତର ଆସିନାହାନ୍ତି । ସେ ଏକୁଟିଆ । ପାଖରେ ଜଣେ ସୈନିକ, ଅଣ୍ଟା ଉପରକୁ ଲୁଗାପଟା ଓହ୍ଲେଇ ଦେଇ ଫୁଙ୍ଗା ଦେହରେ ନିଆଁ ଆରପାଖେ ବସି ସେକ ହେଉଛି, ତା ଦେହଟା ସରୁଆ, ଚମ ହଳଦିଆ ।

"ମୋ ମଲା ଜୀଇଲା କାହାରି ମନରେ ନାହିଁ" ରୋସ୍ତଭ୍ ଭାବୁଥାଏ "ମତେ ସାହା ଭରସା ହେବାକୁ କେହି ନାହିଁ, ମୋ ଦୁଃଖରେ ଦୁଃଖୀ ହେବାକୁ କେହି ନାହିଁ । ମୁଁ ବି ଥିଲି ଘରେ, ଦେହରେ କେତେ ଜୋର୍ ଥିଲା । କେଡ଼େ ଖୁସି ଥିଲି, କେତେ ମତେ ସମସ୍ତେ ଭଲ ପାଉଥିଲେ !"

ସେ ଦୀର୍ଘନିଃଶ୍ୱାସ ପକାଇଲା, ସଙ୍ଗେ ସଙ୍ଗେ ଅଜାଣତରେ ତା ତୁଣ୍ଡରୁ ଆର୍ତ୍ତନାଦ ବାହାରିଲା ।

ସୈନିକଟି ପଚାରିଲା, "ଭାରି କଷ୍ଟ ହେଉଚି ? ଏଁ ?" ନିଆଁ ଧାସରେ କାମିଜକୁ ଦେଖାଇ ହଲାଉଥାଏ । ରୋସ୍ତଭର ଉତ୍ତରକୁ ଅପେକ୍ଷା ନକରି ଗଦଗଦ ହୋଇ ପୁଣି ସେ କହିଲା—

"ଓଃ ! ଆଜି କେତେ କେତେ ମଣିଷ ଯେ ଠଳ ପଡ଼ିଲେ ! କି ଭୟଙ୍କର !"

ସୈନିକ କଣ କହିଲା, ରୋସ୍ତଭ୍ ଶୁଣିଲା ନାହିଁ । ନିଆଁ ଧାସ ଉପରେ ବରଫର କାଚଗୁଡ଼ାକ ଭଉଁରି ବୁଲୁଥାଏ । ସେଇଆକୁ ଅନାଇଁ ଅନାଇଁ ସେ ରୁଷ ଦେଶରେ ଶୀତ ଋତୁରେ ତା ଘରକଥା ଭାବୁଥାଏ, ଆଲୁଅରେ ଝକ ଝକ ଘର, ଜନ୍ତୁ ଲୋମରେ ତିଆରି ତାର ଉଷୁମ ଶୀତପିନ୍ଧା କୋଟ, ବରଫ ଉପରେ ଖୁବ୍ ଚଞ୍ଚଳ ଚାଲି ଯାଇପାରେ ଏଭଳି ତାର ଯେଉଁ ସ୍ଲେଜ୍ ଗାଡ଼ି, ତାର ସୁନ୍ଦର ସ୍ୱାସ୍ଥ୍ୟ, ଘର ଲୋକଙ୍କର ସମସ୍ତିଙ୍କର ତା ପ୍ରତି ଏତେ ସ୍ନେହ ଶରଧା ।

"ଆଉ ଏଠିକି କ'ଣ ପାଇଁ ମୁଁ ଆସିଲି ତେବେ ?" ଆଶ୍ଚର୍ଯ୍ୟ ହୋଇ ସେ ଭାବିଲା ।

ତହିଁ ଆରଦିନ ଫରାସି ସୈନ୍ୟ ପୁଣି ଆଉଥରେ ଆକ୍ରମଣ କଲେ-ନାହିଁ । ବାଗ୍ରାଚିଅନଙ୍କ ସେନାବାହିନୀରେ ଯେଉଁ ସୈନ୍ୟମାନେ ନ ମରି ରହିଥିଲେ, ସମସ୍ତେ କୁତୁଜଭ୍‌ଙ୍କ ସୈନ୍ୟବାହିନୀରେ ମିଶିଗଲେ ।

ପିଏରେର ଜୀବନ ପୂର୍ବେ ଥିଲା ନଗୁଣିଆ, ଆଉ ଅର୍ଦ୍ଧାଉଳିଆ । ଆଗରୁ ଶୁଣାଗୁଣା ନାହିଁ, ଦେଖିଲାବେଳକୁ ହଠାତ୍ ସେ ହୋଇଗଲା ଧନୀ-କୁବେର, 'କାଉଣ୍ଟ ବେଜୁହଭ୍' ବୋଲି ଯେଉଁ ନାଁ ଡାକ ପଦ, ସେ ପଦ ତାକୁ ମିଳିଗଲା ଓ ତା ସହିତ ସେ କାଉଣ୍ଟଙ୍କର ସମଗ୍ର ସମ୍ପତ୍ତି । ସେଇଠୁ ତାର ଏତେ କାମ ଭିଡ଼ ଲାଗିଗଲା ଓ ଲୋକେ ତାକୁ ଏପରି ଘେରି ରହିଲେ ଯେ ବିଛଣାରେ ଥିବାତକ ଛାଡ଼ୁଦେଲେ, ଆଉ କେତେବେଳେ ହେଲେ ସେ ଏକୁଟିଆ ରହିପାରିଲାନାହିଁ ।

ତାର ଏହି ଯେଉଁ ନୂଆ ବେଳ ପଡ଼ିଲା, ସେତେବେଳେ ତା ଚଳାଚଳ ଭଲମନ୍ଦ ବୁଝାଶୁଝା ଭାର ନେଲେ ପ୍ରିନ୍ସ୍ ଭାସିଲି । କାଉଣ୍ଟ୍ ବେଜୁହଭ୍ ଆଖି ବୁଜିବା ପରେ ପିଏରେକୁ ସେ ଆଉ ତାଙ୍କ ହାତରୁ ଛାଡ଼ିଦେଲେନାହିଁ ।

ତାଙ୍କରି ହାତ ପାଆନ୍ତରେ ମସ୍କୋ ସହରରେ ପିଏରେ ବେଜୁହଭ୍ ନଅରରେ ରହିଥାଏ, ତା ବି ତାଙ୍କରି ଚେଷ୍ଟାରେ ।

ତାଙ୍କରି ଚେଷ୍ଟାରେ ରୁଷ୍ ସମ୍ରାଟଙ୍କ ରାଜପ୍ରାସାଦରେ 'ସମ୍ରାଟଙ୍କ ଗହଣର ଭଦ୍ରବ୍ୟକ୍ତି' ବୋଲି ତାକୁ ନିଯୁକ୍ତିଟିଏ ମିଳିଗଲା, ସେତେବେଳେ ସେ ନିଯୁକ୍ତିର ବହୁତ ସମ୍ମାନ, ଲୋକେ ଭାବୁଥିଲେ, ରାଜ୍ୟର ଶାସନ କାର୍ଯ୍ୟରେ ପରାମର୍ଶଦାତା କାର୍ଯ୍ୟ ଓ ସେ କାର୍ଯ୍ୟ ଉଭୟେ ଏକା ଶ୍ରେଣୀର । ପ୍ରିନ୍ସ ଭାସିଲି ପିଏରେ ସଙ୍ଗେ ଅଳି କଲେ ଯେ ସେ ତାଙ୍କ ସଙ୍ଗରେ ପିଟର୍ସ୍‌ବର୍ଗ୍ ସହରକୁ ଯାଉଥିବ ଓ ଗଲେ ତାଙ୍କରି ଘରେ ରହିବ । ସବୁ ଆଡ଼ୁ ସେ ଚେଷ୍ଟା ଲଗାଇଥାନ୍ତି ଯେମିତି ପିଏରେ ତାଙ୍କ ଝିଅକୁ ବାହା ହେବ । ପଦାକୁ ଚିହ୍ନା ପଡ଼ୁନଥାନ୍ତି । ତାଙ୍କର ଏ ଆଚରଣ ଯେ ଖୁବ୍ ଠିକ୍ ଏ ବିଷୟରେ ତାଙ୍କ ମନରେ ସନ୍ଦେହ ନଥାଏ । ସେ ଯେବେ ଏ ବିଷୟରେ ଆଗରୁ ନିଷ୍ପତ୍ତି କରିଥାନ୍ତେ କି ପୂର୍ବରୁ ଭାବିଚିନ୍ତି ଏଭଳି କରିବେ

ବୋଲି ଯୋଜନା ଗଢ଼ି କାମ କରିଥାନ୍ତେ ତେବେ ବଡ଼ଠୁଁ ସ୍ନେହଯାକେ ସମସ୍ତଙ୍କ ସଙ୍ଗେ ତାଙ୍କର ଯେଉଁ ବ୍ୟବହାର ସେ ଏତେ ସ୍ୱାଭାବିକ ଜଣା ପଡ଼ନ୍ତା ନାହିଁ । ତାଙ୍କ ସ୍ୱଭାବ ଏପରି ଯେ ଯେତେ ଲୋକ ତାଙ୍କଠୁଁ ଅଧିକ ଧନୀ କି ଅଧିକ କ୍ଷମତାଶାଳୀ ସେମାନଙ୍କ ଆଡ଼କୁ କୌଣସି ଅଦୃଶ୍ୟ ଶକ୍ତି ବଳରେ ସେ ଉଟାଣ ହୋଇଯାଆନ୍ତି । ତହିଁରେ ପୁଣି ତାଙ୍କଠୁଁ ଟିକିଏ ବିଚକ୍ଷଣ ଶକ୍ତିଥାଏ ଯେ ସେସବୁ ବଡ଼ ବଡ଼ିଆ ମଣିଷଙ୍କୁ ଠିକ୍ କେତେବେଳେ ତାଙ୍କ ନିଜ କାମରେ ଲଗାଇ ହେବ ତା ତାଙ୍କୁ ଆପେ ଜଣାପଡ଼ିଯାଏ ।

୧୮୦୫ ସାଲ, ଶୀତ ଋତୁ ଆରମ୍ଭ ହୋଇଥାଏ । ସେତିକବେଳେ ପିଏରେ ଖଣ୍ଡିଏ ନିମନ୍ତ୍ରଣ ପତ୍ର ପାଇଲା । ଗୋଲାପି ରଙ୍ଗର କାଗଜ ଆନାପାଲୋଭ୍ନାଙ୍କ ନିମନ୍ତ୍ରଣ ପତ୍ର । ଲେଖାଥିଲା—

"ଆମ ଘରକୁ ଆସିବ । ତାହେଲେ ଏଠି ଦେଖିପାରିବ ପରମା ସୁନ୍ଦରୀ ଏଲେନ୍‌କୁ । ତାକୁ ଯେତେ ଦେଖିଲେ ସୁଦ୍ଧା କାହା ଆଖି କେବେ ଶୋଷ ହୁଏନାହିଁ ।"

କାଗଜ ଖଣ୍ଡ ପଢ଼ିଲାକ୍ଷଣି ପିଏରେର ଗୁଡ଼ ଗୁଡ଼ କଲା । ଲାଗିଲା ହେଲେନ୍ ଓ ସେ ଗୋଟାଏ ଡୋରରେ ବନ୍ଧା, ଗଣ୍ଠି ପଡ଼ିଯାଇଛି, ସେକଥା ଅନ୍ୟମାନଙ୍କ ନଜରରେ ପଡ଼ିଲାଣି । ଭାବୁ ଭାବୁ ଡର ମାଡ଼ିଲା । ଲାଗିଲା ତା ଉପରେ ଗୋଟାଏ ଦାୟିତ୍ୱର ବୋଝ ଲଦି ହୋଇଆସୁଛି, ଅଥଚ ତାକୁ ସେ ତୁଲେଇ ପାରିବନାହିଁ । ସମ୍ଭାବନାଟା ଭାବିଲାବେଳକୁ ଖୁସି ବି ଲାଗିଲା ।

ଆନ୍ନାପାଲୋଭ୍ନା ଯେତେବେଳେ ପିଏରକୁ ପାର୍ଟିକୁ ନେବାକୁ ଆସି ପହଞ୍ଚିଗଲେ, ସେତେବେଳେ ତାଙ୍କ ଅଭ୍ୟର୍ଥନା ସଙ୍ଗରେ ଟିକିଏ ବିଷାଦର କାଳିମା ମିଶିଥାଏ । ପିଏରେର ବାପା କାଉଣ୍ଟ୍ ବେଜୁହୋଭ୍ ମରିବାର ତ ଅଳ୍ପଦିନ ହୋଇଥାଏ । ସେଥିଲାଗି ପିଏରେର ପିତୃ ବିୟୋଗ କ୍ଷତ ପ୍ରତି

ସେ ପ୍ରକାଶ୍ୟରେ ସମବେଦନା ଜଣାଉଥାନ୍ତି । ପିଏରେ ଗ୍ଲଲଗଲାବେଳେ ତା କୋଟ୍ ଉପରେ ଗୋଟିଏ ଆଙ୍ଗୁଠି ଥୋଇ ତାକୁ ଅଟକାଇ ସେ କହିଲେ—

"ଆଜି ସଞ୍ଜରେ ତୁମ ସଙ୍ଗରେ ମୋର ଟିକିଏ କାମ ଅଛି ।" ଏଲେନ୍ ଥାଏ । ତା ଆଡ଼କୁ ଅନାଇ ସେ ମୁରୁକି ମୁରୁକି ହସୁଥାନ୍ତି । ପିଏରେଙ୍କୁ କହିଲେ, "ଦେଖିଲ, ଏଡ଼େ ସୁନ୍ଦର ଝିଅ କେଉଁଠି ଦେଖିଛ ? କି ରୂପ କି ଭଙ୍ଗୀ ଏତେ ଅଳ୍ପ ବୟସର ଝିଅ, କେଡ଼େ ବୁଦ୍ଧି ! କେଡ଼େ ସଂଯମ ! ତା ଭିତରଟା ଠିକ୍ ସେମିତି, ସେଇଥିପାଇଁ ସିନା ! ଯାହାର ସେଡ଼େ କପାଳ ହୋଇଥିବ, ତାକୁ ସିନା ଏଡ଼େ ସୁଲକ୍ଷଣୀ ଭାରିଯା ମିଳିବ, ଯେ ସ୍ୱାମୀକୁ ବାହାହେବ ସେ ଯେଡ଼େ ନିର୍ମାୟା ଲୋକ, ଯେଡ଼େ ଅଙ୍ଗସାଖି ମଣିଷ ହୋଇଥାଉ ସିନା, ହେଲେ, ସ୍ୱାମୀ ବର ବୋଲି ଲୋକେ ତାକୁ ଏଡ଼େ ଖାତିର କରିବେ ଯେ ସମାଜରେ ସେ ଉଚ୍ଚ ଆସନ ପାଇବ । ମୁଁ କ'ଣ ମିଛ କହୁଛି ? ତୁମ ମତ କ'ଣ ସେଇଆ ଜାଣିବାକୁ ମୋ ଇଚ୍ଛା ।"

ଆନାପାଲୋଭନା ପିଏରକୁ ଛାଡ଼ିଦେଲେ ।

ଏଲେନ୍‌ର ଧରଣ ପ୍ରକୃତରେ ଚମତ୍କାର ବୋଲି ପିଏରେ ଆନାପାଲୋଭନ୍ଙ୍କ ମତକୁ ସମର୍ଥନ କଲା । ସେ ସମର୍ଥନରେ ତାର କପଟ ନଥିଲା । ସେ ଯେତେବେଳେ ଏଲେନ୍ କଥା ଭାବେ ସେତେବେଳେ ତାର ମନେ ପଡ଼େ ଏଲେନ୍‌ର ସୁନ୍ଦର ରୂପ । ଆଉ ମନେ ପଡ଼େ, ଯେତେ-ବେଳେ ଆଉ ଦଶଜଣ ଥାନ୍ତି, ଏଲେନ୍ ସମାଜରେ ଚଳପ୍ରଚଳ ହେଉଥାଏ, ସେତେବେଳେ ସେ ପାଟି ଫିଟାଏନାହିଁ । ଗମ୍ଭୀର ହୋଇ ରହିଥାଏ, ଖୁବ୍ ଶାନ୍ତ, ଶାଳୀନ ଦିଶେ । ମୁହଁରେ ଏଭଳି ଠାଣି ଫୁଟାଇବା ଲାଗି ଏଲେନ୍‌ର ଯେଉଁ ଅସାଧାରଣ କ୍ଷମତା ତା ବି ପିଏରେର ମନେ ପଡ଼େ ।

ଏଲେନ୍ ପିଏରେ ଆଡ଼କୁ ଅନାଇଁ ହସିଦେଲା । ସେଥିରେ ନୂଆ କିଛି ନଥିଲା, ଆଉ ଦଶଜଣଙ୍କୁ ଅନାଇଁଲେ ବି ସେ ସେମିତି ଜକ ଜକ ହସ ହସେ । ଏଲେନ୍ ଯେଉଁ ପୋଷାକ ପିନ୍ଧିଥିଲା ତା ବି ତା'ର ସଞ୍ଜବୁଡ଼େ ନିତପିନ୍ଧା ପୋଷାକ, ଯେଉଁ ପୋଷାକ ଆଉ ସବୁ ଝିଅ ପିନ୍ଧନ୍ତି । ଯାହା

ଚଳଣି, ସେ ସେଇଆ, ପିଠିପଟେ ଆଜ ଗ୍ରୀବ ପଟେ ଦୁଇଆଡ଼େ ଖୁବ୍ ତଳକୁ ବୋଲି ସେ କଟା ହୋଇଛି । ପିଏରେର ଆଖି ଖରାପ, ଦୂରକୁ ଦେଖେନାହିଁ । ତାକୁ ଜଣାପଡ଼ୁଥାଏ ଯେମିତି ଏଲେନ୍‌ର ଶରୀରର ଉପର ଆଡ଼ଟା ତା ଆଖି କତରେ ସ୍ଥିର ହୋଇ ଲାଗିଯାଇ ରହିଯାଇଛି । ଲାଗୁଥାଏ ସେ ଦେହ ଶଙ୍ଖମଲମଲ ପଥର ପରି ଧଳା । ତା ବେକ ଆଜ ତା ପିଠି ପିଏରର ଆଖିର ଅତି କତରେ, ତେଣୁ ତାର ଜୀବନ୍ତ ସୌନ୍ଦର୍ଯ୍ୟ ପିଏରେ ବାରିପାରୁଥାଏ । ପୁଣି ସେ ତା ଓଠର ଏତେ ପାଖରେ ଯେ ପିଏରେ ଯଦି ସେଠି ଗେଲ କରିଥାନ୍ତା ସେଥିପାଇଁ ତାକୁ ନଇଁବାକୁ ପଡ଼ନ୍ତାନାହିଁ । ଏଲେନ୍‌ର ଦେହର ଉଷ୍ମ୍ ପିଏରେ ଅନୁଭୂତିରେ ଗ୍ରହଣ କରୁଥାଏ । ଏଲେନ୍ ଯେଉଁ ଅତର ଲଗାଇଥିଲା, ପିଏରେ ତା ବାସ୍ନା ପାଉଥାଏ । ଏଲେନ୍ କର ବଦଳେଇଲେ ତା ଗ୍ରୀବରେ ଭିଡ଼ା ହୋଇଥିବା ଜାମା ଯେତେବେଳେ ଖସ୍ ଖସ ଶୁଭୁଥାଏ, ପିଏରେ ସେ ଶବ୍ଦ ବି ଶୁଣି ପାରୁଥାଏ । ପୋଷାକରେ ଢାଙ୍କୁଣୀ ଏଲେନର ଶଙ୍ଖମଲମଲ ବର୍ଣ୍ଣ ଦେହର ସୌନ୍ଦର୍ଯ୍ୟ ଯେ ପିଏରେ ଅନୁଭବ କରୁଥାଏ ସେତିକି ନୁହେଁ । ଲୁଗାରେ ଢଙ୍କା ହୋଇଥିବା ଗୋଟାପଣେ ନାରୀ ଦେହଟିର ମନୋଲୋଭା ରୂପକୁ ସେ ଅନୁଭବ କଲା । ଥରେ ଯେତେବେଳେ ତାକୁ ପିଏରେ ଏହି ଭାବରେ ଦେଖି ସାରିଲା, ଆଜ ଯେତେବେଳେ ଦେଖିଲେ ବି ଅନ୍ୟ ଭାବରେ ଦେଖି ପାରିଲା ନାହିଁ, ଏହି ଭାବରେହିଁ ଦେଖିଲା । ଯେମିତି ସତେ ଯେମିତି ସେହିପରି, ଯେ ମଣିଷ ଥରେ ଗୋଟାଏ ଭ୍ରାନ୍ତିକୁ ଯେତେବେଳେ ବୁଝିପାରେ ସେତେ-ବେଳେ ଆଉ ଆପଣଠିଁ ସେ ଭ୍ରାନ୍ତି ଉପୁଜାଇ ହୁଏନାହିଁ ।

ଲାଗୁଥାଏ, ଏଲେନ୍ ସତେ ଅବା କହୁଛି,

"ତେବେ ତୁମେ ମୋ ରୂପକୁ ଆଉଛୁ ଚିହ୍ନୁଛ, ନୁହେଁ ? ଯୁଁ ଆଗରୁ ନଜର କରି ନଥିଲ ବୋ । ଯୁଁ ଆଗରୁ ବାରି ପାରି ନଥିଲ ଯେ ମୁଁ ଗୋଟିଏ ନାରୀ । ହଁ ତ, ମୁଁ ଗୋଟିଏ ନାରୀ,—ଯାହାର ହେଲେ ଅଧିକାରିଣୀ ମୁଁ ହୋଇ ପାରିବ, —ତୁମର ବି ।"

ତା ଆଖି କଥା କହୁଥାଏ ।

ଓ ସେହି ମୁହୂର୍ତ୍ତରେ ପିଏରକୁ ଲାଗିଲା,—ଏଲେନ୍ ତା ଭାର୍ଯ୍ୟା ହୋଇପାରନ୍ତି ! ଖାଲି ସମ୍ଭାବନା ନୁହେଁ, ହେବ । ଏଲେନ୍ ତାର ଭାର୍ଯ୍ୟା ହେବ । ନିଶ୍ଚୟ ।

ମୁଣ୍ଡରେ ମୁକୁଟ ନାଇ ଏଲେନ୍ କଡରେ ଠିଆ ହୋଇଥିଲେ ସେ ଯେପରି ଜାଣିଥାନ୍ତା ଯେ ଏଲେନ୍ ତା ଭାର୍ଯ୍ୟା, ଏ ମୁହୂର୍ତ୍ତରେ ତାକୁ ଠିକ୍ ସେମିତି ଲାଗିଲା ।

ହେବ କେମିତି ? କେବେ ? ଏତେ କଥା ସେ ଜାଣେନାହିଁ । ଏଲେନ୍‌କୁ ସେ ବାହାହେଲେ ଭଲ ହେବ କି ନାହିଁ ତା ବି ତାକୁ ଜଣା ନଥିଲା (ଅବଶ୍ୟ, କାହିଁକି ସେମିତି ଲାଗୁଥାଏ କେଜାଣି, ଲାଗୁଥାଏ ଯେ ଭଲ ହେବ ନାହିଁ, କିନ୍ତୁ ଏତିକି ସେ ନିଶ୍ଚିତ ଭାବେ ଜାଣିଥିଲା ଯେ ଏଲେନ୍‌କୁ ସେ ବାହା ହେବ, ଏକଥା ନିଶ୍ଚୟ ଘଟିବ ।

ପିଏରେ ତାର ଦୃଷ୍ଟିକୁ ତଳକୁ କଲା, ପୁଣି ଡୋଳା ଟେକିଲା, ଏଲେନ୍‌କୁ ଅନାଇଁଲା । ସବୁଦିନେ ଯେଉଁ ଦୃଷ୍ଟିରେ ତାକୁ ଚାହେଁ ସେହି ଦୃଷ୍ଟିରେ ତାକୁ ଚାହିଁବାକୁ ଚେଷ୍ଟା କଲା, ଯେ ସେ ରୂପରେ ଅପ୍ସରା, କିନ୍ତୁ ଦୂରରେ ଅଛି, ତାଠୁଁ କାହିଁ କେତେ ଦୂରରେ । କିନ୍ତୁ ଆଜି ସେ ଦୃଷ୍ଟିରେ ତାକୁ ଦେଖି ପାରିଲାନାହିଁ । ଜଗତ୍‌ବ୍ୟାପୀ ଘାସ ଭୂଇଁ ପଦା ଉପରେ କୁହୁଡ଼ି ଘୋଟିଥିବ, ଡେଙ୍ଗା ଘାସ ପତ୍ର ଆଡ଼କୁ ଜଣେ ଅନାଇଁଥିବ, କୁହୁଡ଼ି ଭିତରେ ଘାସ ପତ୍ରଟା ତା ଆଖିକି ଦିଶୁଥିବ ଗୋଟାଏ ବଡ଼ ଗଛ ପରି, କିନ୍ତୁ ଥରେ ସେଇଟା ଘାସ ବୋଲି ଜାଣିଲେ ସେ ଯେମିତି ଗଛ ବୋଲି ତାକୁ ଆଉ ଭାବି ପାରିବ ନାହିଁ, ପିଏରେର ସେଇଆ ହେଲା । ଏଲେନ୍ ଥାଏ ତାର ଖୁବ୍ ପାଖରେ, ଏତେ ପାଖରେ ଯେ ସାନ୍ନିଧ ବିପଜ୍ଜନକ । ତାଠିଁ ଏଲେନ୍‌ର ପ୍ରଭାବ ପଡ଼ିସାରିଥାଏ । ଏଲେନ୍ ଓ ତା ଭିତରେ ଆଗୁଳି ହୋଇ ରହିଥାଏ ଖାଲି ପିଏରେର ନିଜର ମନର ଆଣ୍ଡପଣ ।

ଆନ୍ନା ପାଭ୍ଲୋଭ୍ନାଙ୍କ ପାଟି ଶୁଭିଲା, "ହଉ ହଉ, ତୁମେ ଦୁହେଁ ସେଇ ସାନ ଖୋଲଟିରେ ରହିଥାଅ, ମୁଁ ଆସେ । ହହ୍ମିଁକାହିଁହେଁ ଏଠି ତ ଖୁବ୍ ଆରାମ୍‌ରେ ଅଛ, ନୁହେଁ ?"

ପିଏରେ ତ ଲାଜରେ ରଙ୍ଗା । ଭାବିଲା, କଣ କିଛି ନିନ୍ଦା ମୂଳେଇଲା ଭଳି କାଇଲ୍ କାମ କଲା-କି ? ଚାରିଆଡ଼କୁ ଅନାଇଁଲା । ଲାଗୁଥାଏ, ସେ ତା ମନ ଭିତରେ ଯାହା ଭାବୁଛି ଅନ୍ୟମାନେ ସବୁ ଜଳ ଜଳ କରି ଦେଖିପାରୁଛନ୍ତି, ଜାଣି ପାରୁଛନ୍ତି ।

ପିଏରେ ଘରକୁ ଫେରିଲା ଉତ୍ତାରୁ ବହୁତ ବେଳ ଚାଲିଗଲା, ତା ଆଖିକି ନିଦ ଆସିଲା ନାହିଁ । ଏସବୁ ତାର କ'ଣ ହୋଇଯାଉଛି ? ସେଇଆ ସେ ଭାବୁଥାଏ । କଣ ହେଉଛି ? କାହିଁ କିଛି ନାହିଁ ତ ! ଗୋଟିଏ ନାରୀ । ସେ ତ ତାର ପିଲାହିନୁଁ ଚିହ୍ନା । କେହି ଯଦି କହୁଥିଲା ସେ ସୁନ୍ଦରୀ, ସେ ତ ସେ ବିଷୟରେ କେବେ ଭାବି ନ ଥିଲା, ମୁଣ୍ଡ ଖେଳି ନ କରି କହି ଦେଉଥିଲା "ହଁ ସେ ଦେଖିବାକୁ ଭଲ ।" ଏବେ ସେ ମନେ ମନେ ଗୋଟାଏ ସମ୍ଭାବନାକୁ ସ୍ୱୀକୃତି ଦେଉଛି ଯେ ସେ ନାରୀ ତା ସ୍ତ୍ରୀ ବି ହୋଇପାରେ । ଏତିକି ତ !

"କିନ୍ତୁ ସେଇଟା ତ ମୂର୍ଖ ।" ସେ ମନେ ମନେ ଭାବିଲା, "ମୁଁ ନିଜେ ତ କେତେଥର କହିଛି, ତା ମୁଣ୍ଡରେ କିଛି ନାହିଁ । ତାକୁ ଦେଖିଲେ, ତା କଥା ଭାବିଲେ ମୋ ମନରେ ଏଭଳି ଗୋଟାଏ କାମନା ଉପୁଜେ ଯେ ସେଇଟା କୁତ୍ସିତ କାମନାଟାଏ, ସତେ ଅବା ପାପ କଥା । ଏଭଳି ବି ଶୁଣିଛି ଯେ ନିଜେ ତା ଭାଇ ସେ ଆନାତୋଲେଟା, ସେଇଟା କୁଆଡ଼େ ଏଲ୍‌ନକୁ ପ୍ରେମ କରୁଥିଲା ! ଏଲ୍‌ନ ବି କୁଆଡ଼େ ତା ଭାଇଟାକୁ ପ୍ରେମ କରୁଥିଲା । ଚାରିଆଡ଼େ ହାଟ ବସିଥିଲା । ସେଇଥିପାଇଁତ ଆନାତୋଲେଟାକୁ ଘରୁ ଦୂରକୁ ପଠାଇଦେଲେ । ଭାଇ ତ ସେ । ବାପତ ପ୍ରିନ୍‌ସ୍ ଭାସିଲି...... ଅଡୁଆ ସେଇଆ ।"

ତାର ଭାବନାର ସୁଅ ଏମିତି ଚାଲିଥାଏ, (ଅଥଚ ଭାବନା ପଛେ ପଛେ ଶେଷଯାକେ ସେ ଧାଇଁ ଯାଇ ନାହିଁ । ) କିନ୍ତୁ ଭାବୁ ଭାବୁ ସେ ନିଜେ ଜାଣି ପାରିଲା ଯେ ତା ମନରେ ଆଗ ଯେଉଁ ଭାବନା ଆସିଥିଲା, ନୂଆ

ଭାବନା ଆସି ତାକୁ ଘୋଟ୍ଟାଇ ପକାଇଲାଣି, ଯେତେବେଳେ ଭାବୁଛି,— "ଏଲେନ୍‌ର ଗୋଟାଏ ବାଜେ ଲୋକ । ସେଇଟା କେମିତି ମୋ ଭାରଜା ହେବ ?" ଠିକ୍ ସେତିକବେଳେ ସେ ଭାବୁଛି—"ଏଲେନ୍‌କୁ ବାହାହେଲେ ମତେ ସେ କେତେ ଭଲ ପାଇବ ! ବଦଳିଯିବ ସେ ଏକାଥରେ ।" ଭାବୁଛି ଏଲେନ୍ ବିଷୟରେ ଯେ ଯାହା କହୁଛି ସେ ଶୁଣିଛି ସେଗୁଡ଼ାକ କଥା ମିଛ ବି ହୋଇପାରେ । ମନେ ମନେ ପୁଣି ଏଲେନ୍‌କୁ ସେ ଦେଖିଲା 'ସେ ପ୍ରିନ୍‌ସ୍ ଭାସିଲଙ୍କ ଝିଅ', ଏ ଧାରଣାରେ ନୁହେଁ, ଆଖି ଆଗରେ ଥାଏ ଏଲେନ୍‌ର ଦେହ ଗୋଟାକଯାକ, ତା ଉପରେ ଡଙ୍କାହୋଇଥାଏ ଗୋଟାଏ ପାଉଁଶିଆ ଗାଉନ ।

"ଧାତ୍ ! ମୋ ମନରେ ଏମିତିଆ ଧାରଣାଟାଏ କାହିଁକି ଆସୁଛି ?" ସେ ମନେ-ମନେ ଭାବିଲା । ନିଜକୁ ନିଜେ କହିହେଲା ଯେ,"ଅସମ୍ଭବ । ଅସମ୍ଭବ । ଏ ବିଭାହର ପ୍ରସଙ୍ଗ ଉହାଡ଼ରେ କଣ ଗୋଟାଏ କୁତ୍ସିତ ଉଦ୍ଭଟ ପରିକଳ୍ପନାହିଁ ରହିଛି । ଯଦି ଏ ବିଭାହର ହେବ ତେବେ ସେଥିରେ ଖାଲି ମୋ ମହତ ହାନି ହେବ ।" ପୁଣି ଅଣଡର ନାନା କଥା ଗୋଟି ଗୋଟି ହୋଇ ମନେ ପଡ଼ିଗଲା, କେତେବେଳେ ତା ତୁଣ୍ଡରୁ କଣ ବାହାରିଥିଲା, କେତେବେଳେ କେମିତି ଗୃହାଣୀରେ ସେ ଏଲେନ୍‌କୁ ଅନେଇଥିଲା, ତାକୁ ଓ ଏଲେନକୁ ଏକାଠି ଦେଖିଲେ ଲୋକଙ୍କ ଆଖିରେ କି ଭାବ ଫୁଟି ଉଠିଥିଲା । ସେମାନେ କଣ ସବୁ କହିଥିଲେ, ପ୍ରିନ୍‌ସ୍ ଭାସିଲି ଓ ଅନ୍ୟାନ୍ୟ ବହୁତ ଲୋକ ଠାରରେ ଠାରରେ କଣ ପ୍ରକାଶ କରିଥିଲେ, ସବୁ କଥା । ଭାବୁ ଭାବୁ ଦୁନିଆଁ ଯାକର ଭୟ ତା ଉପରେ ଅଜାଡ଼ି ହୋଇ ପଡ଼ିଲା । ଭାବିଲା, ସେ ଯଦି ଆଉ ଗୋଟାଏ ବାଟକୁ ପାଦ ବଢ଼ାଇ ଦେଇଥାନ୍ତା ତାହାହେଲେ ସେ ଯେଉଁ କାମ କରିଥାନ୍ତା ସେଇଟା ହୋଇଥାନ୍ତା ସମ୍ପୂର୍ଣ୍ଣ ଭୁଲ୍, ସେବାଟେ ଯାଇନାହିଁ ରକ୍ଷା । ଏପରି ଭାବିଲାବେଳକୁ ପୁଣି ଆରପଟେ ଏଲେନର ସ୍ମୃତି ତା ମନରେ ଉଇଁଲା, ମନେ ମନେ ବିହ୍ୱଳ ହୋଇ ଦେଖିଲା, ଏଲେନର ନାରୀତ୍ୱର ସମୁଦାୟ ସୌନ୍ଦର୍ଯ୍ୟକୁ ।

୧୮୦୫ ସାଲର ନଭେମ୍ବର ମାସ । ଭ୍ୟରଟା ଜିଲ୍ଲାରେ ଶାସନ କାର୍ଯ୍ୟ ବୁଝାସୁଝା କରିବାକୁ ପ୍ରିନସ ଭାସିଲି ବାଧ୍ୟରେ ପଡ଼ି ଯିବାର ଥାଏ ।

ସେ ନିଜ ଇଚ୍ଛାରେ ଯେଉଁ କାମରେ ଆପଣାକୁ ବରଗିବା ଭଳି ନିଯୁକ୍ତ କରାଇ ନେଇଥାନ୍ତି । ଉଦ୍ଦେଶ୍ୟ ଥିଲା, ସରକାରୀ କାମ ତ ହେବ, ନିଜ ଜମିଦାରୀ ହାଲ ବି ବହୁଦିନୁ ବୁଝା ହୋଇନାହିଁ, ହେଳା ହୋଇଯାଇଛି, ସେତିକବେଳେ ସେ କାମଟା ବି କରିନିବ । ଗସ୍ତରେ ବୁଲିବେ, ଏସବୁ ନୂଆ ନୂଆ କାମରେ ହାତ ଦେବେ—ସେ ଭାବିଲେ ତା ଆଗରୁ ପିଏରେ ସଙ୍ଗରେ ତାଙ୍କର ଯେଉଁ କାମ ତାକୁ ସେ ଫଇସଲ୍ କରିଦେଇ ଯିବେ । ଏକଥା ସତ ଯେ ଦିନାକେତେ ହେଲା ପିଏରେ ଗୋଟାଏ ଗୋଟାଏ ଦିନ ଆଦୌ ତା ଘର ଭିତରୁ ପଦାକୁ ବାହାରୁନଥାଏ । ତା ଘର ବୋଲନ୍ତେ, ପ୍ରିନ୍ସ୍ ଭାସିଲିଙ୍କ ଘରେ ଯେଉଁ ବଖରାରେ ସେ ଥାଏ ସେଇଠି । ଗୋଟାକୁ ଗୋଟା ଦିନ ବିତିଯାଏ । ସେଇଠି ସେ ପଶିଥାଏ । କେବେ କଦବା ଏଲେନ ସଙ୍ଗେ ମୁହାଁମୁହିଁ ହାବୁଡ଼ା ହାବୁଡ଼ି ହୋଇଗଲେ ଦେଖାଯାଏ ଯେ କୌଣସି ସ୍ତ୍ରୀଲୋକର ପ୍ରେମରେ ମଜ୍ଜିଲେ ଗୋଟିଏ ଯୁବକର ମୁହଁରେ ଯେଉଁ ଭାବ ଫୁଟି ଉଠେ, ତା ମୁହଁର ଭଙ୍ଗୀ ଅବିକଳ ସେଇଆ । କେମିତି ଆବା କାବା ମୁହଁ, ବିଚଳିତ ଠାଣି, ବଗା ବଗା, ଅଥଚ ଏଲେନ୍ ସଙ୍ଗେ ତା ବିଭାଘର ହେଉ, ଏଭଳି ପ୍ରସ୍ତାବର ସେ କେବେ ନାଁ ବି ଧରେନାହିଁ ।

ଦିନେ ସକାଳୁ ପ୍ରିନ୍ସ୍ ଭାସିଲି ମନକୁ ମନ କହିହେଲେ "ଆରେ! ଅଚ୍ଛା ଲୋକ ଯେ ! ଯା ପାଇଁ ଏତେ କଥା ମୁଁ କଲି ସେଥିପାଇଁ ତ ଯେ ମୋର ଧାରୁଆ ରହିବା କଥା (ହଉ, ଭଗବାନ ତାର ମଙ୍ଗଳ କରନ୍ତୁ )" । ଭାବିଲେ, ତାଙ୍କ ଝିଅକୁ ବିଭାହେବା ବିଷୟରେ ପିଏରେ ତାଙ୍କ ସଙ୍ଗେ ଯେଉଁ ବ୍ୟବହାର କରୁଛି, ସେଇଟା ଉଚିତ ବ୍ୟବହାର ହେଉନାହିଁ ।

ସେ ମନଦୁଃଖରେ ଦୀର୍ଘଶ୍ୱାସ ପକାଇଲେ । ମନକୁ ମନ କହିହେଲେ, "ଭଲ କଥା ଯେ ହେଲା, କିନ୍ତୁ ଏମିତି ଆଉ ବେଶିଦିନ ଚଳିବ ନାହିଁ । କଥାଟା ତୁଟେଇ ଦେବା ଦରକାର ।"

ସେ ନିଜେ କେଡ଼େ ଉଦାର ମଣିଷ, ତାଙ୍କ ଅନ୍ତର ଭିତରଟା କେଡ଼େ ଭଲ, ଏଇଆ ଭାବି ତାଙ୍କୁ ଭାରି ଖୁସି ଲାଗୁଥାଏ ।

ଭାବିଲେ, "ଟୋକା ବୟସ...ମନ ଚଞ୍ଚଳ ଥାଏ, ଯେଗୁଡ଼ା ଚଖା ହ'ନ୍ତି...(ହଉ, ଭଗବାନ ତା ମଙ୍ଗଳ କରନ୍ତୁ)...ତେବେ ଏ

ବିଷୟରେ ଯାହାହେଲେ ଗୋଟାଏ ମୀମାଂସା ଦରକାର । କାଲି ଗ୍ରାଣ୍ଡ ପବିତ୍ରଦିନ ପଡ଼ୁଛି ଏଲେନ୍‌ର ନାଁଦିଆ ବର୍ଷିକିଆ । ଯେଉଁ ସିଦ୍ଧସନ୍ଥଙ୍କ ନାଁରେ ତା ନାଁ ରଖାଯାଇଛି ତାଙ୍କର ବର୍ଷିକିଆ । ସେଦିନ ତ ଭୋଜିକି କେତେଜଣଙ୍କୁ ମତେ ଡାକିବାକୁ ହିଁ ପଡ଼ିବ । ଏଲେନ୍‌କୁ ବିଭା ହେବା ବିଷୟରେ ପିଏରେ କଣ କରିବା ଉଚିତ, ସେ କଥା ପିଏରେ ଯଦି ନ ବୁଝିଲ, ତେବେ ତ ସେ ବିଷୟରେ ମତେ ହିଁ ବ୍ୟବସ୍ଥା କରିବାକୁ ପଡ଼ିବ । ମୁଁ ତ ପୁଣି ଝିଅର ବାପ ହିସାବରେ ମୋ କର୍ତ୍ତବ୍ୟ କରିବି !”

ଆନା ପାଭ୍‌ଲୋଭ୍‌ନାଙ୍କ ଘରେ ଭୋଜି ହେବାର ଛଅ ସପ୍ତାହ ବିତି-ଯାଇଥାଏ । ସେହି ସେ ଭୋଜି ଯାହା ଉପରୁ ପିଏରେ ରାତି ଗୋଟାଏ ବିନା ନିଦରେ କଟେଇଲା । ଆଖିକି ନିଦ ନାହିଁ, ମନେ ମନେ ଠିକଣା କଲା ଯେ ଯଦି ଏଲେନ୍ ସଙ୍ଗରେ ତାର ବିଭାଘର ହୋଇଯିବ, ତେବେ ତାର ସର୍ବନାଶ ହୋଇଯିବ ଓ ତେଣୁ ତା ପକ୍ଷରେ ଉଚିତ ହେବ ସେ ଏଲେନ୍‌ର ଆଗକୁ ଯିବନାହିଁ । ଏଠୁ ପଳାଇବ । କେତେ ଭାବି ଚିନ୍ତି ଶେଷରେ ଏଇଆ ତ ସେ ଠିକଣା କଲା, ତଥାପି ଛ ସପ୍ତାହ ବିତିଲା । ସେ ଯେଉଁଠି ଥିଲା ସେଇଠି, ସେମିତି ଆଗପରି ପ୍ରିନ୍‌ସ୍ ଭାସିଲିଙ୍କ ଘରେହିଁ ସେ ରହିଛି ।

ଘୁନିଆଁ ହୋଇ ସେହି କଥା ସେ ଭାବୁଥାଏ । ଭାବିଲା, ଯହୁଁ ଯହୁଁ ଦିନ ଯାଉଛି ତହୁଁ ତହୁଁ ଲୋକଙ୍କ ଧାରଣାରେ ସେ ଆଉ ଏଲେନ୍ ବେଶି ବେଶି ଏକାଠି ଛନ୍ଦି ହେଉଛନ୍ତି । ବସ୍ତୁତଃ ବୁଝିଲା, ନେଡ଼ି ଗୁଡ଼ି କହୁଣୀକି ବୋହି ଗଲାଣି । ଆଗେ ଏଲେନ୍ ବିଷୟରେ ତାର ଯେଉଁ ଧାରଣା ଥିଲା, ଆଉ ଏଣିକି ସେ ଧାରଣା ଚଳିପାରିବ ନାହିଁ, ଆଉ ଏଣିକି ଏଲେନ୍‌ଠୁ ସେ ଦୂରେଇ ରହି ପାରିବ ଏକଥା ଅସମ୍ଭବ । ଘଟଣା ଯେତେ ଭୟଙ୍କର ହେଉ, ନିଜ ଜୀବନଟାକୁ ଏଲେନ୍‌ର ଜୀବନ ସଙ୍ଗରେ ତାକୁ ଛନ୍ଦିବାକୁ ହିଁ ପଡ଼ିବ, ଅନ୍ୟ ଉପାୟ ନାହିଁ ।

ନିଜକୁ ନିଜ ଆୟତ୍ତରେ ରଖିବା ପିଏରେଦ୍ୱାରା ଏକାବେଳକେ ନହୋଇ ପାରୁଥାନ୍ତା ଏପରି ନୁହେଁ, କିନ୍ତୁ ସବୁ ଦିନେ ତ ଲୋକ, ଏମିତି

ଦିନଟାଏ ବି ଗଲା ନାହିଁ ଯେଉଁଦିନ ପ୍ରିନ୍‌ସ୍‌ ଭାସିଲଙ୍କ ଘରେ ଭୋଜି ଉତ୍ସବ ଲାଗିନଥାଏ ( ଅବଶ୍ୟ ଏକଥା ନୂଆ ନୁହେଁ, ଆଗରୁ ବି ତାଙ୍କ ଘରେ ସେଇଆ, ସବୁଦିନେ ଉତ୍ସବ), ଏଇଗଡ଼ରେ ପିଏରେ ବି ନ ରହିଲେ ନ ଚଳେ; କାରଣ ତାର ଆଶଂକା ଯାଲେ ସେ ନ ରହିଲେ ଲୋକେ ଖରାପ ଭାବିବେ, ଆଉ ମନଦୁଃଖ କରିବେ !

ପ୍ରିନ୍‌ସ୍‌ ଭାସିଲ ଯଦି ଘରେ ଥାନ୍ତି ଓ ପିଏରେ ସେ ବାଟେ ଚାଲିଯାଉଥାଏ, ତେବେ କେବେ କଦବା ସେ ତା ହାତକୁ ଖପ୍‌ କରି ଧରି ପକାନ୍ତି, ତାଙ୍କର ଝିଅର ହୋଇଥିବା ଚମ ଲୋଚାକୋଚା ଗାଲକୁ କିଛି ନ ଜାଣିଲାପରି ତା ଓଠପାଖେ ଦେଖାନ୍ତି, ଯେମିତି ସେ ତାଙ୍କ ଗାଲକୁ ଗେଲ କରିବ, କହନ୍ତି, "କାଲି ପୁଣି ଦେଖା ହେବାଟି, ?" ନଇଲେ, "ଆଜି ଖାଇ ବସିଲାବେଳେ ତୁମେ ଥିବ, ନଇଲେ ତୁମ ସଙ୍ଗେ ମୋର ଦେଖା ହୋଇପାରିବ ନାହିଁ ଯେ !", ନତୁବା, "ଖାସ ତମରି ପାଇଁ ମୁଁ ଆଜି ଘରେ ରହିଥିବି । ଆଜି ଆଉ କୁଆଡ଼େ ଯିବିନାହିଁ ।"

(ତାଙ୍କ କହିଲା ପରି) ସେ ପିଏରେ ପାଇଁ ଘରେ ଅପେକ୍ଷା କରି ରହିଲେ ବୁଢ଼ା ପିଏରେକୁ କେବେ ଦିପଦ କଥା ବି କହନ୍ତି ନାହିଁ, ତଥାପି ତାଙ୍କ ମନରେ କଷ୍ଟଦେବାକୁ ପିଏରେର ହୃଦୟ କହେନାହିଁ । ପ୍ରତିଦିନ ସେ ମନେ ମନେ ବାରମ୍ବାର କହିହେଉଥାଏ, ଏଲେନ୍‌ର ମନ କଥା କ'ଣ, ସେଇଟା ମୁଁ ନିଶ୍ଚୟ ଭଲ କରି ବୁଝିବି, ତା ସ୍ୱରୂପ କଣ ସେଇଟା ଚିହ୍ନିବି, ସେଇଠୁ ତା ବିଷୟରେ ମୋ ମତାମତ ସ୍ଥିର କରିବି । ତେବେ— ମୋର ଆଗର ଧାରଣାଟା ଭୁଲ୍‌ ନା ଏବର ଧାରଣାଟା ଭୁଲ୍‌ ? ନା ନା, ଏଲେନ୍‌ କେବେ ହୀନ୍ତ୍ରୀ ନୁହେଁ, ସେ ଭାରି ଭଲ ପିଲା ।"

କେତେ କେତେବେଳେ ମନେ ମନେ ନିଜକୁ ନିଜେ କହେ, "ନା ନା, ତାର କେବେ କେଉଁଥିରେ ଭୁଲ ହୁଏନାହିଁ । ସେ ନିବୁଦ୍ଧିଆ ପରି କିଛି କରେନାହିଁ । ଅଳ୍ପ କଥା କହେ ସିନା, ଯେତିକି କହେ ତା ସିଧା ସଳଖ ପରିଷ୍କାର କଥା । ତା ହେଲେ ତାକୁ ହୀନ୍ତ୍ରୀ ବୋଲି କାହିଁକି କୁହାଯିବ ? ସେ ଆଗେ ବି କେବେ ଲାଜରେ ପଡ଼ିନାହିଁ, ଏବେ ବି ଲାଜରେ ପଡ଼ୁନାହିଁ, ଅତଏବ ଖରାପ ଝିଅ ସେ ହୋଇ ନ ପାରେ ।"

ଏଣିକି ଏଣିକି ଏଲେନ ଯେତେବେଳେ ତା ସଙ୍ଗରେ କଥାଭାଷା ହୁଏ, ସେତେବେଳେ ଏଲେନ୍ ଖୁସିରେ ହସି ହସି କଥା କହେ । ଆନନ୍ଦ ତା' ଅନ୍ତର ଭିତରୁ ଉଛୁଳି ପଡ଼େ । ସେ ହସରୁ ବାରି ହୋଇପଡ଼େ ଯେ ପିଏରେଠିଁ ତାର ନିଭୃତ ବିଶ୍ୱାସ ରହିଛି । ହସର ଲକ୍ଷ୍ୟସ୍ଥଳ ସତେ ଯେପରି କି ପିଏରେ । ଆଜି ଦଶଜଣ ଥିଲେ ଏଲେନ୍‌ର ମୁହଁରେ ଯେଉଁ ମାମୁଲି ହସ ଗୋଟାଏ ଅଳଙ୍କାର ପରି ଟଙ୍ଗା ହୋଇଥାଏ, ପିଏରେ ପାଇଁ ଏ ହସ ତାଠୁଁ ଭିନ୍ନ ।

ପିଏରେ ଜାଣିଥିଲା, ପଦେ କଥା ଅଛି ଯେ ସମସ୍ତେ ଠାକ ରହିଛନ୍ତି କେତେବେଳେ ତା ତୁଣ୍ଡରୁ ଖାଲି ସେହିପଦକ ବାହାରିବ ସେମାନେ ଶୁଣିବେ, ଗୋଟାଏ ଗାର ଅଛି, କେତେବେଳେ ସେ ଗାରଟାକୁ ସେ ଲଙ୍ଘିଯିବ, ସେଇଆ ଜାଣିବେ । ସେ ଜାଣିଥାଏ, ସେ ଗାରକୁ ସେ ଡେଇଁବନି, ଡେରିରେ ହେଉ କି ସଅଳରେ ହେଉ, ଡେଇଁବାକୁ ହିଁ ପଡ଼ିବ, କିନ୍ତୁ ତାକୁ ଲାଗୁଥାଏ, ସେ କାମ ବଡ଼ ଭୟାନକ, ସେକଥା ଭାବିଲାବେଳକୁ ଗୋଟାଏ ଅଜଣା ଡର ତାକୁ ମାଡ଼ିବସେ । ଆନା-ପାଲୋଭ୍ନାଙ୍କ ଘରେ ଭୋଜି ଉଭାରୁ ଏଇ ଛ' ସପ୍ତାହ କାଳ ତାକୁ ବାରମ୍ବାର ଲାଗୁଥାଏ ଯେ ଗୋଟାଏ ପାତାଳ ଫୁଟା ଖୋଲ ଭିତରେ ସେ ଖସି ପଡ଼ିବାକୁ ଯାଉଛି, ଆଉ ତାରି ଅଡଡା ଆଡ଼କୁ ସେ ଓଟରି ହୋଇ ଗୃଳୁଛି । ସେହି ଅନ୍ଧାର ଖୋଲକୁ ତାର ପ୍ରାଣେ ଡର । ନିଜକୁ ନିଜେ ସାହସ ଦିଏ, "ଏମିତି ଛନିଆଁ ହୋଇ ଲାଭ ? ନାଁ, ମୁଁ ଦମ୍ଭହୋଇ ରହିବ, ଟାଣ ହୋଇ ରହି ମତେ ଦୃଢ଼ ନିଷ୍ପତ୍ତି କରିବାକୁ ପଡ଼ିବ ଯେ ! ମୋ ମନର ଆଣ୍ଟପଣ କଣ ପ୍ରକୃତରେ ଉଭେଇ ଗଲା ! ଏଭଳି କି କଣ ହୁଏ ?

ଗୋଟାଏ ନିଷ୍ପତ୍ତି କରିବ କରିବ ବୋଲି ସେ ମନେ ମନେ ଚେଷ୍ଟା କଲା, କିନ୍ତୁ ବୁଝିଲା ଯେ ସେପରି କରିବାଲାଗି ଯେଉଁ ମନୋବଳ ଲୋଡ଼ା ତାହା ତାଠିଁ ଆଗରୁ ଥିଲା, ଏବେ ଅନ୍ୟ କଥା ନିଷ୍ପତ୍ତି କରିବାକୁ ବି ଅଛି । କିନ୍ତୁ ଏ ଗୋଟିଏ ବିଷୟରେ ନିଷ୍ପତ୍ତି କରିବାବେଳକୁ ସେ ମନବଳ ତାର ରହୁନାହିଁ । ଏକଥା ଭାବିଲାବେଳକୁ ତାକୁ ଛନିଆଁ ଲାଗିଲା ।

ପିଏରେ ସେହି କାଠର ମଣିଷ, ଯାହାଙ୍କର ଯେଉଁ ପର୍ଯ୍ୟନ୍ତ ଏ ଧାରଣା ଥାଏ ଯେ ନିଜ ମନ ଭିତର ନିର୍ମଳ ଓ ଶୁଦ୍ଧ ରହିଛି ସେପର୍ଯ୍ୟନ୍ତ ତାଙ୍କଠି ମନବଳ ଥାଏ । ତା ନହେଲେ ନଥାଏ । ଆନ୍ନା ପାଭ୍ଲୋଭ୍ନାଙ୍କ ଘରେ ଯେଉଁଦିନୁ ସେ ଅନୁଭବ କଲାଣି ଯେ ସେ କାମ ବିକାରରେ ଧାରି ହେଉଛି, ସେତିକି ବେଳୁ କାମ ବିକାରରୁ ଉପୁଜିଥିବା ପାପର ଧାରଣା ତାର ଗହନ ଚେତନା ଭିତରେ ଚରି ଯାଇଯାଏ ଓ ତାର ସ୍ୱାଧୀନ ମନବଳକୁ ଅକାମୀ କରି ପକାଇଥାଏ ।

ଏଲେନ୍‌ର ନାଁ-ବର୍ଷିକିଆ ଉତ୍ସବ ଦିନ ହେଲା । ପ୍ରିନ୍‌ସ୍ ଭାସିଲି ତାଙ୍କ ଘରେ ଛୋଟକାଟିଆ ଭୋଜଉତ୍ସବଟିଏ କରାଉଥାନ୍ତି, ଖାଲି ବନ୍ଧୁବାନ୍ଧବ ଓ ଆପଣାର ଲୋକଙ୍କୁ ନିମନ୍ତ୍ରଣ କରିଥାନ୍ତି । ଅଳ୍ପ ଲୋକ ଡକାହେବେ ବୋଲି ତାଙ୍କ ସ୍ତ୍ରୀ କହିଥିଲେ । ସେମାନଙ୍କୁ ସମସ୍ତିଙ୍କୁ ଏହି ଧାରଣା ଦିଆଯାଇଥାଏ ଯେ ଆଜି ତାଙ୍କ ଝିଅ ଏଲେନ୍‌ର ଜୀବନରେ ଗୋଟିଏ ବଡ଼ ଘଟଣା ଘଟିବ ।

ଟେବୁଲ୍‌ରେ କୁଣିଆମାନେ ଖାଉଥାନ୍ତି । ଟେବୁଲ ମୁଣ୍ଡପଟେ ଯେଉଁଠି ଘରର ଘରଣୀ ବସନ୍ତି ସେଠି ବସିଥାନ୍ତି, ପ୍ରିନ୍‌ସେସ୍ କୁରାଗିନ୍, ଆକାରରେ ପ୍ରକାଣ୍ଡ, ଦେଖିଲେ ମାଡ଼ିପଡ଼େ । ତାଙ୍କ ବେଳେ ସେ ଭାରି ସୁନ୍ଦର ଥିଲେ । କୁଣିଆମାନଙ୍କ ଭିତରେ ମାନତାରେ ବଡ଼ ଯେଉଁମାନେ, ସେମାନେ ବସିଥାନ୍ତି ତାଙ୍କ ବାଁ ଡାହାଣେ । ତହିଁରୁ ଜଣେ ବୁଢ଼ାଲୋକ ଆଗେ ସୈନ୍ୟବାହିନୀରେ ସେନାପତି ହୋଇଥିଲେ, ଜଣେ ତାଙ୍କ ସ୍ତ୍ରୀ, ଆଉ ଜଣେ ଆନାପାଭ୍ଲୋଭ୍ନା । ବୟସରେ ଓ ମାନ୍ୟରେ ସାନ ସାନମାନେ ଟେବୁଲର ଶେଷମୁଣ୍ଡ ଆଡ଼କୁ ବସିଥାନ୍ତି, ତାଙ୍କର ଭିତରେ କତିକୁ କତି ହୋଇ ବସିଥାନ୍ତି ପିଏରେ ଓ ଏଲେନ୍, ଏ ଘରର ମଣିଷ ହିସାବରେ ସେଠି ତାଙ୍କ ସ୍ଥାନ ଥାଏ । ପ୍ରିନ୍‌ସ୍ ଭାସିଲି ଭୋଜନରେ ଖାଇ ବସିଲେନାହିଁ, ତାଙ୍କ ମନ ଭାରି ଖୁସି ଥାଏ, ସେ ଟେବୁଲ ପାଖେ ଏକର ସେକର ହୋଇ ବୁଲୁଥାନ୍ତି, ଜଣ ଜଣ କରି କେତେବେଳେ କେଉଁ କୁଣିଆଙ୍କ ପାଖରେ ବସିପଡ଼ନ୍ତି । ପିଏରେ ଓ ଏଲେନ୍‌ଙ୍କୁ କିଛି କହନ୍ତିନାହିଁ, ଅନ୍ୟମାନଙ୍କୁ କିଛି ହେଲେ ମନ ଖୁସି କଲାଭଳି କଥା କହନ୍ତି, ଏଲେନ

ସ୍ୱାଭାବିକ ଭାବରେ କଥା କହନ୍ତି ଯେ ଲଗିବ ସେଁ ଙ୍କୁ ସ୍ୱୟଂ କଥାଗୁଡ଼ିକ ତାଙ୍କ ଭୁଣ୍ଡରୁ ବାହାରି ପଡ଼ୁଛି । ଆଗରୁ ଭାବିଚିନ୍ତି କହୁନାହାନ୍ତି । ଅଥଚ ସତେ ଯେମିତି ପିଏରେ ଓ ଏଲେନ୍ ସେଠ ବସିଛନ୍ତି ବୋଲି ତାଙ୍କ ନଜରେ ବି ପଡ଼ୁନାହିଁ ।

ସେ ଦୁହିଁଙ୍କ ଭୁଣ୍ଡରେ କଥା ନଥାଏ । ବିହିଙ୍କ ମୁହଁ ସବୁବେଳେ ହସରେ ଛକ୍ ଛକ୍, କିନ୍ତୁ ସେ ହସ ସଂଯତ । ଆପଣା ଆପଣା ମନ ଭିତରର ଭାବ ବୋଲିହୋଇ ସେ ହସ ନିଜ ନିଜ ହସ ।

ଅନ୍ୟ ସମସ୍ତେ ଖୁବ୍ ଫୁର୍ତ୍ତିରେ ମନ ଖୋଲି ହସୁଥାନ୍ତି, କଥା କହୁଥାନ୍ତି, ଓ ଥଟ୍ଟା ନକଲ ହେଉଥାନ୍ତି । ପିଇଥାନ୍ତି ଚମତ୍କାର ଅଙ୍ଗୁର ମଦ, ରାଇନ୍ ନଈ ଉପତ୍ୟକା ସେଥିପାଇଁ ବିଖ୍ୟାତ । ମଦ ପିଇ ଭୋକ ବଢ଼ିଥାଏ, ଖାଇବାକୁ ଆଗ୍ରହ ବଢ଼ିଥାଏ । ନାନା ଜାତି ପିଠା ପଣା, ତା'ସଙ୍ଗରେ ବରଫଦିଆ ଜିନିଷ, ଖାଇବାକୁ ଖୁବ୍ ସୁଆଦ ଲାଗୁଥାଏ ।

ତଥାପି, ଛପି ଛପିକା ସମସ୍ତିଙ୍କ ନଜର ରହିଥାଏ ଏଲେନ୍ ଓ ପିଏରଙ୍କ ଆଡ଼କୁ । ସେମାନେ ସେ ଦୁହିଙ୍କ ଆଡ଼କୁ ନ ଅନାଇବାକୁ ଯେତେ ଚେଷ୍ଟାକରନ୍ତୁ, ସେ ଦୁହିଙ୍କ କଥାଭାଷା ଆଡ଼କୁ, ହାବଭାବ ଆଡ଼କୁ ନଜରଦେଉନାହାନ୍ତି ବୋଲି ଯେତେ ଚେଷ୍ଟାକରି ଦେଖାଇ ହେଉନ୍ତୁ, ମଝିରେ ମଝିରେ ଦିହିଙ୍କ ଆଡ଼କୁ ଯେଉଁଭଳି ଲୁହାଣି ଦୃଷ୍ଟି ଦେଇ ଲେଉଟେଇ ଲେଉଟେଇ ଅନାଇଦେଇଥାନ୍ତି, ତହିଁରୁ ଯେ କୌଣସିପ୍ରକାରେ ଏକଥା ସ୍ପଷ୍ଟ ଜଣାପଡ଼ୁଥାଏ ଯେ ସେଠି ଯେତେଲୋକ ଥିଲେ ସମସ୍ତିଙ୍କ ଧ୍ୟାନର କେନ୍ଦ୍ର ହୋଇଥାନ୍ତି ପିଏରେ ଓ ଏଲେନ୍ ।

ପିଏରକୁ ଲାଗୁଥାଏ, ସେ ସବୁ ଜିନିଷର କେନ୍ଦ୍ର ହୋଇଛି ଏକା ସେ । ଆପଣାର ଏ ଅବସ୍ଥା କଥା ଭାବିଲାବେଳକୁ ତାକୁ ଯେତିକି ଖୁସି ଲାଗୁଥାଏ, ସେତିକି ଅଡ଼ୁଆ ଲାଗୁଥାଏ । ଜଣେ ଯଦି କୌଣସି କାମରେ ବୁଡ଼ି ଯିବ ଓ ସେ କାମରେ ମଜ୍ଜି ଭୋଳ ହୋଇଯିବ, ସେତେବେଳେ ସେ ଲୋକ ଅବସ୍ଥା ଯାହା, ପିଏରେ ଅବସ୍ଥା ଠିକ ସେଇଆ । ଆଖିକି ସଫା

ଭଶୁନଥାଏ, କାନକୁ ସଫା ଶୁଭୁନଥାଏ, ମୁଣ୍ଡ ଭିତରେ କୌଣସି କଥା ପଶୁନଥାଏ, ଖାଲି ବେଳେ ବେଳେ ବାପ୍ତବତାର ଛୁଣ୍ଡା ଛୁଣ୍ଡା ଖଣ୍ଡ ଖଣ୍ଡ ଛବି ଅପ୍ରତ୍ୟାଶିତ ଭାବେ ତା ମନରେ ଝଲସି ଉଠୁଥାଏ ।

ଭାବୁଥାଏ, ସବୁ କଣ ତେବେ ସରିଗଲା ? କେମିତି କଣ ସବୁ ହେଲା ? ଏଁ, ଏତେ ଚଞ୍ଚଳ ! ଏବେ ତ ମୁଁ ବୁଝିପାରିଲିଣିଯେ ଖାଲି ମୋର ଯୋଗରୁ ନୁହେଁ, ଏକା ଏଲେନ୍ ଲାଗି ନୁହେ, ସମସ୍ତିଙ୍କ ଯୋଗରୁ ସେହି କଥାଟା ଅବଶ୍ୟ ଘଟିବ । ସେଇଆ ଘଟୁ ବୋଲି ତ ସେମାନେ ସବୁ ଆଶାକରି ବସିଛନ୍ତି, ଆଜି କଣ ? ଘଟିବ ଘଟିବ ବୋଲି ସେମାନେ ସମସ୍ତେ ଏତେ ଦୃଢ଼ରୂପେ ନିଜ ନିଜ ବିଶ୍ୱାସ ଜନ୍ମାଇ ସାରିଲେଣି, ମୁଁ ତ ଆଉ ଅଇଚ୍ଛା ସେମାନଙ୍କୁ ନିରାଶ କରିନପାରେଁ । ଯା ଫଳ ଭଲ ନା ମନ୍ଦ ? କେଜାଣି, ମତେତ ଜଣାନାହିଁ । ତେବେ, ସେ ଘଟିବା କଥା ନିଶ୍ଚିତ, ହେବ ହିଁ ।”

ସମସ୍ତେ ସେଠି ଥା'ନ୍ତି ପିଏରେ ଓ ଏଲେନ୍ ଉଠି ପଡ଼ିଲେ । ପିଏରେ ଏଲେନ୍ ସଙ୍ଗରେ ବସିବାଘରକୁ ଚାଲିଗଲା । କୁଣିଆମାନେ ଛିଡ଼ା ହୋଇଗଲେ । କେତେ ଜଣତ ଏଲେନ୍‌କୁ ନ କହି ଚାଲିଗଲେ । ଆଉ କେତେ ଜଣ ତା ପାଖରୁ ଯାଇ ବୁଲି ଆସିଲେ, କିନ୍ତୁ ସେମାନଙ୍କ ଭାବ-ଭଙ୍ଗୀ ବୁଝାଇଦେଉଥାଏ ଯେ ଏଲେନ୍ ଭାରି ଗୁରୁତର କାମରେ ବ୍ୟସ୍ତ ରହିଛି ବୋଲି ସେମାନେ ଜାଣିଛନ୍ତି, ତା କାମବେଳେ ଅଡ଼ୁଆ ଲଗାଇବା ସେମାନଙ୍କର ଆଦୌ ଇଚ୍ଛା ନୁହେଁ । କହି ଦେଇ ଯିବା ବିଧି, ସେଥିପାଇଁ ସେମାନେ ତା କତିକି ଅସିଛନ୍ତି । ଦେଖାକରିବା ମାତ୍ରେ ଚାଲିଯାଉଥାନ୍ତି । ଏଲେନ୍ ଯଦି ଉଠିପଡ଼େ, କାହାକୁ ବାଟେଇ ଦେବାକୁ ଯିବ ବୋଲି । ସେ ମନାକରୁଛି ।

କୁଣିଆ ଛିଡାହେବାବେଳେ ବସିବା ବଖରାରେ ପିଏରେ ଏଲେନ୍ ପାଖରେ ବହୁତ ବେଳ ବସି ରହିଲା, ଖାଲି ସେ ନୁହେଁ, ଏକୁଟିଆ । ଗଲା ଛ'ମାସ ଭିତରେ କେତେ ଥର ତ' ସେ ଏଲେନ୍ ପାଖରେ ଏକୁଟିଆ ବସିଛି, କିନ୍ତୁ କେବେ ମୁହଁ ଖୋଲି କହିନାହିଁ "ମୁଁ ତମକୁ ଭଲପାଏଁ ।” କିନ୍ତୁ

ଏଥର ତାକୁ ଲଗୁଥାଏ--କହିବାକୁ ତ ପଡ଼ିବ । ନ କହିଲେ ହେବ କେମିତି ? ସେଇଆ କରିବା କଥା, ଅବଶ୍ୟ, କିନ୍ତୁ ଏହି ଶେଷ କଥାଟି କହିବା ଲାଗି ସେ ମନ ଟାଣକରିପାରୁନଥାଏ । ତାକୁ ଲାଜ ମାଡ଼ୁଥାଏ । ଲାଗୁଥାଏ, ସେ ଏଲେନ ପାଖରେ ବସିଛି ସିନା, ସେଠି ଅନ୍ୟ କୌଣସି ପୁରୁଷ ବସିବା କଥା, ସେ ନୁହେଁ । ସତେ ଯେମିତି ତା ଅନ୍ତର ଭିତରେ କିଏ କହୁଛି, 'ଯେଉଁ ସୁଖ ଭିନେ ପ୍ରକାର ମଣିଷ ଲାଗି, ଯେଉଁ ତୋ ପାଇଁ ନୁହେଁ। ତୋ ଭିତରେ, ଯେଉଁ ଜିନିଷ ଅଛି, ସେ ଭିନ୍ନେ ପ୍ରକାର ମଣିଷଟି ନଥିବ ବୋଲି ସେ ଏ ସୁଖର ଉପଯୁକ୍ତ ହେବ, ତୁ ନୋହୁ ।'

ତେବେ ସେ କରିବ କଣ ? ଏଲେନ୍‌କୁ କିଛି ହେଲେ ତ କହିବ । ତେଣୁ ସେ ଗପିବା ଆରମ୍ଭ କଲା । ପଚାରିଲା, ଆଜି ସଞ୍ଜଟା କେମିତି ଲାଗିଲା । ଭଲ ଲାଗିଲା କି ନାହିଁ ? ଏଲେନ୍‌ର କଥା କହିବା ବାଗ ସିଧା ସଳଖେ ପ୍ରଶ୍ନକୁ ଉତ୍ତର, ସେ ତା ସ୍ୱଭାବ । ସେ କହିଲା—ତାକୁ ଲାଗୁଛି ତାର ଯେତେ ଦୂର ମନେ ପଡ଼ୁଛି ଆଜିର ଏ ତାର ନାମ-ଦିବସଟି ତା ଜୀବନରେ ଗୋଟିଏ ଅତି ଚମତ୍କାର ଘଟଣା ।

ବନ୍ଧୁ ବାନ୍ଧବଙ୍କ ଭିତରେ ଯେଉଁମାନେ ଅତି ଘନିଷ୍ଠ ତାଙ୍କ ଭିତରୁ କେତେଜଣ ସେତେବେଳେ ବି ମାଣ୍ଡେଇ ରହିଯାଇଥାନ୍ତି । ଆଉ ଯେଉଁ ବସିବା ଘରଟି ବଡ଼ ବଖରା ସେଇଠି ସେମାନେ ବସିଥାନ୍ତି ।

ପ୍ରିନ୍‌ସ୍ ଭାସିଲି ମଠେଇ ମଠେଇ ପିଏରେ ଆଡ଼କୁ ଚାଲି ଚାଲିକା ଆସିଲେ । ପିଏରେ ଠିଆହୋଇପଡ଼ିଲା, କହିଲା—କେତେ ଡେରି ହୋଇଗଲାଣି । ପ୍ରିନ୍‌ସ୍ ଭାସିଲି ପ୍ରଶ୍ନସୂଚକ ତୀବ୍ର ରୁକ୍ଷ ଚାହାଣୀରେ ତା ମୁହଁକୁ ସିଧା ଅନାଇଁ ରହିଲେ । ଯେପରିକି ତା କଥାଗୁଡ଼ାକ ଏତେ ବେପରୁଆ କଥା ଯେ ଶୁଣିଲେ ମଣିଷ ଆପଣା କାନକୁ ବିଶ୍ୱାସ କରିବ ନାହିଁ, କିନ୍ତୁ ଚାହୁଁ ଚାହୁଁ ତାଙ୍କ ଚାହାଣୀର କଠୋରତା ଉଭେଇଗଲା । ସେ ପିଏରେର ହାତକୁ ଧରି ପକାଇଲେ । ତାକୁ ଓଟାରି ନେଇ ଗୋଟିଏ ବସିବା ଜାଗାରେ ବସାଇ ଦେଲେ ଓ ପରମ ସ୍ନେହରେ ମୁରୁକି ମୁରୁକି ହସିଲେ ।

"ତୁ କଣ କହୁଚୁ ଲୋ ମା !" ହଠାତ୍ ସେ ତାଙ୍କ ଝିଅଙ୍କୁ ପଚାରିଲେ । ସ୍ୱର ଶୁଭୁଥାଏ ନିଷ୍କପଟ, ତାଙ୍କ ସ୍ୱରରେ ଥାଏ ତାଙ୍କର ଅଭ୍ୟସ୍ତ ସ୍ନେହ କୋମଳଭଙ୍ଗୀ । ଯେଉଁ ବାପ ମା' ପିଲାଦିନୁ ଝୁଅଙ୍କୁ ଗେହ୍ଲା ଅଳିଅଳରେ ବଢ଼ାନ୍ତି, ସ୍ୱରରେ ସେଇ ଭଙ୍ଗୀ ତାଙ୍କର ସ୍ୱାଭାବିକ ଭଙ୍ଗୀ, କିନ୍ତୁ ପ୍ରିନ୍ସ୍ ଭାସିଲିଙ୍କ ପକ୍ଷରେ ସେଇ ଖାଲି ସେଭଳି ବାପ ମା'ଙ୍କ ସେଭଳି ସ୍ୱରର ଅନୁକରଣମାତ୍ର ।

ପିଏରେଙ୍କୁ ଲାଗିଲା, ନିଶ୍ଚୟ ପ୍ରିନ୍ସ ଭାସିଲି ଖୁବ୍ ବିବ୍ରତ ହୋଇ-ପଡ଼ିଛନ୍ତି । ସଂସାର ବିଷୟରେ ତାଙ୍କର ଏତେ ଅଭିଜ୍ଞତା, ସେ ଏତେ ପୁରୁଣାଲୋକ, ଅଥଚ ଏଭଳି ଲୋକ ହୋଇ ସେ ଏତେ ବିବ୍ରତ, କାତର ! ଏକଥା ଦେଖି ପିଏରେର ହୃଦୟ ମନ୍ଥି ଉଠିଲା ହେଲା । ସେ ବୁଲିପଡ଼ି ଏଲେନ୍ ଆଡ଼କୁ ଅନାଇଲା । ଅନୁମାନ କଲା ଯେ ଏଲେନ୍ ବି ବିବ୍ରତ, ବିଷଣ୍ଣ ଜଣାପଡ଼ୁଛି ଓ ଏଲେନ୍‌ର ଚାହାଣୀ ଯେପରି ତାଙ୍କୁ କହୁଛି—

"ସବୁ ଦୋଷ ତମର ।"

ପିଏରେ ଭାବିଲା, "ସୀମାବାଡ଼କୁ ମତେ ନିଶ୍ଚୟ ଡେଇଁ ପାରିବାକୁ ପଡ଼ିବ ଯେ !—ନା ନା, ପାରିବି ନାହିଁ । ମୋ ଦେଇ ହେବନାହିଁ ।"

ଶୁଣି ପିଏରେ ଯାହା ତାହା ବାଜେ କଥା ଗପିଲା ।

ପ୍ରିନ୍ସ୍ ଭାସିଲି ବଡ଼ ବସିବା ଘର ବଖରାକୁ ଲେଉଟି ଗଲେ । ସେଠି ପହଞ୍ଚିଲାବେଳକୁ ତାଙ୍କ ସ୍ତ୍ରୀ ତଳେ ବସେଇ ବସେଇ ଜଣେ ବୟସ୍କା ଭଦ୍ରମହିଳାଙ୍କୁ ଗୁନ ଗୁନ କରି କଥା କହୁଥାନ୍ତି । କହିଲେ—

"ସମ୍ବନ୍ଧ ହିସାବରେ ତ ଭାରି ଭଲ, ତେବେ, ଉଦ୍ଦେଶ ସୁଖରେ ଘର କରିବାଟା ହେଲା ମୂଳ କଥା ।"

ଆଉ ଜଣକ କହିଲେ, "ସେ କଣ ମଣିଷ ହାତରେ କି ? ଘଟେସ୍ୱର ଧରିଛନ୍ତି ପ୍ରଜାପତି, କିଏ କାହାକୁ ବାହାହେବ ସେଇଟା ସ୍ୱର୍ଗରେ ଠିକଣା ହୁଏ ପରା ।"

ପ୍ରିନ୍‌ସ୍ ଭସିଲ ସେ ବଖରାର ସବା ଆର ମୁଣ୍ଡର କଣକୁ ଚାଲିଗଲେ, ଗୋଟାଏ ଆସନରେ ବସି ପଡ଼ିଲେ । ଏଭଳି ଭାବ ଭଙ୍ଗୀ ଯେମିତି ସେ କଥାଭାଷା କିଛି ଶୁଣିନାହାନ୍ତି । ଆଖି ବୁଜିଥାନ୍ତି । ଲାଗୁଥାଏ, ସେ ଢୁଳାଉଛନ୍ତି । ତାଙ୍କ ମୁଣ୍ଡ ଲମ୍ବ ହୋଇ ଆଗକୁ ଓହଳି ପଡ଼ିଲା, ପୁଣି ଝାଙ୍କି ହୋଇ ଉଠିପଡ଼ିଲେ । ସ୍ତ୍ରୀଙ୍କୁ ଯାଇ କହିଲେ, "ଦେଖି ଆସିବ ଗଲ, ସେ କ'ଣ କରୁଛନ୍ତି ।"

ପ୍ରିନ୍‌ସେସ୍ ଘର ଦୁଆର ମୁହଁପାଖେ ଗଲେ, ଆଉ ଘର ଦୁଆର ମୁହଁ ବାଟେ ଚାଲିଗଲେ, ତାଙ୍କ ମୁହଁର ଭାବ ଅର୍ଥପୂର୍ଣ୍ଣ ; କିନ୍ତୁ ସେ ପରି ଭଙ୍ଗୀ ଦେଖାଉଥାନ୍ତି ଯେ ସେ କିଛି ଜାଣନ୍ତିନାହିଁ । ସେହିପରି ଅବସ୍ଥାରେ ଆଉ ବସିବା ଘର ଭିତରକୁ ଚାହିଁକିନା ଅନାଇଁ ଦେଲେ । ଦିଶୁଥାଏ, ପିଏରେ ଓ ଏଲେନ୍ ବସିଛନ୍ତି, ଆଗେ ଯେପରି ଥିଲେ, କଥା-ଭାଷା ହେଉଛନ୍ତି ।

ସ୍ୱାମୀଙ୍କୁ ଆସି କହିଲେ, "ଯେମିତି ଥିଲା ସେମିତି ।"

ପ୍ରିନ୍‌ସ୍ ଭସିଲଙ୍କ ମୁହଁରେ ଭ୍ରୂକୁଟି ଫୁଟିଉଠିଲା ।

ସେ ପାଟିକୁ ଗୋଟାଏ କରକୁ ମୋଡ଼ିଦେଲେ । ଜନ୍ତୁ ମୁହଁର ଭଙ୍ଗୀ ପରି ତାଙ୍କ ମୁହଁ ଦିଶୁଥାଏ ହିଂସ୍ର, ନିଷ୍ଠୁର, ଗାଲର ମାଂସପେଶୀସବୁ ଛଟପଟ ହେଉଥାଏ, ଦିଶୁଥାଏ । ଦେହକୁ ଝିଙ୍କି ଥରେଇ ଦେଇ ସେ ଠିଆ ହୋଇପଡ଼ିଲେ, ମୁଣ୍ଡକୁ ପିଠି ଆଡ଼କୁ ଭାଙ୍ଗି ଦେଲେ । ତା'ପରେ ଜଣେ ଲୋକ କ'ଣ କରିବ ବୋଲି ମନେ ମନେ ଦୃଢ଼ ପ୍ରତିଜ୍ଞା କରିସାରି ଯେମିତି ଚାଲେ ସେମିତି ଦମ୍ଭହୋଇ ଗୋଟିଏ ଗୋଟିଏ ପାଦ ପକାଇ ପକାଇ ସେ ଚାଲିଗଲେ, ବୟସ୍କା ଭଦ୍ରମହିଳା ଯେଉଁଠି ବସିଥାନ୍ତି, ସେହି କରବାଟେ ଗଲେ, ସାନ ବସିବା ଘର ବଖରା ଭିତରକୁ ପଶିଗଲେ, ତରତର ହୋଇ ଅତି ଆନନ୍ଦରେ ପିଏରେ ପାଖକୁ ଚାଲିଚଲେ, ତାଙ୍କ ମୁହଁରେ ଏଭଳି ଗମ୍ଭୀର ଠାଣି ଦିଶୁଥାଏ ଯେ ତାଙ୍କୁ ଅନାଇଁଦେଲା ମାତ୍ରେ ଚମକିଆ ହୋଇ ପିଏରେ ଠିଆ ହୋଇପଡ଼ିଲା ।

ପ୍ରିନ୍‌ସ୍ ଭସିଲି କହିଲେ, "ଭଗବାନ ବଡ଼ଲୋକ, ତାଙ୍କୁ କୋଟି ନମସ୍କାର, ସ୍ତ୍ରୀ ବୋଉଠୁଁ ସବୁ ଶୁଣିଛି ।" ଗୋଟିଏ ହାତରେ ପିଏରେଙ୍କୁ,

ଆଉ ହାତରେ ଏଲେନ୍‌କୁ କୁଣ୍ଢେଇ ଧରି ଥରିଲା ଥରିଲା ସ୍ୱରରେ କହିଲେ—

"ବାବୁରେ ! ପିଏରେ ! ମା ଲୋ ! ଏଲେନ୍ ! ମୋ ହୃଦ ଶୀତଳ ହୋଇଗଲା । ଓଃ ! କି ଆନନ୍ଦ ! ବାବା ପିଏରେ, ତୁମ ବାପାଙ୍କ ପ୍ରତି ମୋର ଭାରି ଶ୍ରଦ୍ଧା ଥିଲା···ହଁ, ସେ ତୁମନାଖୀ ସ୍ତ୍ରୀ ହୋଇପାରିବ··· ତୁମ ଦୁହିଙ୍କି ପରମେଶ୍ୱର ଆଶୀର୍ବାଦ କରନ୍ତୁ ବାବା···" ସେ ତାଙ୍କ ଝିଅକୁ କୁଣ୍ଢେଇ ପକାଇଲେ, ସେଉଠୁ ପିଏରକୁ । ତାଙ୍କ ବୁଢ଼ା ଓଠ-ଢ' ଫାଳ ପିଏରେ ଗାଲରେ ଲୁଚିଦେଇ ସେ ତାକୁ ଚୁମାଦେଲେ । ସତକୁ ସତ ତାଙ୍କ ଗାଲ ଲୁହରେ ଜୁଡ଼ୁ ବୁଡ଼ୁ ହୋଇଥାଏ । ବଡ଼ ପାଟିରେ ସ୍ତ୍ରୀକୁ ଡାକି ପକାଇଲେ,

"ଆଲିନ୍ ! ଆଲିନ୍ ! ଆସିଲ ଏଠିକି !"

ତାଙ୍କ ସ୍ତ୍ରୀ ବି ସେ ଘରକୁ ଗଲେ । ସେ ବି କାନ୍ଦି ପକାଇଲେ । ଆଉ ଜଣକ, ସେ ଯେଉଁ ବୟସ୍କା ଭଦ୍ରମହିଳାଟି, ସେ ବି ଆଖିରେ ରୁମାଲ ମାଡ଼ିଦେଲେ । ସେମାନେ ସମସ୍ତେ ପିଏରକୁ ଚୁମାଦେଲେ, ସୁନ୍ଦରୀ ଏଲେନ୍‌ର ହାତ ପାପୁଲିରେ ବାରମ୍ବାର ଚୁମା ଦେଲେ । ଟିକିଏ ସେଠି ରହି ସେଉଠୁ ସେଠି ଦୁହିଁଙ୍କ ଏକୁଟିଆ ଛାଡ଼ିଦେଇ ସେମାନେ ଚାଲିଗଲେ ।

ପିଏରେ ଭାବୁଥାଏ—

"ଏସବୁ ଯାହା ଘଟିଗଲା ତ ଭବିତବ୍ୟ, ସେ କେବେ ଅନ୍ୟଥା ହୁଅନ୍ତାନାହିଁ । ତେଣୁ ଭଲହେଲା କି ମନ୍ଦହେଲା ସେ କଥା ଭାବି କି ଲାଭ ? ନିଶ୍ଚିତ ଘଟନାଟାଏ ଘଟିଗଲା । ସେହି ହିସାବରେ ସେ ଭଲ ହେଲା, ଏପର୍ଯ୍ୟନ୍ତ କଣ ହେବ କଣ ହେବ ଭାବିଭାବି ମଣିଷ ଖାଲି ଛଟପଟ ହେଉଥିଲା, ଏଣିକି ତା ଆଉ ନାହିଁ ।"

ପିଏରେ ତାର ଭାବୀ ପତ୍ନୀର ହାତକୁ ଧରି ତୁନି ହୋଇ ରହିଥାଏ । ଏକ ଦୃଷ୍ଟିରେ ଅନାଇଁ ରହିଥାଏ କେମିତି ତାର ସୁନ୍ଦର ଗୁଡ଼ ଉଠୁଛି ପଡ଼ୁଛି ।

"ଏଲେନ୍ !" ସେ ବଡ଼ପାଟିରେ ଡାକିଲା । ପୁଣି ସେତିକିରେ ଅଟକିଲା । ଭାବିଲା, ଏପରି ସମୟରେ କିଛି କିଛି ନିର୍ଦ୍ଦିଷ୍ଟ କଥା ସବୁ କହିବାକୁ ପଡ଼େ ପରା ? କଣ କୁହାଯାଏ ? କିନ୍ତୁ କଣ ସବୁ ଯେ ଏଭଳି ବେଳେ ଯୁବକ ଯୁବତୀଙ୍କୁ କହିଥାଏ, ସେ ସବୁ ତାର ମନେପଡ଼ିଲା ନାହିଁ । ସେ ଏଲେନ୍‌ର ମୁହଁକୁ ଚାହିଁଲା । ଏଲେନ୍ ତା ଆଡ଼କୁ ଆହୁରି କଡ଼କୁ ମାଡ଼ ସାମ୍ନାକୁ ନଇଁପଡ଼ିଲା । ତା ମୁହଁ ଗୋଲାପ ଫୁଲ ପରି ନାଲି ପଡ଼ି ଯାଇଥାଏ ।

"ଧାତ୍ ! ଏଇଟାକୁ କାଢି ପକା ମ···ଏଇଟାକୁ"—ଏଲେନ୍ ତା ଚଷମା ଆଡ଼କୁ ଆଙ୍ଗୁଠି ଦେଖାଇଲା । ପିଏରେ ତା ଚଷମା କାଢ଼ି ପକାଇଲା । ଚଷମା ପିନ୍ଧା ମଣିଷ ଖାଲି ଆଖିରେ ଚାହିଁଲେ ତାଙ୍କ ଆଖିରେ ଯେପରି ବିଚିତ୍ର ଚାହାଣୀ ଦିଶେ, ତା ଚାହାଣୀ ସେହିପରି ଦିଶୁଥାଏ । ପୁଣି ତହିଁରେ ଥାଏ ଉଦ୍‌ବେଗ ଓ ପ୍ରଶ୍ନ । ସେ ବସିଥିଲା ଯେ ମୁହଁକୁ ନୁଆଇଁ ଦେଇ ଏଲେନର ହାତ ପାପୁଲି ଉପରେ ଚୁମା ଦେବ, କିନ୍ତୁ ଏଲେନ୍ ତା ମୁଣ୍ଡକୁ ଘୁଞ୍ଚିଦେଲା,—ସତେ ଯେମିତି ମଣିଷ ନୁହେଁ, ଜନ୍ତୁଟାଏ, ତା ଓଠକୁ ଆପଣା ଓଠରେ ଝାମ୍ପି ନେଇ ମାଡ଼ି ଧରିଲା । ପିଏରେ କାବା-ହୋଇ ଦେଖିଲା ତା ମୁହଁର ଭଙ୍ଗୀ ବଦଳିଯାଇଛି, କେମିତି ପ୍ରକାରେ ବିହ୍ୱଳିତ ଅପ୍ରୀତିକର ଦିଶୁଛି । ଭାବିଲା—

"ଆଉ ପଛକୁ ବାହୁଡ଼ିଯିବା ଅସମ୍ଭବ । ଗଲା, ନେଡ଼ିଗୁଡ଼ି କହୁଣୀକି ବୋହିଗଲା, ସବୁ ସରିଗଲା । ସେ ଯାହା ହେଉ, ମୁଁ ତ ତାକୁ ଭଲପାଏଁ ବି ।"

ଏଥର ମନେ ପଡ଼ିଗଲା, ଏମିତି ସମୟରେ କଣ କହିବାକୁ ପଡ଼େ । ପିଏରେ କହିଲା, "ମୁଁ ତୁମକୁ ଭଲପାଏ ।" କହିସାରି ଲାଜମାଡ଼ିଲା, କାରଣ ତା ନିଜ ସ୍ୱର ନିଜ କାନକୁ ଶୁଭୁଥାଏ ସତେ ଯେମିତି ତହିଁରେ ପ୍ରାଣନାହିଁ, ସେହିପରି ।

ଛ' ସପ୍ତାହ ଉତ୍ତାରୁ ସେ ଦୁହିଙ୍କର ବାହାଘର ହେଲା । ଲୋକେ କହିଲେ, ତା ପରି ଭାଗ୍ୟବାନ୍ ଆଉ କିଏ ହେବ ? ସ୍ତ୍ରୀ ତ ପରମା ସୁନ୍ଦରୀ, ଏଣେ ନିଜେ ସେ ଲକ୍ଷ ଲକ୍ଷ ଟଙ୍କାର ମାଲିକ ହେଲାଣି ।

'କାଉଣ୍ଟ୍ ବେଜୁହଭ' ବୋଲି ପଦବୀ ଓ ଜମିଦାରୀର ଯେଉଁମାନେ ଉତ୍ତରାଧିକାରୀ ହୁଅନ୍ତି ପିଟର୍ସବର୍ଗ ସହରରେ ତାଙ୍କର ପୈତୃକ ଘର, ସେ ପ୍ରକାଣ୍ଡ ରାଜପ୍ରାସାଦ, ସେ ଘରର ସାଜସଜ୍ଜା ନୂଆ ହୋଇଯାଇଥାଏ। ପିଏରେ ସେହି ନଅରରେ ଆସି ରହିଲା।

୧୮୦୫ସାଲ ନଭେମ୍ବର ୧୬ ତାରିଖ। ଭୋର୍ ପାହାନ୍ତିଆ ବେଳ। ସେତିକବେଳେ ଡେନିସଭ୍ ଅଧୀନରେ ଥିବା ସୈନ୍ୟଦଳ ଛାଉଣୀ ଛାଡ଼ି-ଦେଇ ଆଗକୁ ଚାଲିଲେ। ତା ପୂର୍ବ ରାତିରେ ସେହି ଜାଗାରେ ଛାଉଣି ପକାଇ ସେମାନେ ବିଶ୍ରାମ କରିଥିଲେ। ଲୋକେ କୁହାକୋହି ହେଲେ। ଯେ ସେମାନେ ମାର୍ଚ୍ଚ ହଉଛନ୍ତି ଲଢ଼େଇ କରିବେ ବୋଲି। ରୋଷ୍ଟଭ୍ ସେହି ସୈନ୍ୟଦଳରେ ନିଯୁକ୍ତ ହୋଇଥାଏ। ସେ ଦଳଟି ସେନାପତି ପ୍ରିନ୍ସ୍ ବାଗ୍ରାତିଆନଙ୍କ ଅଧୀନରେ ଥିବା ସୈନ୍ୟ ବାହିନୀର ଅନ୍ତର୍ଭୁକ୍ତ। ସେହି ବାହିନୀର ନାନା ସୈନ୍ୟଦଳ ଆଗେ ଆଗେ ଚାଲିଥାନ୍ତି, ଡେନିସଭ୍ ଅଧୀନରେ ଥିବା ସୈନ୍ୟ ଦଳ ସେହିମାନଙ୍କ ପଛେ ପଛେ ମାଇଲିଏ ବାଟ ପାହୁଣ୍ଡ ପକାଇ ପକାଇ ଚାଲିଲା, ସେଇଠୁ ସେ ଦଳକୁ ଅଟକାଇ ଠିଆ କରି ରଖାଗଲା। ରୋଷ୍ଟଭ୍ ଦେଖୁଥାଏ, ତା କରିବାଟେ ଆଗକୁ ଆଗକୁ ମାର୍ଚ୍ଚ କରିକରି ଚାଲିଗଲେ ନାନା ସୈନ୍ୟବଳ ଓ ସୈନ୍ୟବାହିନୀ। ଗଲେ ୟୁକ୍ରେନ୍ ପ୍ରଦେଶର 'କୋସାକ୍' ଜାତିର ସୈନ୍ୟଙ୍କ ଦଳ, ଧାଡ଼ିରେ ଛାଉଣି ଘୋଡ଼ସବାର ସୈନ୍ୟଙ୍କର ପ୍ରଥମ ଦଳ, ଦ୍ୱିତୀୟ ଦଳ ଓ ତୋପଚାଳକ ସୈନିକମାନଙ୍କ ସହିତ ପଦାତିକ ସୈନ୍ୟବାହିନୀମାନେ। ପୁଣି ଦେଖିଲା ଯେ ବାଗ୍ରାତିଅନ୍ ଓ ଡୋଲ୍ଗୋରୁକଭ୍ ଉଭୟ ସେନାପତି ନିଜ ନିଜ ପାର୍ଶ୍ୱଚର ଦଳପତିଙ୍କ ସଙ୍ଗରେ ଏକାଠି ହୋଇ ନିଜ ନିଜ ଘୋଡ଼ାରେ ବସି ଆଗକୁ ଧାଇଁଗଲେ।

"ମତେ ଯୁଦ୍ଧ କରିବାକୁ ପଡ଼ିବ" ଆଗେ ଏଇଆ ଭାବି ରୋଷ୍ଟଭଙ୍କୁ ଗ୍ଲାନିଆ ଲାଗୁଥିଲା, ମନ ଭିତରୁ ସେ ଭୟକୁ ଦୂର କରିବ ବୋଲି ସେ ନିଜ ସଙ୍ଗେ ନିଜେ କେତେ ମନେ ମନେ ଭିଡ଼ାଓଟରା ଲଗାଉଥିଲା, ପୁଣି କେତେ କେତେ ସ୍ୱପ୍ନ ଦେଖୁଥିଲା ଯେ ଘୋଡ଼ସବାର ସୈନିକ ହିସାବରେ ସେ ଏ ଯୁଦ୍ଧରେ ଲଢ଼ି ନାଁ କମେଇବ, କିନ୍ତୁ ସେ ସବୁ ବୃଥା ହୋଇଗଲା, ଯଦି କେତେବେଳେ ଦରକାର ପଡ଼ିବ ସେତେବେଳେ ଏ ସୈନ୍ୟଦଳ କାମରେ ଆସିବ, ଏହି ଉଦ୍ଦେଶ୍ୟରେ ଜେନେରାଲ ଅଧୀନସ୍ଥ ସୈନ୍ୟଦଳକୁ ଆଗକୁ ନନେଇ ସେଠି ଅଟକାଇ ରଖାହୋଇଥିଲା । ଦିନ ଗୋଟାଏ ବିତିଲା, ରୋଷ୍ଟଭଙ୍କୁ ଭାରି ଖରାପ ଲାଗୁଥାଏ । ବେଳ କଟେଇବା ବିରକ୍ତିକର ଲାଗୁଥାଏ । ତା'ପରେ, ସକାଳ ନଅଟା ବେଳ ହେବ, ରୋଷ୍ଟଭଙ୍କୁ ଶୁଭିଲା, ସାମ୍ନାରେ ଗୁଳି ଫୁଟୁଛି, ବିଜୟ ଉଲ୍ଲାସର ଚିତ୍କାର ହେଉଛି । ସେ ଦେଖିଲା ଯେ ଯୁଦ୍ଧରେ ଯେଉଁମାନେ ଆହତ ହେଲେ, ଲୋକେ ତାଙ୍କୁ ବୋହି ଆଣୁଛନ୍ତି (କିନ୍ତୁ ଆହତମାନଙ୍କ ସଂଖ୍ୟା ବେଶି ନଥିଲା । ସେଉଠୁ ଦେଖିଲା ଯେ ରୁଷପଟେ କୋସାକ ସୈନ୍ୟମାନେ ଘେରକରି ଫରାସି ସୈନ୍ୟ ବାହିନୀର ଗୋଟାଏ ପୂରା ଘୋଡ଼ସବାର ସୈନ୍ୟଦଳକୁ ବନ୍ଦୀକରି ନେଇ ଆସିଲେ । ସ୍ପଷ୍ଟ ଜଣା ପଡ଼ୁଥାଏ ଯେ ଯେଉଁ ଲଢ଼େଇଟା ଘଟିଗଲା ସେଇଟା ଗୋଟାଏ ସାନ ଯୁଦ୍ଧ, ଯାହା ହେଉ ସେଇଟା ସରିଯାଇଛି ଓ ରୁଷପକ୍ଷ ଲୋକେ ସେଥିରେ ଜିତିଛନ୍ତି ।

ସୈନିକମାନେ ଓ ତାଙ୍କ ଉପରର ହାକିମମାନେ ଯେତେବେଳେ ଲଢ଼େଇରୁ ଫେରୁଥାନ୍ତି, ସେମାନେ କୁହାକୋହି ହେଉଥାନ୍ତି ଯେ ଚମତ୍କାର ଜିତାଟାଏ ମିଳିଛି, ଭିସାଉ ସହରଟା ରୁଷପକ୍ଷ ଦଖଲ କରିନେଇଛନ୍ତି ଓ ଗୋଟା ସୁଦ୍ଧା ଗୋଟାଏ ଫରାସି ବାହିନୀକୁ ବନ୍ଦୀକରି ପକାଇଛନ୍ତି ।

ରାତିରେ ଗୁଣ୍ଡା ଗୁଣ୍ଡା ବରଫ ପଡ଼ିଥିଲା, ତେଣୁ ଭାରି ଶୀତ ହୋଇଥିଲା; କିନ୍ତୁ ଦିନ ବେଳଟା ଭାରି ଫରଚ୍ଛ ଦିଶୁଥାଏ, ଖରା ପଡ଼ୁଥାଏ । ଶରତ ଋତୁର ଉଜ୍ଜ୍ୱଳ ମନଭୁଲୁସା ଦିନଟିଏ ସେ, ସେଦିନଟି ବିଜୟର ଆନନ୍ଦକର ସମ୍ବାଦ ସଙ୍ଗେ ଖାପିଖାଉଥାଏ । ବିଜୟ ହେଲା ବୋଲି ଖାଲି ଯୁଦ୍ଧରେ ଲଢ଼ୁଥିବା ଲୋକେ କହୁଥିଲେ ତା ନୁହେଁ, ରେଷ୍ଟଭ କରିବାଟେ

ସେ ଯେତେ ଚାଲିଯାଉଥାନ୍ତି, ଯେତେ ସୈନିକ ଯାଉଥାନ୍ତି, ଘୋଡ଼ାରେ ଚଢ଼ି ଯେତେ ସୈନିକ ବାହିନୀ, ସେନାପତି, ସେନାପତିଙ୍କ ପାର୍ଶ୍ୱଚର ଦଳପତିମାନେ ଏଣ୍ଡ଼କୁ ସେଣ୍ଡ଼କୁ ଯା ଆସ କରୁଥାନ୍ତି, ସେମାନଙ୍କ ମୁହଁରେ ଯେଉଁ ଆନନ୍ଦର ଭଙ୍ଗୀ ଝଲସି ଉଠୁଥାଏ, ବଳେ ତା ସେହି ବିଜୟ ସମ୍ବାଦ ସୂଚାଇ ଦେଇଥାଏ । ରୋଷ୍ତଭ ମନେମନେ ଗର୍ବ ବୋଧ କରୁଥାଏ, ମନ କ୍ଷୋଭରେ ଭରୁଥାଏ, ଲଢ଼େଇ ଆଗରୁ ଯେମିତି ଗୁଳିଆଁ ଲାଗେ, ଭୁକ୍ଙାରେ କାର୍ତ୍ତିକ ତାକୁ ସେମିତି ଗୁଳିଆଁ ଲାଗିଲା, ଲଢ଼େଇ କରି ଯୁଦ୍ଧ ଜିଣିବାର ଏଡ଼େ ସୁଖମୟ ଦିନଟାଏ ଚାଲିଗଲା, ତାକୁ ସେ ଦିନଟାଯାକ ବିତେଇବାକୁ ପଡ଼ିଲା କୌଣସି କାମ ନକରି ।

ଡେନିସଭ୍ ସଡ଼କ କଡ଼ରେ ବସିଥାଏ, ତା ସାମ୍ନାରେ କିଛି ଖାଦ୍ୟ ଓ ଗୋଟାଏ ବାକ୍ସ ମଦ ବୋତଲ । ବଡ଼ ପାଟିରେ ଡାକ ପକାଇଲା 'ଆସ ହୋ ରୋଷ୍ତଭ୍ ! ଏଠିକି ଚାଲି ଆସ, ଥୋଡ଼ାଏ ପିଇଦବା, କହିବା 'ଯା ଚାଲିଯା ଶଲ୍ୟାଦିକ' "ଡେନେସଭ୍‌ର ମଦ ବାକ୍ସ ଚାରିକଡ଼େ କର୍ମ-ଚାରୀମାନେ ଗୋଲହୋଇ ବସିପଡ଼ିଲେ, ଖାଉଥାନ୍ତି, ଗପୁଥାନ୍ତି ।

ଦୁ'ଜଣ କୋସାକ୍ ସୈନିକ ଜଣେ ଫରାସି ଘୋଡ଼ସବାର ସୈନିକକୁ ବନ୍ଦୀକରି ନେଇ ଚାଲିଛି ଆଣୁଥାନ୍ତି । ଜଣେ କର୍ମଚାରୀ ସେହି ଆଡ଼କୁ ହାତ ବଢ଼ାଇଦେଇ କହିଲେ, "ହେଇ ଦେଖ ଫେର୍ ଗୋଟାକୁ ଆଣିଲେଣି ।" ଜଣେ କୋସାକ୍ ସୈନିକ ବନ୍ଦୀ ସୈନିକର ଘୋଡ଼ା ଲଗାମ ଧରି ଓଟାରି ଓଟାରି ଘୋଡ଼ାକୁ ଆଣୁଥାଏ, ସୁନ୍ଦର ଫରାସି ଘୋଡ଼ାଟିଏ, ଆକାରରେ ଡେଙ୍ଗା ।

"ଏହି ଘୋଡ଼ାକୁ ବିକିବ କି ?" ଡେନିସଭ୍ କୋସାକ୍ ସୈନିକ ଦୁହିଙ୍କୁ ପଚାରିଲା ।

"ହଜୁର୍ ନେବେ ତ ଦିଅନ୍ତୁ ।"

କର୍ମଚାରୀମାନେ ଉଠି ପଡ଼ିଲେ, ବନ୍ଦୀ ସୈନିକ ଓ କୋସାକ୍ ସୈନିକ ଦୁହିଙ୍କୁ ବେଢ଼ି ଠିଆହେଲା । ଫରାସୀ ଘୋଡ଼ସବାର ସୈନିକଟିର ବୟସ ଅଳ୍ପ, ସେ ଆଲ୍‌ସେସ୍ ଅଞ୍ଚଳର ବାସିନ୍ଦା, ଫରାସୀ ଭାଷାରେ କଥା

ଲାଗୁଥାଏ ଯେ ଶବ୍ଦ ଉଚ୍ଚାରଣ ଶୁଣୁଥାଏ ଜର୍ମାନ୍ ଭାଷାର । ତା ମନରେ ଉତ୍ତେଜନା ଥାଏ, ତେଣୁ ତା ଗୋରା ମୁହଁଟି ନାଲିଆ ଦିଶୁଥାଏ ଓ ସେ ଅବିଶ୍ୱାସୀ ହୋଇଯାଉଥାଏ । ଏମାନେ ଫରାସୀ ଭାଷାରେ କଥା କହୁଛନ୍ତି ବୋଲି ଯେମିତି ଶୁଣିଲା, ସେ ତଳିତର କରି ରୁଷ୍ କର୍ମଚାରୀମାନଙ୍କ ସଙ୍ଗେ କଥାଭାଷା ଆରମ୍ଭ କରିଦେଲା, ଜଣକୁ କଥା କହେ, ପୁଣି ଆଉ ଜଣକୁ କଥା କହେ । ସେ କହିଲା ସେ କଦାପି ବନ୍ଦୀ ହୋଇନଥାନ୍ତା, ଘୋଡ଼ାଙ୍କ ଦେହ ଘୋଡ଼େଇବାକୁ ଗୃହିର ଆଣିବ ପାଇଁ ବୋଲି ଯେଉଁ ଦଳପତି ଜଣକ ତାକୁ ବରଗି ଦେଇ ପଠାଇଦେଲେ, ତାଙ୍କର ଦୋଷରୁ ସେ ଧରାପଡ଼ିଗଲା । ସେ ତ ସେ ଦଳପତିଙ୍କି କହିଥିଲା ଯେ ଯେଉଁ ଜାଗାକୁ ତାକୁ ପଠାଉଛନ୍ତି, ସେଠି ରୁଷପକ୍ଷର ସୈନ୍ୟମାନେ ଅଛନ୍ତି । ସବୁ କଥା ଶେଷରେ ସେ ଘୋଡ଼ାଟିକୁ ଆଉଁସି ପକାଉଥାଏ, ଆଉ କହୁଥାଏ "ଯାହା କରନ୍ତୁ ପଛେ, ମୋର ଏ ଘୋଡ଼ା ବକଟକର ଯେମିତି କେହି କିଛି ଅନିଷ୍ଟ ନ କରନ୍ତୁ ।" ଲାଗୁଥାଏ ଯେ ସେ କେଉଁଠି ଅଛି ତା ଠିକ୍ ବୁଝିପାରୁନାହିଁ । କେତେବେଳେ ଏଭଳି କରୁଥାଏ ଯେ କାହିଁକି ସେ ଧରା ପଡ଼ିଗଲା, ସେଥି ସକାଶେ ତା ନିଜର ଭୁଲ ନ ଥିଲା କହି ନିଜ ଉପରୁ ଦୋଷ ଖସାଇ ଦେଉଥାଏ, ଆଉ ଠିକ୍ ତା ପଛେ ପଛେ ତାକୁ ସଚେତନ ଲାଗୁଥାଏ ଯେ ସେ ଯେଉଁମାନଙ୍କ ଆଗରେ ଠିଆ ହୋଇଛି ସେମାନେ ଫରାସି ସୈନ୍ୟବାହିନୀର ଲୋକ, ତାଁ ଉପରସ୍ଥ ହାକିମମାନେ, ସୈନିକ ହିସାବରେ ହୁକୁମ୍ ମାନିବା, ହାକିମଙ୍କ ଆଗରେ ଠିଆହେବା ଆଦିରେ ଯେଉଁ ଠାଣି, କାଇଦା କଟକଣା ବିଷୟରେ ସେ ତାଲିମ୍ ପାଇଛି ଓ ଫରାସି ସୈନ୍ୟବାହିନୀ ପ୍ରତି ଚାକିରିଆ ହିସାବରେ ତାର ଯେଉଁ ଉତ୍ସାହ ଓ ଅନୁରକ୍ତି ରହିଛି, ସେ ତା ଢଂ ଢାଂ କଥାଭାଷାରେ ତାହାର ପ୍ରମାଣ ଦେଉଥାଏ । ଫରାସି ପକ୍ଷର ସୈନ୍ୟ-ବାହିନୀ ଭିତରେ ବାତାବରଣ କପରି, ରୁଷପକ୍ଷର ସୈନ୍ୟବାହିନୀର ପଛପଟ ଅଞ୍ଚଳରେ ତା ସମ୍ପୂର୍ଣ୍ଣ ଅଚିହ୍ନା ଅଜଣା, ସୈନିକଟି ଅବିକଳ ସେହି ଜୀବନ୍ତ ବାତାବରଣ ନେଇ ରୁଷ୍ ସୈନ୍ୟବାହିନୀର ପଛଆଡ଼ ଅଂଶରେ ଆସି ପହଞ୍ଚିଥାଏ ।

କୋଷାକ୍ ସୈନିକ ଦିହେଁ ଘୋଡ଼ାର ଦାମ୍ ଯୋଡ଼ିଏ ସୁନା ମୋହର କହି ଘୋଡ଼ାକୁ ବିକିଦେଲେ, କିଣିଲା ରୋଷ୍ଟଭ୍, କାରଣ ତା

ଘରୁ ଟଙ୍କା ଆସୁଥାଏ, ତେଣୁ ସୈନିକ କର୍ମଚାରୀମାନଙ୍କ ଭିତରେ ସେ ସବୁଠୁ ଧନୀ । ଯେତେବେଳେ ଘୋଡ଼ସବାର୍ ସୈନିକ ରୋଷ୍ଟଭ୍ ହାତକୁ ଘୋଡ଼ାକୁ ବଢ଼ାଇ ଦିଆଗଲା, ଆଲ୍‌ସେସ୍ ଅଞ୍ଚଳର ସେହି ଫରାସୀ ସୈନିକଟି କହିଲା,"ଟିକି ଘୋଡ଼ାଟି ପ୍ରତି ଭଲ ବ୍ୟବହାର କରୁଥିବେ ।" ରୋଷ୍ଟଭ୍ ହସି ହସି ତାକୁ ଆଶ୍ୱାସନା ଦେଲା, ତାକୁ ଟଙ୍କା ଦେଲା ।

କୋସାକ୍ ସୈନିକଟିରୁ ଜଣେ ବନ୍ଦୀର ବାହୁକୁ ଛୁଇଁଦେଲା, ସେ ସଙ୍କେତର ଅର୍ଥ,—ସେ ଆଉ ଠିଆ ନ ହୋଇ୍ ଚାଲୁ । କହିଲା, "ଚାଲ । ଚାଲ ।"

ହଠାତ୍ ଘୋଡ଼ସବାର ସୈନିକମାନଙ୍କ ଗହଳ ଭିତରୁ ପାଟି ଶୁଭିଲା,

"ସମ୍ରାଟ୍ ! ସମ୍ରାଟ୍ !"

ସବୁଠିଁ ଖାଲି ଧାଁ ଧପଡ଼ ଓ ତରତର ଲାଗିଗଲା । ରୋଷ୍ଟଭ୍ ଦେଖିଲା ଯେ ସେମାନଙ୍କ ପିଠିଆଡ଼ୁ ବହୁତଗୁଡ଼ିଏ ଅଶ୍ୱାରୋହୀ ଆଗକୁ ମାଡ଼ି ଆସୁଛନ୍ତି । ତାଙ୍କ ଟୋପିରେ ଧଳା ଚଢେଇ ପଖି ଖୋସା ହୋଇଛି । ଆଖି ପିଛୁଡ଼ାକେ ସମସ୍ତେ ନିଜ ନିଜ ଜାଗାରେ ଠିଆହୋଇଯାଇ ଅପେକ୍ଷା କରି ରହିଲେ ।

ରୋଷ୍ଟଭ୍ କେମିତି ଯେ ଆପଣା ସ୍ଥାନକୁ ଦୌଡ଼ିଯାଇ ତା ଘୋଡ଼ାରେ ଚଢ଼ିଗଲା ସେକଥା ଆଉ ତା ସ୍ମରଣରେ କି ଚେତନାରେ ନଥିଲା । ସେ ଯୁଦ୍ଧରେ ସେ କି ମିଶିଯାଇ ଯୁଦ୍ଧ କରି ପାରିଲାନାହିଁ ବୋଲି ତା ମନରେ ଯେଉଁ ଶୋଚନା ଥିଲା, ଯେଉଁ ଲୋକଙ୍କୁ ଘୋରତେଇ ପୋରତେଇ ସବୁ ଦିନେ ଦେଖୁଛି ତାଙ୍କରି ସଙ୍ଗରେ ଥିବାରୁ ତା ମନ ଯେମିତି ଚଟାଳିଆ ବିରସ ଲାଗୁଥିଲା, ଏକାମୁହୂର୍ତ୍ତକେ ଏସବୁ ଭାବ କୁଆଡ଼େ ଉଭେଇ ଗଲା । ନିଜ ବିଷୟରେ ତାର ଯାବତୀୟ ଭାବନା ସେହି ଏକା ମୁହୂର୍ତ୍ତରେ ଛାଡ଼ି ପଳେଇଲା । ରୁଷ୍ ଦେଶର ସମ୍ରାଟ୍ ତାର ଅତି ପାଖରେ ଅଛନ୍ତି ଏଇଆ ଭାବି ତା ମନରେ ଯେଉଁ ସୁଖ ଅନୁଭୂତ

ହୋଇଥିଲା ସେ ସେଇଥିରେ ସମ୍ପୂର୍ଣ୍ଣ ଭାବେ ମଜ୍ଜି ରହିଥିଲା । ସେ ଭାବୁଥାଏ ଯେ ଦିନଟିଯାକ ବୃଥାରେ ଯାଇଥିବାରୁ ତାର ଯେଉଁ କ୍ଷତି ହୋଇଛି, ରୁଷ୍ ଦେଶର ସମ୍ରାଟ ନିକଟରେ ଅଛନ୍ତି ଖାଲି ଏତିକଯୋଗୁଁ ସେ କ୍ଷତି ପୂରଣ ହୋଇ ସାରିଲାଣି । ବହୁ ଆକାଙ୍କ୍ଷିତ ମିଳନ ମୁହୂର୍ତ୍ତ ଆସିଗଲେ ପ୍ରେମିକଟିଏ ଯେପରି ଆନନ୍ଦରେ ଅଧୀର ହୁଏ ତା ଆନନ୍ଦ ଅବିକଳ ସେହିପରି । ଆଗ ଧାଡ଼ିରେ ରହି ମୁହଁ ବୁଲେଇ ଚାରଆଡ଼କୁ ଦେଖିବାକୁ ତାର ସାହସ ହେଉନଥାଏ । କିନ୍ତୁ ସେଆଡ଼କୁ ନ ଚାହିଁଲେ ବି ଆନନ୍ଦର ଏକ ପ୍ରକାର ସ୍ୱାଭାବିକ ଅନୁଭବ ପ୍ରବୃତ୍ତି ବଳରେ ସେ ବାରି ପାରିଲା ଯେ ରୁଷ୍ ସମ୍ରାଟ ତା ଆଡ଼କୁ ଆସୁଛନ୍ତି । ଖାଲି ପାଖକୁ ପାଖକୁ ମାଡ଼ି ମାଡ଼ି ଆସୁଥିବା ଅଶ୍ୱାରୋହୀଦଳଙ୍କ ଘୋଡ଼ା ଟାପୁ ଶବ୍ଦ ଶୁଣି ସେ ରୁଷ୍ ସମ୍ରାଟ ଆସୁଛନ୍ତି ବୋଲି ତାକୁ ଲାଗିଥାଏ ସେତିକି ନୁହେଁ, ରୁଷ୍ ସମ୍ରାଟ୍ ଯେତୁଁ ଯେତୁଁ ପାଖ ହୋଇ ଆସୁଥାନ୍ତି ତହୁଁ ତହୁଁ ସବୁ ଆହୁରି ଉଜ୍ଜଳ ହୋଇ ଯାଉଥାଏ, ଆହୁରି ଉତ୍ଫୁଲ୍ଲକର, ଆହୁରି ତାତ୍ପର୍ଯ୍ୟପୂର୍ଣ୍ଣ, ଆହୁରି ଉତ୍ସବମୁଖରିତ ହୋଇଯାଉଥାଏ, ସେଥିପାଇଁ ମଧ୍ୟ ତାକୁ ସେପରି ଲାଗୁଥାଏ, ରୋଷ୍ଟଭ୍‌କୁ ଲାଗୁଥାଏ, ସେ ସତେ ଅବା ଗୋଟିଏ ସୂର୍ଯ୍ୟ, ସେ ସୂର୍ଯ୍ୟ ପାଖ ହୋଇ ହୋଇ ଆସୁଛି, ଚାରିକରେ ବିଞ୍ଚି ଦେଉଛି ସ୍ନିଗ୍ଧ ଓ ମହିମାମୟ କିରଣମାଳା, ତାପରେ ସେ ଅନୁଭବ କଲା ଯେ ସେ କିରଣର ଜ୍ୟୋତିରେ ସେ ନିଜେ ଆବୃତ ହୋଇଗଲାଣି, ତା କାନରେ ବାଜିଲା ଜଣକର ସ୍ୱର,—ସେ ସ୍ୱର ସ୍ନେହ ଶରଧାରେ ଭେଲ କଲା ପରି, ଶାନ୍ତ, ଐଶ୍ୱର୍ଯ୍ୟମୟ, ଅଥଚ କେଡ଼େ ନିରାଡ଼ମ୍ବର । ମୃତ୍ୟୁର ନୀରବତା ପରି ନୀରବତା ହୋଇଥାଏ—ରୋଷ୍ଟଭ୍ ଭାବୁଥାଏ ଏଇଆ ତ ଉପଯୁକ୍ତ—ଆଉ ସେହି ନୀରବତା ମଧ୍ୟରେ ସେ ରୁଷ୍ ସମ୍ରାଟଙ୍କ ସ୍ୱର ଶୁଣିଲା,

"ପାଭ୍‌ଲଭ୍‌ର ଅଶ୍ୱାରୋହୀ ସେନାବାହିନୀ ?"

ରୁଷ୍ ସମ୍ରାଟ୍ ପଚାରିଲା ପରି କଥା କହୁଥାନ୍ତି, ଆଉ ସେହି ଅତି-ମାନବଙ୍କ ସ୍ୱର ଉତ୍ତରରୁ ଆଉ ଗୋଟିଏ ଭିନେ ସ୍ୱରରେ ଉତ୍ତର ଶୁଭିଲା,

"ଏ ବଳକା ହାତରେ-ପାଞ୍ଚ୍ ମଣିମା !" ସ୍ୱରଟା ଏଭଳି ସାଧାରଣ ସ୍ୱରଟାଏ ! ଏକଦମ୍ ମଣିଷସ୍ୱର, କିଛି ବିଶେଷତ୍ୱ ନାହିଁ ।

ରୁଷ ସମ୍ରାଟ୍ ଆଲେକଜାଣ୍ଡାର ଥାନ୍ତି ବୈସ୍ତଭ୍‌ର ମୁହଁ ସାମନାରେ ତା ସଙ୍କୁଚିତ ଏକା ପତ୍ରକରେ ଏମିତି ସେ ଘୋଡ଼ା ଠିଆକରି ସ୍ଥିର ହୋଇ ରହିଲେ ।

ରୁଷ୍ ଦେଶର ସମ୍ରାଟ୍ ଆଲେକ୍‌ଜାଣ୍ଡରଙ୍କ ମୁହଁ ଏଭଳି ପ୍ରଫୁଲ୍ଲତା, ଯୌବନ, ନିରହ ତାରୁଣ୍ୟରେ ଉଜ୍ଜ୍ୱଳ ଦିଶୁଥାଏ ଯେ ତାଙ୍କୁ ଦେଖିଲେ ଗୋଟିଏ ଚଉଦ ବର୍ଷ ବୟସର ପିଲାର କ୍ରୀଡ଼ାକୌତୁକ ପ୍ରବିଣତାହିଁ ମନେ ପଡ଼ୁଥାଏ । ଯେତେବେଳେ ତିଥାପି ସେ ମୁହଁ ମହାମହିମ ରୁଷ୍ ସମ୍ରାଟଙ୍କ ମୁହଁହିଁ । ସୈନ୍ୟବାହିନୀ ଉପରେ ଅବିଶ୍ରାନ୍ତରେ ଏମୁଣ୍ଡ ସେମୁଣ୍ଡ ଆଖି ବୁଲେଇ ନେଇ ଗଲାବେଳେ ତାଙ୍କ ଦୃଷ୍ଟି ବୈସ୍ତଭ୍‌ର ଦୃଷ୍ଟିକୁ ଭେଟି ସେମିତିନେ ସ୍ଥିରଚକ୍ଷୁ ହେଲେ, ସମ୍ରାଟଙ୍କ ଦୃଷ୍ଟି ବୈସ୍ତଭ୍‌ର ଆଖି ଉପରେ ବିଶ୍ରାମ କରିଥିଲା ପ୍ରାୟ ଦୁଇ ସେକେଣ୍ଡ୍ ବେଳ, ତହିଁରୁ ବେଶି ନୁହେଁ । ବୈସ୍ତଭ୍‌ର ଅନ୍ତର ଭିତରେ କଣ ହୋଇଯାଉଛି ତା ରୁଷ୍‌ସମ୍ରାଟ୍ ଦେଖିଥାନ୍ତୁ କି ନ ଦେଖିଥାନ୍ତୁ (ବୈସ୍ତଭ୍‌କୁ ଲାଗିଥାଏ ସେ ସବୁ ଦେଖିଲେ) ଯାହା ହେଉ ସେ ତାଙ୍କର ନେଳ ନେଳ ଆଖିରେ ଦୁଇ ସେକେଣ୍ଡ୍ ଯାକେ ବୈସ୍ତଭ୍ ମୁହଁକୁ ଅନାଇଲେ (ତାଙ୍କ ଆଖି ଯୋଡ଼କରୁ ଗୋଟିଏ କୋମଳ ଜ୍ୟୋତି ଝଲସି ଉଠୁଥାଏ) ତାପରେ ହଠାତ୍ ସେ ଭ୍ରୂଲତା ଯୋଡ଼ିକ ଟେକିଲେ, ବାଁ ପାଦରେ ତାଙ୍କ ଘୋଡ଼ା ଦେହରେ ମାରିଲେ ଭୁଷାଏ, ଘୋଡ଼ାକୁ କଦମ ଡିଆଁଇ ଚାଲିଗଲେ ।

ଯୁଦ୍ଧରେ ନିଜେ ଉପସ୍ଥିତ ରହିବା ପାଇଁ ପ୍ରବଳ ଇଚ୍ଛାକୁ ତରୁଣ ସମ୍ରାଟ୍ ରୋକି ପାରିଲେ ନାହିଁ, ତାଙ୍କ ପାରିଷଦ୍‌ବର୍ଗଙ୍କର ନାନା ଯୁକ୍ତି-ସମ୍ବଳିତ ଆପତ୍ତିକୁ ଏଡ଼ି ଦେଇ ସେ ଯେଉଁ ତୃତୀୟ ବାହିନୀ ପଛେ ପଛେ ଚାଲିଥିଲେ ସେଠୁ ଖସି ପଳାଇ ଦିନ ବାରଟା ବେଳେ ସେ ଘୋଡ଼ାକୁ କଦମ୍ ଛୁଟାଇ ଆଗୁଆ ବାହିନୀକୁ ଚାଲିଗଲେ । ସେ ଅଶ୍ୱାରୋହୀ ସୈନିକ ଦଳରେ ନିମହଞ୍ଚୁ କେତେଜଣ ପାର୍ଶ୍ୱରକ୍ଷୀ ଦଳପତି ଏହି ସମ୍ବାଦ ଘେନି ତାଙ୍କ ପାଖରେ ପହଞ୍ଚିଲେ ଯେ ଯେଉଁ ଲଢ଼େଇଟା ଲାଗିଯାଇଥିଲା ତହିଁରେ ରୁଷ୍ ପକ୍ଷର ବିଜୟ ହୋଇଛି ।

ସ୍ତବ୍ଧତାରେ ସେ ଜଙ୍ଗଲରେ ଖୋଲା ଫରାସୀ ସେନାବାହିନୀର ନାଗାଁ ଦଳ ଭିତରୁ ଗୋଟିଏ ଦଳ ସୈନିକ ବନ୍ଦୀ ହୋଇଥିଲେ, ଆଉ ବେଶୀ କିଛି ଘଟିନାହିଁ । କିନ୍ତୁ ତାକୁ ବଢ଼େଇ କୁହାଗଲା ଯେ ଶତ୍ରୁ ସୈନ୍ୟ ଉପରେ ସେ ଗୋଟିଏ ବିପୁଳ ବିଜୟ । ତେଣୁ ରୁଷ୍ ସମ୍ରାଟ୍ ଓ ସମଗ୍ର ରୁଷ୍ ସେନା ବିଶ୍ୱାସ କଲେ ଯେ ଫରାସୀମାନେ ପରାଜିତ ହୋଇଛନ୍ତି ଓ ସେମାନଙ୍କ ଅନିଚ୍ଛାସତ୍ତ୍ୱେ ପଛଘୁଞ୍ଚା ଦେଇ ହଟିଯିବାକୁ ବାଧ୍ୟ ହୋଇଛନ୍ତି । ଏଭଳି ବିଶ୍ୱାସ ଜନ୍ମିବାର ବିଶେଷ କାରଣ ହୋଇଥିଲା ଯେ ସେତେବେଳେ ବି ଯୁଦ୍ଧଭୂମି ଉପରେ ବାରୁଦ ଧୂଆଁ ଗୁଡ଼ାକ ଲଦି ହୋଇଥାଏ । ରୁଷ୍ ସମ୍ରାଟ୍ ଘୋଡ଼ା ଛୁଟେଇ ଗଲାପରେ କେତେ ମିନିଟ ଗଲା ଉତ୍ତାରୁ ପାଭ୍ଲୋଗ୍ରାଡ୍ ଅଶ୍ୱାରୋହୀ ସୈନ୍ୟବାହିନୀକୁ ଆଦେଶ ମିଳିଲା ଯେ ସେ ଆଗକୁ ଯିବ ।

ୱିଶୋ ବୋଲି ଯେଉଁ ସହରଟିଏ ଥାଏ, ସେଠିକା ଲୋକ ଜର୍ମାନ୍ ଲୋକ । ସେଠି ପ୍ରଥମଥରେ ରୋଷ୍ଟଭ୍ ରୁଷ୍ ଦେଶର ସମ୍ରାଟଙ୍କୁ ଦେଖିଥିଲା । ସମ୍ରାଟ୍ ସେଠି ପହଞ୍ଚିବା ଆଗରୁ ସେ ସହରର ବଜାର ଭିତରେ ସାମାନ୍ୟ ଲଢ଼େଇ ଲାଗିଥିଲା । ସମ୍ରାଟ୍ ସେଠି ପହଞ୍ଚିଲା ସରିକ ସେ ଜାଗାରେ ଅନେକ ମୁର୍ଦ୍ଦାର ଓ ଅନେକ ଖଣ୍ଡିଆ ଖାବରା ସୈନିକ ପଡ଼ିଥାନ୍ତି, ସେମାନଙ୍କୁ ସେଠୁ ଉଠେଇ ନେବାକୁ ବେଳ ମିଳିନଥାଏ । ସେନାବାହିନୀ ପରିଦର୍ଶନ କଲାବେଳେ ରୁଷ୍ ଦେଶର ସମ୍ରାଟ୍ ଯେଉଁ ଘୋଡ଼ାରେ ବସିଥିଲେ ସେତେବେଳକୁ ଆଉ ସେ ଘୋଡ଼ା ଉପରେ ସେ ନଥାନ୍ତି, ଆଉ ଗୋଟିଏ ଘୋଡ଼ାରେ ଚଢ଼ିଥାନ୍ତି । ସେହି ଆର ଘୋଡ଼ାଟି ପୋଇ ଅଲତା ବର୍ଣ୍ଣର ଘୋଡ଼ାଟିଏ, ତାର ବାଦାମି ଓ ନାଲି ମିଶା ରଙ୍ଗ, ବଳିଷ୍ଠ ଶୁଦ୍ଧ ଜାତିର ଘୋଡ଼ା, ଟିକିଏ ବି ମିଶା ନୁହେଁ । ସମ୍ରାଟଙ୍କ ଗହଣରେ ତାଙ୍କ ପାର୍ଶ୍ୱଚର କର୍ମଚାରୀମାନେ ଓ ପରିଷଦ୍‌ମାନେ ବେଢ଼ି ରହିଥାନ୍ତି । ଗୋଟିଏ ଆହତ ସୈନିକ ସେଠି ମୁହଁମାଡ଼ି ତଳେ ପଡ଼ିଥାଏ ଯେ ତା ମୁଣ୍ଡ ଢଙ୍କା ହୋଇ ନଥାଏ, ତା ମୁଣ୍ଡଯାକ ରକ୍ତ ଲାଗିଥାଏ । ସମ୍ରାଟ୍ ସେଇଆଡ଼କୁ ଅନାଇଁଥାନ୍ତି । ସୁସ୍ଥ ଅଙ୍ଗଭଙ୍ଗୀ ଦେଖାଇ ସେ ଗୋଟିଏ କଡ଼କୁ ନଇଁ ପଡ଼ିଥାନ୍ତି ଓ ସୁନାବନ୍ଧା ଦୂରବୀକ୍ଷଣ ଯନ୍ତ୍ରର କାଚ ବାଟେ ସେ ସୈନିକଙ୍କୁ ଦେଖୁଥାନ୍ତି । ରୋଷ୍ଟଭ୍ ଭାବୁଥାଏ ଯେ ଆହତ ସୈନିକଟା ଏତେ ଅସନା ହୋଇଛି, ଏତେ ଭୟଙ୍କର ଦିଶୁଛି ଆଖିକୁ

ଏତେ ଖରାପ ଲାଗୁଛି ଯେ ସମ୍ରାଟ୍ ଯେଉଁଠି ଅଛନ୍ତି ତାଙ୍କର ପାଖରେ ସେ ପଡ଼ିଛି ସେ ଦୃଶ୍ୟ ଅସହ୍ୟ, ତା ପାଖେ ସମ୍ରାଟଙ୍କୁ ଦେଖି ସେ ମର୍ମାହତ ହେଲା ଓ ବିସ୍ମିତ ହେଲା । ସେ ଲକ୍ଷ୍ୟ କରୁଥାଏ କେମିତି ସମ୍ରାଟଙ୍କର ନଇଁ ପଡ଼ିଥିବା କାନ୍ଧ ଯୋଡ଼ିକ ଥରି ଉଠିଲା, ସତେ ଅବା କାନ୍ଧ ଭିତରେ ଶୀତୁଆ କମ୍ପ ଉଠୁଛି କେମିତି ତାଙ୍କ ବାଁ ପାଦଟି ଛଟଛଟ ହେଲାପରି ଛୁଟିକି ଯାଇ ପାଦରେ ଖଞ୍ଜା ହୋଇଥିବା ଘୋଡ଼ାନତା କେଞ୍ଚା ମୁନରେ ଘୋଡ଼ା ଅଣ୍ଟାରେ ଚିଅ ମାରିଲା । ଅଥଚ କେମିତି ସେ ଉପଯୁକ୍ତ ତାଲିମ୍ ପାଇଥିବା ଘୋଡ଼ା ଖାଲି ବଲ ବଲ କରି ଚାହିଁ ରହିଥାଏ, କେଞ୍ଚାରେ ଭୁଷା ଖାଇ ହଲଚଲ ବି ହେଲା ନାହିଁ । ଜଣେ ପାର୍ଶ୍ୱରକ୍ଷୀ ଦଳପତି ଘୋଡ଼ାରୁ ଓହ୍ଲେଇ ପଡ଼ିଲେ, ସୈନିକଟିର କାଖ ତଳେ ହାତ ଦେଇ ତାକୁ ଟେକି ନେଲେ ଓ ଆହତ ଲୋକଙ୍କୁ ବୋହିନେବା ଖଟିଆରୁ ଗୋଟାଏ ସେତିକ- ବେଳେ ସେଠି ପହଞ୍ଚିଗଲା ଯେ ତହିଁରେ ସେ ସୈନିକକୁ ଶୁଆଇବାକୁ ଲାଗିଲେ । ସୈନିକଟି ଯନ୍ତ୍ରଣାରେ ଚିତ୍କାର କଲା ।

ସମ୍ରାଟ୍ କହିଲେ, "ଆସ୍ତେ ! ଆସ୍ତେ ! ଆଉ ଟିକିଏ ଆସ୍ତେ କରି ପାରନ୍ତେ ନାହିଁ ?"

ଲାଗୁଥାଏ ଯେପରିକି ମରିବାକୁ ବସିଥିବା ସୈନିକଟିଅପେକ୍ଷା ତାଙ୍କୁ ବେଶି କଷ୍ଟ ବାଧୁଛି । ସେ ଘୋଡ଼ା ଛୁଟେଇ ଚାଲିଗଲେ ।

ରୁଷ ସେନାର ଆଗୁଆଣି ଥାଟ ବାଗ୍ରୋ ସହର ଆଗରେ ଶତ୍ରୁ ସେନାର ଆଗ ଧାଡ଼ି ଦେଖାଯିବାରେ ଆସନ ଜମେଇ ରହିଥାନ୍ତି । ଦିନଯାକ ଯେତେବେଳେ ଦୁଇ ପକ୍ଷ ପରସ୍ପର ଆଡ଼କୁ ସାମାନ୍ୟରେ ହେଲେ ଗୁଳି ମରାମରି କରୁଥାନ୍ତି ସେତେବେଳେ ଶତ୍ରୁ ସେନାର ଆଗ ଧାଡ଼ି ପଛକୁ ପଛକୁ ଘୁଞ୍ଚି ଘୁଞ୍ଚି ଯାଉଥାଏ । ରୁଷ୍ ସେନାର ସେହି ଆଗ ପଟର ସୈନ୍ୟ- ଦଳକୁ ରୁଷ୍ ସମ୍ରାଟଙ୍କ ଧନ୍ୟବାଦ ଜଣାଇ ଦିଆହେଲା, ପୁରସ୍କାରମାନ ଦିଆହେବ ବୋଲି କୁହାଗଲା ଓ ସୈନ୍ୟମାନେ ତାଙ୍କ ଭୋଜନା ରସଦରେ ଜଣକେ ଯେତିକି ଲେଖାଁ ଭଦ୍‌କା' ମଦ ପାଆନ୍ତି ତାର ଦୋହରି ସେମା- ନଙ୍କୁ ଦିଆଗଲା । ସବୁ ରାତିରେ ସୈନ୍ୟମାନେ ଦଳଦଳ ହୋଇ ଯେତିକି

ଯେତିକ ଅଗି ଜାଳ ନଆଁ ପୁଅଁନ୍ତି ସେଦିନ ରାତିରେ ସେ ହେଲା ତାଠୁଁ ବେଶୀ, ଅଗି ନଆଁ ମାନ ଅନ୍ୟାନ୍ୟ ରାତି ଅପେକ୍ଷା ଆହୁରି ଆନନ୍ଦରେ ହୁତୁ ହୁତୁ ହୋଇ ଜଳିଲା, ସୈନ୍ୟମାନେ ଗୀତ ଗାଇଲେ । ଡେନିସଭ୍‌ଙ୍କୁ 'ମେଜର' ପାହ୍ୟାକୁ ପଦୋନ୍ନତି ମିଳିଥାଏ ଯେ ସେହି ରାତିରେ ସେଥିପାଇଁ ସେ ଉତ୍ସବ କଲା, ଉତ୍ସବ ଶେଷ ଆଡ଼କୁ ବହୁତ ମଦପିଆ ପରେ ମଦ ଗିଲାସ ଟେକି ଆନୁଷ୍ଠାନିକ ଭାବରେ ସେ ରୁଷ୍ ସମ୍ରାଟ୍‌ଙ୍କ ଶୁଭ ମନାସିବାକୁ ପ୍ରସ୍ତାବ କଲା, କହିଲା,

"ସରକାରୀ ଭୋଜିରେଯେମିତି ମାମୁଲି କଥା କହନ୍ତି— 'ଆମର ରାଜା ରୁଷ୍ ସମ୍ରାଟ୍‌ଙ୍କର ଶରୀର ସୁସ୍ଥ ଥାଉ', ଆମେ ସେପରି କହିବା ନାହିଁ, ଆମେ କହିବା—

'ଅତି ଉତ୍ତମ, ଚିତ୍ତବିମୋହନ ମହାପୁରୁଷ ସମ୍ରାଟଙ୍କ ଶରୀର ସୁସ୍ଥ ଥାଉ; ଆମେ ସୁରାପାନ କରିବା ତାଙ୍କର ସ୍ୱାସ୍ଥ୍ୟର ମଙ୍ଗଳ କାମନା କରି, ଫରାସି ସେନା ଉପରେ ନିଶ୍ଚିତିମୂଳକ ଚରମ ବିଜୟ କାମନା କରି । ଯଦି ଆମେ ଆଗେ ଯୁଦ୍ଧ କଲାବେଳେ ଫରାସିମାନଙ୍କ ଆଗରେ ଆଣ୍ଟୁଲେ ବାଟ ବି ପଛକୁ ହଟି ନାହୁଁ, ଯେମିତି ସ୍କନ୍‌ଗ୍ରାବେନ୍ ଗାଁ ପାଖେ ଯୁଦ୍ଧ ହେଲା-ବେଳେ, ତେବେ ବର୍ତ୍ତମାନ ଯେତେବେଳେ ନିଜେ ସମ୍ରାଟ୍ ଆମ ଆଗେ ଆଗେ ନେତୃତ୍ୱ ଦେଇ ଚାଲିଛନ୍ତି, କେମିତି ଯୁଦ୍ଧ ଆମେ ଦେଖେଇବୁଁ ? ଆମେ ସମସ୍ତେ ନିଶ୍ଚୟ ମରିବୁ, ଆନନ୍ଦରେ ଆମେ ତାଙ୍କ ପାଇଁ ଜୀବନ ଦେଇଦେବୁଁ, ନିଶ୍ଚୟ । କଣ କହୁଛନ୍ତି ଭଦ୍ରବ୍ୟକ୍ତି ଗଣ ? ବୋଧହୁଏ ମତେ ଭଲ କରି କହି ଆସୁନାହିଁ । ମୁଁ ବହୁତ ମଦ ପିଇ ଦେଇଛି, କିନ୍ତୁ ଯାହା କହିଲି, ସେମିତି ଲାଗୁଛି ମତେ, ବୋଧହୁଏ ଆପଣମାନଙ୍କୁ ବି । ସମ୍ରାଟ୍ ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ସ୍ୱାସ୍ଥ୍ୟର ମଙ୍ଗଳ ହେଉ । ଜୟ !"

ଅଫିସରମାନଙ୍କ ପ୍ରଫୁଲ୍ଲ ସ୍ୱରରେ ଘୋଷଣା ଶୁଭିଲା "ଜୟ !"

ଆଉ କୋଡ଼ିଏ ବର୍ଷର ପିଲା ରୋସ୍ତଭ୍ ଯେଡ଼େ ଆବେଗପୂର୍ଣ୍ଣ, ଯେଡ଼େ ଆନ୍ତରିକ ଚିତ୍କାର ଛାଡ଼ୁଥାଏ ବୁଢ଼ା କ୍ୟାପ୍‌ଟେନ୍ କିସ୍‌ଟେନ୍‌ର ଚିତ୍କାର ତହିଁରୁ କମ୍ ଆବେଗପୂର୍ଣ୍ଣ କି କମ୍ ଆନ୍ତରିକତାମୟ ଶୁଭୁନଥାଏ ।

ଅଫିସରମାନେ ସମ୍ରାଟଙ୍କ ଶୁଭମନାସି ମଦ ପିଇ ସାରି ପ୍ରଥା ଅନୁଯାୟୀ ନିଜ ନିଜ ମଦ ଗିଲାସଗୁଡ଼ିକ ଭାଙ୍ଗି ଦେଲା ପରେ କିରଷ୍ଟେନ୍ ଆଉ ଗୋଟାଏ ଗିଲାସରେ ମଦ ଭର୍ତ୍ତି କଲା ଓ ଘୋଡ଼ାଚଢ଼ା ପୋଷାକ ପିନ୍ଧି ହାତରେ ମଦ ଗିଲାସ ଧରି ସୈନିକମାନେ ଯେଉଁଠି ଯେଉଁଠି ନିଆଁ ଜାଳି ବସିଥିଲେ ସେଠିକି ଗଲା । ସେଇଠି ସେ ଶୂନ୍ୟରେ ହାତ ହଲାଇ ନିଆଁର ଆଗ ଧୁରୁଣିଆ ଗମ୍ଭୀର ଠାଣିରେ ଠିଆ ହୋଇ ଗଲେ, ତା ମୁହଁରେ ଲମ୍ବ ନିଶ ଓ ଖୋଲା କାମିଜ୍ ବାଟେ ତା ଧଳା ଛାତି ଅଗ୍ନି ନିଆଁ ଆଲୁଅରେ ଦିଶୁଥାଏ । ବୁଢ଼ା ହାତକୁ ଟେକି ଧରି ଗମ୍ଭୀର ସୈନିକସୁଲଭ ସ୍ୱରରେ ଗର୍ଜନ କରିଲେ,

"ପିଲେ ! ଆମର ରାଜା ରୁଷ୍ ସମ୍ରାଟଙ୍କ ସ୍ୱାସ୍ଥ୍ୟର ମଙ୍ଗଳ ହେଉ । ଆମ୍ଭକୁ ଶତ୍ରୁ ପକ୍ଷ ଉପରେ ବିଜୟ ମିଳୁ ! ଜୟ !" ଘୋଡ଼ସବାର ସୈନିକମାନେ ତା ସ୍ୱରରେ ସ୍ୱର ମିଶାଇ ଖୁବ୍ ବଡ଼ ପାଟିରେ ପାଳି ଧରିଲେ ।

ବହୁତ ରାତିରେ ସମସ୍ତେ ଶୋଇଗଲା ପରେ ଡେନିସୋଭ୍ ତାର ଅତି ପ୍ରିୟ ରୋଷ୍ଟୋଭ୍ କାନ୍ଧରେ ତାର ଛୋଟ ହାତଟି ଥାପୁଡ଼େଇ ଥାପୁଡ଼େଇ କହିଲା,

"ନିଶ୍ଚୟ, ସେ ଯୁଦ୍ଧ ଭୂଇଁରେ କାହା ପ୍ରେମରେ ପଡ଼ିବ, ସେଠି ସେ ଏଭଳି ମନର ମଣିଷ ଆଉ କେହି ନାହିଁ, ଆହା ବିଚାରା ସେଇଥିପାଇଁ ସେ ରୁଷ୍ ଦେଶ ସମ୍ରାଟଙ୍କ ପ୍ରେମରେ ଭୋଳ ହୋଇଯାଇଛି ।"

"ହେଇ ଡେନିସଭ୍, ସେ ବିଷୟରେ ଥଟ୍ଟା ବନ୍ଦ କର । ମୋ ହୃଦୟ ଭିତରେ ଯେଉଁ ଭାବ ଉଠିଛି ସେ ଏତେ ଉନ୍ନତ ଏବଂ ଗମ୍ଭୀର ଏତେ"

"ତୁମ କଥା ବିଶ୍ୱାସ କରୁଛି, ବିଶ୍ୱାସ କରୁଛି ମୋ ସାଙ୍ଗ, ମୋର ବି ହୃଦୟଭାବ ସେଇଆ, ସେଥିପ୍ରତି ମୋର ସମର୍ଥନ ବି ଅଛି ।"

ନା, ତୁମେ ବୁଝି ପାରିନାହଁ ।"

ରୋଷ୍ଟଭ୍ ଠିଆ ହୋଇ ପଡ଼ି ଯେଉଁଠି ଯେଉଁଠି ଅଗ୍ନି ନିଆଁ ଜଳୁଥାଏ ସେଇ ନିଆଁ ପାଖେ ପାଖେ ବୁଲିବାକୁ ଚାଲିଗଲା, ସ୍ୱପ୍ନ ଦେଖୁଥାଏ, ମଲେ କେଡ଼େ ସୁଖ ଲାଗନ୍ତା—ସମ୍ରାଟଙ୍କ ଜୀବନ ରକ୍ଷା କରି ମଲେ ନୁହେଁ ଯେ (ସେ କଥା ସେ ସ୍ୱପ୍ନରେ ଭାବିବାକୁ ବି ସାହସ କରୁନଥାଏ), ଖାଲି ସମ୍ରାଟଙ୍କ ଆଖି ଆଗରେ ଯଦି ସେ ମରିଯାଆନ୍ତା ତେବେ । ପ୍ରକୃତରେ, ସେ ରୁଷ୍ ସମ୍ରାଟଙ୍କ ପ୍ରେମରେ ପଡ଼ିଥାଏ, ଆଉ ରୁଷ୍ ସେନାର ଶୌର୍ଯ୍ୟର ପ୍ରେମରେ ଓ କଳ୍ପିତ ଆସନ୍ନ ଯୁଦ୍ଧ ବିଜୟର ପ୍ରେମରେ । ଅଷ୍ଟେର୍‌ଲିଜ୍‌ଠିଁ ଯେଉଁ ଯୁଦ୍ଧ ହେଲା ତା ପୂର୍ବରୁ ସେହି ଯେଉଁ ସ୍ମରଣୀୟ ଦିନଗୁଡ଼ିକ ଚାଲିଗଲା, ସେତେବେଳେ ଏକୁଟିଆ ତାହାର ମନରେ ଏପରି ଭାବ ଆସୁଥାଏ ତା ନୁହେଁ । ସେତେବେଳେ ସମୁଦାୟ ରୁଷ ସେନାର ଦଶ ଭାଗରୁ ନଅଭାଗ ଲୋକ ସେମାନଙ୍କ ଦେଶର ସମ୍ରାଟ୍ ଓ ସେମାନଙ୍କ ସେନାବାହିନୀର ଶୌର୍ଯ୍ୟର ପ୍ରେମରେ ପଡ଼ିଥାନ୍ତି, ଯଦିଚ ପ୍ରେମରେ ଏତେ ଭୋଳ ହୋଇନଥାନ୍ତି ।

ସେହି ରାତ୍ରିରେ ରୋଷ୍ଟଭ୍‌କୁ ଦଳେ ସୈନିକ ସଙ୍ଗରେ ପହରାବାଲା କାମ କରିବା ସକାଶେ ବାଗ୍ରାଟିଅନଙ୍କ ସେନାବାହିନୀର ସବା ଆଗ ଧାଡ଼ିରେ ଥିବା ଘାଟିମାନଙ୍କୁ ଯିବା ଲାଗି ପଠା ଯାଇଥିଲା । ତାର ଅଶ୍ୱାରୋହୀ ସୈନିକମାନେ ଦି'ଦିଜଣ ହୋଇ ଘାଟିମାନଙ୍କ ଚାରିକରେ ବିଛେଇ ହୋଇଯାଇଥାନ୍ତି । ସେ ନିଜେ ଘୋଡ଼ାରେ ଚଢ଼ି ଘାଟି ଧାଡ଼ି ଚାରିପଟେ ବୁଲୁଥାଏ, ସେ ନିଦରେ ଢୋଳ ହୋଇ ପଡ଼ୁଥାଏ ଯେ ବଳେଇ ବଳେଇ ନିଦ ଛଡ଼ାଇବାକୁ ଚେଷ୍ଟା କରୁଥାଏ । ତା ପିଠିଆଡ଼େ ଥାଏ ରୁଷ୍ ସେନାବାହିନୀର ପ୍ରକାଣ୍ଡ ବିସ୍ତୃତି, ସେଠି ଏଠି ସେଠ କ୍ଷୀଣ ହୋଇ ଲିଭୁଣୀର ଅଗ୍ନି ନିଆଁମାନ ଜଳିବାର ଦିଶୁଥାଏ । ତା ସାମ୍ନାରେ କୁହୁଡ଼ିଆ ଅନ୍ଧାର । ଦୂରକୁ ସେହି କୁହୁଡ଼ି ଭିତରକୁ ରୋଷ୍ଟଭ୍ ଯେତେ ନିବିଷ୍ଟ ଧ୍ୟାନରେ ଅନାଇଁ ରହିଲେ ବି ତାକୁ ଆଦୌ କିଛି ଦିଶୁନଥାଏ । ଯେଉଁଠି ଫରାସି ପକ୍ଷର ସୈନ୍ୟ ଅଛନ୍ତି ବୋଲି ତାର ନିଶ୍ଚିତ ଧାରଣା ଥାଏ, ଥରେ ଲାଗିଲା ସେଠି ପାଉଁଶିଆ ପାଉଁଶିଆ ହୋଇ କ'ଣ ଦିଶୁଛି, ଆର ମୁହୂର୍ତ୍ତରେ ଲାଗିଲା, ପାଉଁଶିଆ ନୁହେଁ, କାଳିଆ ହୋଇ କଣଟାଏ, ପୁଣି ଲାଗିଲା ସେଠି ନିଆଁ ଧାସ ଝଲ ଝଲ ହେଉଛି, ତାପରେ ଭାବିଲା, ସେ ଯାହା ଜୁଳୁ ଜୁଳୁ ଦିଶୁଥିଲା

ସେଇଟା ତା ନିଜ ଆଖିରୁ ବାହାରୁଛି । ତା ଆଖି ବୁଜି ହୋଇପଡ଼ୁଥାଏ, ତା ପରେ ତା ମନ ଆଗରେ ଉଭିଲା ରୁଷ୍ ଦେଶର ସମ୍ରାଟଙ୍କ ରୂପ, ତାପରେ ଡେନିସଭ୍‌ର ରୂପ, ତାପରେ ମସ୍କୋର ନାନା ସ୍ମୃତିରୂପ, ସେଉଠୁ ପୁଣି ସେ ଆଖି ଖୋଲିଲା ଓ ଯେଉଁ ଘୋଡ଼ାରେ ବସିଥିଲା, ତା ସାମ୍ନାରେ ଅତି ପାଖରେ ସେ ଘୋଡ଼ାର ମୁଣ୍ଡ ଓ କାନ ଦିଟାକୁ ଦେଖିଲା । ବେଳେବେଳେ, ଅଶ୍ବାରୋହୀ ସୈନିକମାନଙ୍କଠୁ ଛ ପାଦୁଣ୍ଡ ଭିତରେ ଥିଲା-ବେଳେ ସେମାନଙ୍କ କଳା କଳା ରୂପ ତାକୁ ଦିଶୁଥାଏ, କିନ୍ତୁ ଦୂରକୁ ଚାହିଁଲେ ତାକୁ ଦିଶୁଥିଲା ଖାଲି ସେହି କୁହୁଡ଼ିଆ ଅନ୍ଧାର, ଆଉ କିଛି ଦିଶେ ନାହିଁ ।

ରୋଷ୍ଟଭ ମନକୁ ମନ ଭାବୁଥାଏ "ନହେବ କାହିଁକି ? ଏଭଳି ବି ହୋଇପାରେ ଯେ ସମ୍ରାଟ୍ ମତେ କେତେବେଳେ ଦେଖା ଦେବେ ଓ ଅନ୍ୟ ଯେକୌଣସି ଅଫିସରକୁ ଯେପରି ସେ କୌଣସି କାମ ବରଗନ୍ତେ ମତେ ବି ସେମିତି କେଉଁ କାମରେ ପଠାଇଦେବେ, କହିବେ "ଯାଅ, ସେଠି କଣ ହେଉଛି ଯାଇ ବୁଝିଆସ ।" କେମିତି ଖାଲି ଯୋଗକୁ ହଠାତ୍ ତାଙ୍କର କେଉଁ କେଉଁ ଅଫିସରଙ୍କ ସଙ୍ଗରେ ଚିହ୍ନାପରିଚ ହୋଇଯାଇଛି ଓ ସେମାନଙ୍କୁ ସେ ନିଜର ଖୁବ୍ କତିରେ କୌଣସି ଚାକିରିରେ ରଖି ଦେଇ-ଛନ୍ତି ସେ ବିଷୟରେ ବହୁତ କାହାଣୀତ ଶୁଣାଯାଏ । ଆଃ ! ତାଙ୍କ ପାଖେ ପାଖେ ରହି ତାଙ୍କୁ ସେବା କରିବାକୁ ମତେ ନିଯୁକ୍ତ କରନ୍ତେ କି ! ମୁଁ ତାଙ୍କର କେଡ଼େ ଯତ୍ନ ଯେ ନିଅନ୍ତି ! ଯେତେଲୋକ ତାଙ୍କୁ ଠକା କାଟୁଛନ୍ତି କେମିତି ମୁଁ ସତ ସତ କହି ଦେଇ ସେ ସମସ୍ତଙ୍କି ତାଙ୍କ ଆଗରେ ପଦାରେ ପକାଇ ଦିଅନ୍ତି ଯେ !" ଆଉ ରୁଷ୍ ସମ୍ରାଟଙ୍କ ପ୍ରତି ତାର ପ୍ରେମ ଓ ଭକ୍ତିକୁ ଆହୁରି ଭଲକରି ମନେ ମନେ ରୂପ ଦେବାକୁ ଯାଇ ରୋଷ୍ଟଭ୍ ତାର କଳ୍ପନାରେ ଦେଖିଲା ସତେ ଯେମିତି ରୁଷ ସମ୍ରାଟଙ୍କର କେଉଁ ଶତ୍ରୁକୁ କି ବିଶ୍ବାସଘାତକ ଜର୍ମାନ୍‌କୁ, ଭାବିଲା ସେ ଯେ ଖାଲି ମହା ଉତ୍ସାହରେ ତାକୁ ଜୀବନରୁ ମାରିଦେବ ଖାଲି ସେତିକି ନୁହେଁ, ସମ୍ରାଟଙ୍କ ଆଖି ଆଗରେ ତା' ଗାଲରେ ଚଟକଣା ବଜେଇବ । ହଠାତ୍ ଦୂରରୁ କଣ ପାଟି ଶୁଣି ସେ ଉଠିପଡ଼ିଲା, ଚମକି ପଡ଼ି ଆଖି ଖୋଲିଲା । "ମୁଁ କୋଉଠି ଅଛି ? ହଁ ତ, ମୁଁ ପହରାବାଲାଙ୍କ ଧାଡ଼ିରେ ଅଛି । ଆଜି ବାଟ ଗୁଡ଼ ହୁଆ ହେବ

ଆଉ ଆମ ପଟରେ ବୋଲି ଶବ୍ଦ ଶୁଭିବ କି କି ସଙ୍କେତ ଶବ୍ଦ କେହି କହିଲେ ? ମନେପଡ଼ିଲା, 'ବର୍ଚ୍ଚା ବେଣ୍ଟ' ଟେଲ ଟୋପି' । ଆମ ଦଳଟା ଭଲ ଲଢ଼େଇ ଧାଡ଼ିରେ ଥାଆନ୍ତା ! ଆମକୁ କଣ ହୋଇଛି ବଳକା ହାତରେ ପାଞ୍ଚ-ଲ, କେତେ ବିରକ୍ତିକର କଥା !'' ସେ ମନେ ମନେ କହୁଥାଏ, ପୁଣି କହିଲା ,,ମୁଁ ମାଗୁଣିକରି କହିବ ମତେ ଆଗକୁ ଲଢ଼େଇ ଧାଡ଼ିକି ପଠେଇଦିଅ । ସେହି ଏକମାତ୍ର ଉପାୟରେ ସମ୍ରାଟଙ୍କୁ ଦେଖିବାକୁ ମୋର ଯୋଗ ପଡ଼ିପାରେ । ଏଥର ଆଉ ଅଳ୍ପ ସମୟ ଗଲେ ମୋର ସ୍ୱେ ଦାୟିତ୍ୱ ତୁଲେଇବା କାମ ସରିଯିବ, ଆଜିକାପାଇଁ ମୋଲୁଟି ଆଉ ଅଧିକ ବିଳମ୍ବ ନାହିଁ । ଯାଏଁ ଆଉଥରେ ଚକ୍କର ମାରି ଦେଇ ଆସେଁ, ଲେଉଟାଣି ବେଳେ ସେନାପତିଙ୍କ ପାଖକୁ ଯାଇ ତାଙ୍କୁ ମୋ ମାଗୁଣି କହିବ ।''

ସେ ଘୋଡ଼ା ଜିନ୍ ଉପରେ ସିଧା ହୋଇ ବସିଲା, ସେଉଠୁ ତା ଅଧୀନସ୍ଥ ଅଶ୍ୱାରୋହୀ ସୈନ୍ୟଙ୍କ ଗୃହପଟେ ବୁଲି ଆସିବ ବୋଲି ଘୋଡ଼ା ଛଟେଇ ଦେଲା । ତାକୁ ଲାଗୁଥାଏ, ଅନ୍ଧାର ଆଗଠୁ ପାତଳ ହେଲାଣି । ବାଁ ପଟେ ତାକୁ ଗୋଟିଏ ଗଡ଼ାଣିର ତାଲୁ ଦିଶୁଥାଏ ଯେ ସେ ଜାଗା ଆଲୁଅ ଜାଳି ଉଜ୍ଜ୍ୱଳ ହେଲାପରି ଦିଶୁଥାଏ । ସେ ଗଡ଼ାଣି ସାମ୍ନାରେ ଗୋଟିଏ କ୍ଲେଟ ଗୋଲ ମୁଣ୍ଡିଆ ଦିଶୁଥାଏ ଯେ ସେଇଟା କାନ୍ଥପରି ଠାଣ ହୋଇ ଉଠିଥାଏ । ସେହି ମୁଣ୍ଡିଆ ଉପରେ ଧଳା ହୋଇ ଅଜଏ କଣ ଦିଶୁଥାଏ, ସେ ଅଜକ କଣ ରୋଷ୍ଟଭ୍ ତା ବୁଝି ପାରିଲା ନାହିଁ । ସେ କଣ ଜଙ୍ଗଲ ଭିତରେ ଅଜାଏ ତଳିଲା, ଯେଉଁଠି ଜହ୍ନ ଆଲୁଅ ପଡ଼ିଛି ? ସେ କଣ ଅବଶିଷ୍ଟ ପଡ଼ି ରହିଥିବା ବରଫ ? ନା ସେଠି ଧଳା ଘୋଡ଼ା ଗୁଡ଼ାଏ ?

"ନିଶ୍ଚୟ ବରଫ ହୋଇଥିବ—ସେଇ ଜାଗାଟା,—ଖାଲି ଗୋଟାଏ ସ୍ଥଳ—'' ସ୍ୱପ୍ନ ଦେଖିଲାପରି ରୋଷ୍ଟଭ୍ ଭାବୁଥାଏ, ଫରାସି ଭାଷାରେ ମନେ ମନେ କହୁଥାଏ, "ଆଁ (ଗୋଟାଏ) ତାଶେ (ସ୍ଥାନ)'', ମନେ ମନେ କହିଲା, "ସେତ 'ତାଶା' (ସ୍ଥାନ) ନୁହେଁ··· 'ନା' (ନୁହେଁ)'ତାଶା (ସ୍ଥାନ)···ନା ···ତାଶା, ମୋ ଭଉଣୀଟି, ତାର କଳା କଳା ଆଖି । ନା···ତାଶା··· (ମୁଁ କେମିତି ସମ୍ରାଟଙ୍କୁ ଦେଖିଲି ସେକଥା ତା ଆଗରେ କହିଲେ ସେ ଆଶ୍ଚର୍ଯ୍ୟ ହୋଇଯିବ ନାହିଁ) ନାତାଶା···ତାଶା···X···''!

"ଡାହାଣକୁ ଯାଉନ୍ତୁ ହଜୁର, ଏଠି ବୁଦା ଗୁଡ଼ାଏ ଅଛି" ଜଣେ ଅଶ୍ୱାରୋହୀ ସୈନିକର ପାଟି ତାକୁ ଶୁଭିଲା, ଘୋଡ଼ାରେ ଚଢ଼ି ଯାଉ ଯାଉ ଶୋଇପଡ଼ି ସେ ତାହାରି ପାଖ ବାଟ ଦେଇ ଯାଉଥାଏ । ରୋଷ୍ଟଭ୍ ମୁଣ୍ଡ ଟେକିଲା, ତା ମୁଣ୍ଡ ଓହଳିପଡ଼ି ଘୋଡ଼ାର କେଶର ଉପରେ ଭରି ଦେଇଥାଏ ସେ ସେହି ଅଶ୍ୱାରୋହୀ ସୈନିକ ପାଖେ ଘୋଡ଼ାକୁ ଠିଆ କଲା । ତାକୁ ଯେଉଁ ପିଲାଳିଆ ମଉଜ ନିଦ ଘାରୁଥିଲା ସେ ତାକୁ ଛାଡ଼ ପାରିଲା ନାହିଁ ।

"ଆଚ୍ଛା ରହ, କଣ ଭାବୁଥିଲି ? ଭୁଲିଗଲେ ହେବନାହିଁ । କେମିତି ମୁଁ ସମ୍ରାଟଙ୍କ ସଙ୍ଗେ କଥାଭାଷା ହେବ ସେଇକଥା ? ନା, ସେକଥା ନୁହେଁ । ସେ ତ କାଲି ହେବ । ହଁ ହଁ, ନାତାଶା—ମୋ ନାତାଶାମଣି—ଆକ୍ର-ମଣ—ଆମକୁ ଆକ୍ରମଣ କରୁଛନ୍ତି—କାହାକୁ ? ଘୋଡ଼ସବାର ସୈନ୍ୟଦଳକୁ । ହଁ, କଣୁଆ କଣୁଆ ଘୋଡସବାର ସୈନ୍ୟମାନେ—ଘୋଡା ଛୁଟେଇଲେ କଣୁଆ ଶୁଆର ହ୍ୱାର୍ଷି ଉଦ୍ୟାନ ପଥେ—ଠିକ୍ ଗୁର୍-ଯେଭଙ୍କ ଘର ସେପାଖେ ମୁଁ ସେଇ ଶୁଆର କଥା ବି ଭାବୁଥିଲି···ବୁଢ଼ା ଗୁର୍‌ଯେଭ··· ବଡ଼ିଆ ମଣିଷ ଡେନିସଭ୍···କିନ୍ତୁ ଏଗୁଡ଼ାକ ସବୁ ବାଜେ କଥା । ବଡ଼କଥା ହେଲା ବର୍ତ୍ତମାନ ଏଠି ସମ୍ରାଟ ଅଛନ୍ତି···କେମିତି ସେ ମୋ ଆଡକୁ ଅନେଇଁଥିଲେ, ମତେ କଣ କହିବେ କହିବେ ବୋଲି ତାଙ୍କର ଭାରି ମନ ଡାକୁଥାଏ, କିନ୍ତୁ ତାଙ୍କର ସାହସ ହେଲା ନାହିଁ···ନା, ସାହସ ମୋର ହେଲା ନାହିଁ । କିନ୍ତୁ ଏଗୁଡ଼ାକତ ବାଜେ କଥା, ଅସଲ କଥା ହେଲା ମୁଁ କଣ ଜରୁରି କଥାଟାଏ ଭାବୁଥିଲି ସେକଥା କେମିତି ମୁଁ ଭୁଲି ନଯାଏଁ··· ହଁ···ମୋ ନାତାଶାମଣି···ଆକ୍ରମଣ କରୁଛନ୍ତି ଆମକୁ···ହଁ ହଁ ହଁ··· ସେଇକଥା" ପୁଣି ତା ମୁଣ୍ଡ ଘୋଡ଼ା ବେକ ଉପରେ ଲଦି ହୋଇପଡ଼ିଲା । ହଠାତ୍ ତାକୁ ଲାଗିଲା କିଏ ତା ଆଡ଼କୁ ଲକ୍ଷ୍ୟ କରି ଗୁଳି ମାରୁଛି । "କଣ ? କଣ ?···ତାଙ୍କୁ ହାଣିପକା । କଣ ?" ନିଦରୁ ଉଠିପଡ଼ିଲା ବେଳେ ରୋଷ୍ଟଭ୍ କହୁଥାଏ । ଯେଉଁ ମୁହୂର୍ତ୍ତରେ ସେ ଆଖି ପିଟାଇଲା, ତା ସାମ୍ନା-ପଟୁ, ଯେଉଁଠି ଶତ୍ରୁପକ୍ଷ ଥାଆନ୍ତି ସେଇଠୁ ହଜାର ହଜାର ଲୋକଙ୍କ ପାଟିରେ ସେ ବହୁତ ବେଳଯାଏ ଲାଗି ରହିଥିବା ଚିତ୍କାର ଶୁଣିଲା । ଶବ୍ଦ ଶୁଣି ତା ଘୋଡ଼ା ଓ ତା ପାଖରେ ଥିବା ଘୋଡ଼ସବାର ସୈନିକର ଘୋଡ଼ା ଦହେଁ କାନ ଠିଆ କଲେ । ଯେଉଁଆଡୁ ପାଟି ଶୁଭୁଥାଏ ସେଠି ଗୋଟାଏ ଆଲୁଅ

ଲଗାଗଲା ପୁଣି ନଭାଗଲା, ସେଉଠୁ ଆଉ ଗୋଟାଏ, ଓ ପାହାଡ଼ କରେ କରେ ଫରାସି ସୈନ୍ୟଙ୍କ ଧାଡ଼ିଏ ଧାଡ଼ିଏ ବହୁତ ଜାଗାରେ ଜୁଆଁ ଜଳା ହେଲା ଓ ପାଟି ଗହଳ ଶବ୍ଦ ଆହୁରି ବଢ଼ ବଢ଼ି ଶୁଭିଲା । ରୋଷ୍ଟଭ୍ କାନରେ ଫରାସି ଭାଷାର ଶବ୍ଦ ଗୁଡ଼ାଏ ବି ବାଜିଯାଉଥାଏ କିନ୍ତୁ ସେ ସ୍ପଷ୍ଟକରି ତାକୁ ଧରି ପାରୁନଥାଏ । ତାକୁ ଖାଲି ଶୁଭୁଥାଏ

'ଆ···ଆ—ଆ—ଆ—'

'ର୍ ର୍ ର୍ ର୍ ର୍ ର୍'

"କଣ ଯେ ? କେମିତି ତୁମକୁ ଜଣାପଡ଼ୁଛି ?" ରୋଷ୍ଟଭ୍ ତା ପାଖରେ ଥିବା ଘୋଡ଼ସବାର ସୈନିକକୁ ପଚାରିଲା, "ସେଇଟା ତ ନିଶ୍ଚୟ ଶତ୍ରୁପକ୍ଷର ଗୁଞ୍ଜଣି, ନା କଣ ?"

ଘୋଡ଼ସବାର ସୈନିକ ଜବାବ୍ ଦେଲାନାହିଁ । ଉତ୍ତର ପାଇଁ ଟିକିଏ ଅପେକ୍ଷା କରି ରୋଷ୍ଟଭ ପୁଣି ପଚାରିଲା "କହୋ ! ତମକୁ ଶୁଭୁନାହିଁକି ?"

ଅନିଚ୍ଛା ଦେଖାଇ ଘୋଡ଼ସବାର୍ ସୈନିକ କହିଲା "କିଏ କହି-ପାରିବ ହଜୁର ?"

"ଯେଉଁ ଦିଗରୁ ଏ ଶବ୍ଦ ଶୁଭୁଛି ସେଥିର ଅନୁସାରେ ଜଣାପଡ଼ୁଛି ସେତ ଶତ୍ରୁପକ୍ଷର ଶବ୍ଦ ।"

"ହୋଇପାରେ ନହୋଇପାରେ" ଘୋଡ଼ସବାର ସୈନିକ କହିଲା, "ଅନ୍ଧାରତ ହେଇଛ," ତା ଘୋଡ଼ା ଅସ୍ଥିର ହୋଇ ଏପଟ ସେପଟ ହଲଚଲ ହେଉଥାଏ, ସେ ତା ଘୋଡ଼ା ଉପରକୁ ପାଟିକଲା, "ହେଇ, ଥିର ହେଇ ରହ୍ ।"

ରୋଷ୍ଟଭ୍ର ଘୋଡ଼ାବି ଅସ୍ଥିର ହୋଇ ହଲଚଲ ହେଉଥାଏ, ସେ ପାଟିଗୁଣ୍ଡକୁ କାନେଇ ଥାଏ, ଆଲୁଅଗୁଡ଼ାକ ଦେଖୁଥାଏ, ଆଉ ବରଫ ଜମିଥିବା ଭୂଇଁ ଉପରେ ତା ଖୁରା ଦାଡ଼ରେ ଆଞ୍ଚୁଡ଼ୁଥାଏ । ପାଟିଗୁଣ୍ଡ ଆହୁରି ବଢ଼ି ବଢ଼ି ଉଠିଲା, ସେଉଠୁ ଏକାଠି ମିଶି ହେଲା ଏଭଳି

ଗୋଟାଏ ଗର୍ଜନ ଯେମିତି କେବଳ ହଜାର ହଜାର ସୈନ୍ୟ ମାତ୍ର ଆସୁଥିବା ଗୋଟାଏ ପ୍ରକାଣ୍ଡ ସେନାବାହିନୀହିଁ କରି ପାରିବେ । ଆଲୁଅ-ଗୁଡ଼ାକ ଆହୁରି ଦୂରକୁ ଦୂରକୁ ଲମ୍ବି ଲମ୍ବି ଗଲା, ବୋଧହୁଏ ଫରାସି ଛାଉଣିର ଧାଡ଼ଯାକ । ଡ୍ରୋସ୍ତଭ୍‌କୁ ଆଉ ନିଦ ମାଡୁନଥାଏ । ଶତ୍ରୁପକ୍ଷର ସୈନ୍ୟ ବାହିନୀର ମନଖୁସିଆ ବିଜୟ ଚିତ୍କାର ଗୁଡ଼ାକ ତା ଉପରେ ଗୋଟାଏ ଉତ୍ତେଜକ ପ୍ରଭାବ ପକାଉଥାଏ । ସେ ଏଥର ପରିଷ୍କାର ଶୁଣିପାରିଲା ଫରାସି ଭାଷାରେ ରଡ଼ି ଶୁଭୁଛି ।

"ସମ୍ରାଟ୍ ଦୀର୍ଘଜୀବୀ ହୁଅନ୍ତୁ ।"

ପାଖରେ ଥିବା ଘୋଡ଼ସବାର ସୈନିକକୁ ସେ କହିଲା

"ବେଶି ଦୂରରେ ନାହାନ୍ତି, ନଈ ଆରପାରି ହେବେଣି ।"

ଘୋଡ଼୍‌ସବାର ସୈନିକ ଜବାବ୍ ନଦେଇ ଖାଲି ଦୀର୍ଘଶ୍ୱାସ ପକାଇଲା ଓ ରାଗରେ ଗଳା ଖଙ୍କାରିଲା । ଘୋଡ଼୍‌ସବାର ସୈନିକମାନେ ଯେଉଁ ଧାଡ଼ିରେ ଥାନ୍ତି ସେହି ଧାଡ଼ିଏ ଧାଡ଼ିଏ ଗୋଟାଏ ଘୋଡ଼ା ଦଉଡ଼ିବାର ଟାପୁ ଶବ୍ଦ ସେମାନେ ଶୁଣିଲେ ଓ ହଠାତ୍ କୁହୁଡ଼ି ଭିତରୁ ବାହାରି ପଡ଼ିଲା ଜଣେ ଘୋଡ଼୍‌ସବାର ସୈନ୍ୟଦଳର ସାର୍ଜେଣ୍ଟ୍‌ର ରୂପ, ଘୋଡ଼ାଉପରେ ଥାଇ ସେ କୁହୁଡ଼ିରେ ଗୋଟାଏ ହାତୀପରି ବଡ଼ ଦିଶୁଥାଏ ।

ରୋସ୍ତଭ୍ ପାଖକୁ ଘୋଡ଼ାରେ ଚଢ଼ି ଚାଲି ଆସି ସେ କହିଲା "ହଜୁର୍, ସେନାପତିମାନେ ଆସୁଛନ୍ତି ।"

ସେହି ଯେଉଁଠି ପାଟିଗୋଳ ଶୁଭୁଥାଏ, ଆଲୁଅ ଗୁଡ଼ାଏ ଦିଶୁଥାଏ, ସେହି ଆଡ଼କୁ ଅନାଇଁ ଅନାଇଁ ଘୋଡ଼ାକୁ କଦମ୍ ଛୁଟେଇ ସେ ସାର୍ଜେଣ୍ଟ୍ ସଙ୍ଗରେ ଚାଲିଗଲା, ଅନେକ ଗୁଡ଼ିଏ ଲୋକ ରୁଷପକ୍ଷର ଆଗ ଧାଡ଼ି କରେ କରେ ଘୋଡ଼ାରେ ଚଢ଼ି ଧାଇଁଥାନ୍ତି ଯେ ସେହିମାନଙ୍କୁ ଭେଟିବ ବୋଲି । ଗୋଟାଏ ଥାଏ ଧଳା ଘୋଡ଼ା । ଶତ୍ରୁ ସେନା ସେହି ଯେଉଁ ଗର୍ଜନ ଛାଡ଼ି ଆଲୁଅ ଜାଳି ଅଦ୍ଭୁତ ଦୃଶ୍ୟ ସୃଷ୍ଟି କରିଥାଏ ସେଇଆକୁ ଦେଖିବାକୁ ପ୍ରିନ୍‌ସ୍ ବାଗ୍ରାତିଅନ୍ ଘୋଡ଼ା ଚଢ଼ି ବାହାରି ଆସିଥିଲେ । ତାଙ୍କ ସଙ୍ଗରେ

ଆଣିଥିଲେ ପ୍ରିନ୍ସ୍ ଡୋଲ୍ ଗୋରୁକଭ୍ ଓ ପାର୍ଶ୍ୱରକ୍ଷୀ ଦଳପତିମାନଙ୍କୁ । ରୋସ୍ତଭ୍ ବାଗ୍ରାତିଅନଙ୍କ ପାଖକୁ ଯାଇ ଯାହା ଯାହା ଦେଖିଥିଲା, ଶୁଣିଥିଲା ସବୁ ତାଙ୍କ ଆଗରେ କହିଲା, ତାପରେ ସେ ପାର୍ଶ୍ୱରକ୍ଷୀ ଦଳପତିମାନଙ୍କ ସଙ୍ଗରେ ରହିଲା ଓ ସେନାପତିମାନେ ଯାହା ଯାହା କୁହାକୋହି ହେଉଥାନ୍ତି ତା ଶୁଣିଲା ।

ଡୋଲ୍‌ଗୋରୁକଭ୍ ବାଗ୍ରାତିଅନଙ୍କୁ କହୁଥାନ୍ତି "ମୁଁ ଯାହା କହୁଛି ଆପଣ ବିଶ୍ୱାସ କରନ୍ତୁ, ଏଇଟା ଖାଲି ଗୋଟାଏ ଛଳନା, ସେମାନେ ପଛକୁ ହଟି ଯାଇଛନ୍ତି ଆଉ ତାଙ୍କ ପଛ ପଟର ସୈନ୍ୟଦଳଙ୍କୁ କହି ଯାଇଛନ୍ତି ଯେ ସେମାନେ ନିଆଁ ଜାଳିବେ, ହାଉଯାଉ ପାଟିତୁଣ୍ଡ କରିବେ, ଖାଲି ଆମକୁ ଠକିବା ମତଲବ ।" ବାଗ୍ରାତିଅନ୍ କହିଲେ "ମୋର ବିଶ୍ୱାସ ହେଉନାହିଁ । ସଞ୍ଜବୁଡ଼ୁ ମୁଁ ସେମାନଙ୍କୁ ସେ ଗୋଲ୍-ମୁଣ୍ଡିଆ ଉପରେ ଦେଖୁଛି । ଯେବେ ସେମାନେ ହଟିଯାଇଥାନ୍ତେ, ତେବେ ସେଠୁ ବି ସେମାନେ ଚାଲିଯାଇଥାନ୍ତେ ।" ରୋସ୍ତଭ୍ ଆଡ଼କୁ ବୁଲିପଡ଼ି ସେ ପଚାରିଲେ,

"ଶତ୍ରୁ ପକ୍ଷର ପହରାବାଲାମାନେ ଯେଉଁଠି ଥିଲେ ସେଠି ଏବେ ଅଛନ୍ତି ?"

"ସଞ୍ଜବୁଡ଼େ ତ ଥିଲେ, ତେବେ ହଜୁର, ଅଇଛି ଅଛନ୍ତି କି ନାହିଁ ମୁଁ ନିଶ୍ଚୟ କରି କହି ପାରୁନାହିଁ । କେତେଜଣ ଘୋଡ଼ସବାର ସୈନିକଙ୍କୁ ସଙ୍ଗରେ ନେଇ ଯିବି ଦେଖି ଆସିବି କି ?"

ଟିକିଏ ରହିଯାଇ ସେ କହିଲେ "ହଉ, ଯାଇ ଦେଖି ଆସନ୍ତୁ ।"

"ଯେ ଆଜ୍ଞା ।"

(ରୋସ୍ତଭ୍ ପାଦ କେଞ୍ଚାରେ ଘୋଡ଼ା ପେଟରେ ଚିଅ ମାରି ଘୋଡ଼ାକୁ ଦୌଡ଼େଇ ଦେଲା, ସାର୍ଜେଣ୍ଟ ଫେଦ୍‌ଚେଙ୍କୋ ଓ ଆଉ ଦି'ଜଣ ଘୋଡ଼ସବାର ସୈନିକଙ୍କୁ ତା ପଛେ ପଛେ ଘୋଡ଼ା ଚଢ଼ି ଆସିବାକୁ କହିଦେଲା ଓ ପାହାଡ଼ ଗଡ଼ାଣିଏ ଗଡ଼ାଣିଏ ସେହି ଆଡ଼କୁ ଧାଇଁଲା ଯେଉଁଆଡ଼ୁ ହୋହା ଶୁଭୁଥିଲା ଓ ସେତେବେଳେ ବି ଚାଲିଥାଏ ।

ମେହି ଯେଉଁ ରହସ୍ୟମୟ ବିପଦସଙ୍କୁଳ କୁହୁଡ଼ିଆ ଦୂର ଅଞ୍ଚଳ, ଯେଉଁଠିକି ତା ପୂର୍ବରୁ ଆଉ କେହି ଯାଇ ନଥିଲେ, ଏକୁଟିଆ ହୋଇ ଖାଲି ଆଉ ତିନିଜଣ ଘୋଡ଼ସବାର ସୈନିକଙ୍କ ସଙ୍ଗରେ ଘୋଡ଼ାରେ ଚଢ଼ି ଧାଇଁଗଲା ବେଳେ ରୋଷ୍ଟୋଭ୍ ମନରେ ଭୟ ଓ ଆନନ୍ଦ ଉଭୟ ଭାବ ଆସୁଥାଏ, ପଛରୁ ପାହାଡ଼ ଉପରୁ ବାଗ୍ରାଟିଅନ୍ ତାକୁ ପାଟିକରି କହିଲେ ସେ ଯେପରି ନଈ ଆର ପାରିକି ନଯାଏ, କିନ୍ତୁ ରୋଷ୍ଟୋଭ୍ ବ୍ୟବହାର ଦେଖାଉଥାଏ । ଯେପରି ତାଙ୍କ କଥା ସେ ଶୁଣିନାହିଁ, ସେ ଅଟକି ନଯାଇ ଘୋଡ଼ା ଛୁଟେଇ ଆହୁରି ଆଗକୁ ଚାଲିଥାଏ, ବୁଦାଗୁଡ଼ାକୁ ବାରମ୍ବାର ଗଛ ବୋଲି ଭ୍ରମ କରୁଥାଏ, ଖୋଲାଗୁଡ଼ାକୁ ମଣିଷ ବୋଲି ଭ୍ରମ କରୁଥାଏ ଓ ବାରମ୍ବାର ନିଜ ଭୁଲ୍ ଆବିଷ୍କାର କରୁଥାଏ । ସେ ଯେମିତି ଘୋଡ଼ାରେ ଚଢ଼ି ପାହାଡ଼ ତଳ ଆଡ଼କୁ ଚାଲିଗଲା ତାକୁ ଆଉ ରୁଷ ସୈନ୍ୟ କି ଫରାସି ସୈନ୍ୟ କେହି ଦେଖାଗଲେ ନାହିଁ କିନ୍ତୁ ଫରାସି ସୈନ୍ୟମାନଙ୍କର ରଡ଼ି ତାକୁ ଆହୁରି ଜୋର୍‌ରେ ଆହୁରି ସ୍ପଷ୍ଟ ହୋଇ ଶୁଭିଲା । ଉପତ୍ୟକା ଭିତରେ ତା ସାମ୍ନା ଆଡ଼େ ନଈପରି କଣଟାଏ ତାକୁ ଦିଶିଲା କିନ୍ତୁ ପାଖରେ ପହଞ୍ଚି ଦେଖିଲା ଯେ ସେଇଟା ଗୋଟାଏ ସଡ଼କ । ଯେମିତି ସେ ସଡ଼କରେ ପହଞ୍ଚିଲା ସେମିତି ସେ ତା ଘୋଡ଼ାକୁ ଠିଆକଲା, ଦୋ ଦୋ ପାଞ୍ଚ ହେଉଥାଏ ଯେ ସଡ଼କ ସଡ଼କେ ଯିବ କି ଘୋଡ଼ା ଚଢ଼ି ସଡ଼କ ଆର ପାଖକୁ ଚାଲିଯାଇ ପାହାଡ଼ ଉଠାଣି ତାଳୁରେ ଯେଉଁ କାଳିଆ ପଡ଼ିଆଟା ଦିଶୁଥାଏ ତାରି ଉପରେ ତାଳୁଏ ତାଳୁଏ ଉଠିଯିବ । କୁହୁଡ଼ିରେ ସଡ଼କ ଉପରେ ଆଲୁଅ ବେଶି ପରିଷ୍କାର ଦିଶୁଥାଏ, ସଡ଼କରେ ଗଲେ ବିପଦ କାରଣ ସେଠି ଦୂରରୁ ବି ଚେହେରା ସବୁ ବେଶି ସହଜରେ ବାରି ହେବ । "ମୋ ପଛେ ପଛେ ଚାଲ" ସେ କହିଲା, "ରାସ୍ତା ଆରପାଖକୁ ସିଧା ଚାଲିଆସ," କହିଦେଇ ପାହାଡ଼ର ଉଠାଣରେ ଘୋଡ଼ାକୁ କଦମ୍ ଦୁଆଇଁ ସେ ସେହି ଜାଗା ଆଡ଼କୁ ଗଲା ଯେଉଁଠି ସଞ୍ଜବୁଡ଼େ ଫରାସି ପକ୍ଷର ପହରାବାଲା ଘାଟି ଥିଲା ।

ପଛଆଡ଼ୁ ଜଣେ ଘୋଡ଼ସବାର ସୈନିକ କହିଲା "ହଜୁର୍, ହେଇଟି ସେ !"

ହଠାତ୍ କଳା ହୋଇ କଣଟାଏ କୁହୁଡ଼ି ଭିତରେ ଉଠି ଠିଆ ହେଲା, ସେଇଟା କଣ ବୋଲି ସେ ଭଲକରି ଦେଖିବାକୁ ବେଳ ପାଇବା ଆଗରୁ, ଝକ୍ କରି ଆଲୁଅଟାଏ ଝଲକଲା, ଢ଼ୁ କରି ବନ୍ଧୁକଟାଏ ଫୁଟିଲା ଓ କଣ ଆପତ୍ତି ଜଣାଇଲା ପରି କ୍ୟାଉଁ କ୍ୟାଉଁ ଶବ୍ଦ କରି ବନ୍ଧୁକ ଗୁଳିଟାଏ ଶୂନ୍ୟେ ଶୂନ୍ୟେ ସାଇଁ କରି ବହୁତ ଉଚ୍ଚକୁ ଉଡ଼ିଗଲା ଯେ ଆଉ ତା ଶବ୍ଦ ଶୁଭିଲାନାହିଁ । ଆହୁରି ଗୋଟାଏ ଗୁଳି ଲକ୍ଷ୍ୟଭ୍ରଷ୍ଟ ହେଲା, କିନ୍ତୁ ଖାଲୁଆ ଉପତ୍ୟକା ଭିତରେ ଝକ୍ କରି ଆଲୁଅ ଦିଶିଲା । ରୋଷ୍ତଭ୍ ତା ଘୋଡ଼ାର ମୁଣ୍ଡକୁ ବୁଲେଇ ଦେଇ ପଛ ଆଡ଼କୁ କଦମ ଛୁଟାଇ ଧାଇଁଲା । ରହି ରହି ଅଳ୍ପ ବହୁତ ସମୟ ଅନ୍ତରରେ ସେ ଆହୁରି ଚାରିଟା ଗୁଳି ଫୁଟିବା ଶବ୍ଦ ଶୁଣିଲା, ଓ ଭିନେ ଭିନେ ସ୍ୱରରେ ଚାରିଟା ଗୁଳି କୁହୁଡ଼ି ଭିତରେ କେଉଁଠି ସିଠି ମାରି ମାରି ଚାଲିଗଲା । ତା ଘୋଡ଼ା ତେଜ ଉଠିଥିଲା ପରି ଲାଗୁଥାଏ, ଯେମିତି ଗୁଳି ଶବ୍ଦ ଶୁଣି ସେ ନିଜେ ବି, ସେ ଘୋଡ଼ାକୁ ରୋକି ଦେଇ ମଣିଷ ଚାଲିଲା ପରି ଆସ୍ତେ ଆସ୍ତେ ଚଲାଇ ଚଲାଇ ଘୋଡ଼ାଚଢ଼ି ଚାଲିଲା । ତା ଭିତରେ ଗୋଟିଏ ଉନ୍ମାଦକ ନଥିବା ସ୍ୱର ଯେପରିକି ଗୁଣୁଗୁଣେଇ ହେଉଥାଏ, "ହଉ, ଆସୁ ଆହୁରି, ଆସୁ ନା ଆଉ !" କିନ୍ତୁ ଆଉ ଗୁଳି ଶବ୍ଦ ଶୁଭିଲାନାହିଁ । ଯେମିତି ସେ ବାଗ୍ରାତ୍ତିଅନଙ୍କ ପାଖ ହେଲା ସେମିତି ପୁଣି ସେ ଘୋଡ଼ାକୁ କଦମ୍ ଛୁଟେଇଲା ଓ ସମ୍ମାନସୂଚକ କାଇଦାରେ ଟୋପିରେ ହାତ ଲଗାଇ ଘୋଡ଼ାରେ ବସି ବାଗ୍ରାତ୍ତିଅନଙ୍କ ପାଖରେ ପହଞ୍ଚିଗଲା ।

ସେତେବେଳେ ବି ଡୋଲ୍ଗୋରୁକଭ୍ ନିଜ ମତ ଉପରେ ଜୋର୍ ଦେଇ କହିଚାଲିଥାନ୍ତି ଯେ ଫରାସି ସୈନ୍ୟମାନେ ପଛଘୁଞ୍ଚା ଦେଇ ହଟି ପଳାଉଛନ୍ତି ଓ ଖାଲି ରୁଷ୍ ସୈନ୍ୟଙ୍କର ଭୁଲ ଧାରଣା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଠାଆକୁ ଠାଆ ନିଆଁ ଜାଳିଛନ୍ତି । ରୋଷ୍ତଭ୍ ସେମାନଙ୍କ ପାଖରେ ପହଞ୍ଚିଲାବେଳକୁ ସେ କହୁଥାନ୍ତି,

"ଏଥିରୁ କଣ ପ୍ରମାଣିତ ହେଉଛି ?" ସେମାନେ ହଟି ଯାଇଥିବେ ଆଉ ପହରା ଘାଟି ଗୁଡ଼ାଏ ପଛରେ ଛାଡ଼ିଦେଇ ଯାଇଥିବେ ।"

ବାଗ୍ରାତ୍ତିଅନ୍ କହିଲେ, "ପରିଷ୍କାର ଜଣାପଡ଼ୁଛି ଯେ ତାଙ୍କ ଭିତରୁ ସମସ୍ତେ ଚାଲିଯାଇ ନାହାନ୍ତି ପ୍ରିନ୍ସ୍, ସକାଳଯାକେ ଆମୁକୁ

ଅପେକ୍ଷା କରିବାକୁ ପଡ଼ିବ; କାଲି ଆମେ ବଳେ ସବୁ ଜାଣି ପାରିବା ଯେ ।"

"ପଡ଼ିଶ ଘାଟିଟା ପର୍ବତ ଉପରେ ଅଛି ହଜୁର୍," ରୋସ୍ତଭ୍ ଘୋଷଣା କଲା, "ସଞ୍ଜରେ ଯେଉଁଠି ଥିଲା ଏବେ ବି ସେଇଠି ଅଛି ।" ସେ ତା ଟୋପିରେ ହାତ ଲଗାଇଥାଏ ।

ଗୋଟାଏ ଅଭିଯାନରେ ଯାଇଥିଲା ଓ ବନ୍ଧୁକ ଗୁଳିଗୁଡ଼ାକ ସାଇଁ-ସାଇଁ ଛୁଟିଥିଲା ଏହି କାରଣରୁ ତା ମୁହଁରେ ଯେଉଁ ଆନନ୍ଦର ସ୍ମିତ ହସ ଫୁଟି ଉଠୁଥାଏ ତାକୁ ସେ ରୋକିପାରୁ ନଥାଏ ।

"ଭାରି ଭଲ କାମ, ଭାରି ଭଲ," ବାଗ୍ରାତିଅନ୍ କହିଲେ, "ମୁଁ ଆପଣଙ୍କୁ ଧନ୍ୟବାଦ ଦେଉଛି ଅଫିସର୍ ମହାଶୟ ।"

"ହଜୁର୍, ମୋର ଗୋଟିଏ ମାଗୁଣି ଅଛି, ଆଦେଶ ହେଲେ ଜଣା-କରିବ ।"

"କଣ ?"

"ଆମ ସୈନ୍ୟଦଳକୁ ହୁକୁମ୍ ମିଳିଛି, କାଲି ସେ ସେନାବାହିନୀର ପଛଆଡ଼କୁ ଚାଲିଯିବ । ହଜୁରଙ୍କୁ ମୋର ଏତିକି ପ୍ରାର୍ଥନା ଯେ ସୈନ୍ୟ-ବାହିନୀର ଆଗେ ଆଗେ ଚାଲିଥିବା ପ୍ରଥମ ସୈନ୍ୟଦଳରେ ମତେ ରଖି ଦିଅନ୍ତେ ।"

"ଆପଣଙ୍କ ନାଁ ?"

"କାଉଣ୍ଟ୍ ରୋସ୍ତଭ୍ ।"

"ବାଃ, ଭାରି ଭଲ କଥା । ଆପଣ ମୋ ପାର୍ଶ୍ୱଚର ହୋଇ ରହିବେ ।"

"ଏଁ ! ଇଲିଆ ଆନ୍ଦ୍ରେଇଚଙ୍କ ପୁଅ ?" ଡୋଲଗୋରୁକଭ୍ ପଚାରିଲେ, କିନ୍ତୁ ରୋସ୍ତଭ୍ କିଛି ଜବାବ୍ ଦେଲାନାହିଁ ।

"ତାହେଲେ ହଜୁର, ମୁଁ ନର୍ଭରରେ ରହିଲି ।"

"ମୁଁ ହୁକୁମ୍ ଦେଇ ଦେବି ।"

ରେପ୍ନଭ୍ ଭାବିଲା, "କାଲି,—ଅତି ସମ୍ଭବ ଯେ ସେମାନେ କିଛି ଖବର ଦେବା ନିମିତ୍ତ ନିବାପାଇଁ ମତେ ସମ୍ରାଟଙ୍କ ପାଖକୁ ପଠାଇବେ । ଭଗବାନଙ୍କୁ ଧନ୍ୟବାଦ ।"

ଫରାସି ସୈନ୍ୟବାହିନୀରେ ଘୋଷା ଶୁଭିବାର ଓ ଆଲୁଅ ଗୁଡ଼ାଏ ଜଳିବାର କାରଣ ଏତିକି ଯେ ସୈନ୍ୟମାନଙ୍କ ଆଗରେ ନେପୋଲିନଙ୍କ ଘୋଷଣା ପଢ଼ି ଶୁଣାଇ ଦିଆହୋଇଥାଏ, ଛାଉଣିମାନଙ୍କରେ ନେପୋଲିଅନ୍ ନିଜେ ଘୋଡ଼ାରେ ଚଢ଼ି ବୁଲିଥିଲେ, ସମ୍ରାଟଙ୍କୁ ଦେଖି ସୈନ୍ୟମାନେ ପୁଳାଏ ଲେଖାଁ କୁଟାରେ ନିଆଁ ଲଗାଇ ତାଙ୍କ ପଛେ ପଛେ "ସମ୍ରାଟ୍ ଦୀର୍ଘଜୀବୀ ହୁଅନ୍ତୁ" ବୋଲି ପାଟି କରିକରି ଦୌଡ଼ଯାଇ-ଥିଲେ ।

ନେପୋଲିଅନ୍ଙ୍କ ଘୋଷଣା ଏହିପରି ଥିଲି :—

"ସୈନ୍ୟଗଣ,

ରୁଷ୍ ସୈନ୍ୟବାହିନୀ ଆପଣମାନଙ୍କ ସଙ୍ଗେ ଭେଟାଭେଟି ହେବାକୁ ଆସୁଛି, ଆସୁଛି ଅଷ୍ଟ୍ରିଆର ସୈନ୍ୟବାହିନୀ, ଉଲ୍ମ୍ ଯୁଦ୍ଧର ସୈନ୍ୟବାହିନୀର ପରାଜୟର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ । ସେମାନେ ସେହି ସୈନ୍ୟ ଯାହାଙ୍କୁ ଆପଣମାନେ ହୋଲାବ୍ରୁନ୍ ଯୁଦ୍ଧରେ ପରାଜିତ କରିଥିଲେ ଓ ଯାହାଙ୍କୁ ସେଦିନୁଁ ଏହି ସ୍ଥାନ ପର୍ଯ୍ୟନ୍ତ ଆପଣମାନେ ଗୋଡ଼ାଇ ଆଣିଛନ୍ତି । ଆମେ ଯେଉଁଠି ମାଡ଼ି ରହିଛୁଁ ସେ ଆସ୍ଥାନ ଖୁବ୍ ଦମ୍ଭ ଆସ୍ଥାନ ଓ ଏଠି ସେମାନେ ମୋ ଡାହାଣ କଡ଼ ବାଟେ ଯେତେବେଳେ ଆଗକୁ ମାଡ଼ିଯିବେ ସେତେ-ବେଳେ ସେମାନଙ୍କ ବାଁ ପଟକୁ ସେମାନେ ମୋ ଆଗରେ ଖୋଲି ପକାଇ ଦେବେ । ସୈନ୍ୟଗଣ ! ମୁଁ ନିଜେ ଆପଣମାନଙ୍କର ସବୁ ସୈନ୍ୟଦଳର ନେତୃତ୍ୱ କରିବି । ଆପଣମାନେ ଯଦି ନିଜ ସ୍ୱଭାବସୁଲଭ ବୀରତ୍ୱ ଦେଖାଇ ଶତ୍ରୁର ସୈନ୍ୟବାହିନୀ ଭିତରେ ପରାଜୟ ଓ ବିଶୃଙ୍ଖଳା ପହଞ୍ଚାଇଦେବେ ତେବେ ମୁଁ ନିଜେ ଗୁଳିମାଡ଼ର ବାହାରେ ରହିବି; କିନ୍ତୁ ମୁହୂର୍ତ୍ତେ ପାଇଁ ହେଉ ପଛେ, ବିଜୟରେ ଯଦି କେତେବେଳେ ହେଲେ ସନ୍ଦେହ ଉପୁଜିବ, ତେବେ ଆପଣମାନେ ଦେଖିବେ ଯେ ଆପଣମାନଙ୍କ ସମ୍ରାଟ୍ ଶତ୍ରୁ ପକ୍ଷର ସବୁଠୁ ଭୟଙ୍କର ଆକ୍ରମଣ ଆଗରେ ଖୋଲି ଖୋଲି ଭାବେ ଠିଆ

ହୋଇଥିବେ, କାରଣ ବିଜୟ ଲାଭହେବା ବିଷୟରେ ଅନିଶ୍ଚିତତା ରହି ନପାରେ, ବିଶେଷତଃ ଆଜି ଦିନଟିରେ ଯେତେବେଳେ ସେହି ପ୍ରଶ୍ନଟି ଫରାସୀ ପଦାତିକ ବାହିନୀର ଇଜ୍ଜତର ପ୍ରଶ୍ନ, ଯାହା ଉପରେ ସମୁଦାୟ ଜାତିର ଇଜ୍ଜତ ନିର୍ଭର କରୁଛି । ଆଳ ଦେଖାଇ କଦାପି ଆପଣମାନେ ଆହତ ସୈନିକମାନଙ୍କୁ ଉଠାଇ ନେବା ଧାଡ଼ିରେ ଯାହା ପରେ ଯାହାର ସ୍ଥାନ ନିର୍ଦ୍ଦିଷ୍ଟ ଅଛି, ସେ ଶୃଙ୍ଖଳାକୁ ଭଙ୍ଗନ୍ତୁନାହିଁ । ପ୍ରତ୍ୟେକ ସୈନିକ ମନରେ ଏହି ଉଦ୍ଦେଶ୍ୟ ଭେଦ ରହିଥାଉ ଯେ ଇଂଲଣ୍ଡ୍‌ର ଏହି ହୀନ ଗୃହକର ପର ଆଶ୍ରିତଗୁଡ଼ାଙ୍କୁ,—ସେହି ଯେଉଁଗୁଡ଼ାକ ଆମ ଦେଶ ପ୍ରତି ବିଦ୍ୱେଷ ରଖି ମାତିଉଠିଛନ୍ତି ସେହିମାନଙ୍କୁ ଆମେ ନିଶ୍ଚୟ ଜବତ କରିଦେବୁଁ । ବିଜୟ ଲାଭ ପରେ ଆମର ଏ ଅଭିଯାନ ଶେଷ ହୋଇଯିବ ଓ ଆମେ ଆମର ଶୀତଦିନର ରହଣି ସ୍ଥାନକୁ ଫେରିଯାଇ ପାରିବା ଯେଉଁଠି ବର୍ତ୍ତମାନ ଆମ ଫ୍ରାନ୍‌ସ୍ ଦେଶରେ ଗଠନ କରାଯାଉଥିବା ନୂଆ ନୂଆ ସୈନ୍ୟଦଳ ଆମ ସୈନ୍ୟବାହିନୀରେ ମିଶିଯାଇ ତାର ଶକ୍ତି ବଢ଼ାଇବେ, ଓ ସେତେବେଳେ ମୁଁ ଯେଉଁ ସନ୍ଧି କରିବି ସେ ସନ୍ଧି ମୋ ପ୍ରଜାମାନଙ୍କର, ଆପଣମାନଙ୍କର ଓ ମୋର ମର୍ଯ୍ୟାଦା ଅନୁରୂପ ହେବ ।

"ନେପୋଲିଅନ୍"

୧୮୦୫ ସାଲ ନଭେମ୍ବର ତା ୨୦ ରିଖ । ସକାଳ ପାଞ୍ଚ ବାଜିଥାଏ ତଥାପି ବେଶ୍ ଅନ୍ଧାର ଥାଏ । କୁତୁଜଭ୍‌ଙ୍କ ସୈନ୍ୟବାହିନୀର ମଝି ଭାଗରେ ଥିବା ସୈନ୍ୟମାନେ, ହାତରେ ପାଞ୍ଚ ହୋଇ ରଖାହୋଇଥିବା ସୈନ୍ୟମାନେ ଓ ବାଗ୍ରାତିଅନଙ୍କ ସୈନ୍ୟବାହିନୀର ଡାହାଣ ପାର୍ଶ୍ୱରେ ଥିବା ସୈନ୍ୟମାନେ ସେତେବେଳ ସୁଦ୍ଧା ବାହାରିନଥାନ୍ତି । କିନ୍ତୁ ବାମ ପାର୍ଶ୍ୱର ସୈନ୍ୟମାନେ, ପଦାତିକ, ଅଶ୍ୱାରୋହୀ, ତୋପଚାଳକଙ୍କ ସମେତ, ଯେଉଁମାନଙ୍କର ଯୋଗ ଥାଏ ଯେ ସେମାନେ ସବା ଆଗ ପାହାଡ଼ ଉପରୁ ଓହ୍ଲାଇ ପଡ଼ିବେ ଓ ତେଣୁ ଫରାସି ସୈନ୍ୟବାହିନୀର ଡାହାଣ ପାର୍ଶ୍ୱ ଉପରେ ଆକ୍ରମଣ କରି ସେ ସୈନ୍ୟମାନଙ୍କୁ ପୁଣି ପଛକୁ ବୋହେମିଆର ପର୍ବତ ଆଡ଼କୁ ତଡ଼ିଦେବେ.—ସେମାନେ ସେତେବେଳକୁ ଉଠିପଡ଼ି ଚଳପ୍ରଚଳ ହେଲେଣି । ସବୁ ଅଦରକାରୀ ଜିନିଷପତ୍ରକୁ ସେମାନେ ଚୁଲିଗିର ଅଗ୍ନି ନିଆଁରେ ପକାଇ ଦେଇଥାନ୍ତି, ତେଣୁ ଧୂଆଁ ଉଠି ଆଖି

ଘୋଡ଼ୁଥାଏ । ଶୀତ ଲଗୁଥାଏ, ଅନ୍ଧାର ଥାଏ । ଅଫିସରମାନେ ଠାଉ ଠାଉ କର ଗ୍ଲସ୍ପା ପିଇଦେଉଥାନ୍ତି, ଜଳଖିଆ ଖାଇନେଉଥାନ୍ତି । ସୈନକମାନେ ବସ୍ତୁ ଟ୍ ଗ୍ରୈବାଉ ଥାନ୍ତି, ତାଳ ଦେଇ ଦେଇ ଭୂଇଁରେ ପାଦ କଚଡ଼ୁଥାନ୍ତି, ଓ ଅଗି ନଆଁ ଗୁଣକରେ ରୁଣ୍ଡ ହୋଇ ନଆଁ ପୁଉଁଥାନ୍ତି । ସଙ୍ଗରେ ଯାହା ଯାହା ନେଇଯାଇ ନପାରିବେ—ଭଙ୍ଗା-ସରଥିବା କାଠରେ ତିଆର ସାନ ସାନ କୁଡ଼ଆ, ଚଉକ, ଟେବୁଲ, ଚକ, ପାଣିକୁଣ୍ଡ, ନାନା ବାଜେ ଜନଷ,—ତାକୁ ସବୁ ସେମାନେ ନଆଁରେ ପକାଇଦେଉଥାନ୍ତି । ରୁଷ୍ ସୈନ୍ୟମାନଙ୍କ ଭିତରେ କନ୍ଧ ବକନ୍ଧରେ ବ ଅଷ୍ଟ୍ରିଆର ସେନାବାହିନୀର ଅଫିସରମାନେ ଏକର ସେକର ହୋଇ ବୁଲୁଥାନ୍ତି, ସବୁଠିକ ଯାଉଥାନ୍ତି, ସେମାନଙ୍କ ସୈନ୍ୟବାହିନୀ ଯେ ପଛେ ପଛେ ମାଡ଼ ଆସୁଛି ସେମାନେ ସେହି ସମ୍ବାଦ ଘୋଷଣା କଲାଭଳ ଆଗେ ଆଗେ ଆସି ପହଞ୍ଚୁଥାନ୍ତି । ଗୋଟିଏ ସୈନ୍ୟଦଳର ଦଳପତିଙ୍କ ବସା କଡ଼ରେ ଜଣେ ଅଷ୍ଟ୍ରିଆ ଦେଶର ସାମରିକ ଅଫିସର ପହଞ୍ଚିଗଲାମାତ୍ରେ ସୈନ୍ୟଦଳ ଗୋଟାକଯାକ କାର୍ଯ୍ୟରେ ତତ୍ପର ହୋଇ ଉଠୁଥାଏ, ସୈନକମାନେ ନଆଁ ପୁଆଁ ଛାଡ଼ଦେଇ ଦୌଡ଼ ଆସନ୍ତି, ପାଦରେ ପିନ୍ଧିଥିବା ଡେଙ୍ଗା ବୁଟ୍ ଜୋତାର ଉପର ପଟେ ତାଙ୍କ ଧୂଆଁ ପିଇବା ନଳଗୁଡ଼କ ଖୋସି ଦଅନ୍ତି, ବସ୍ତାତକ ଗାଡ଼ିରେ ଶୁନ୍ଦି-ଦଅନ୍ତି ବନ୍ଧୁକ ସଫାସଫ କରିପକାନ୍ତି ଓ ଯାହାପରେ ଯେ ହୋଇ ସଜେଇ ହୋଇ ଧାଡ଼ ଧାଡ଼ ହୋଇ ଠିଆହୋଇଯାନ୍ତି । ତାଙ୍କ ଅଫିସରମାନେ ସେମାନଙ୍କ ପିନ୍ଧା ପୋଷାକରେ ବୋତାମ ଦେଇ-ଦଅନ୍ତି, ତାଙ୍କ ଖଣ୍ଡା ଓ ଗୁଳ ବାରୁଦ ରଖିବା ମୁଣିକୁ ଦେହରେ ଖଞ୍ଜି ହୋଇପଡ଼ନ୍ତି ଓ ବଡ଼ପାଟି କରିକରି ସୈନକମାନଙ୍କ ଧାଡ଼ଗୁଡ଼କ ଏମୁଣ୍ଡ ସେମୁଣ୍ଡ, ସେମୁଣ୍ଡ ଏମୁଣ୍ଡ ଯା ଆସ ହେଉଥାନ୍ତି । ସେନାବାହିନୀର ଖାଦ୍ୟ ଯୋଗାଣ ବିଭାଗର ଲୋକେ ଓ ଅଫିସରମାନଙ୍କ ଗୃକରମାନେ ମାଲ୍‌ବୁହା ଗାଡ଼ମାନଙ୍କ ଘୋଡ଼ାକୁ ଆଣି ଗାଡ଼ିରେ ଯୋଚଦେଲେ, ଗାଡ଼ିରେ ଜନଷ ପତ୍ର ବୋଝେଇ କର ଗାଡ଼ଗୁଡ଼କ ବାନ୍ଧ ପକାଇଲେ । ସେନାପତିଙ୍କ ପାର୍ଶ୍ୱରକ୍ଷୀ ଦଳପତିମାନେ ଓ ବଡ଼ ଦଳ, ସାନ ଦଳମାନଙ୍କ ଦଳପତିମାନେ ସେମାନଙ୍କ ଘୋଡ଼ାରେ ଚଢ଼ିଲେ,

ଯୀଶୁଖ୍ରୀଷ୍ଟଙ୍କୁ ସ୍ମରଣ କରି ସ୍ତମ୍ଭ ଉପରେ ବାହା ଛକଦେଇ ଖ୍ରୀଷ୍ଟଙ୍କ ପ୍ରତୀକ ଛକ ସଙ୍କେତ କଲେ ଓ ଜନୈକ ପଦସ୍ଥ ସଙ୍ଗରେ ତାଙ୍କ ତଳିଆ ସୈନକମାନେ ପଛରେ ରହିଲେ,—ସେମାନଙ୍କୁ ଶେଷ ଆଦେଶ ଶୁଣାଇ ଦେଲେ, ଶେଷ ଥରପାଇଁ ଉଦ୍‌ବୋଧନ ଦେଲେ ଓ ଯାହାକୁ ଯେଉଁ କାମ ବରଟିବାକୁ ଥାଏ, ସେସବୁ ବରଗିଦେଲେ ଓ ହଜାର ହଜାର ପାଦ ଏକାଠି ଏକା ତାଳକେ ଦୁମୁଦୁମୁ ହୋଇ ପଡ଼ିବାର ସେହି ଏକା ପ୍ରକାର ଶବ୍ଦ ଆରମ୍ଭ ହୋଇଗଲା । ଧାଡ଼ି ଧାଡ଼ି ହୋଇ ଦଳ ଦଳ ସୈନ୍ୟ ଚାଲିଲେ କିନ୍ତୁ ସେମାନେ ଜାଣିନଥାନ୍ତି ଯେ ସେମାନେ କେଉଁ ଯାଗାକୁ ଯାଉଛନ୍ତି, ତାଙ୍କ ଚାରି ପଟେ ଦଳ ଦଳ ମଣିଷ, ଧୂଆଁ, କୁହୁଡ଼ି ଆହୁରି ବହଳ ହୋଇଯାଉଛି, ଯେଉଁ ସ୍ଥାନ ଛାଡ଼ି ଚାଲିଯାଉଛନ୍ତି ତାକୁ ବି ସେମାନେ ଦେଖି ପାରୁନଥାନ୍ତି ଓ ଯେଉଁ ସ୍ଥାନ ଭିତରକୁ ସେମାନେ ମାଡ଼ି ଯାଉଛନ୍ତି ସେ ବି ତାଙ୍କୁ ଦିଶୁନଥାଏ ।

କୁହୁଡ଼ି ଏତେ ବହଳ ହୋଇ ଘୋଟିଥାଏ ଯେ ଦିନର ଆଲୁଅ ଫିଟିଯାଉଥିଲେବି ସେମାନେ ଆଗକୁ ଦଶ ଦଶ ପାହୁଣ୍ଡ ଦୂରକୁ ବି ଦେଖି ପାରୁନଥାନ୍ତି । ବୁଦା ଗୁଡ଼ାକ ବଡ଼ ବଡ଼ ଗଛପରି ଦିଶୁଥାଏ ସମତଳ ଜାଗାଗୁଡ଼ାକ ଗମ୍ଭୀର ଖୋଲ ଚରି କି ଅତଡ଼ା ତାଲୁ ପରି ଦିଶୁଥାଏ । ଯଦି ତାଙ୍କଠୁଁ ଦଶ ପାହୁଣ୍ଡ ଭିତରେ କେଉଁଠି ଅଦୃଶ୍ୟ ଶତ୍ରୁମାନେ ଥାନ୍ତେ, ତାଙ୍କର ଯେଉଁପଟେ ହେଉ କି ଯେଉଁ ଜାଗାରେ ହେଲେ ହେଉ, ତାହେଲେ ଦେଖି ନପାରି ହେମାନେ ସେ ଶତ୍ରୁମାନଙ୍କୁ ଝୁଣ୍ଟିଥାନ୍ତେ । କିନ୍ତୁ ବହୁତ ବେଳଯାକେ ସେହି ଧାଡ଼ିକା ଧାଡ଼ି ସୈନ୍ୟମାନେ ସେହି ଏକା ପ୍ରକାର କୁହୁଡ଼ି ଭିତରେ ଚାଲିଥାନ୍ତି, ପାହାଡ଼ ଓହ୍ଲାଉଥାନ୍ତି, ପାହାଡ଼ ଚଢ଼ୁଥାନ୍ତି, ବଗିଚମାନଙ୍କ କରେ କରେ ଚାଲିଥାନ୍ତି, ବାଡ଼ମାନଙ୍କ ବାଡ଼ କରେ କରେ ଚାଲିଥାନ୍ତି, ସେ ଦେଶ ବି ତାଙ୍କୁ ନୂଆ ଓ ଅଚହ୍ନା, କିନ୍ତୁ କେଉଁଠି ହେଲେ ସେମାନେ ଫରାସି ସୈନ୍ୟଙ୍କୁ ହାବୁଡ଼ିଲେ ନାହିଁ । ଓଲଟି, ସୈନ୍ୟମାନେ ବାରିପାରୁଥାନ୍ତି ଯେ ତାଙ୍କ ସାମ୍ନାରେ, ତାଙ୍କ ପଛଆଡ଼େ, ଚାରିଆଡ଼େ, ସେହି ଏକା ଦିଗକୁ ଖାଲି ରୁଷ୍ ପକ୍ଷର ଦଳ ଦଳ ସୈନ୍ୟ ଚାଲିଥାନ୍ତି । ଏତକି ଜାଣି

ପ୍ରତି ସୈନିକ ମନ ଖୁସି ହେଉଥାଏ ଯେ ସେ ଯେଉଁଠିକୁ ଯିବାକୁ ଚାଲିଛି ସେହି ଅଜଣା ସ୍ଥାନକୁ ରୁଷ୍ ପକ୍ଷର ଆହୁରି ବହୁତ ବହୁତ ଚାଲିଛନ୍ତି ।

କିନ୍ତୁ ବହଳ କୁହୁଡ଼ି ଭିତରେ ସେମାନେ ପ୍ରାୟ ଘଣ୍ଟାଏ ହେବ ଚାଲିଲାପରେ ସୈନ୍ୟବାହିନୀର ବଡ଼ ଭାଗ ସୈନ୍ୟମାନଙ୍କୁ ଠିଆ ହୋଇ ରହିବାକୁ ପଡ଼ିଲା ଓ ଅବ୍ୟବସ୍ଥା ଘଟିଛି, ଠିକ୍ କରି ବୁଝାଶୁଝା ହୋଇନାହିଁ, ଏହିଭଳି ଗୋଟାଏ ଅପ୍ରୀତିକର ଧାରଣା ସୈନିକମାନଙ୍କ ଭିତରେ ବ୍ୟାପିଗଲା । ସେ ଧାରଣାଟା ସେମାନଙ୍କ ପାଖରେ କେମିତି ପହଞ୍ଚିଲା କହିବା କଷ୍ଟ, କିନ୍ତୁ ପହଞ୍ଚିଲାତ ନିଃସନ୍ଦେହରେ ନିଶ୍ଚୟ, ଅତି ଅସାଧାରଣ ବେଗରେ ପହଞ୍ଚିଗଲା ଓ ଆଶ୍ଚର୍ଯ୍ୟ ପ୍ରକାରେ ଠିକ୍ ଠିକ୍ ହୋଇ ପହଞ୍ଚିଗଲା । ଧାରଣାଟା ଅଲକ୍ଷରେ ବ୍ୟାପିଗଲା, ତାକୁ ରୋକିବା ସମ୍ଭବ ନଥିଲା । ଚଢ଼ିଟି ଚାଲିଲା ସତେ ଯେମିତି ଉପତ୍ୟକା ଉପରେ ପାଣିଧୁଅ ବୋହିଯାଉଛି । ଯଦି ରୁଷ୍ ସୈନ୍ୟବାହିନୀ ଏକୁଟିଆ କାମ କରୁଥାନ୍ତା, ତା ସଙ୍ଗରେ ସହାୟକ ହିସାବରେ ପର ରାଷ୍ଟ୍ରର ସୈନ୍ୟବଳ ନଥାନ୍ତେ, ତେବେ ହୁଏତ ଯେ ଅବ୍ୟବସ୍ଥା ହୋଇଛି ବୋଲି ମୋଟାମୋଟି ଧାରଣାଟା ସାଧାରଣମାନ ଦୃଢ଼ ବିଶ୍ୱାସରେ ପରିଣତ ହେଉ ହେଉ ବହୁତ ବେଳ ଲାଗିଥାନ୍ତା; କିନ୍ତୁ ଅବସ୍ଥା ଏପରି ଯେ ରୁଷ୍‌ବାହିନୀ ସଙ୍ଗରେ ଅଷ୍ଟ୍ରିଆ ଦେଶର ଜର୍ମାନ୍ ବାହିନୀ ବି ତ ଥିଲା, ଆଉ ଜର୍ମାନ୍‌ମାନେ କାଣ୍ଡଜ୍ଞାନବର୍ଜିତ, ଅବ୍ୟବସ୍ଥାଟା ତାଙ୍କରି ଯୋଗୁଁ ଘଟିଲା,—ରୁଷ୍ ସୈନ୍ୟମାନଙ୍କୁ ଏପରି ଭାବିବାକୁ ସୁଖ ଲାଗୁଥାଏ, ଓ ସ୍ୱାଭାବିକ ଜଣାପଡ଼ୁଥାଏ, ସେମାନେ ଭାବୁଥାନ୍ତି,—ଏ ଜର୍ମାନ୍‌ଗୁଡ଼ାକ ଖାଲି ଧୂଆଁର ଅନ୍ଧ ଭିତରେ ପୂରେଇ କିମା ମାଉଁସ ଭାଜିଜାଣନ୍ତି, ଏଇମାନେ କଣ ଭୁଲ୍ ଭାଲ୍ କରିଦେଲେ ବୋଲି ଭୟଙ୍କର ଅବ୍ୟବସ୍ଥା ହୋଇଗଲାଣି ।

ବାରମ୍ବାର ନାନାଆଡ଼ୁ ଲୋକେ କହିବାର ଶୁଭୁଥାଏ,

"ଆମୁକୁ ହୁକୁମ୍‌ଥିଲା ଦଶ ବାଜିବା ଆଗରୁ ଜାଗା ଉପରେ ପହଞ୍ଚିବାକୁ, ଆଉ ଆମେ ଅଧବାଟ ବି ଆସିନାହୁଁ । କାମ ତୁଲେଇ-ବାକୁ ଯେ ଭାରିଭଲ ବାଗ ଏକା ।"

ଅବ୍ୟବସ୍ଥାଟା ଏଇ କାରଣରୁ ଉପୁଜଥାଏ ଯେ ଅଷ୍ଟ୍ରିଆର ରୁଷ୍ ସୈନ୍ୟ-ବାହିନୀର ଘୋଡ଼ସବାର ସୈନ୍ୟଦଳମାନେ ଯେତେବେଳେ ଚାଲିଥାନ୍ତି,—ସେମାନେ ସେନାବାହିନୀର ବାଁ ପାର୍ଶ୍ୱକୁ ଯାଉଥାନ୍ତି,—ମୁଖ୍ୟ ଅଧିନାୟକମାନେ ମନେକଲେ ଯେ, ରୁଷ୍ ସେନାବାହିନୀର ମଝିଭାଗଟା ଡାହାଣ ପାଖର ସୈନ୍ୟଦଳଙ୍କଠାରୁ ବହୁତ ଦୂରରେ ରହିଗଲାଣି, ତେଣୁ ସବୁ ଘୋଡ଼ସବାର ସୈନ୍ୟଦଳଙ୍କୁ ହୁକୁମ ଦିଆଗଲା ଯେ ସେମାନେ ବାଟବଦଳି ଡାହାଣ ପଟକୁ ଚାଲିଯିବେ । ହଜାର ହଜାର ଘୋଡ଼ସବାର ସୈନ୍ୟଙ୍କୁ ପଦାତିକ ସୈନ୍ୟମାନଙ୍କ ସାମ୍ନାବାଟେ ରାସ୍ତା ପାର ହୋଇ ଆରପାଖକୁ ଚାଲିଯିବାକୁ ପଡ଼ିଲା ଓ ତେଣୁ ସେମାନେ ସମସ୍ତେ ଯାଇ ସାରିବାଯାଏ ପଦାତିକ ବାହିନୀକୁ ଅପେକ୍ଷା କରି ରହିବାକୁ ପଡ଼ିଲା ।

ସୈନ୍ୟମାନଙ୍କ ଆଗ ପଟେ ଖଣ୍ଡେ ଦୂରରେ ଅଷ୍ଟ୍ରିଆ ସୈନ୍ୟମାନଙ୍କ ଅଫିସର ଓ ରୁଷ୍ ସେନାପତିଙ୍କ ଭିତରେ ବିବାଦ ଉପୁଜଥାଏ । ରୁଷ୍ ସେନାପତି ବଡ଼ ପାଟିରେ ଅନୁରୋଧ କଲେ ଯେ ଘୋଡ଼ସବାର୍ ସୈନ୍ୟବାହିନୀ ଅଟକି ଯାଇ ଅପେକ୍ଷା କରିବା ଦରକାର । ଅଷ୍ଟ୍ରିଆର ସାମରିକ କର୍ମଚାରୀ ଜଣକ ବୁଝେଇବାକୁ ଚେଷ୍ଟାକଲେ ଯେ ସେ ଦାୟୀ ନୁହନ୍ତି, ଦାୟୀ ତାଙ୍କ ଉପରସ୍ଥ କର୍ତ୍ତୃପକ୍ଷ । ଇତ୍ୟବସରେ ସୈନିକ-ମାନେ ଠିଆହୋଇ ରହିଥାନ୍ତି, ବେଳକୁବେଳ ବେଶି ବେଶି ତାଙ୍କ ମନ ଭାଙ୍ଗି ଯାଉଥାଏ । ଉତ୍ସାହ କମିଯାଉଥାଏ । ଘଣ୍ଟାଏ ଡେରି ହୋଇଗଲା, ସେଉଠୁ ସୈନ୍ୟମାନେ ପୁଣି ଚାଲିଲେ । ତାଲୁଏ ତାଲୁଏ ପାହାଡ଼ ତଳକୁ ତଳକୁ ଓହ୍ଲାଉଥାନ୍ତି । ଆଗରେ କୁହୁଡ଼ି ଭିତରେ ଗୋଟାଏ ଗୁଳି ଫୁଟିବା ଶବ୍ଦ ଶୁଭିଲା, ତା'ପରେ ଆଉ ଗୋଟାଏ, କେତେବେଳେ କେମିତି ଗୁଳିଟାଏ ଫୁଟେ,—ଶୁଭେ ଟ୍ରାଟା-ଟାଟ୍, ତାପରେ ବେଶି ବେଶି ନିୟମିତ ଭାବରେ ଓ ଆହୁରି ଆହୁରି ଥର ଗୁଳିମାଡ଼ ଶୁଭିଲା, 'ହୋଲ୍‌ଡ଼ ବାକ୍' ବୋଲି ଯେଉଁ ସାନ ଝରଣାଟି ଥିଲା ତା କୂଳରେ ଖଣ୍ଡଯୁଦ୍ଧ ଆରମ୍ଭ ହୋଇଗଲା ।

ଶତ୍ରୁପକ୍ଷକୁ ସେ ଝରଣା ପାଖେ ଭେଟିବେ ବୋଲି ରୁଷ୍ ସୈନ୍ୟମାନେ ଆଗରୁ କଳ୍ପନା କରିନଥିଲେ, ଅପ୍ରତ୍ୟାଶିତ ଭାବରେ କୁହୁଡ଼ି ଭିତରେ ତାଙ୍କୁ ହାବୋଡ଼ ଗଲେ । ତାଙ୍କ ଦଳପତିମାନଙ୍କଠାଁ

ସେମାନେ ପଛେ ହେଲେ ଉତ୍ସାହବାଣୀ ପାଇଲେନାହିଁ । ସେମାନଙ୍କୁ ଲାଗୁଥାଏ ଯେ ଏତେ ଡେରି ହୋଇଗଲାଣି ଯେ ଆଉ କିଛି କରି ହେବନାହିଁ । କୁହୁଡ଼ିରେ ସେମାନଙ୍କୁ ଆଗରେ କି ଖୁରପଟେ କିଛି ବୋଲି କିଛି ଦିଶୁନଥାଏ । ଏପରି ଅବସ୍ଥାରେ ରୁଷ୍ ସୈନ୍ୟମାନେ ମାନ୍ଦା ମାନ୍ଦା କରି ମଝେଇ ମଝେଇ ଶତ୍ରୁ ପକ୍ଷ ଆଡ଼କୁ ଗୁଳି ମାରୁଥାନ୍ତି, ଠିକଣା ସମୟରେ ଆଦେଶ ବି ତାଙ୍କୁ ତାଙ୍କ ଅଫିସରମାନେ କି ସେନାପତିଙ୍କ ସହାୟକ ଅଫିସରମାନେ କେହି ଦେଲେନାହିଁ, ସେମାନେ ବି ଅଚହ୍ନା ଦେଶରେ କୁହୁଡ଼ି ଭିତରେ ଏଣେ ତେଣେ ହେଉଥାନ୍ତି, ତାଙ୍କ ନିଜ ନିଜ ସେନାଦଳ କେଉଁଠି ଅଛନ୍ତି ଠାବକରି ପାରୁନଥାନ୍ତି । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସୈନ୍ୟଦଳ ଯେଉଁମାନେ ଖାଲୁଆ ସ୍ଥାନକୁ ଓହ୍ଲାଇ ପଡ଼ୁଥାନ୍ତି,- ସେମାନଙ୍କ ପକ୍ଷରେ ଯୁଦ୍ଧର ଆରମ୍ଭ ପର୍ବ ଥିଲା ଏହିପରି । ଚତୁର୍ଥ ଦଳ, ଯାହା ସଂଗରେ କୁଟୁଜଭ୍ ଥାନ୍ତି ସେ ସେତେବେଳକୁ ଥାଏ ପ୍ରାତ୍ଜେନ୍‌ର ମାଳଭୂମି ଉପରେ ।

ଯେଉଁ ଖାଲିରେ ଲଢ଼େଇ ଆରମ୍ଭ ହେଉଥାଏ ତା' ଉପରେ ବହଳ କୁହୁଡ଼ି ସେତେବେଳେ ବି ଲଦି ହୋଇଥାଏ, ଆହୁରି ଉପରକୁ କୁହୁଡ଼ି ସଫା ହୋଇଆସୁଥାଏ, ତଥାପି ସାମ୍ନାପଟେ ଲଢ଼େଇ ଲାଗିଥିବା ଇଲାକାରେ କଣ ହେଉଛି ତା ଆଦୌ ଦିଶୁନଥାଏ । ରୁଷ୍ ପକ୍ଷ ଆଗ ଅନୁମାନ କରିଥିଲାଭଳି, ଫରାସି ପକ୍ଷର ସବୁସାକ ସୈନ୍ୟ ସେଠୁ ତିନି କୋଶ ଦୂରରେ ଥିଲେ କି ନାହିଁ, ଅତି ପାଖରେ ସେହି କୁହୁଡ଼ି ଅନ୍ଧାର ଭିତରେ ରହିଥିଲେ, ନ'ଟା ବାଜିବା ଯାକେ ସେକଥା କେହି ଜାଣିନଥିଲେ । ନ'ଟା ବେଳ ହେଲା । ନିସ୍ତରଙ୍ଗ ସମୁଦ୍ର ପରି କୁହୁଡ଼ି ସମତଳ ଉପରେ ଘୋଟି ରହିଥାଏ; କିନ୍ତୁ ସ୍ଲାପାନିଜ୍ ଗାଁ ରେ, ଯେଉଁଠି ସେନାପତିମାନଙ୍କ- ଦ୍ୱାରା ପରିବୃତ ହୋଇ ନେପୋଲିଅନ୍ ଢିପ ଉପରେ ଥାନ୍ତି, ସେଠି ସେତେବେଳକୁ କୁହୁଡ଼ି ସମ୍ପୂର୍ଣ୍ଣ ସଫା ହୋଇଯାଇଥାଏ । ତାଙ୍କ ମୁଣ୍ଡ ଉପରେ ଥାଏ ଉଜ୍ଜ୍ୱଳ ନୀଳ ଆକାଶ ଓ କୁହୁଡ଼ିର କ୍ଷୀର ସମୁଦ୍ର ଉପରେ ଗୋଟାଏ ପ୍ରକାଣ୍ଡ ଆକାରର ପୋଲା ଭେଲା ପରି ବିଶାଳ ସୂର୍ଯ୍ୟ- ଗୋଲକ ଟଳ ଟଳ ହୋଇ ହଲୁଥାଏ । ଖାଲି ଫରାସି ସୈନ୍ୟବାହିନୀ ନୁହନ୍ତି, ନିଜେ ନେପୋଲିଅନ୍ ଓ ତାଙ୍କ ସେନାପତିମାନେ ମଧ୍ୟ ନିକଟମାନଙ୍କ

ଆରପାର ସୋକୋଲ୍‌ନିକ୍ ଓ ସ୍ଲାପାନିକ୍ ଗାଁ ଯୋଡ଼ିକ ସେପାଖେ, ଯେଉଁ ଗାଁକୁ ଝଟପି ଗୋଟିଏ ଜାଗାରେ ଆସ୍ଥାନ କରି ଆକ୍ରମଣ ଆରମ୍ଭ କରିବେ ବୋଲି ରୁଷ୍ ପକ୍ଷ ଠିକଣା କରିଥିଲେ, ସେଇଠି ନିରନ୍ଧ୍ର ରୁଷ୍ ପକ୍ଷର ପାଖ ଆଡ଼କୁ ନଜର ଏପାଖ ରହିଥାନ୍ତି । ସେମାନେ ରୁଷ୍ ସେନାବାହିନୀଠୁଁ ଏତେ ପାଖରେ ଥାନ୍ତି ଯେ ଆଖିରେ ଦୁରବୀଣ୍ ନ ଦେଇ ଖାଲି ଆଖିରେ ବି ନେପୋଲିଅନଙ୍କୁ ଦିଶୁଥାଏ, ରୁଷ୍ ସେନାବାହିନୀରେ କେଉଁ ଜଣକ ଅଶ୍ୱାରୋହୀ ସୈନିକ, କେଉଁ ଜଣକ ପଦାତିକ । ନେପୋଲିଅନ୍ ତାଙ୍କ ସେନାପତିମାନଙ୍କର ଟିକିଏ ଆଗକୁ ଗୋଟିଏ ସାନ ଆରବ ଦେଶୀୟ ଘୋଡ଼ା ଉପରେ ଠିଆହୋଇଥାନ୍ତି, ଇଟାଲି ଦେଶରେ ଯୁଦ୍ଧ ଅଭିଯାନ ବେଳେ ସେ ଯେଉଁ ନେଳିଆ ପୋଷାକ ଖଣ୍ଡିକ ପିନ୍ଧିଥିଲେ ସେଇଆକୁ ପିନ୍ଧିଥାନ୍ତି । ସେ ଚୂପ୍‌ଚାପ୍ ହୋଇ ଏକା ଧ୍ୟାନରେ ପାହାଡ଼ମାନଙ୍କ ଆଡ଼କୁ ଅନାଇଁଥାନ୍ତି, ପାହାଡ଼ ଗୁଡ଼ାକ କୁହୁଡ଼ି ସମୁଦ୍ରର ଉପରକୁ ଉଠି ଠିଆ ହୋଇଥାଏ । ଦୂରରେ ରୁଷ୍ ସୈନ୍ୟମାନେ ଯେ ସେହି ପାହାଡ଼ ଉପରେ ଚାଲିଆସୁଥାନ୍ତି ସେହିମାନଙ୍କୁ ଦେଖୁଥାନ୍ତି ଓ ଖାଲ ଭିତରେ ଯେଉଁ ଗୁଳି ଫୁଟା ଶବ୍ଦ ହେଉଥାଏ ତେଣେ କାନେଇଥାନ୍ତି । ତାଙ୍କ ମୁହଁରେ,—ଯେତେବେଳେ ବି ସେ ମୁହଁ ପାତଳ ଥାଏ—ଗୋଟାଏ ବି ମାଂସ ପେଶୀ ହଲଚଲ ହେଉନଥାଏ । ତାଙ୍କ ଜକ ଜକ ଆଖି ଗୋଟାଏ ଜାଗା ଉପରେ ନିବଦ୍ଧ ହୋଇ ଲାଗି ରହିଥାଏ । ଯାହା ଯାହା ଘଟିବ ବୋଲି ଆଗରୁ ସେ ଅନୁମାନ କରିଥିଲେ ତା ଅବିକଳ ସତ ହୋଇଯାଉଥାଏ ।

ରୁଷ୍ ସୈନ୍ୟବାହିନୀରୁ ଭାଗେ ପାହାଡ଼ ତଳେ ଯେଉଁ ଆଡ଼େ ହ୍ରଦଗୁଡ଼ିଏ ପୋଖରୀ ଗୁଡ଼ିଏ ଥାଏ ସେହି ଆଡ଼କୁ ଓହ୍ଲାଇ ଯାଉଥାଏ ଓ ଯେଉଁ ପ୍ରାତ୍‌ଜେନ୍ ମାଳଭୂମିକୁ ଯୁଦ୍ଧଭୂମିର ଅସଲ ଘାଟି ଜାଗା ବୋଲି ବିବେଚନା କରି ତାଙ୍କୁ ଦଖଲ କରିବାକୁ ହେବ ବୋଲି ସେ ନିଜେ ମନେ ମନେ ଠିକଣା କରିଥିଲେ, ରୁଷ୍ ସେନାବାହିନୀର ଆଉ ଭାଗେ ସେ ମାଳଭୂମିକୁ ଖାଲିକରି ଦେଇ ଚାଲିଯାଉଥିଲେ । କୁହୁଡ଼ି ଭିତରେ ସେ ଦେଖୁଥାନ୍ତି, ପ୍ରାତ୍‌ଜେନ୍ ଗାଁ ପାଖେ ଯୋଡ଼ିଏ ପାହାଡ଼ ସନ୍ଧି ବାଟେ ଖାଲ ମଝିରେ, ଯେ ଖସ୍ବରେ ଜକ ଜକ ଦିଶୁଥିବା ବନ୍ଧୁକ ସଙ୍ଗିନ୍‌ମାନ ଟେକି

ଦଳ ଦଳ ରୁଷ୍ ସୈନ୍ୟ ପର୍ବତର ଉପତ୍ୟକାମାନଙ୍କ ଆଡ଼କୁ ସବୁବେଳେ ଖାଲି ଗୋଟାଏ ଦିଗକୁ ଚାଲିଛନ୍ତି ଓ ଦଳକ ପରେ ଆଉ ଦଳେ ଲେଖି କୁହୁଡ଼ି ଭିତରେ ଅନ୍ତର୍ହିତ ହୋଇଯାଉଛନ୍ତି । ରାତିକା ରାତି ତାଙ୍କ ପାଖରେ ଯେଉଁ ସମ୍ବାଦ ପହଞ୍ଚିଥାଏ ତହିଁରୁ, ଜଗୁଆଳି ଘାଟିମାନଙ୍କରେ ରାତିରେ ସେ ଯେଉଁ ଗାଡ଼ିଚକମାନଙ୍କ ଘଡ଼ର ଘଡ଼ର ଶବ୍ଦ ଶୁଣିଥିଲେ ଓ ଯେଉଁ ପାଦଶବ୍ଦ ଶୁଣିଥିଲେ ତହିଁରୁ, ପୁଣି ରୁଷ୍ ସୈନ୍ୟଦଳମାନେ ଯେମିତି ଚିଲ ମେଲି ହୋଇ ଚାଲିଥାନ୍ତି ତାକୁ ଦେଖି, ସବୁଆଡ଼ୁ ସବୁଆଡ଼ୁ ଯେତେ ପ୍ରମାଣ ମିଳିଥାଏ ତହିଁରୁ ସେ ପରିଷ୍କାର ଭାବେ ବୁଝିପାରିଲେ ଯେ ରୁଷ୍ ଓ ଅଷ୍ଟ୍ରିଆର ସମ୍ମିଳିତ ସେନାବାହିନୀର ଧାରଣା ହୋଇଯାଇଛି ଯେ ତାଙ୍କ ସୈନ୍ୟବାହିନୀ ସେମାନଙ୍କଠୁ ବହୁତ ଦୂରରେ ଆଗରେ ରହିଛି ଓ ପ୍ରାଜ୍‌ଜେନ ଗାଁ ପାଖ ଦେଇ ଯେଉଁ ରୁଷ୍ ସୈନ୍ୟଦଳମାନ ଚାଲିଛି, ସେ ସବୁ ରୁଷ୍ ସେନାବାହିନୀର ଠିକ୍ ମଝି ଭାଗଟା ଓ ସେତେବେଳେ ସେ ମଝିଭାଗଟା ଏତେ ଦୁର୍ବଳ ହୋଇଗଲାଣି ଯେ ତାଙ୍କୁ ଆକ୍ରମଣ କରି ଜିଣିବା ଅବସ୍ଥାରେ ସେ ନାହିଁ । ତଥାପି ନେପୋଲିଅନ୍ ଲଢ଼େଇ ଆରମ୍ଭ ନକରି ମାଣ୍ଡେଇଦେଲେ ।

ସେ ଦିନଟି ତାଙ୍କ ପକ୍ଷରେ ଗୋଟିଏ ବିଜୟ ଦିବସ, ତାଙ୍କର ରାଜା ହୋଇ ଅଭିଷେକ ହେବାର ବର୍ଷିକିଆ । ବଡ଼ି ପାହାନ୍ତାବେଳେ ସେ ଅଳ୍ପ କେତେ ଘଣ୍ଟା ନିଦରେ ଶୋଇ ପଡ଼ିଥିଲେ, ତେଣୁ ତାଙ୍କୁ ସତେଜ ଲାଗୁଥାଏ, ତାଙ୍କ ଦେହ ଓ ମନ ଖୁବ୍ ଭଲ ଥାଏ, ତାଙ୍କ ମନରେ ସେତେବେଳେ ସେହିଭଳି ପ୍ରଫୁଲ୍ଲତା ଥାଏ ଯେଉଁ ମାନସିକ ଅବସ୍ଥାରେ ସବୁ ସମ୍ଭବ ହେବବୋଲି ଲାଗେ, ସବୁ କାର୍ଯ୍ୟ ସିଦ୍ଧ ହୁଏ । ସେ ଘୋଡ଼ା ଚଢ଼ି ବାହାରି ପଡ଼ିଲେ । ଆଗ ଘୋଡ଼ା ଠିଆକଲେ, ହଲ୍ ଚଲ୍ ନାହିଁ, କୁହୁଡ଼ି ଉପରେ ଯେଉଁ ପାହାଡ଼ ଦିଶୁଥାଏ ସେହିଆଡ଼େ ଅନେଇଁ ଥାନ୍ତି । ତାଙ୍କ ମୁହଁରେ ଫୁଟି ଉଠିଥାଏ ସେହି ବିଚିତ୍ର ପ୍ରକାରେ ଆସ୍ଥାବାନ୍ ଆତ୍ମାତୁଷ୍ଟି ମୟ ସୁଖର ଛବି କୌଣସି ଯୁବତୀର ପ୍ରେମରେ ପଡ଼ିଲେ ଗୋଟିଏ ସୁଖୀ କିଶୋରର ମୁହଁରେ ଯେପରି ଦିଶେ । ସେନାପତିମାନେ ତାଙ୍କ ପଛଆଡ଼େ ଠିଆହୋଇଥାନ୍ତି, ତାଙ୍କ ଧ୍ୟାନରେ ବ୍ୟାଘାତ କରିବାକୁ

ସାହସ କରୁନଥାନ୍ତି । ସେ ପ୍ରାତ୍‌ଜେନ୍ ପାହାଡ଼ ଆଡ଼କୁ ଅନାଇଲେ, ତା'ପରେ କୁହୁଡ଼ି ଭିତରୁ ଉପରକୁ ଖସି ଉଠୁଥିବା ସୂର୍ଯ୍ୟ ଆଡ଼କୁ ।

ଯେତେବେଳେ ସୂର୍ଯ୍ୟ କୁହୁଡ଼ି ଭିତରୁ ସଂପୂର୍ଣ୍ଣ ଭାବେ ବାହାରି ପଡ଼ନ୍ତି ଓ ପଡ଼ିଆମାନଙ୍କ ଉପରେ ଓ କୁହୁଡ଼ି ଉପରେ ଏଡ଼େ ଉଜ୍ଜ୍ୱଳ ହୋଇ ଦାଉ ଦାଉ ଦିଶିଲା ଯେ ଆଖି ଝଲସି ଯାଉଥାଏ ।

( ସତେ ଅବା ଯୁଦ୍ଧ ଆରମ୍ଭ କରିବା ସକାଶେ ସେତିକ ପାଇଁ ନେପୋଲିଅନ୍ ଅପେକ୍ଷା କରି ରହିଥିଲେ ) ସେ ତାଙ୍କର ସୁନ୍ଦର ଧଳା ହାତପାପୁଲି ଉପରୁ ପିନ୍ଧିଥିବା ହସ୍ତାବାଣ୍ଟି କାଢ଼ି ପକାଇ ତହିଁରେ ତାଙ୍କ ସେନାପତିମାନଙ୍କୁ ଗୋଟିଏ ସଙ୍କେତ ଦେଲେ ଓ ଯୁଦ୍ଧ ଆରମ୍ଭ କରିବାକୁ ଆଦେଶ ଦେଲେ । ସେନାପତିମାନେ ଓ ସେମାନଙ୍କ ସହକାରୀ ଦଳପତିମାନେ ଘୋଡ଼ାକୁ କଦମ ଛୁଟେଇ ନାନା ଦିଗରେ ଧାଇଁଗଲେ, ଓ ଅଳ୍ପ କେତେ ମିନିଟ୍ ଭିତରେ ଫରାସି ସେନାବାହିନୀର ପ୍ରଧାନ ସେନା ସେଣ୍ଟ ପ୍ରାତଜେନ୍ ମାଳଭୂମିଆଡ଼କୁ ଅଗ୍ରସର ହେବାକୁ ଲାଗିଲେ ଯେଉଁ ମାଳଭୂମି ଛାଡ଼ିଦେଇ ବେଳକୁ ବେଳ ସହୁଁ ସହୁଁ ରୁଷ୍ ସୈନ୍ୟମାନେ ବାଁ ଆଡ଼କୁ ଉପତ୍ୟକା ଆଡ଼କୁ ଚାଲିଯାଉଥାନ୍ତି ସେ ଅଞ୍ଚଳ ଅଧିକରୁ ଅଧିକ ସେତିକି ଅରକ୍ଷିତ ଅବସ୍ଥାରେ ପଡ଼ିରହୁଥାଏ ।

ସକାଳ ଆଠଟାବେଳେ ମିଲୋରାଦୋଭିଚ୍‌ଙ୍କ ଅଧୀନରେ ଥିବା ଚତୁର୍ଥ ବାହିନୀର ଅଧିନାୟକ ହୋଇ ମହାସେନାପତି କୁତୁଜଭ୍ ପ୍ରାତ୍‌ଜେନ୍ ମାଳଭୂମିଆଡ଼କୁ ଘୋଡ଼ାରେ ଚଢ଼ି ଆଗେଇ ଚାଲିଲେ । ସେନାପତି ପ୍ରେବାସେଭ୍‌ସ୍କି ଓ ଲାଙ୍ଗେରନ୍ ଏ ଦୁହେଁ ଯେଉଁ ଜାଗା ଖାଲି କରିଦେଇ ଚାଲିଯାଇଥାନ୍ତି ଚତୁର୍ଥ ବାହିନୀ ସେହି ସ୍ଥାନଟିକୁ ଦଖଲ କରିବା ସକାଶେ ଯାଉଥାଏ । ସେତେବେଳକୁ ପ୍ରେବାସେଭ୍‌ସ୍କି ଓ ଲାଙ୍ଗେରନ୍ ସେମାନଙ୍କ ବାହିନୀମାନଙ୍କୁ ନେଇ ସମତଳକୁ ଓହ୍ଲାଇ ସାରିଥାନ୍ତି । ଚତୁର୍ଥ ବାହିନୀର ସବା ଆଗରେ ଥିବା ସୈନ୍ୟଦଳର ସୈନିକମାନଙ୍କୁ କୁତୁଜଭ୍ ସମ୍ବର୍ଦ୍ଧନା ଜଣାଇଲେ ଓ ସେମାନଙ୍କୁ ଅଗ୍ରସର ହେବାକୁ ଆଦେଶ ଦେଲେ । ତଦ୍ଦ୍ୱାରା ସେ ଜଣାଇଦେଲେ ଯେ ସେ ନିଜେ ସେ ବାହିନୀର ଅଧିନାୟକ ହୋଇ ସେନାଚାଳନା କରିବେ । ପ୍ରାତ୍‌ଜେନ୍ ଗାଁରେ ପହଞ୍ଚି ସେ ଅଟକିଲେ ।

ମହାସେନାପତିଙ୍କ ଗହଣରେ ଯେଉଁ ବହୁତ ଘୋଡ଼ାଏମାନଙ୍କ ଚାଲିଥିଲେ ତାଙ୍କର ଭିତରେ ପ୍ରିନ୍ସ୍ ଆନ୍ଦ୍ରେ ଥିଲେ । ସେମାନେ ପଛରେ ଥାନ୍ତି । ପ୍ରିନ୍ସ୍ ଆନ୍ଦ୍ରେଙ୍କ ମନ ଉଚାଟ ଥାଏ, ଚଞ୍ଚଳ ହେଉଥାଏ, ଅଥଚ ସବୁ ଉତ୍ତେଜନା ଦାବଦେଇ ସେ ମନକୁ ଶାନ୍ତ ରଖିଥାନ୍ତି । ଗୋଟିଏ ବହୁ-ଆକାଂକ୍ଷିତ ମୁହୂର୍ତ୍ତ ଆସିଗଲେ ଅନେକ ସମୟରେ ମଣିଷର ମନ ଯେମିତି ହୋଇଥାଏ । ତାଙ୍କର ଦୃଢ଼ ବିଶ୍ୱାସ ଆସି ଯାଇଥାଏ ଯେ ଆଜି ଦିନଟା ତାଙ୍କ ପକ୍ଷରେ ହେବ ତୁଲୋଁ ଲଢ଼େଇର ଦିନ କିମ୍ବା ଆର୍କୋଲ୍ ପୋଲ୍ ଲଢ଼େଇର ଦିନ । କେମିତି ସେପରି ହେବ ତାଙ୍କୁ ଜଣାନଥିଲା କିନ୍ତୁ ନିଶ୍ଚୟ ସେପରି ହେବବୋଲି ତାଙ୍କର ଦୃଢ଼ ବିଶ୍ୱାସ ଆସିଯାଇଥିଲା । ରୁଷ୍ ସୈନ୍ୟବାହିନୀ କେଉଁ ଜାଗାରେ ଅଛନ୍ତି, ତାଙ୍କ ଅବସ୍ଥାନ କ ଭଳି, ଏ ବିଷୟରେ ସେ ଠିକ ନିଖି କରି ଜାଣିଥିଲେ, ରୁଷ୍ ସୈନ୍ୟବାହିନୀର ଜଣେ ଲୋକ ପକ୍ଷରେ ଏ ବିଷୟରେ ଯେତେ ଅଧିକ ଜାଣିବା ସମ୍ଭବ ତା ସେ ଜାଣିଥିଲେ । ବାଁ ପଟେ ଉପତ୍ୟକାର ଖାଲରେ କୁହୁଡ଼ି ଭିତରେ ଅଦୃଶ୍ୟ ସୈନ୍ୟମାନଙ୍କ ଭିତରେ ଗୁଳି ମାରି ମରି ହେବାର ଶବ୍ଦ ଶୁଭୁଥାଏ । ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ଲାଗୁଥାଏ ଯେ ସେଇଠି ଯୁଦ୍ଧ ଘନୀଭୂତ ହେବ । ଭାବୁଥାନ୍ତି,

"ଅକଡ଼ ପଡ଼ିବ ସେଇ ଜାଗାରେ, ସେଇଠିକି ମତେ ପଠେଇବେ, ଗୋଟିଏ ବଡ଼ ସୈନ୍ୟଦଳ ସଙ୍ଗରେ ଅବା ଗୋଟିଏ ବାହିନୀ ସଙ୍ଗରେ ଓ ସେଇଠି, ହାତରେ ପତାକା ଧରି ମୁଁ ଆଗେଇ ଚାଲିବି, ମୋ ଆଗରେ ଯାହା ପଡ଼ିବ ସବୁ ଛିନଭିନ କରିଦେବି ।"

ଆଗେଇ ଯାଉଥିବା ସୈନ୍ୟଦଳମାନେ ଯେଉଁସବୁ ପତାକା ଟେକି ଧରି ଚାଲିଥାନ୍ତି ତାକୁ ଚାହିଁ ପ୍ରିନ୍ସ୍ ଆନ୍ଦ୍ରେ ଭାବବିହ୍ୱଳ ହୋଇପଡ଼ୁଥାନ୍ତି । ପତାକାଟିଏ ଦେଖିଲେ ସେ ଭାବୁଥାନ୍ତି, "ବୋଧହୁଏ ଏଇ ପତାକାଟି ଧରି ମତେ ମୋ ସୈନ୍ୟଙ୍କୁ ନେଇ ଆଗୁସାର ହେବାକୁ ପଡ଼ିବ ପଛା!"

ସକାଳ ଆଡ଼କୁ ମାଳଭୂମି ଉପରୁ କୁହୁଡ଼ି ଚାଲିଯାଇଥାଏ, ଗୁଣ୍ଡା ବରଫ ପଡ଼ୁଥାଏ ଯେ ସେ କାକର ଟୋପା ହୋଇଯାଉଥାଏ । କିନ୍ତୁ ଉପତ୍ୟକା ଗୁଡ଼ାକରେ ଦୁଧର ସମୁଦ୍ର ପରି କୁହୁଡ଼ି ଜମାହୋଇ ଥାଏ । ବାଁ ପଟକୁ ଯେଉଁ ଉପତ୍ୟକା ଥାଏ, ଯାହା ଭିତରେ ପଶିଯାଇ ରୁଷ୍

ସୈନ୍ୟମାନେ ଅଦୃଶ୍ୟ ହୋଇଗଲେ, ସେଠି ଗୁଳି ଫୁଟିବା ଶବ୍ଦ ଶୁଭୁଥାଏ, କିନ୍ତୁ କିଛି ଦିଶୁନଥାଏ । ମାଳଭୂମି ଉପରେ ସଫା ବହଳ ନେଳି ଆକାଶଟିଏ ଠିଆ ହୋଇଥାଏ ଓ ଡାହାଣ ପାଖେ ଥାଏ ପ୍ରକାଣ୍ଡ ସୂର୍ଯ୍ୟ ଗୋଲକ । ସାମ୍ନାକୁ, ଦୂରରେ ସେହି କୁହୁଡ଼ି ସମୁଦ୍ର ଉପକୂଳରେ, ଜଙ୍ଗଲ ଛାଉଣି ପାହାଡ଼ମାନେ ଠିଆହୋଇଥାନ୍ତି । ଫରାସିମାନଙ୍କ ସୈନ୍ୟମାନେ ସେଇଠି ଥିବା କଥା । ଦୂରରୁ ସେଠୁ କଣ ଦିଶୁଥାଏ । ଡାହାଣ ପଟେ ଘୋଡ଼ାଟାପୁର ଟପ୍ ଟପ୍ ଓ ଗାଡ଼ିସବୁ ଚାଲିବାର ଘଡ଼ର ଘଡ଼ର ଶବ୍ଦ ଶୁଭୁଥାଏ ଓ ସମ୍ରାଟଙ୍କ ଅଙ୍ଗରକ୍ଷୀ ସୈନ୍ୟମାନେ କୁହୁଡ଼ି ଇଲାକା ଭିତରେ ବୁଲି ମାଇଲିବେଳେ ତାଙ୍କ ବନ୍ଧୁକର ସଙ୍ଗୀନ୍‌ସବୁ ଝକ୍ ଝକ୍ ଦିଶୁଥାଏ । ବାଁ ପଟେ ଗାଁ ପଛଆଡ଼େ ସେହିପରି ଦଳଦଳ ଘୋଡ଼ସବାର ସୈନ୍ୟ ଚାଲି-ଥାନ୍ତି ଓ କୁହୁଡ଼ି ସମୁଦ୍ର ଭିତରେ ଅଦୃଶ୍ୟ ହୋଇ ଯାଉଥାନ୍ତି । ମହାସେନାପତି କୁଟୁଜାଭ୍ ଗାଁ ମୁଣ୍ଡରେ ଠିଆହୋଇଥାନ୍ତି ଓ ତାଙ୍କ ସାମ୍ନାବାଟେ ସୈନ୍ୟମାନେ ଯିବାକୁ ବାଟ ଛାଡ଼ି ଦେଇଥାନ୍ତି । ସେଦିନ ସକାଳେ କୁଟୁ-ଜଭ୍ କ୍ଲାନ୍ତ ଓ ଚିଡ଼୍‌ଚିଡ଼୍ ଜଣାପଡ଼ୁଥାନ୍ତି । ତାଙ୍କ ପାଖ ଦେଇ ଚାଲିଯାଉଥିବା ପଦାତିକ ବାହିନୀ ଆଦେଶ ନ ପାଇ ବି ଅଟକି ଠିଆ ହେଲା, ସମ୍ଭବତଃ ଏହି କାରଣରୁ ଠିଆହୋଇଗଲା ଯେ ସେମାନଙ୍କ ସାମ୍ନାରେ କଣ ଗୋଟାଏ ବାଟ ରୋକିଦେଇଥାଏ ।

ଯେଉଁ ସେନାପତି ତାଙ୍କ ପାଖକୁ ଚାଲି ଚାଲି ଆସିଲେ କୁଟୁଜଭ୍ ରାଗିଯାଇ ତାଙ୍କୁ କହିଲେ,

"ଦୟା କରି ସୈନ୍ୟମାନଙ୍କୁ ହେଲେ ଟିକିଏ କହନ୍ତୁ ସେମାନେ ଧାଡ଼ି ବାନ୍ଧି ଯେଉଁଠା ସ୍ଥାନରେ ଯେ ହୋଇ ବିଧିପ୍ରକାରେ ବଡ଼ ବଡ଼ ଦଳ ସାଜି ସେଉଠୁ ଗାଁ ବାହାରେ ବାହାରେ ବୁଲିପଡ଼ି ଆଗକୁ ଚାଲିବେ, ଏମିତି ଗାଁ ଗୋହିରିବାଟେ ଯିବେନାହିଁ । ଆରେ ବାବୁ, ଆପଣ ଏତିକି କେମିତି ବୁଝିପାରୁନାହାନ୍ତି ଯେ ଆମେ ଯେତେବେଳେ ଶତ୍ରୁ ସଙ୍ଗରେ ଭେଟା ଭେଟି ହେବାକୁ ଯାଉଥାଇଁ, ସୈନ୍ୟମାନଙ୍କୁ ଗାଁ ଖୋଲିର ସଙ୍କୀର୍ଣ୍ଣ ଗୋହିରି ବାଟରେ ଯିବାକୁ ଛାଡ଼ିଦେବା କଥାଟା ସମ୍ପୂର୍ଣ୍ଣ ଅସମ୍ଭବ କଥା, ଏଁ ?"

"ମହାମହିମ ହଜୁର, ମୁଁ ପ୍ରସ୍ତାବ କରିଥିଲି ଯେ ଗାଁ ପାରିହେଲେ ଆରପାଖେ ସେମାନଙ୍କୁ ଦଳ କରି ସଜେଇ ଦେବି ।"

କୁଟୁଜଭ୍ ଷ୍ଟାଇରଶ୍ଳେଷର ହସ ହସିଲେ । କହିଲେ "ତା ହେଲେ ଭାରି ଚମତ୍କାର ଅବସ୍ଥାରେ ଆପଣ ପଡ଼ିଥାନ୍ତେ, ଆପଣଙ୍କ ବାହିନୀର ଆଗ ମୁଣ୍ଡକୁ ଶତ୍ରୁ ଆଗରେ ଲମ୍ବେଇ ରଖିଥାନ୍ତେ,—ଭାରି ଚମତ୍କାର !"

"ମହାମହିମ ହଜୁର୍, ଶତ୍ରୁ ତ ଏବେ ବି ବହୁତ ଦୂରରେ ଅଛି । ନିର୍ଦ୍ଦିଷ୍ଟ ଥାଟସଜା ବିଧି ଅନୁସାରେ"—

ରାଗରେ କୁଟୁଜଭ୍ ଗର୍ଜି ଉଠିଲେ, "ନିର୍ଦ୍ଦିଷ୍ଟ ଥାଟ ସଜା ବିଧି ! କିଏସେ ଆପଣଙ୍କୁ ସେପରି ବିଧି ଦେଇଛି ?···ଯାହା ଆଦେଶ ଦିଆଗଲା ଆପଣ ଦୟାକରି ସେଇଆ କରନ୍ତୁ !"

"ଯେ ଆଜ୍ଞା ହଜୁର୍ ।"

ନେସ୍‌ଭିଚ୍‌ସ୍କି ପ୍ରିନ୍‌ସ୍ ଆନ୍ଦ୍ରେଙ୍କ କାନରେ ଫୁସ୍ ଫୁସ୍ କରି କହିଲେ,

"ବୁଢ଼ା ଭାରି ରାଗିଛି ହୋ ବାବୁ !"

ଧଳା ପୋଷାକ ପିନ୍ଧି ଟୋପିରେ ଶାଗୁଆ ଚଢ଼େଇ ପର ଲଗେଇ ଘୋଡ଼ାରେ ଚଢ଼ି ଘୋଡ଼ାକୁ କଦମ୍ ଉଡ଼ାଇଁ ଅଷ୍ଟ୍ରିଆ ସୈନ୍ୟବାହିନୀର ଜଣେ ଅଫିସର କୁଟୁଜଭଙ୍କ ପାଖକୁ ଆସିଲା, ସମ୍ରାଟଙ୍କ ନାଁ କହି ପଚାରିଲା, ଚତୁର୍ଥ ବାହିନୀ ବାହାରିଲାଣି ? ତାକୁ କିଛି ଉତ୍ତର ନଦେଇ କୁଟୁଜଭ୍ ସେଠୁ ଗୁଲିଗଲେ । ହଠାତ୍ ତାଙ୍କ ନଜର ପଡ଼ିଗଲା ପ୍ରିନ୍‌ସ୍ ଆନ୍ଦ୍ରେଙ୍କ ଉପରେ, ସେ ତାଙ୍କର ପାଖେ ଠିଆହୋଇଥାନ୍ତି । ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ଦେଖିଲା ମାତ୍ରେ କୁଟୁଜଭ୍‌ଙ୍କ ମୁହଁର କ୍ରୁଦ୍ଧ ତିକ୍ତ ଭାବ ନରମ ହୋଇଗଲା, ସତେ ଅବା ସେ ସ୍ୱୀକାର କରୁଛନ୍ତି ଯେ ଯେତେ ଯାହା ଅବ୍ୟବସ୍ଥା ହୋଇଯାଉଛି ସେଥିରେ ତାଙ୍କର ଏ ସହାୟକ ଦଳପତିଙ୍କର କୌଣସି ଦୋଷ ନାହିଁ । ଅଷ୍ଟ୍ରିଆର ସାମରିକ କର୍ମଚାରୀକୁ ତଥାପି କିଛି ଉତ୍ତର ନ ଦେଇ ସେ ପ୍ରିନ୍‌ସ୍ ଆନ୍ଦ୍ରେ ବଲ୍‌କନ୍‌ସ୍କିଙ୍କୁ କହିଲେ,

"ଗଲେ ବାବୁ ଦେଖି ଆସିବେ ତୃତୀୟ ବାହିନୀ ଗାଁ ପାରି ହେଲାଣି କି ନାହିଁ । ତାଙ୍କୁ କହିବେ ସେ ଠିଆହେବେ, ମୋ ଆଦେଶକୁ ଅପେକ୍ଷା କରି ରହିବେ ।"

ପ୍ରିନ୍‌ସ୍ ଆନ୍ଦ୍ରେ ଯିବାକୁ ବାହାରଛନ୍ତି କି ନାହିଁ ତାଙ୍କୁ ଅଟକାଇ ଦେଇ କୁଟୁଜଭ୍ ପୁଣି କହିଲେ,

"ଆଜ ପର୍ଯ୍ୟନ୍ତ ଆସିବେ, ବଡ଼ ବଡ଼ ଲକ୍ଷବନ୍ଧାଳୀ ବନ୍ଧୁକ୍ମାମାନଙ୍କୁ ଠିକଣା ଜାଗାମାନଙ୍କରେ ରଖାହେଲାଣି କି ନାହିଁ ।" ମନକୁ ମନ ଭୁଣ୍ଟୁ ଭୁଣ୍ଟୁ ହେଲେ, "କଣ ସେମାନେ କରୁଛନ୍ତି ! କ'ଣ ସେମାନେ କରୁଛନ୍ତି ।" ସେ ପର୍ଯ୍ୟନ୍ତ ଅଷ୍ଟ୍ରିଆର ସାମରିକ ଅଫିସରଙ୍କ ପ୍ରଶ୍ନର ଜବାବ ଦେଇ ନ ଥାନ୍ତି ।

ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ଯାହା ବରଗା ହୋଇଥାଏ ସେ କାମ ତୁଲେଇବା ପାଇଁ ସେ ତରତର ହୋଇ ଘୋଡ଼ାକୁ କଦମ୍ ଉଡ଼ାଇ ଚାଲିଗଲେ । ବାଟରେ ଯେତେ ଯେତେ ସୈନ୍ୟଦଳ ଆଗକୁ ଚାଲିଥାନ୍ତି, ସମସ୍ତିଙ୍କୁ ପଛରେ ପକାଇ ଦେଇ ସେ ଯାଇ ଚୂଡ଼ାନ୍ତୁ ବାହିନୀଙ୍କୁ ଅଟକାଇ ଦେଲେ । ସେ ପରୁଣ ବୁଝିଲେ ଯେ ଆଗୁସାର ହେଉଥିବା ରୁଷ୍ ସୈନ ଦଲଙ୍କ ଆଗରେ ଧାଡ଼ି ହୋଇ ବଡ଼ ବଡ଼ ଲକ୍ଷ ବନ୍ଧାଳୀମାନେ ଆଦୌ ନାହାନ୍ତି । ଆଗରେ ଧାଡ଼ିଏ ବଡ଼ ବଡ଼ ଲକ୍ଷବନ୍ଧାଳୀଙ୍କୁ ଧାଇଁ ଧାଇଁ ଚାଲିବାକୁ ପଠାଇବାକୁ ପଡ଼ିବ ବୋଲି ମହାସେନାପତିଙ୍କ ପାଖରୁ ଆଦେଶ ପାଇ ସବା ଆଗରେ ଚାଲିଥିବା ସୈନ୍ୟଦଳର ଦଳପତି ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କର ଏପର୍ଯ୍ୟନ୍ତ ଏହି ନିର୍ଭର ବିଶ୍ୱାସ ଥିଲା ଯେ ତାଙ୍କ ଆଗେ ଆଗେ ରୁଷ୍ ପକ୍ଷର ଆଉ ସୈନ୍ୟଦଳମାନେ ଚାଲିଛନ୍ତି ଓ ଶତ୍ରୁପକ୍ଷ ଅନ୍ତତଃ ତିନି କୋଶରୁ ଅଳ୍ପ ଅନ୍ତରରେ ନାହାନ୍ତି । କିନ୍ତୁ ପ୍ରକୃତରେ ତାଙ୍କ ଆଗରେ ଭୁଇଁ ଖୋଲା ପଡ଼ିଆ ଛଡ଼ା ଆଉ କିଛି ନଥାଏ, ସେ ପଡ଼ିଆଟା ପାହାଡ଼ ଗାଲୁଏ ଗାଲୁଏ ତଳକୁ ଗଡ଼ିଯାଇଥାଏ ଓ ସେଠି କୁହୁଡ଼ି ଭର୍ତ୍ତି ହୋଇ ରହିଥାଏ । ତ୍ରୁଟି ପୂରଣ କରି ନେବା ସକାଶେ ମହାସେନାପତିଙ୍କ ଆଦେଶ ତାଙ୍କୁ ଜଣାଇ ଦେଇ ପ୍ରିନ୍‌ସ୍ ଆନ୍ଦ୍ରେ ପୁଣି ଘୋଡ଼ାକୁ କଦମ୍ ଉଡ଼ାଇ ଘୋଡ଼ା ଛୁଟେଇ ଲେଉଟି ଆସିଲେ । କୁଟୁଜଭ ଆଗେ ଯେମିତି ବସିଥିଲେ ସେମିତି ବସିଥାନ୍ତି । ବାର୍ଦ୍ଧକ୍ୟର କ୍ଳାନ୍ତିରେ ତାଙ୍କର ଓଜନ ଦେହଟା ଘୋଡ଼ାର ଜିନ୍ ଉପରେ ଝୁଙ୍କି ପଡ଼ିଥାଏ ଓ ସେ ଆଖି ବୁଜି ଦେଇ କ୍ଳାନ୍ତଭାବେ ହାଇମାରୁଥାନ୍ତି । ସୈନ୍ୟମାନେ

ସେତେବେଳଯାକେ ଆଉ ଗ୍ଭଲିବାକୁ ଆରମ୍ଭ କରିନଥାନ୍ତି, ସାମନ୍ତଙ୍କ ଠାଣିରେ ଠିଆହୋଇ ରହିଥାନ୍ତି ।

ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ସେ କହିଲେ, "ବେଶ୍ ! ବେଶ୍ !" ତାପରେ ସେନାପତିଙ୍କ ଆଡ଼କୁ ବୁଲିପଡ଼ିଲେ । ସେନାପତି ହାତରେ ଘଣ୍ଟା ଧରି କହୁଥାନ୍ତି' ଯିବାବେଳ ହୋଇଗଲାଣି, କାରଣ ସୈନ୍ୟବାହିନୀର ବାଁ' ପାରୁଶର ସବୁ ସୈନ୍ୟଦଳ ପାହାଡ଼ ତଳକୁ ଓହ୍ଲାଇ ଗଲେଣି ।

ହାଇ ମାରିବା ମଝିରେ କୁତୁଜଭ୍ କହିଲେ, "ଆହୁରି ବହୁତ ବେଳ ଅଛି ଆଜ୍ଞା"..."ବହୁତ ବେଳ" କୁତୁଜଭ୍ ପୁଣି କହିଲେ ।

ସେତିକବେଳେ କୁତୁଜଭ୍ଙ୍କ ପଛଆଡ଼େ ଦୂରରେ ଦଳ ଦଳ ସୈନ୍ୟ ସାମରିକ ଅଭିବାଦନ ଜଣାଇବା ଶବ୍ଦ ଶୁଭିଲା, ଲମ୍ବି ଯାଇଥିବା ଆଗେଇ ଯାଉଥିବା ସମୁଦାୟ ରୁଷ୍ ସେନାମାନର ଧାଡ଼ି କଡ଼େ କଡ଼େ ସେ ଶବ୍ଦ ଅତି ଚଞ୍ଚଳ ଚହଟିଗଲା । ଜଣାପଡୁଥାଏ ଯେ ଯାହାଙ୍କୁ ସେ ଅଭିବାଦନ ଦିଆଯାଉଛି ସେ ଖୁବ୍ ବେଗରେ ଘୋଡ଼ା ଚଳାଇ ଗ୍ଭଲିଆସୁଛନ୍ତି । କୁତୁଜଭ୍ ଯେଉଁ ସୈନ୍ୟଦଳ ସାମ୍ନାରେ ଠିଆ ହୋଇଥିଲେ ସେମାନେ ଯେମିତି ପାଟିକରି ଅଭିବାଦନ ଜଣାଇବା ଆରମ୍ଭ କଲେ, ସେ ସେମିତି ଗୋଟାଏ କରପଟକୁ ଘୋଡ଼ା ଚଢ଼ି ଗ୍ଭଲିଗଲେ ଓ କପାଳକୁ କୁଞ୍ଚୁ କୁଞ୍ଚୁ କରି ଗ୍ଭରିଆଡ଼କୁ ଗ୍ଭହିଁ ଦେଖିଲେ । ପ୍ରାତ୍‌ଜେନ୍‌ରୁ ଆସିଥିବା ରାସ୍ତାଏ ରାସ୍ତାଏ ଗୋଟାଏ ବଡ଼ ଅଶ୍ୱାରୋହୀ ସୈନ୍ୟଦଳ ଘୋଡ଼ାଙ୍କୁ କଦମ୍ ଛୁଟାଇ ଧାଇଁ ଆସୁଥାଏ, ସେଥିରେ ନାନା ସୈନ୍ୟ ଦଳର ବିଶିଷ୍ଟ ପ୍ରତୀକ ଥିବା ପତାକାମାନ ଦିଶୁଥାଏ । ଦୁଇ ଜଣ ଅଶ୍ୱାରୋହୀ ପାଖକୁ ପାଖ ହୋଇ ଅନ୍ୟମାନଙ୍କର ଟିକିଏ ଆଗରେ ଗ୍ଭଲିଥାନ୍ତି । ଜଣେ ପିନ୍ଧିଥାନ୍ତି ଗୋଟିଏ କଳା ପୋଷାକ, ତାଙ୍କ ଟୋପିରେ ଗୋଟିଏ ଧଳା ଚଢ଼େଇ ପକ୍ଷୀ ଖୋଷା ହୋଇଥାଏ, ସେ ନାଲିବର୍ଣ୍ଣ ବାଦାମି ରଙ୍ଗର ଗୋଟିଏ ଜାତିଆ ଇଂରେଜ ଘୋଡ଼ା ଉପରେ ବସିଥାନ୍ତି, ଆରଜଣ ଧଳା ପୋଷାକଟିଏ ପିନ୍ଧି ଗୋଟିଏ କଳା ଘୋଡ଼ାରେ ଚଢ଼ିଥାନ୍ତି । ସେ ଦୁହେଁ ଦୁଇ ସମ୍ରାଟ, ଜଣେ ରୁଷ୍‌ର ଆଉ ଜଣକ ଅଷ୍ଟ୍ରିଆର । ତାଙ୍କ ସଙ୍ଗରେ ତାଙ୍କ ପାର୍ଶ୍ୱଚରମାନେ ଗ୍ଭଲିଥାନ୍ତି । ଜଣେ ବୁଢ଼ା ଦଳପତି ଆପଣା ସୈନ୍ୟଦଳର ମୁଣ୍ଡିଆଳ

ହୋଇ ଚାଲିଥିଲେ ଯେଉଁ ଠାଣିରେ ସୈନ୍ୟମାନଙ୍କୁ ଆଦେଶ ଦେଉଥିଲେ କୁତୁଜଭ୍ ସେହି ଠାଣିକୁ ନକଲ କରି କଥା କହିଲା ଭଳି ଠିଆ ହୋଇଥିବା ସୈନ୍ୟମାନଙ୍କୁ ଆଦେଶ ଶୁଣାଇଦେଲେ, "ନିଶ୍ଚଳ ହୁଅ ।"

ତାପରେ ଘୋଡ଼ାରେ ଚଢ଼ି ଦୁଇ ସମ୍ରାଟଙ୍କ ପାଖକୁ ଯାଇ ସେମାନଙ୍କୁ ସାମରିକ ଭଙ୍ଗୀରେ ଅଭିବାଦନ କଲେ । ହଠାତ୍ ତାଙ୍କର ସମୁଦାୟ ରୂପ ଓ ଭାବଭଙ୍ଗୀ ବଦଳିଗଲା, ହେଲା ଜଣେ ତଳିଆ ଚାକରିଆ ଲାଗି । ସେ ତାଙ୍କ ଭାବଭଙ୍ଗୀ ଦ୍ୱାରା ଭକ୍ତି ଦେଖାଇବା ଭଳି ଅଭିନୟ କଲେ, ସେଥିଯୋଗୁଁ ରୁଷ୍ ସମ୍ରାଟ ଆଲେକ୍‌ଜାଣ୍ଡରଙ୍କ ମନରେ ଯେ ତାଙ୍କ ପ୍ରତି ଖରାପ ଧାରଣା ଆସିଲା, ଏକଥା ନିର୍ଭୁଲ ଭାବେ ଜଣାପଡ଼ୁଥାଏ । ଆଲେକ୍‌ଜାଣ୍ଡର ଘୋଡ଼ା ଚଢ଼ି ତାଙ୍କ ପାଖକୁ ଚାଲି ଆସି ତାଙ୍କୁ ପ୍ରତିନମସ୍କାର କଲେ । ସେ କୁତୁଜଭ୍‌ଙ୍କୁ ତରତର କରି ପଚାରିଲେ—

"ଆପଣ କାର୍ଯ୍ୟକ ଆରମ୍ଭ କରିଦେଉନାହାନ୍ତି, ମିହାଇଲ୍ ଲାରିଓନୋଭିଚ୍ (କୁତୁଜଭ୍) ?" କଥା କହିଲାବେଳେ ସେ ସୌଜନ୍ୟ ଦେଖାଇ ଅଷ୍ଟ୍ରିଆ ସମ୍ରାଟ୍ ଫ୍ରାନସିସ୍‌ଙ୍କ ଆଡ଼କୁ ଟିକଏ ଅନାଇଁଦେଲେ ।

କୁତୁଜଭ ଭକ୍ତିଗଦଗଦ ହୋଇ ଓଳଗି ହୋଇ କହିଲେ,

"ଆହୁରି ଦେଖିବି ବୋଲି ମୁଁ ଅପେକ୍ଷା କରିଛି ମହିମା !"

ସମ୍ରାଟ ବିରକ୍ତ ହୋଇ ଟିକଏ ଭ୍ରୂଲତା କୁଞ୍ଚୁ କୁଞ୍ଚୁ କଲେ, ତାଙ୍କ କଥା ଶୁଣିପାରିନଥିବା ଭଳି ଭଙ୍ଗୀ ଦେଖାଇଲେ ଓ ତାଙ୍କ ଆଡ଼କୁ ଗୋଟିଏ କାନ ବୁଲାଇଦେଲେ ।

କୁତୁଜଭ୍ ଆହୁରି ଥରେ କହିଲେ,

"ଆହୁରି ଦେଖିବି ବୋଲି ମୁଁ ଅପେକ୍ଷା କରିଛି ମହିମା, (ପ୍ରିନସ୍ ଆନ୍ଦ୍ରେ ଦେଖୁଥାନ୍ତି, ଯେ 'ଅପେକ୍ଷା କରିଛି' ବୋଲି କହିଲାବେଳେ କୁତୁଜଭ୍‌ଙ୍କ ଉପର ଓଠ ଅସ୍ୱାଭାବିକଭାବେ ଥରୁଥାଏ ।) ସବୁ ସୈନ୍ୟ-ଦଳମାନେ ଏପର୍ଯ୍ୟନ୍ତ ଏକାଠି ରୁଣ୍ଡ ହୋଇନାହାନ୍ତି ମହିମା ।"

ରୁଷ୍ ସମ୍ରାଟଙ୍କୁ ତାଙ୍କ ଉତ୍ତର ଶୁଭିଲା, କିନ୍ତୁ ଲାଗୁଥାଏ ଯେ ଉତ୍ତର ଶୁଣି ସେ ଖୁସି ହେଲେନାହିଁ, ସେ ବିରକ୍ତି ଦେଖାଇ ତାଙ୍କ ଡେଙ୍ଗା କାନ୍ଧଯୋଡ଼ିକୁ ତଳ ଉପର କଲେ, ତାଙ୍କ ପାଖରେ ଠିଆ ହୋଇଥିବା

ସେନାପତି ନୋଭୋସିଲଟ୍ସଙ୍କ ଆଡ଼କୁ ଏଭଳି ଚାହାଣିରେ ଅନାଇଁଦେଲେ ଯେପରି ସେ ତାଙ୍କ ଆଗରେ କୁତୁଜଭଙ୍କ ବିରୁଦ୍ଧରେ ଅଭିଯୋଗ କରୁଛନ୍ତି। କହିଲେ,—"ବୁଝିଲେ ମିହାଇଲ ଇଲାରିଓନୋଭିଚ୍ (କୁତୁଜଭ୍), ଆମେ ଜାରିତ୍ସିନା ସହରର ପରେଡ଼ ମଇଦାନରେ ନାହୁଁ ଯେଉଁଠି ସବୁଯାକ ସୈନ୍ୟଦଳ ପ୍ରସ୍ତୁତ ନହୋଇ ପାରିଲେ ପରେଡ଼ ଆରମ୍ଭ ହୁଏନାହିଁ।" କହିଦେଇ ପୁଣି ଅଷ୍ଟ୍ରିଆର ସମ୍ରାଟ ଫ୍ରାନସିସ୍‌ଙ୍କ ଆଡ଼କୁ ଚାହିଁଦେଲେ, ସତେ ଯେମିତି ତାଙ୍କୁ ନିମନ୍ତ୍ରଣ କରୁଛନ୍ତି ଯେ ସେ ଏ କଥାଭାଷାରେ ଯୋଗ ନଦିଅନ୍ତୁ ପଛେ, ଅନ୍ତତଃ ସେ ଯାହା କହୁଛନ୍ତି, ତାକୁ ଶୁଣନ୍ତୁ, କିନ୍ତୁ ସମ୍ରାଟ ଫ୍ରାନ୍‌ସିସ୍ ତଥାପି ଅନ୍ୟଆଡ଼େ ଚାହିଁଥାନ୍ତି ଓ ଶୁଣୁନଥାନ୍ତି।

"ଖାସ୍ ସେଇଥିପାଇଁ ମୁଁ ଆରମ୍ଭ କରୁନାହିଁ ମହିମା," କୁତୁଜଭ୍ ସେ ବଡ଼ ପାଟିରେ କହିଲେ, ସତେ ଯେପରି ସେ ଆଗରୁ ଦେଖି ପାରୁଥାନ୍ତି ଯେ ତାଙ୍କ କଥା ନରହିବି ବି ପାରେ। ପୁଣି ତାଙ୍କ ମୁହଁ ଥରି ଉଠିଲା,— କହିଲେ,"ସେଇଥିପାଇଁ ମୁଁ ଆରମ୍ଭ କରୁନାହିଁ ମହିମା, କାରଣ ଆମେ ଏଠି ପରେଡ଼ କରିବାକୁ ଆସିନାହୁଁ କି ଜାରସାନ ସହରର ପରେଡ଼ ମଇଦାନରେ ନାହୁଁ।"

ରୁଷ୍ ସମ୍ରାଟଙ୍କ ଗହଣରେ ଥିବା ସବୁ କର୍ମଚାରୀ ସେହି ସଙ୍ଗେ ସଙ୍ଗେ ପରସ୍ପରଙ୍କୁ ଅତି ଚଞ୍ଚଳ ଚାହାଁ ଚାହିଁ ହେଲେ। ପ୍ରତି ମୁହଁରେ ଦିଶିଲା କ୍ଷୋଭ ଓ ତିରସ୍କାରର ଭଙ୍ଗୀ। ସେ ସବୁ ମୁହଁର ଭାବ ସୂଚାଇ ଦେଉଥାଏ, "ସେ ଯେତେ ବୁଢ଼ା ହୋଇଥାନ୍ତୁ ପଛେ, ସେ ସମ୍ରାଟଙ୍କୁ ଏଭଳି କଥା କହିବାଟା,—କଦାପି ଏଭଳି କହିବା ଉଚିତ ନୁହେଁ।"

ରୁଷ୍ ସମ୍ରାଟ ଖୁବ୍ ନିଦା ଦେଇ ସିଧା ସଳଖ କୁତୁଜଭ୍‌ଙ୍କ ମୁହଁକୁ ଚାହିଁଥାନ୍ତି, ଟାକି ରହିଥାନ୍ତି କାଳେ ଆଉ ଅଧିକା କଥା କିଛି ସେ କହିବେ। କିନ୍ତୁ କୁତୁଜଭ୍ ବି ତାଙ୍କପରି ଅପେକ୍ଷାକରି ରହିଥାନ୍ତି, ମୁଣ୍ଡକୁ ଭକ୍ତି ସହକାରେ ନୁଆଇଁ ଦେଇଥାନ୍ତି। ଏମିତି ତୁନିତାନିରେ ମିନିଟିଏ କଟିଲା।

"ତଥାପି, ଏଇଆ ଯଦି ଶ୍ରୀମୁଖଙ୍କର ଆଦେଶ—"କୁତୁଜଭ୍ ମୁଣ୍ଡ ଟେକି କହିଲେ, ପୁଣି ସେ ଆଗ ପରି ସେହି ସ୍ୱରରେ ଛଟାଗାଳି କଥା କହିଲେ, ଯେମିତି ଜଣେ ନିର୍ବୋଧ, ବୁଦ୍ଧିବିଚାରଶୂନ୍ୟ ସେନାପତି କଥା

କହୁଛୁ, ସେ ଖାଲି ହୁକୁମ ତାମିଲ କରୁଛୁ । ସେ ସେଠୁ ଗ୍ଭଲିଗଲେ ଓ ସୈନ୍ୟବାହିନୀର ଅଧିନାୟକ ମିଲୋରାଦୋଭିଚ୍‌ଙ୍କୁ ହାତଠାରି ଯୁଦ୍ଧ କରିବାକୁ ଆଗେଇ ଯିବାକୁ ଆଦେଶ ଦେଲେ ।

ସୈନ୍ୟମାନେ ପୁଣି ଗ୍ଭଲିବାକୁ ଆରମ୍ଭକଲେ । ନଭ୍ ଗରଡ଼୍ ବାହିନୀର ଯୋଡ଼ିଏ ଦଳ ଓ ଅପ୍‌ଶେରୋନ୍ ବାହିନୀର ଗୋଟିଏ ଦଳ ରୁଷ୍ ସମ୍ରାଟଙ୍କ ଆଗବାଟେ ଗ୍ଭଲିଗଲେ ।

କୁତୁଜଭ୍ ତାଙ୍କ ସହକାରୀ ସେନାପତିମାନଙ୍କ ସଙ୍ଗେ ଏକାଠି ମିଶି ପାଦରେ ଗ୍ଭଲିଲାପରି ଗତିକରି ବନ୍ଧୁକ୍ଧାରୀମାନଙ୍କ ପଛେ ପଛେ ଗଲେ ।

ବାହିନୀର ଲାଞ୍ଜରେ ରହି ଅଧମାଇଲଏ ଗଲାପରେ ଯେଉଁ ଛକରେ ଯୋଡ଼ିଏ ସଡ଼କ ଦୁଇକେନା ହୋଇ ଗ୍ଭଲିଯାଇଛୁ, ସେଠି କେହି ଛାଡ଼ି ଗ୍ଭଲିଯାଇଥିବା ଗୋଟିଏ ନିର୍ଜନ ଘର ପାଖରେ ( ଘରଟି ବୋଧହୁଏ ଆଗେ ଗୋଟିଏ ସରାଇ ଘର ହୋଇଥିଲା) ସେ ଅଟକିଲେ । ଯୋଡ଼ିକଯାକ ସଡ଼କ ପାହାଡ଼ ତଳକୁ ଗଡ଼ିଯାଇଥିଲା ଓ ଦୁଇସଡ଼କରେ ସୈନ୍ୟମାନେ ଗ୍ଭଲିଥିଲେ ।

ସେତେବେଳକୁ କୁହୁଡ଼ି ଫାଟି ଆସୁଥାଏ । ପ୍ରାୟ ଦେଢ଼ ମାଇଲ ଦୂରରେ ଆଉ ପାଖର ପାହାଡ଼ ଉପରେ ଶତ୍ରୁପକ୍ଷର ସୈନ୍ୟମାନେ ଅସ୍ପଷ୍ଟ ହୋଇ ବାରି ହେଉଥାନ୍ତି । ବାଁ ପଟେ ତଳେ ଗୁଳି ଫୁଟୁଥିବାର ଶବ୍ଦ ବେଶି ବେଶି ପରିଷ୍କାରହୋଇ ଶୁଭୁଥାଏ । ଜଣେ ଅଷ୍ଟ୍ରିଆ ଦେଶର ସେନାପତିଙ୍କ ସଙ୍ଗେ କଥା ବାର୍ତ୍ତା ହେଉ ହେଉ କୁତୁଜଭ୍ ନିସ୍ତବ୍ଧହୋଇ ଠିଆହୋଇଥାନ୍ତି । ତାଙ୍କ ପଛକୁ ଟିକିଏ ଛାଡ଼ି ପ୍ରିନ୍‌ସ୍ ଆନ୍ଦ୍ରେ ଠିଆହୋଇ ସେ ବୁଢ଼ାଙ୍କୁ ଖୁବ୍ ନିଘାଦେଇ ଦେଖୁଥାନ୍ତି, ସେ ଜଣେ ସହକାରୀ ସେନାପତି ଆଡ଼କୁ ବୁଲିପଡ଼ିଲେ । ଦୂରରୁ ଦେଖିବାକୁ ଦୂରବୀନ୍ ମାଗିବାକୁ ତାଙ୍କର ଇଚ୍ଛା ଥିଲା ।

ସହକାରୀ ସେନାପତି ଦୂରରେ ଗ୍ଭଲିଥିବା ସୈନ୍ୟମାନଙ୍କ ଆଡ଼କୁ ନ ଅନାଇଁ ସାମନା ପାହାଡ଼ ତଳକୁ ଗ୍ଭହିଁ କହିଲେ, "ଆଜ୍ଞା ହେଇଟି ଦେଖନ୍ତୁ, ଦେଖନ୍ତୁ, ହେଇ ସେଠି ଫରାସି ସୈନ୍ୟ ।"

ସହକାରୀ ସେନାପତି ଦୁହେଁ ଓ ସହକାରୀ ପରସ୍ପରଠୁଁ ଓଟର ଓଟର କରି ଦୂରବୀନ ଛଡ଼ାଇନେବାକୁ ଚେଷ୍ଟାକଲେ । ହଠାତ୍ ସେମାନଙ୍କର ମୁହଁର ଭଙ୍ଗୀ ବଦଳିଗଲା ଓ ସେମାନଙ୍କ ମୁହଁରେ ଭୟର ଛବି ଫୁଟି-ଉଠିଲା । ସେମାନେ ଆଗରୁ ଭାବିଥିଲେ ଯେ ସହକାରୀ ଫରାସି ସୈନ୍ୟ ଦେଢ଼ମାଇଲରୁ ଅଧିକ ଦୂରରେ ଅଛନ୍ତି, ଅଥଚ ହଠାତ୍ ସେମାନେ ତାଙ୍କ ମୁହାଁମୁହିଁ ଦେଖାଦେଲେଣି !

ଲୋକେ କୁହାକୁହି ହେଉଥାନ୍ତି, ସ୍ୱର ଶୁଭୁଥାଏ "ଆରେ ! ଇଏ କ'ଣ ସତେ ଶତ୍ରୁପକ୍ଷ ? ···ନାଁ ନାଁ···ଦେଖ ! ଦେଖ ! ହେଇତ··· ନିଶ୍ଚୟ ଶତ୍ରୁପକ୍ଷ । ··· ଯା ମାନେ କଣ ?"

ଖାଲି ଆଖିରେ ପ୍ରିନ୍‌ସ ଆନ୍ଦ୍ରେ ଡାହାଣ ପଟକୁ ଅନାଇଁ ଦେଖିଲେ ଯେ ତାଙ୍କ ଗୋଡ଼ତଳେ ଆପ୍‌ସେରନ ସୈନ୍ୟବାହିନୀ ଆଡ଼କୁ ଗହଳ ହୋଇ ଗୋଟାଏ ଫରାସି ସୈନ୍ୟବାହିନୀ ମାଡ଼ିଆସୁଛି । କୁତୁଜଭ୍ ଯେଉଁଠି ଠିଆହୋଇଥିଲେ, ସେଠୁ ସେ ଜାଗା ପାଞ୍ଚଶହ ପାହୁଣ୍ଡରୁ ଅଧିକ ଦୂର ନୁହେଁ ।

ପ୍ରିନ୍‌ସ୍ ଆନ୍ଦ୍ରେ ମନକୁ ମନ ଭାବିଲେ, "ହେଇତ ! ଆସି ପହଞ୍ଚିଗଲା ତ ଗଲା ! ଆସି ଚରମ ମୁହୂର୍ତ୍ତ ! ମୋ ଜୀବନର ବଡ଼ ସନ୍ଧି ବେଳ ଆସିଗଲା ଯେ !" ଘୋଡ଼ାକୁ ଖୁବ୍ ଜୋର୍‌ରେ ପିଟି ସେ ଘୋଡ଼ା ଚଢ଼ି କୁତୁଜଭ୍‌ଙ୍କ ପାଖକୁ ଛୁଟିଗଲେ ।

ସେ ଚିତ୍କାର କଲେ, "ହଜୁର୍, ହଜୁର୍ ! ଏ ଆପ୍‌ସେରନ୍ ବାହିନୀକୁ ଆମକୁ ଅଟକାଇବାକୁ ପଡ଼ିବ ।"

କିନ୍ତୁ ସେହି ମୁହୂର୍ତ୍ତରେ ଗୋଟାଏ ଧୂଆଁର ମେଘ ତଳେ ସବୁ ଲୁଚିଗଲା । ଅତି ପାଖରେ ଗୁଳି ଫୁଟିବାର ଶବ୍ଦ ହେଲା ପ୍ରିନ୍‌ସ୍ ଆନ୍ଦ୍ରେଙ୍କ ଠାରୁ ଦୁଇ ପାହୁଣ୍ଡରୁ ବେଶି ବାଟ ହେବନାହିଁ, କିଏ ଜଣେ କହୁ ଥିବାର ଶୁଭିଲା, 'ସରିଗଲା ହୋ ! ସବୁ ସରିଗଲା !' ସେଇ ସ୍ୱରଟା ସତେକି ଗୋଟାଏ ଆଦେଶର ସ୍ୱର । ସେ ଶବ୍ଦ ଶୁଣିବା ମାତ୍ରେ ସମସ୍ତେ ଭ୍ରଷ୍ଟ୍ କରି ଦଉଡ଼ିବାକୁ ଲାଗିଲେ । ଆଗେ ପାଞ୍ଚ ମିନିଟ ପୂର୍ବରୁ ଯେଉଁ ଜାଗାରେ ଦୁଇ ସମ୍ରାଟଙ୍କ କରିବାଟେ ସୈନ୍ୟମାନେ ଲଢ଼ୁଆ ଠାଣିରେ ଚାଲି ଯାଉଥିଲେ,

ପୁଣି ପଛକୁ ହଟି ସେହି ଜାଗାକୁ ଲୋକେ ଦଉଡ଼ି ପଳାଇଲେ । ସେମାନେ ଅସ୍ତବ୍ୟସ୍ତ ହୋଇ ଦଉଡ଼ି ପଳାଉଥାନ୍ତି । ପ୍ରତି ମୁହୂର୍ତ୍ତରେ ପଳାତକ-ମାନଙ୍କ ଦଳ ବେଶି ବେଶି ବଢ଼ି ଯାଉଥାଏ । ସେହି ଦଳ ଦଳ ପଳାତକ ସୈନ୍ୟଙ୍କୁ ଅଟକାଇ ରଖିବା କଷ୍ଟ ଥିଲା, କିନ୍ତୁ ସେତିକି ନୁହେଁ । ବରଂ ସେହି ମଣିଷ-ସୁଅରେ ଆପେ ପଛକୁ ଓଟାରିହୋଇ ନ ଯିବାହିଁ ଏକ ପ୍ରକାର ଅସମ୍ଭବ ଲାଗୁଥିଲା । ସେହି ମଣିଷ-ସୁଅ ପଛଆଡ଼େ କିପରି ଏକୁଟିଆ ହୋଇ ପଡ଼ି ନ ରହିବେ, ଆନ୍ଦ୍ରେ ବଲ୍‌କନ୍‌ସ୍କି କେବଳ ସେତିକି ଚେଷ୍ଟା କଲେ । ଚାରିଆଡ଼େ କଣ ଘଟିଯାଉଛି, ସେକଥା ତାଙ୍କର ମୁଣ୍ଡରେ ଗଲାନାହିଁ । ସେ ଆବାକାବା ହୋଇ ଜୁଳୁ ଜୁଳୁ କରି ଚାରି ଆଡ଼କୁ ଅନାଇଁ ରହିଲେ । ନେସ୍‌ଭିତ୍‌ସ୍କିଙ୍କ ମୁହଁ ବେହାଲ୍ ହୋଇ ନାଲି ପଡ଼ିଯାଇଥାଏ । ସେ କୁତୁଜଭଙ୍କୁ ଚିତ୍କାର କରି କହୁଥାନ୍ତି ଯେ କୁତୁଜଭ ଯଦି ସେହି ମୁହୂର୍ତ୍ତରେ ସେଠୁ ପଳାଇ ନଯିବେ, ତାହାହେଲେ ନିଶ୍ଚୟ ଶତ୍ରୁପକ୍ଷ ତାଙ୍କୁ ବନ୍ଦୀ କରିପକାଇବେ । ନେସ୍‌ଭିତ୍‌ସ୍କି ଯେପରି ହେଉଥାନ୍ତି, ତାହା ତାଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଅସ୍ୱାଭାବିକ । କୁତୁଜଭ୍ ସେହି ଗୋଟିଏ ଜାଗାରେ ଠିଆହୋଇଥାନ୍ତି । ସେ ତାଙ୍କ ରୁମାଲ କାଢ଼ୁଥାନ୍ତି, କିଛି ଉତ୍ତର ଦେଉନାହାନ୍ତି । ତାଙ୍କ ଗାଲରୁ ରକ୍ତ ବୋହୁଥାଏ । ପ୍ରିନ୍‌ସ୍ ଆନ୍ଦ୍ରେ ଭିଡ଼ ଠେଲି ତାଙ୍କ ପାଖକୁ ଗଲେ ।

ପ୍ରିନ୍‌ସ୍ ଆନ୍ଦ୍ରେଙ୍କ ତଳପାଟି ଥରଉଠୁଥାଏ, ସେ ଅତି କଷ୍ଟରେ ଆପଣାକୁ ସଂଯତ କରୁଥାନ୍ତି, ପଚାରିଲେ, "ଆଜ୍ଞା ! ଆପଣଙ୍କ ଦେହରେ ଚୋଟ ବାଜିଲା ?"

କୁତୁଜଭ୍ ତାଙ୍କ ଗାଲର ଖଣ୍ଡିଆରେ ରୁମାଲ ମାଡ଼ିଧରି ଦଉଡ଼ି ପଳାଉଥିବା ସୈନ୍ୟମାନଙ୍କ ଆଡ଼କୁ ହାତଦେଖାଇ କହିଲେ, "ଚୋଟଟା ମୋତେ ଏଠି ବାଜି ନାହିଁ ଯେ ମୋ ଦେହରେ ବାଜିଛି ହେଇ ସେଠି ।"

"ଅଟକାଅ ତାଙ୍କୁ !" କୁତୁଜଭ୍ ଚିତ୍କାର କଲେ । ପୁଣି ସେଇ ସଙ୍ଗେସଙ୍ଗେ ସେ ନିଜେ ଏକଥା ବି ସ୍ଥିରକରି ବୁଝିପାରିଲେ ଯେ ସୈନ୍ୟମାନଙ୍କୁ ଅଟକାଇବା ଅସମ୍ଭବ । ସେ ଘୋଡ଼ାକୁ ଚାବୁକ୍ ପିଟି ଡାହାଣ ଆଡ଼କୁ ଘୋଡ଼ା ଚଢ଼ି ଧାଇଁଗଲେ । ପୁଣି ସେପଟୁ ଦୌଡ଼ି ଦୌଡ଼ି ପଳାଇ ଆସୁଥିବା ସୈନ୍ୟଦଳଟାଏ ତାଙ୍କୁ ହାବୁଡ଼ି ଯାଇ ପଛକୁ ଠେଲି-ନେଲା ।

ସୈନ୍ୟମାନେ ଏକାଠି ଏଭଳି ଗହଳି କରି ଦୌଡ଼ି ପଳାଉଥାନ୍ତି ଯେ ଥରେ ସେ ଗହଳି ମଝିରେ ପଶିଗଲେ ପୁଣି ପଦାକୁ ବାହାରିବା କାଠିକର ପାଠ । ଜଣେ ପାଟି କରୁଥାଏ, "କହୋ ! ଚାଲୁନା କାହିଁକି ? କାହିଁକି ମାଣ୍ଡୋଉଛ ?" ଆଉଜଣେ ଆକାଶଆଡ଼କୁ ଲକ୍ଷକରି ବନ୍ଧୁକ ଫୁଟାଇବ ବୋଲି ଭୁଲି ପଡ଼ୁଥାଏ । ଆଉ ଜଣେ ନିଜେ କୁତୁଜଭ୍ ଯେଉଁ ଘୋଡ଼ାରେ ବସିଥାନ୍ତି, ସେଇ ଘୋଡ଼ାକୁ ପିଟୁଥାଏ । କୁତୁଜଭ୍‌ଙ୍କ ଗହଣରେ ଥିବା କର୍ମଚାରୀ ଦଳ ସେତେବେଳକୁ ଅଧା ହୋଇଗଲେଣି । ପ୍ରାଣ ପଣେ ଚେଷ୍ଟାକରି ବାଁପଟର ସେଇ ମଣିଷ ସୁଅ ଭିତରୁ ବାହାରି ପାଖରେ ଯେଉଁଠି ତୋପ ଫୁଟିବାର ଶବ୍ଦ ଶୁଭୁଥାଏ, କୁତୁଜଭ୍ ସେଇ ଆଡ଼କୁ ଘୋଡ଼ା ଚଢ଼ି ଚାଲିଗଲେ । ତାଙ୍କ ପାର୍ଶ୍ୱଚର ଦଳଟି ସେତେବେଳକୁ ଆଗରୁ ଅଧା ହୋଇ ଯାଇଥାଏ । ପ୍ରିନ୍‌ସ୍ ଆନ୍ଦ୍ରେ ଯେପରି କୁତୁଜଭ୍‌ଙ୍କ ପଛରେ ପଡ଼ି ନରହିବେ, ସେଥିପାଇଁ ଚେଷ୍ଟାକରି ସେଇ ଦଉଡ଼ି ପଳଉଥିବା ମଣିଷ ଗହଳି ଭିତରୁ ପଦାକୁ ବାହାରିବା ମାତ୍ରେ ତାଙ୍କ ଆଖିରେ ପଡ଼ିଗଲା ଯେ ପାହାଡ଼ ଉପରେ ଧୂଆଁ ଭିତରେ ସେତେବେଳେ ବି ରୁଷ୍ ପକ୍ଷର ଗୋଟିଏ ତୋପଘାଟିରୁ ଗୁଳି ଫୁଟୁଥାଏ ଓ ଫରସି ସୈନ୍ୟମାନେ ସେଇ ଆଡ଼କୁ ଦୌଡ଼ୁଥାନ୍ତି । ସେଠି ଟିକିଏ ଉପରକୁ ରୁଷ୍ ପକ୍ଷର ପଦାତିକ ବାହିନୀ ଠିଆହୋଇଥାଏ ଅଚଳ ତୋପଘାଟିକୁ ସାହାଯ୍ୟଦେବା ସକାଶେ ଆଗକୁ ମାଡୁନଥାଏ ଅଥଚ ପଳାତକମାନେ ଯେଉଁ ଆଡ଼କୁ ଧାଇଁ ପଳାଉଥାନ୍ତି, ସେ ପଟକୁ ବି ଯାଉ ନଥାଏ । ଜଣେ ଅଶ୍ୱାରୋହୀ ସେନାପତି ପଦାତିକ ବାହିନୀରୁ ଅଲଗା ହୋଇଯାଇ କୁତୁଜଭ୍‌ଙ୍କ ଆଡ଼କୁ ଘୋଡ଼ାଚଢ଼ି ଚାଲିଆସିଲେ । ସେତେବେଳେ କୁତୁଜଭ୍‌ଙ୍କ ଗହଣରେ ଥିବା କର୍ମଚାରୀଙ୍କ ଭିତରୁ ଚାରୋଟି ମାତ୍ର ଅବଶିଷ୍ଟ ରହିଥିଲେ । ସେମାନେ କଳାକାଠ ପଡ଼ିଯାଇଥାନ୍ତି ଓ ଭୁଙ୍ଗା ପରି ଜଣେ ଆର ଜଣକୁ ଅନାଉଁଥାନ୍ତି ।

ସତେ ଯେପରି ସେ ପଳାତକ ସୈନ୍ୟମାନେ ଉଡ଼ି ଉଡ଼ି ପଳାଉଥାନ୍ତି । ସେମାନଙ୍କୁ ଆଡ଼କୁ ହାତଦେଖାଇ ସୈନ୍ୟଦଳର ଦଳପତିଙ୍କୁ କୁତୁଜଭ୍ ଇଁ ସଇଁ ହୋଇ କହିଲେ, 'ଏ ହତଭାଗାଗୁଡ଼ାଙ୍କୁ ଆଟକାନ୍ତୁ"; କିନ୍ତୁ ସତେକି ସେ ଏପରି କହିଲେ ବୋଲି ପ୍ରତିଶୋଧ ନେବା ସକାଶେ ଠିକ୍ ସେହି ମୁହୂର୍ତ୍ତରେ ସେଇ ସୈନ୍ୟଦଳ ଓ କୁତୁଜଭ୍‌ଙ୍କ

ଗଡଣର ଲୋକଙ୍କ ଉପରକୁ ଠିକ୍ ଚଟଡ଼ଇ ଉଡ଼ିଆସିଲ ପରି ବନ୍ଧୁକ ଗୁଳସବୁ ସାଇଁ ସାଇଁ ହୋଇ ଉଡ଼ିଆସିଲ । ଫରାସୀ ପଦାତିକ ଘାଟି ଉପରେ ଆକ୍ରମଣ କରୁଥିଲେ ଓ ସେଣ୍ଟକବେଲେ କୁତୁଜଭ୍‌ଙ୍କୁ ଦେଖିପାରି ତାଙ୍କ ଆଡ଼କୁ ଗୁଳିମାରିଲେ । ଏହି ଗୁଳ ମାଡ଼ ହେବା ସଙ୍ଗେସଙ୍ଗେ ସେନାପତି ଆପଣା ଗୋଡ଼କୁ ଚିପି ଧରିଲେ । କେତେ ଜଣ ସୈନ୍ୟ ଗୁଳ ଚୋଟ ଖାଇ ପଡ଼ିଗଲେ ଓ ପତାକା ଧରି ଯେଉଁ- ଦ୍ୱିତୀୟ ଦଳପତି ଠିଆ-ହୋଇଥିଲେ ସେ ପତାକାକୁ ପକାଇ ଦେଲେ । ପତାକା ଟଳଟଳକା ପଡ଼ିଯାଇଥିଲ ଓ ସେହି ପାଖରେ ଥିବା ସୈନ୍ୟମାନଙ୍କ ବନ୍ଧୁକମାନଙ୍କ ଠେକ ପାଇ ରହିଗଲ । ବିନା ଆଦେଶରେ ସୈନ୍ୟମାନେ ଗୁଳ ମାରିବାକୁ ଆରମ୍ଭ କରିଦେଇଥାନ୍ତି ।

ଙ୍ଘରପାଖକୁ ଙ୍ଘୁରି ହତାଶ ଭଙ୍ଗିରେ କୁତୁଜଭ୍ ଗର୍ଜନ କଲେ "ଉଃ !" ସେ ଫୁସ୍‌ଫୁସ୍ କରି କହିଲେ, "ବଲକନସ୍କି!" ନିଜର ବାର୍ଦ୍ଧକ୍ୟ ଓ ଅସହାୟ ଅବସ୍ଥା ମନେପକାଇ ତାଙ୍କ ସ୍ୱର ଥରଉଠୁଥାଏ । ଦୌଡ଼ ପଳାଇଥିବା ସୈନ୍ୟଦଳଆଡ଼କୁ ଓ ଶତ୍ରୁପକ୍ଷଆଡ଼କୁ ହାତ ଦେଖାଇ ସେ ଫୁସ୍ ଫୁସ୍ କରି କହିଲେ, 'ବଲ୍‌କନସ୍କି ! ଇଏ କ'ଣ ହେଲ ?"

କିନ୍ତୁ ତାଙ୍କ ପାଟିରୁ କଥା ବାହାରିବା ପୂର୍ବରୁ ପ୍ରିନ୍‌ସ୍ ଆନ୍ଦ୍ରେ ଯେମିତି ଯାଣିପାରିଲେ ଯେ, ଲଜ୍ଜାରେ ତାଙ୍କ ଆଖିରୁ ଲୁହ ବାହାରୁଛି ଓ ତାଙ୍କର ତଣ୍ଟିରୁ ଆତ୍ମଗ୍ଲାନିର ସ୍ୱର ବାହାରୁଛି, ସେ ସେହି ସଙ୍ଗେ ସଙ୍ଗେ ଘୋଡ଼ା ଉପରୁ ଡେଇଁପଡ଼ି ପତାକାଆଡ଼କୁ ଦଉଡ଼ିଲେ ।

ପିଲଳିଆ ଚେଁ ଚେଇଁଆ ପାଟିରେ ସେ ଚିତ୍କାରକଲେ, "ଆଗକୁ ଧାଅଁ ହୋ ଟୋକାଏ, ମାଡ଼ ଆସ ।' ପତାକାର ଦଣ୍ଡକୁ ଧରି ଟେକାଇ ତାଙ୍କ ଆଡ଼କୁ ନିର୍ଦ୍ଦିଷ୍ଟ ଭାବେ ଲକ୍ଷହୋଇଥିବା ବନ୍ଧୁକ ଗୁଳି-ଗୁଡ଼ାକର ସାଇଁ ସାଇଁ ଶବ୍ଦକୁ ଆଶ୍ୱସ୍ତ ହୋଇ ଶୁଣି ପ୍ରିନ୍‌ସ୍ ଆନ୍ଦ୍ରେ ମନକୁ ମନ ଭାବୁଥାନ୍ତି "ହେ ତ ! ମୁହୂର୍ତ୍ତ ଆସିଗଲ ।" ବହୁତ ସୈନ୍ୟ ଟଳି ପଡ଼ିଲେ ।

ପ୍ରିନ୍ସ୍ ଆନ୍ଦ୍ରେ ଚିତ୍କାର କଲେ "ଜୟ !" ସେଇ ଓଜନ ପତାକାକୁ ଦୁଇ ହାତରେ ଧରିବା ତାଙ୍କ ପକ୍ଷରେ କଷ୍ଟ ହେଉଥାଏ । ସେ ଆଗକୁ ଦଉଡ଼ିଗଲେ ଓ ନିଃସନ୍ଦେହରେ ସେ ବିଶ୍ବାସକଲେ ଯେ, ସମୁଦାୟ ସୈନ୍ୟଦଳ ତାଙ୍କ ପଛେପଛେ ଧାଇଁଯିବ । ପ୍ରକୃତରେ ବି କେବଳ କେଇ ପାହୁଣ୍ଡ ପର୍ଯ୍ୟନ୍ତ ହିଁ ସେ ଏକୁଟିଆ ଦୌଡ଼ିଥିଲେ । ତା ପରେ ଆଗ ଜଣେ ସୈନ୍ୟ, ସେଉଠୁ ଆଉ ଜଣେ, ସେଉଠୁ ସୈନ୍ୟଦଳଟି "ଜୟ ! ଜୟ ! "ରଡ଼ି ରଡ଼ି ଆଗକୁ ଦୌଡ଼ି ଦୌଡ଼ି ତାଙ୍କ ପାଖେ ପହଞ୍ଚିଗଲା । ପତାକା ବୋଝ ବୋଲି ପ୍ରିନ୍ସ୍ ଆନ୍ଦ୍ରେଙ୍କ ହାତରେ ଟଳ ଟଳ ହେଉଥାଏ । ସୈନ୍ୟଦଳର ଜଣେ ଚଳଆ କର୍ମଚାରୀ ଧାଇଁଯାଇ ପତାକାକୁ ଧରିପକାଇଲା, କିନ୍ତୁ ସେଇ ସଙ୍ଗେସଙ୍ଗେ ଗୁଳିଟିଏ ଖାଇ ତାର ପ୍ରାଣ ଚାଲିଗଲା । ପ୍ରିନ୍ସ୍ ଆନ୍ଦ୍ରେ ପୁଣି ପତାକାକୁ ଝାମ୍ପିନେଲେ ଓ ପତାକାର ଦଣ୍ଡକୁ ହଲାଇ ହଲାଇ ସମୁଦାୟ ଦଳ ସହିତ ଆଗକୁ ଦୌଡ଼ିଲେ । ସେ ଦେଖିଲେ ଯେ ତାଙ୍କ ସାମ୍ନାରେ ଅଛନ୍ତି, ରୁଷ୍ ପକ୍ଷର ବନ୍ଧୁକ୍ଧାରୀ ସୈନ୍ୟମାନେ ତାଙ୍କ ଭିତରୁ କେଇଜଣ ଯୁଦ୍ଧ କରୁଥାନ୍ତି ଓ ଅନ୍ୟମାନେ ଆପଣା ଆପଣା ତୋପକୁ ଛାଡ଼ିଦେଇ ତାଙ୍କ ଆଡ଼କୁ ଦୌଡ଼ି ଦୌଡ଼ି ଆସୁଥାନ୍ତି । ସେ ଫରାସିପକ୍ଷର ପଦାତିକ ସୈନ୍ୟଙ୍କୁ ମଧ୍ୟ ଦେଖିଲେ, ସେମାନେ ରୁଷ୍ ପକ୍ଷର ତୋପର ଘୋଡ଼ା ମାନଙ୍କୁ ଧରିପକାଇ ତୋପ ଗୁଡ଼ାକର ମୁହଁକୁ ରୁଷ୍ ସୈନ୍ୟଙ୍କ ଆଡ଼କୁ ବୁଲାଇ ଦେଉଥାନ୍ତି । ପ୍ରିନ୍ସ୍ ଆନ୍ଦ୍ରେ ଓ ସୈନ୍ୟଦଳ ତୋପମାନଙ୍କଠାରୁ ମୋଟେ କୋଡ଼ିଏ ପାହୁଣ୍ଡ ଭିତରେ ଥାନ୍ତି । ତାଙ୍କୁ ଶୁଭୁଥାଏ ଯେ ତାଙ୍କ ଉପରେ ଅବିରାମ ଗତିରେ ଗୁଳିସବୁ ସାଇଁ ସାଇଁ ଚାଲିଥାଏ ଓ ତାଙ୍କର ବାଆଁ ଡାହାଣେ ଆର୍ତ୍ତ ଚିତ୍କାର କରିକରି ସୈନ୍ୟମାନେ ଅବିରାମ ଭାବରେ ଟଳିପଡୁଥାନ୍ତି କିନ୍ତୁ ସେ ସେମାନଙ୍କୁ ଚାହୁଁ ନଥାନ୍ତି । ତାଙ୍କ ସାମନାରେ କ'ଣ ଘଟିଯାଇଛି, ହେଇ ସେ ତୋପଘାଟିରେ, ସେଇଠି ତାଙ୍କ ଆଖି ଲାଖିରହିଥାଏ । ସେ ପରିଷ୍କାର ଭାବେ ତୋପ ଚାଳକର ରୂପକୁ ଦେଖିପାରୁଥାନ୍ତି, ତାର ମୁଣ୍ଡର ବାଳ ନାଲି । ତାର ଗୋଟାଏ ପାଖରେ ଗୋଟାଏ ତୋପବୁହା ଗାଡ଼ି ଚୂନାହୋଇ ପଡ଼ିଥାଏ । ସେ ଗୋଟାଏ ତୋପର ପିଢ଼ିକୁ ଗୋଟିଏ ପାଖକୁ ଓଟାରୁ ଥାଏ । ତା ଆର-ପାଖେ ଜଣେ ଫରାସୀ ସୈନିକ ସେ ପିଢ଼ିକୁ ଆର ପାଖକୁ ଓଟାରୁ ଥାଏ ।

ପ୍ରିନ୍ସ୍ ଆନ୍ଦ୍ରେ ସେ ଦୁଇ ଲୋକଙ୍କ ମୁହଁର ଭାବକୁ ପରିଷ୍କାର ଭାବେ ଦେଖିପାରୁଥାନ୍ତି ।

ଉଭୟଙ୍କ ମୁହଁର ଛବି ପାଗଳ ଲୋକର ମୁହଁ ପରି ଦିଶୁଥାଏ, ପୁଣି ଖୁବ୍ ଉଗ୍ର୍ୟକ୍ତ ଦିଶୁଥାଏ, ଲାଗୁଥାଏ ଯେପରିକି ସେମାନେ କ'ଣ କରୁଛନ୍ତି ସେ ବିଷୟରେ ତାଙ୍କର ଆଦୌ କାଣ୍ଡଜ୍ଞାନ ନାହିଁ ।

ସେମାନଙ୍କୁ ଅନାଇଁ ଅନାଇଁ ପ୍ରିନ୍ସ୍ ଆନ୍ଦ୍ରେ ଆଶ୍ଚର୍ଯ୍ୟ ହୋଇ ମନକୁ ମନ ଭାବିଲେ, "କ'ଣ ସେମାନେ କରୁଛନ୍ତି ? ନାଲି ମୁଣ୍ଡିଆ ତୋପ ଚାଳକ ପାଖରେ ତ କିଛି ହେଲେ ହତିଆର ନାହିଁ, ସେ ଦଉଡ଼ି ନ ପଳାଉଛି କାହିଁକି ? ଫରାସୀ ଲୋକଟା କାହିଁକି ତାକୁ ଭୁଲି ନ ଦେଉଛି ? ଫରାସୀ ଲୋକଟାତ ତା ବନ୍ଧୁକ କଥା ମନେ ପକାଇ ତା ମୁଣ୍ଡରେ ପାହାରେ ଦେଲାବେଳକୁ ସେତ ଦଉଡ଼ି ପଳାଇବାକୁ ଡର ପାଇବ ନାହିଁ ।" ସତକୁ ସତ ଆଉ ଜଣେ ଫରାସୀ ସୈନିକ ମଧ୍ୟ ସେ ଦୁହିଁଙ୍କ ପାଖକୁ ଧାଇଁଗଲା । ତାର ବନ୍ଧୁକର ଓଜନ ତା ଦେହର ଓଜନଠାରୁ ବଳିପଡ଼ୁଥାଏ । ସେତେବେଳକୁ ନାଲି ମୁଣ୍ଡିଆ ତୋପ ଚାଳକ ଆଦୌ ଭାବିପାରୁ ନଥାଏ ଯେ ତାର କ'ଣ ହେବାକୁ ବସିଛି । ସେ ସଗର୍ବରେ ତୋପର ପିଚ୍କିରି ନିଜ ପଟକୁ ଓଟାରି ନେଇଥାଏ । ଜଣାପଡ଼ୁଥାଏ ଯେପରିକି ତାର ବିନାଶ ସୁନିଶ୍ଚିତ, କିନ୍ତୁ ଶେଷରେ ତାର କ'ଣ ହେଲା, ସେ କଥା ପ୍ରିନ୍ସ୍ ଆନ୍ଦ୍ରେ ଦେଖିପାରିଲେନାହିଁ । ତାଙ୍କୁ ଜଣାଗଲା ଯେପରିକି ତାଙ୍କ ପାଖରେ ଥିବା କୌଣସି ସୈନିକ ଗୋଟାଏ ଠାଣୁଆ ଠେଙ୍ଗାରେ ତାଙ୍କ ଉପରକୁ ପାହାରେ ପକାଇଲା ଓ ତାଙ୍କ ମୁଣ୍ଡରେ ପ୍ରଚଣ୍ଡ ପାହାର ପଡ଼ିଲା, ତାଙ୍କୁ ଅଳ୍ପ କାଟିଲା, କିନ୍ତୁ ସବୁଠୁଁ ବଳି ଦୁରବସ୍ଥାଟା ଏପରି ହେଲା ଯେ, ସେହି ଯନ୍ତ୍ରଣାଯୋଗୁ ତାଙ୍କ ନଜର ବଦଳି ଗଲା ଓ ସେ ଆଗରୁ ଯେଉଁ ଆଡ଼େ ଗୁହିଁ ଯାହା ଦେଖୁଥିଲେ, ତା ଆଉ ଦେଖିପାରିଲେ ନାହିଁ ।

"ଇଏ କ'ଣ ହେଉଛି ? ମୁଁ କ'ଣ ପଡ଼ିଯାଉଛି ? ମୋ ଗୋଡ଼ ତ ଟଳିପଡ଼ୁଛି !" ସେ ଭାବିଲେ, ଆଉ ପିଠିମାଡ଼ି ଚିତ୍ହୋଇ ତଳେ ପଡ଼ିଗଲେ । ସେ ପୁଣି ଆଖି ଖୋଲିଲେ । ରୁଷ୍ ପକ୍ଷର ସେଇ ତୋପ ଚାଳକ ଓ ଫରାସୀ ସୈନ୍ୟମାନେ ଏ ଦୁହିଁଙ୍କ ଭିତରେ ଯୁଦ୍ଧର ପରିଣତି କ'ଣ ହେଲା, ସେ ସେଇଆ ଦେଖିବାକୁ ମନକଲେ । ତାଙ୍କର ଏ କଥା ଜାଣିବାକୁ ମନ

ହେଲା ଯେ, ମୁଣ୍ଡରେ ନାଲି ବାଳ ଥିବା ତୋପ ଚଳାଳୀ ଜଣକ ମଲା କି ନାହିଁ, ତୋପ ଗୁଡ଼ାକ ଶତ୍ରୁପକ୍ଷ ଛଡ଼ାଇ ନେଲେ ନା ସେଗୁଡ଼ାକ ରହିଗଲା, କିନ୍ତୁ ସେ ଶେଷକୁ କିଛି ଦେଖିପାରିଲେ ନାହିଁ । ତାଙ୍କ ଉପରେ ଖୋଲା ଆକାଶ ଛଡ଼ା ଆଉ କିଛି ନ ଥିଲା,—ଖାଲି ଉନ୍ନତ ଆକାଶ, ପରିଷ୍କାର ନୁହେଁ, କିନ୍ତୁ ଏତେ ଉଚ୍ଚତା ଯେ କଳିହେବନାହିଁ, ତା ଉପରେ ନିଃଶବ୍ଦରେ ପାଉଁଶିଆ ମେଘମାନେ ଘୂଷୁରି ଘୂଷୁରି ଗୁଲିଥାନ୍ତି । ସେ ଭାବୁଥାନ୍ତି— "ଅସୀମ ଆକାଶରେ କେଡ଼େ ନିଃଶବ୍ଦରେ, ଶାନ୍ତିରେ, ବିଜୟ ଉଲ୍ଲାସରେ ଏଇ ମେଘମାନେ ଧୀରେ ଧୀରେ ଗୁଲିଛନ୍ତି । ସେମାନେ ଆମପରି ନୁହନ୍ତି, ଦଉଡ଼ୁ ନାହାନ୍ତି, ପାଟି କରୁନାହାନ୍ତି, ଯୁଦ୍ଧ କରୁନାହାନ୍ତି, ଡରିଲା ପରି ଓ ପାଗଳ ପରି ମୁହଁ କରି ପରସ୍ପରଠୁଁ ଗୋଟାଏ ତୋପକୁ ଛଡ଼ାଇନେବାକୁ ଝିଙ୍କା ଓଟରା କରୁଥିବା ଫରାସୀ ସୈନିକ ଓ ରୁଷ୍ ପକ୍ଷର ତୋପ ଚଳାଳୀ ପରି ଏମାନେ ନୁହନ୍ତି । ଏ ମେଘମାନେ ଏ ସବୁଠାରୁ କେଡ଼େ ଭିନ୍ନ ପ୍ରକାରର ! ଏଇ ଉନ୍ନତ ଆକାଶକୁ ମୁଁ ଆଗରୁ ନ ଦେଖିଲି କେମିତି ? ଯାହାହେଉ, ଶେଷରେ ମୁଁ ଯେ ଏହାକୁ ପାଇପାରିଛି, ସେଥିପାଇଁ ମତେ କେଡ଼େ ଆନନ୍ଦ ଲାଗୁଛି ! ସତ କଥା, ସବୁ ଖାଲି ବୃଥା ଗର୍ବ, ସବୁ ଖାଲି ଠକାମି, କେବଳ ଏଇ ଅସୀମ ଆକାଶ ଛଡ଼ା ଆଉ ସବୁ, ଆଉ କିଛି ନାହିଁ, ତା ଛଡ଼ା ଆଉ କିଛି ନାହିଁ । ନାଁ, ତା ବି ତ ନାହିଁ, କେବଳ ଶାନ୍ତି ଓ ନିଃଶବ୍ଦତା ଛଡ଼ା ଆଉ କିଛି ନାହିଁ । ଭଗବାନଙ୍କୁ ଧନ୍ୟବାଦ !..."

ପ୍ରାତ୍‌ଜେନ୍ ପାହାଡ଼ ଉପରେ ପ୍ରିନ୍‌ସ୍ ଆନ୍ଦ୍ରେ ବଲ୍‌କନ୍‌ସ୍କି ପଡ଼ି ରହିଥାଆନ୍ତି, ପତାକାର ଦଣ୍ଡକୁ ହାତରେ ଧରି ଯେଉଁଠି ଟଳି ପଡିଥିଲେ, ସେଇଟି ପଡ଼ିଥାନ୍ତି । ତାଙ୍କ ଦେହରୁ ରକ୍ତ କ୍ଷୟ ହୋଇଯାଉଥାଏ, ସେ ନିଜେ ଜାଣିପାରୁ ନଥାନ୍ତି, କିନ୍ତୁ ତାଙ୍କ ତୁଣ୍ଡରୁ ଏକ ପ୍ରକାର ଧୀର କରୁଣ ଶିଶୁସୁଲଭ ଆର୍ତ୍ତଚିତ୍କାର ଶୁଭୁଥାଏ । ସଞ୍ଜଆଡ଼କୁ ତାଙ୍କର ସେ ଚିତ୍କାର ବନ୍ଦ ହୋଇଗଲା । ସେ ସମ୍ପୂର୍ଣ୍ଣ ନିଃଶବ୍ଦ ହୋଇଗଲେ । ଏପରି ଅଜ୍ଞାନ ହୋଇ ସେ କେତେବେଳଯାକେ ପଡ଼ିରହିଲେ, ସେ ଜାଣି ନ ଥିଲେ । ହଠାତ୍ ତାଙ୍କୁ ଜଣାଗଲା ଯେ ସେ ବଞ୍ଚିଛନ୍ତି ଓ ତାଙ୍କ ମୁଣ୍ଡ ଭିତରେ ଜଳିଲା ପରି ଛେଚିଲା ପରି ଏକ ପ୍ରକାର ଯନ୍ତ୍ରଣା ଗୁଲିଛି ।

ସେ ଭାବିଲେ "କୁଆଡ଼େଗଲା ସେ ? —ସେହି ଉନ୍ନତ ଆକାଶ ଯାହାକୁ ଏହି ମୁହୂର୍ତ୍ତ ଆଗରୁ ମୁଁ ଚହ୍ନି ନଥିଲି, ଆଜ ଦେଖିଲି ।" ସେ ପୁଣି ଭାବିଲେ, "ଏଇ ଯନ୍ତ୍ରଣା ବି କେମିତି ମୁଁ ତା ଆଗରୁ ଜାଣି ନ ଥିଲି । ହିଁ, ମୁଁ କିଛି ନଥିଲି, ଏଇ ମୁହୂର୍ତ୍ତ ପର୍ଯ୍ୟନ୍ତ କିଛି ଜାଣି ନ ଥିଲି ? ତେବେ ମୁଁ ଅଛି କେଉଁଠି ?"

ସେ ଶବ୍ଦ ଶୁଣିବାକୁ କାନ ଡେରିଲେ । ଘୋଡ଼ାଟାପୁର ଶବ୍ଦ ଓ ଫରାସୀ ଭାଷାରେ କଥା କହୁଥିବା ଲୋକଙ୍କ ସ୍ୱର ପାଖକୁ ପାଖ ଲାଗି ଲାଗି ଆସୁଥାଏ । ସେ ପୁଣି ଆଖି ଖୋଲିଲେ । ତାଙ୍କ ଉପରେ ପୁଣି ସେହି ଉନ୍ନତ ଆକାଶ । ତହିଁରେ ମେଘମାନେ ଆଗଠୁ ଆହୁରି ଉଚ୍ଚରେ ଭାସୁଥାନ୍ତି ଓ ମେଘମାନଙ୍କ ମଝିରେ ମଝିରେ ତାଙ୍କ ବାଟେ ଅସୀମ ନୀଳ ଆକାଶର ବହୁଦୂର ପର୍ଯ୍ୟନ୍ତ ଦିଶୁଥାଏ । ଘୋଡ଼ା ଟାପୁରୁ ଜଣାପଡ଼ୁଥାଏ ଓ ମଣିଷଙ୍କ ସ୍ୱରରୁ ଜଣା ପଡ଼ୁଥାଏ ଯେ କେତେଜଣ ଲୋକ ତାଙ୍କ ପାଖ ପର୍ଯ୍ୟନ୍ତ ଘୋଡ଼ାଚଢ଼ି ଆସି ତାଙ୍କର ପାଖରେ ଅଟକିଛନ୍ତି, କିନ୍ତୁ ସେ ମୁଣ୍ଡ ବୁଲାଇଲେ ନାହିଁ କି ସେ ସେମାନଙ୍କୁ ଦେଖିଲେ ନାହିଁ ।

ସେ ଲୋକମାନେ ନେପୋଲିଅନ୍ ଓ ତାଙ୍କ ସଙ୍ଗରେ ଥିବା ଦୁଇଜଣ ସହକାରୀ ସେନାପତି ନେପୋଲିଅନ ଯୁଦ୍ଧ କ୍ଷେତ୍ରରେ ବୁଲି ବୁଲି ଦେଖୁଥାନ୍ତି, ଆଉଷ୍ଟ୍ରେସ୍ତ ନଦୀର ବନ୍ଧ ଉପରକୁ ତାଙ୍କର ଯେଉଁ ତୋପ ଘାଟିରୁ ଗୁଳି ଚାଲିଥାଏ ସେହି ତୋପ ଘାଟିକୁ ମଜଭୁତ୍ କରିବାକୁ ସେ ତାଙ୍କର ଶେଷ ନିର୍ଦ୍ଦେଶ ଦେଉଥାନ୍ତି । ଯୁଦ୍ଧକ୍ଷେତ୍ରରେ ଯେଉଁମାନେ ହତାହତ ହୋଇ ପଡ଼ିଥାନ୍ତି, ସେମାନଙ୍କୁ ଦେଖାଦେଖି କରୁଥାନ୍ତି ।

ଜଣେ ରୁଷ୍ ବନ୍ଧୁକଧାରୀ ସୈନିକ ମରି ପଡ଼ିଥାଏ, ତାର ମୁହଁ ମାଟିରେ ପଶି ଯାଇଥାଏ । ତାର ବେକ କଳା ପଡ଼ିଯାଇଥାଏ । ସେ ପେଟମାଡ଼ି ପଡ଼ିଥାଏ, ତାର ଗୋଟାଏ ବାହା ନାଠି ହୋଇ ଗୁଞ୍ଜି ହୋଇଥାଏ । ତା ଆଡ଼କୁ ଅନାଇଁ ନେପୋଲିଅନ୍ କହିଲେ "କେଡ଼େ କେଡ଼େ ଯୋଦ୍ଧାମାନେ !"

ଆଉଷ୍ଟ୍ରେସ୍ତ ନଦୀରେ ବନ୍ଧ ଉପରକୁ ଯେଉଁ ତୋପ ଘାଟିରୁ ଗୁଳି ଚାଲିଥାଏ, ସେଠୁ ସେତେବେଳେ ଜଣେ ସହକାରୀ ସେନାପତି ଆସି

ପହଞ୍ଚିଲେ । ସେ କହିଲେ,"ତୋପର ଗୁଳ ସରିଗଲା" । "ବଲକା ପାଣ୍ଡିରୁ ଆଉରି ସେନା ଆସନ୍ତୁ ନେପୋଲିଅନ୍ କହିଲେ ।" ନେପୋଲିଅନ୍ ଘୋଡ଼ା ଚଢ଼ି ଆଉ କେତେ ପାହୁଣ୍ଡ ଯାଇ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଅନାଇ ନିଶ୍ଚଳହୋଇ ଠିଆହେଲେ । ପ୍ରିନସ୍ ଆନ୍ଦ୍ରେ ବଲ୍‌କନ୍‌ସ୍କି ଚିତହୋଇ ପଡ଼ିଥାନ୍ତି । ତାଙ୍କ କଡରେ ପରିତ୍ୟକ୍ତ ପତାକାଟିର ଦଣ୍ଡଟି ପଡ଼ିରହିଥାଏ । (ଫରାସୀମାନେ ପତାକାଟିକୁ ଆପଣାର ବିଜୟର ସଙ୍କେତ ହିସାବରେ ଛଡ଼ାଇ ନେଇଯାଇଥାନ୍ତି ) ।

ପ୍ରିନ୍‌ସ୍ ଆନ୍ଦ୍ରେ ବଲ୍‌କନ୍‌ସ୍କିଙ୍କ ଆଡ଼କୁ ଅନାଇ ନେପୋଲିଅନ୍ କହିଲେ,"କେଡ଼େ ଚମତ୍କାର ମରଣ !" । ପ୍ରିନ୍‌ସ୍ ଆନ୍ଦ୍ରେ ବୁଝିପାରିଲେ ଯେ ଏକଥା ତାଙ୍କରି ସମ୍ପର୍କରେ କୁହାହେଲା ଓ ବକ୍ତା ନିଜେ ନେପୋଲିଅନ୍ । ଯେ ଏପରି କହିଲେ ତାଙ୍କୁ ଅନ୍ୟମାନେ "ମହିମା" ବୋଲି ସମ୍ବୋଧନ କରୁଥାନ୍ତି, କିନ୍ତୁ ମାଛି ଗଣଗଣ ଶବ୍ଦ ତାଙ୍କ କାନକୁ ଯେମିତି ଶୁଭୁଥାଏ, ଏ କଥାଗୁଡ଼ିକ ମଧ୍ୟ ତାଙ୍କୁ ସେମିତି ଶୁଭିଲା । ଖାଲି ଏତିକି ନୁହେଁ ଯେ ସେ କଥା ଶୁଣିବାକୁ ସେ ମନ ଦେଲେନାହିଁ, ସେ କଥାକୁ ସେ ନିଘା ବି ଦେଲେ ନାହିଁ ଓ ଯାହା ଶୁଣିଲେ ତାକୁ ଶୀଘ୍ର ପାଶୋରି ପକାଇଲେ । ତାଙ୍କ ମୁଣ୍ଡ ଭିତରେ ସେତେବେଳେ ନିଆଁ ଲଗିଲାପରି ଯନ୍ତ୍ରଣା ହେଉଥାଏ, ସେ ଅନୁଭବ କରୁଥିଲେ ଯେ ତାଙ୍କ ଦେହରୁ ରକ୍ତ କ୍ଷୟ ହୋଇଯାଉଛି, ତାଙ୍କୁ ଦିଶୁଥିଲା ତାଙ୍କ ଉପରେ କାହିଁ କେତେଦୂରରେ ଅସୀମ ଆକାଶ ବିଛେଇ ହୋଇ ରହିଛି । ସେ ଜାଣିଲେ ଯେ ଏ ନେପୋଲିଅନ୍, ଯାହାଙ୍କୁ ସେ ଚିରକାଳ ତାଙ୍କର ଆଦର୍ଶ ପୁରୁଷ ବୋଲି ମନେ ମନେ ଶ୍ରଦ୍ଧା କରିଛନ୍ତି, କିନ୍ତୁ ଠିକ୍ ସେତିକିବେଳେ ତାଙ୍କୁ ଲାଗୁଥାଏ ଯେ ତାଙ୍କର ଆତ୍ମା ଓ ସେହି ଉନ୍ନତ ଅସୀମ ଆକାଶ, ଯେଉଁଠି ମେଘମାନେ ଭାସି ଭାସି ଯାଉଥାନ୍ତି, ଏ ଦୁହିଁଙ୍କ ଭିତରେ ଯେଉଁ ଭାବ ଚାଲିଛି ତାହା ତୁଳନାରେ ନେପୋଲିଅନ୍ ଗୋଟାଏ ଅତି କ୍ଷୁଦ୍ର, ଅତି ନଗଣ୍ୟ ପ୍ରାଣୀ । ତାଙ୍କୁ କେବଳ ଏତିକି ପାଇଁ ଖୁସି ଲାଗୁଥାଏ ଯେ ଲୋକେ ତାଙ୍କ ପାଖେ ଠିଆ ହୋଇଥାନ୍ତି ଓ ତାଙ୍କର ଏକମାତ୍ର କାମନା ଥାଏ ଯେ ଏଇ ଲୋକେ କାଳେ ତାଙ୍କୁ ଟିକିଏ ସାହାଯ୍ୟ କରିବେ ଓ କାଳେ ତାଙ୍କୁ ପୁଣି ଜୀବିତ ଅବସ୍ଥାକୁ ଫେରାଇ ଆଣିବେ ! ଜୀବନକୁ ବର୍ତ୍ତମାନ ସେ ନୂଆରୂପରେ ଦେଖିଲେ ଓ ତେଣୁ ତାଙ୍କୁ ଲାଗିଲା

ଜୀବନ ଅତି ସୁନ୍ଦର । ଟିକିଏ ହଲ ଚଲ୍ ହେବାକୁ ଓ କୌଣସି ପ୍ରକାର ଶବ୍ଦ କରିବାକୁ ସେ ପ୍ରାଣପଣ ଚେଷ୍ଟାକଲେ । ସେ ଅତି ଦୁର୍ବଳ ଭାବରେ ଗୋଡ଼କୁ ସାମାନ୍ୟ ଭାବେ ହଲଚଲ କଲେ ଓ ଅତି ଦୁର୍ବଳ ରୁଗ୍ଣ ସ୍ୱରରେ କ୍ଷୀଣ ଆର୍ତ୍ତନାଦ କଲେ । ତହିଁରେ ସେ ନିଜେ ଅଭିଭୂତ ହୋଇପଡ଼ିଲେ । ନେପୋଲିଅନ୍ କହିଲେ "ଆଃ, ବଞ୍ଚିଛି ଯେ ! ଏଯୁବକଟିକୁ ଟେକ ନିଅନ୍ତୁ, ତାକୁ ରୋଗୀ ବୁହା ଗାଡ଼ିକୁ ନେଇଯାନ୍ତୁ ।" ସେତିକିବେଳେ ମାର୍ଶାଲ ଲ୍ନେସ ହସି ହସି ହାତରେ ଟୋପି ଧରି ବିଜେତାଙ୍କୁ ଯୁଦ୍ଧ ବିଜୟ ପାଇଁ ସମ୍ବର୍ଦ୍ଧନା ଜଣାଇବାକୁ ଘୋଡ଼ାଚଢ଼ି ନେପୋଲିଅନ୍ଙ୍କ ପାଖକୁ ମାଡ଼ିଆସିଲେ ଓ ନେପୋଲିଅନ୍ ତାଙ୍କୁ ଭେଟିବାକୁ ଚାଲିଗଲେ ।

ପ୍ରିନ୍ସ୍ ଆନ୍ଦ୍ରେ, ଆଉ କିଛି ମନେରଖି ପାରିଲେନାହିଁ । ତାଙ୍କୁ ଖଟିଆରେ ଶୁଆଇ ଦିଆଗଲା । ତାଙ୍କୁ ବୋହି ନେଲାବେଳେ ଧଡ଼ ଧଡ଼ ହେଉଥାଏ । ରୋଗୀ ଦେଖିବା ଛାଉଣୀରେ ତାଙ୍କର କ୍ଷତ ପରୀକ୍ଷା କରାଗଲା । ଏହି ସବୁ ଯୋଗୁଁ ତାଙ୍କର ଏଡ଼େ ତୀବ୍ର ଯନ୍ତ୍ରଣା ହେଉଥାଏ ଯେ ସେଇ ଯନ୍ତ୍ରଣାରେ ତାଙ୍କର ଚେତା ବୁଡ଼ିଗଲା । ସେ ଦିନର ଶେଷଆଡ଼କୁ ଯେତେବେଳେ ଅନ୍ୟାନ୍ୟ ରୁଷ୍ କର୍ମଚାରୀ, ଆହତ ଲୋକ ଓ ବନ୍ଦୀ-ମାନଙ୍କ ସଙ୍ଗେ ତାଙ୍କୁ ମଧ୍ୟ ଡାକ୍ତରଖାନାକୁ ନିଆଗଲା, ସେତିକିବେଳେ ତାଙ୍କର ଚେତା ଲେଉଟିଲା । ବାଟରେ ତାଙ୍କ ଦେହରେ ଆଉ ଟିକିଏ ବଳ ଆସିଥାଏ, ସେ ଚାରି ଆଡ଼କୁ ଅନାଇଁ ପାରୁଥାନ୍ତି ଓ କଥା କହିବା ଭଳି ବଳ ବି ତାଙ୍କଠି ଥାଏ ।

ତାଙ୍କର ହୋସ୍ ହେଲାମାତ୍ରେ ସେ ପ୍ରଥମେ ଯେଉଁ କଥା ଶୁଣିଲେ, ତାକୁ କହୁଥାନ୍ତି ଫରାସୀ ପକ୍ଷର ଜଣେ ଡାକ୍ତରଖାନା ଦାୟିତ୍ୱରେ ଥିବା ଜଣେ କର୍ମଚାରୀ । ସେ ତରବର ହୋଇ କହୁଥାନ୍ତି, "ଏମାନଙ୍କ ଏଇଠି ଅଟକିବାକୁ ପଡ଼ିବ । ସମ୍ରାଟ ଏଇକ୍ଷଣି ଏଠି ଆସି ପହଞ୍ଚିବେ । ଏହି ବନ୍ଦୀମାନଙ୍କୁ ଦେଖିଲେ ସେ ଭାରି ଖୁସି ହେବେ" । ଆଉ ଜଣେ କର୍ମଚାରୀ କହିଲେ, "ଆଜି ଏତେ ବନ୍ଦୀ ଧରା ପଡ଼ିଛନ୍ତି ! ଯେତେ ରୁଷ୍ ପକ୍ଷର ପ୍ରାୟ ସମୁଦାୟ ସୈନ୍ୟବାହିନୀ ! ବୋଧହୁଏ ଏତେ ବନ୍ଦୀଙ୍କୁ ଦେଖି ଦେଖି ସମ୍ରାଟଙ୍କୁ କ୍ଳାନ୍ତ ଲାଗିବଣି" ।

ପ୍ରଥମ ବକ୍ତା ଅଶ୍ୱାରୋହୀ ସୈନ୍ୟଦଳର ଧଳାପୋଷାକ ପିନ୍ଧିଥିବା ଜଣେ ଆହତ ରୁଷ୍ କର୍ମଚାରୀଙ୍କ ଆଡ଼କୁ ହାତ ଦେଖାଇ କହିଲା, "ହେଇ ଯେ, ଡେବେ ଲୋକେ କହୁଛନ୍ତି, ଏହି ଜଣକ କୁଆଡ଼େ ସମ୍ରାଟ ଆଲେକ୍‌ଜାଣ୍ଡରଙ୍କର ସବୁ ଅଙ୍ଗରକ୍ଷୀ ସୈନ୍ୟଙ୍କ ସେନାପତି ।" ବଲ୍‌କନ୍‌ସ୍କି ପ୍ରିନ୍‌ସ୍ ରେପ୍‌ନିନ୍‌ଙ୍କୁ ଚିହ୍ନିଲେ । ସେ ତାଙ୍କୁ ପିଟର୍ସବର୍ଗ ସହରରେ ବଡଲୋକଙ୍କ ସମାଜରେ ଦେଖିଥିଲେ ।ତାଙ୍କ ପାଖରେ ଅଶ୍ୱାରୋହୀ ଦଳର ଆଉଜଣେ କର୍ମଚାରୀ ଠିଆହୋଇଥାଏ । ତାର ବୟସ ୧୯ ବର୍ଷ । ସେ ବି ଆହତ ହୋଇଥାଏ ।

ନେପୋଲିଅନ୍ ତାଙ୍କ ଘୋଡ଼ାକୁ କଦମ ଉଠାଇଁ ଉଠାଇଁ ମାଡ଼ି ଆସି ଘୋଡ଼ା ଠିଆ କଲେ । ବନ୍ଦୀମାନଙ୍କୁ ଦେଖି ସେ ପଚାରିଲେ, "ଏମାନଙ୍କ ଭିତରେ ସବୁଠାରୁ ବଡ଼ ପାହ୍ୟାର କର୍ମଚାରୀ କିଏ ?"

ସେ ମାନେ ଦଳପତି ପ୍ରିନ୍‌ସ୍ ରେପ୍‌ନିନ୍‌ଙ୍କ ନାଁ କହିଲେ ।

ନେପୋଲିଅନ୍ ପଚାରିଲେ, "ସମ୍ରାଟ୍ ଆଲେକଜାଣ୍ଡରଙ୍କ ଅଶ୍ୱାରୋହୀ ସୈନ୍ୟବାହିନୀର ଆପଣ କ'ଣ ସେନାପତି ?"

ରେପନିନ୍ ଉତ୍ତର ଦେଲେ "ମୁଁ ଗୋଟିଏ ଦଳର ଦଳପତି ହୋଇଥିଲି ।" ନେପୋଲିଅନ କହିଲେ, "ଆପଣଙ୍କ ବାହିନୀ ସମ୍ମାନ ସହକାରେ ତାର କର୍ତ୍ତବ୍ୟ କରିଛି ।" ରେପ୍‌ନିନ୍ ଉତ୍ତରଦେଲେ, "ଜଣେ ଅତି ପ୍ରସିଦ୍ଧ ସେନାନାୟକଙ୍କ ତୁଣ୍ଡରୁ ପ୍ରଶଂସା ଶୁଣିବା ଯେ କୌଣସି ସୈନିକର ସବୁଠୁଁ ବଡ଼ ପୁରସ୍କାର ।

ନେପୋଲିଅନ୍ କହିଲେ, "ମୁଁ ସ୍ୱଇଚ୍ଛାରେ ଆପଣଙ୍କୁ ସେ ପୁରସ୍କାର ଦେଉଛି । ଆପଣଙ୍କ ପାଖରେ ଏ ଯୁବକଟି କିଏ ?" ପ୍ରିନ୍‌ସ ରେପ୍‌ନିନ କହିଲେ, "ସେ ଲେଫ୍‌ଟେନାଣ୍ଟ ସୁଚେଲେନ୍ ।"

ତାକୁ ଚାହିଁ ନେପୋଲିଅନ୍ ମୁରୁକ ମୁରୁକ ହସି କହିଲେ, "ସେ ଆମ ସଙ୍ଗରେ ଲଢ଼ିବେ ବୋଲି ଅତି ଅଳ୍ପ ବୟସରେ ଚାଲିଆସିଛନ୍ତି ।"

ସୁଚେଲେନ୍ ଭଙ୍ଗା ଭଙ୍ଗା ସ୍ୱରରେ କହିଲା, "ତାରୁଣ୍ୟ ଶୌର୍ଯ୍ୟ ପାଇଁ କୌଣସି ପ୍ରତିବନ୍ଧକ ନୁହେଁ ।"

ନେପୋଲିଅନ୍ କହିଲେ "ଅତି ଚମତ୍କାର ଉତ୍ତର ! ବାବୁ ତୁମେ ବହୁତ ଉନ୍ନତି କରିବ ।"

ନେପୋଲିଅନ୍ ବନ୍ଦୀ ସୈନିକଙ୍କ ପରିଦର୍ଶନ ଶେଷ କରିବେ ବୋଲି ପ୍ରିନ୍‌ସ ଆନ୍ଦ୍ରେଙ୍କୁ ତାଙ୍କ ଦୃଷ୍ଟି ଆଗକୁ ଠେଲ ଦିଆ ହୋଇଥିଲା ! ସେ ନେପୋଲିଅନ୍‌ଙ୍କ ଦୃଷ୍ଟି ଆକର୍ଷଣ ନକରି ରହିପାରିଲେନାହିଁ । ନେପୋଲିଅନ୍ ତାଙ୍କୁ ଯୁଦ୍ଧକ୍ଷେତ୍ରରେ ଦେଖିଲେ ବୋଲି ମନେ ପକାଇଲେ ଓ ତାଙ୍କ ସଙ୍ଗେ କଥା କହିଲାବେଳେ ତାଙ୍କୁ ଯୁବକ ବୋଲି ସମ୍ବୋଧନ କଲେ । ବଲ୍‌କନ୍‌ସ୍କିଙ୍କୁ ସେ ପ୍ରଥମେ ଦେଖିଲାମାତ୍ରେ 'ଯୁବକ' ବୋଲି ଶବ୍ଦଟି ତାଙ୍କ ସ୍ମୃତିସଙ୍ଗେ ଜଡ଼ିତ ହୋଇଯାଇଥିଲା ।

"ଆଜି ଆପଣ ଯୁବକ—ଆପଣଙ୍କୁ କେମିତି ଲାଗୁଛି ବୀର ଯୁବକ ?" ସେ ତାଙ୍କୁ ପଚାରିଲେ ।

ଏହାର ପାଞ୍ଚ ମିନିଟ୍ ଆଗରୁ ପ୍ରିନ୍‌ସ୍ ଆନ୍ଦ୍ରେ ତାଙ୍କୁ ଆଣୁଥିବା ସୈନିକମାନଙ୍କୁ ଅଳ୍ପ ଅଳ୍ପ କଥା କହି ପାରିଲେ ବି ସେ ବର୍ତ୍ତମାନ ତୁନି ହୋଇ ରହିଲେ । ତାଙ୍କର ଦୃଷ୍ଟି ସିଧା ସଳଖ ନେପୋଲିଅନ୍‌ଙ୍କ ଉପରେ ଲାଗିଥାଏ । ଯେଉଁ ଉନ୍ନତ ସତ୍ ଦୟାଳୁ ଆକାଶକୁ ସେ ଦେଖିଥିଲେ ଆଜି ଚିହ୍ନିଥିଲେ ତା ସହିତ ତୁଳନା କଲାବେଳକୁ ନେପୋଲିଅନ୍‌ଙ୍କ ମନ ଯେତେ ଯେତେ ବିଷୟରେ ଆଚ୍ଛନ୍ନ ଥାଏ, ସେ ସବୁ ତାଙ୍କୁ ସେହି ମୁହୂର୍ତ୍ତରେ ଏତେ ତୁଚ୍ଛ ଲାଗୁଥାଏ, ତୁଚ୍ଛ ଗର୍ବ ଓ ବିଜୟ ଆନନ୍ଦରେ ମଣ୍ଡିତହୋଇ ତାଙ୍କର ଆଦର୍ଶ ନେପୋଲିଅନ୍ ତାଙ୍କୁ ସେତେବେଳେ ଏତେ ସାନ ଦେଖା-ଯାଉଥାନ୍ତି ଯେ ସେ ତାଙ୍କ କଥାର ଉତ୍ତର ଦେଇପାରିଲେନାହିଁ । ରକ୍ତକ୍ଷୟଜନିତ ଦୁର୍ବଳତା, ଯନ୍ତ୍ରଣା, ମୃତ୍ୟୁର ସାନ୍ନିଧ୍ୟ ଏହି ସବୁ କାରଣରୁ ତାଙ୍କ ମନ ଭିତରେ ଯେଉଁ ପ୍ରଶାନ୍ତ ଗମ୍ଭୀର ଭାବର ଧାରା ଛୁଟିଥାଏ, ତାହାର ପାଖରେ ଥୋଇ ଅନ୍ୟ କଥାକୁ ଭାବିଲାବେଳକୁ ତାଙ୍କୁ ଅନ୍ୟ ସବୁ କଥା ଅତି ତୁଚ୍ଛ, ଅତି ମୂଲ୍ୟହୀନ ଲାଗୁଥାଏ । ନେପୋଲିଅନ୍‌ଙ୍କ ଆଖିକୁ ଅନାଇ ରହି ପ୍ରିନ୍‌ସ୍ ଆନ୍ଦ୍ରେ ଭାବୁଥାନ୍ତି ବଡ଼ ପଣର ତୁଚ୍ଛତା ବିଷୟରେ, ଜୀବନର ତୁଚ୍ଛତା ବିଷୟରେ, ଯେଉଁ ଜୀବନର ଅର୍ଥ କ'ଣ, ତାତ୍ପର୍ଯ୍ୟ କ'ଣ, କେହି ବୁଝିପାରିବେ ନାହିଁ ଆଉ, ଆହୁରି ବେଶି ମୃତ୍ୟୁର ତୁଚ୍ଛତା ବିଷୟରେ, ଯେଉଁ ମୃତ୍ୟୁର ଅର୍ଥକୁ କୌଣସି ଜୀବନ୍ତ ଲୋକ ବୁଝିପାରିବେ ନାହିଁକି ବୁଝାଇ ପାରିବନାହିଁ ।

ସମ୍ରାଟ ନେପୋଲିଅନ ତାଙ୍କଠାରୁ ଉତ୍ତର ପାଇବେ ବୋଲି ଅଳ୍ପ-ବେଳ ବୃଥାରେ ଠିଆହୋଇ ରହିଲାପରେ ସେଠୁ ଚାଲିଯାଇ ସେହି ଦଳର ଦାଇତ୍ବରେ ଥିବା ଜଣେ କର୍ମଚାରୀଙ୍କୁ କହିଲେ, ଏ ଭଦ୍ରଲୋକ-ମାନଙ୍କର ଯେମିତି ସେମାନେ ଯତ୍ନ ନିଅନ୍ତି ସେ ବିଷୟରେ ଟିକିଏ ଦେଖିବେ । ଏମାନଙ୍କୁ ମୋ ଡାକ୍ତର ପାଖକୁ ପଠାଇଦେବେ । ମୋ ନିଜ ଡାକ୍ତର ଲାର୍ ତାଙ୍କ କ୍ଷତ ଆଦିକୁ ଚିକିତ୍ସା କରନ୍ତୁ ! ହଉ ନମସ୍କାର; ମୁଁ ଯାଉଛି ପ୍ରିନ୍ସ୍ ରେପନିନ୍ । ଘୋଡ଼ା ଚଢ଼ି ଚାଲିଗଲେ ।

ଆନନ୍ଦ ଓ ଆତ୍ମତୃପ୍ତିରେ ତାଙ୍କ ମୁହଁ ସତେ କି ଦାଉ ଦାଉ ହୋଇ ଜଳୁଥାଏ ।

ପ୍ରିନ୍ସ୍ ଅନ୍ଦ୍ରେଙ୍କ ଭଉଣୀ ପ୍ରିନ୍ସେସ୍ ମେରିଆ ତାଙ୍କ ବେକରେ ରୂପାର ଗୋଟିଏ ଟିକି ଠାକୁର ମୂର୍ତ୍ତିଟିଏ ଝୁଲାଇ ଦେଇଥିଲେ । ଯେଉଁ ସୈନ୍ୟମାନେ ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ବୋହି ନେଉଥାନ୍ତି, ତାଙ୍କ ଦୃଷ୍ଟି ତା ଉପରେ ପଡ଼ିବାରୁ ସେମାନେ ତାକୁ ଖୋଲି ନେଇ ଯାଇଥିଲେ । ତା'ପରେ ସେମାନେ ଯେତେବେଳେ ଦେଖିଲେ ଯେ ବନ୍ଦୀମାନଙ୍କ ପ୍ରତି ସମ୍ରାଟ କିପରି ଦୟା ଦେଖାଇଲେ' ସେତେବେଳେ ସେମାନେ ତରତର ହୋଇ ସେଇଟିକୁ ଆଣି ପୁଣି ତାଙ୍କ ବେକରେ ପିନ୍ଧାଇ ଦେଲେ ।

ପ୍ରିନ୍ସ୍ ଆନ୍ଦ୍ରେ ଦେଖି ପାରିଲେ ନାହିଁ କିଏ ସେଇଟିକୁ ପୁଣି ତାଙ୍କୁ ପିନ୍ଧାଇଦେଲା, କି କିପରି ପୁଣି ତା କରିଦେଲା, କିନ୍ତୁ ହଠାତ୍ ସେ ଦେଖିଲେ ଯେ ତାଙ୍କ ପୋଷାକ ଉପରେ ତାଙ୍କ ଛାତି ଉପରେ ସେହି ପୂଜାହେବା ପଦକଟି ତା ସରୁ ରୁପା ଶିକୁଳିରେ ଗୁନ୍ଥାହୋଇଛି ।

ତାଙ୍କ ଭଉଣୀ ଏତେ ଶରଧାରେ ଆଉ ଏତେ ଭକ୍ତିରେ ତାଙ୍କ ବେକରେ ସେ ଯେଉଁ ମୂର୍ତ୍ତିଟିକୁ ଝୁଲାଇଦେଇଥିଲା, ସେଥିରେ ନଜର ପଡ଼ିଯିବାରୁ ପ୍ରିନ୍ସ୍ ଆନ୍ଦ୍ରେ ଭାବିଲେ, 'ମେରିକୁ ସବୁ ଯେମିତି ପରିଷ୍କାର ଆଉ ସରଳ ଜଣାପଡ଼େ, ସବୁ ଯଦି ସତରେ ସେମିତି ହୋଇଥାନ୍ତା, ତେବେ କେଡ଼େ ଭଲ ହୋଇଥାନ୍ତା । ଯଦି ଯାଣି ହୁଅନ୍ତା ଏ ଜୀବନରେ ଥିବାଯାକେ କେଉଁଠୁ ସାହାଯ୍ୟ ଖୋଜିଲେ ମିଳିବ, ପୁଣି ଏ ଜୀବନ ଗଲାପରେ କବରରେ ପୋତା ହେଲାପରେ ମଣିଷର କି' ଅବସ୍ଥା ହେବ, ତେବେ କେଡ଼େ ଭଲ ହୁଅନ୍ତା !

ଯଦି ଏ ମୁହୂର୍ତ୍ତରେ ମୋ ଦେଇ ଖାଲି ଏତିକି କହି ହୁଅନ୍ତା "ହେ ପ୍ରଭୁ ମୋତେ ଦୟାକର" ! ମୁଁ କି ଆନନ୍ଦ କି ଶାନ୍ତି ପାଆନ୍ତି ! କିନ୍ତୁ ଏକଥା ମୁଁ କହିବି କାହାକୁ ? ହୁଏତ ସେ ଏକ ଅସୀମ, ଅପରିକଳ୍ପନୀୟ ଶକ୍ତି, ଯାହାକୁ ଜଣାଣ କରିବାକୁ ମୋର ଶକ୍ତିନାହିଁ ନାନା ଫଣସୁ ଓ ଯନ୍ତ୍ରଣାରେ ସନ୍ତୁଳିତ ହେଲେ । ସେ ମହାପୂର୍ଣ୍ଣ ଅଥବା ମହାଶୂନ୍ୟ । ନହେଲେ କିଏ ସେ ସେହି ଈଶ୍ବର ଯାହାଙ୍କୁ ମେରି ଏଇ ପଦକ ଭିତରେ ପୁରେଇ ଦେଇ ସିଲାଇ କରିଦେଇଛି ? କିଛିନାହିଁ, କିଛି ନିଶ୍ଚିତ ନୁହେଁ ।

ଯେଉଁ ଡୋଲିମାନଙ୍କରେ ଶୁଆଇ ରୋଗୀମାନଙ୍କୁ ବୋହି ନିଅନ୍ତି, ପୁଣି ସେସବୁ ଆଗକୁ ଚାଲିଲା । ପୁଣି ପ୍ରତିଥର ଝାଙ୍କ ଲାଗିଲେ ତାଙ୍କୁ ଅସହ୍ୟ ଯନ୍ତ୍ରଣାବୋଧ ହେଲା । ତାଙ୍କ ଜ୍ୱର ବଢ଼ିଗଲା । ସେ ବାଉଳା ଗୁଉଳା ହେଲେ ।

ତାଙ୍କ ବାପା, ସ୍ତ୍ରୀ, ଭଉଣୀ ତାଙ୍କ ଯେଉଁ ପୁଅ ହେବ ସେ, ଏହିମାନଙ୍କୁ ସେ ସ୍ୱପ୍ନ ଦେଖିଲେ । ଯୁଦ୍ଧ ଲାଗିବା ଆଗ ରାତିରେ ତାଙ୍କ କଥା ଭାବି ତାଙ୍କର ଯେପରି ମନ ନରମି ଯାଇଥିଲା, ସ୍ୱପ୍ନରେ ସେଇଆ ଭାବିଲେ । ତାଙ୍କ ଜରବାଉଳା ସ୍ୱପ୍ନର ଅନ୍ୟାନ୍ୟ ବିଷୟବସ୍ତୁ ହେଲେ ଛୋଟିଆ ମଣିଷ ନେପୋଲିଅନ୍ ଓ ଯାହା ଯାହା ସ୍ୱପ୍ନରେ ବିଶୁଥାଏ ସବା ଉପରେ କେଉଁ ଉଚ୍ଚରେ ବିଶାଳ ଆକାଶ । ତାଙ୍କର କଳ୍ପନା ଆଗରେ ଭାସି ଉଠିଲା ତାଙ୍କ ଘର 'ଲିଣ୍ଡା ପାହାଡ଼'ରେ ତାଙ୍କର ନିଚ୍ଛିଟିଆ ଘରକରଣା, ଆଉ ସେ ଘରର ଶାନ୍ତି ଆନନ୍ଦ । ସ୍ୱପ୍ନରେ ସେ ସେହି ସୁଖକୁ ଅନୁଭବ କରୁକରୁ ହଠାତ୍ ତାଙ୍କ ସ୍ୱପ୍ନରେ ଦେଖାଦେଲେ ନେପୋଲିଅନ୍, ସେ ଗୋଟାଏ ଛୋଟିଆ ମଣିଷ, ତାଙ୍କ ମୁହଁରେ ଯେଉଁ ଆନନ୍ଦର ଭଙ୍ଗୀ ଉଠୁଥାଏ, ସେଇଟା ମନର ଦୁଃଖ ଦେଖି ସେ ଦୁଃଖ ପ୍ରତି ଉଦାସୀନ ସଙ୍କୀର୍ଣ୍ଣ ମନର ନିଷ୍ଠୁର ଆନନ୍ଦର ଭଙ୍ଗୀ । ଯାହାକୁ ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ । ତା ପରେ ପ୍ରିନ୍ସ ଆନ୍ଦ୍ରେ ନାନା ଫଣସୁ ଓ ଯନ୍ତ୍ରଣାରେ ସନ୍ତୁଳିତ ହେଲେ । କେବଳ ଖାଲି ଏତିକି ମାତ୍ର ନିଶ୍ଚିତ ଯେ ଯେତେ ଯାହା ଆମେ ଜାଣିପାରୁଛୁ କି ଇନ୍ଦ୍ରିୟଦ୍ୱାରା ଗ୍ରହଣ କରିପାରୁଛୁ ସେ ସବୁ ଅସ୍ତିତ୍ୱହୀନ ଶୂନ୍ୟ ଓ ତା ବାହାରେ ଥିବା କୌଣସି ଅତିରିକ୍ତ କଳ୍ପନୀୟ ଅଜ୍ଞେୟ ଓ ଅଧିକ ଗୁରୁତ୍ୱପୂର୍ଣ୍ଣ ପଦାର୍ଥର ଐଶ୍ୱର୍ଯ୍ୟ ହିଁ ଧ୍ରୁବ ନିଶ୍ଚିତ । ଆକାଶ ହିଁ ଶାନ୍ତିର ଆଶ୍ୱାସ ଦେଲା । ସଂକାଳ

ଆଡ଼କୁ ସଜ୍ଞାହୀନତା ଓ ବିସ୍ମୃତିର ପ୍ରଳୟ ଓ ଅନ୍ଧାର ଭିତରେ ତାଙ୍କର ସବୁଯାକ ସ୍ୱପ୍ନ ମିଶିଯାଇ କୁଆଡ଼େ ଚାଲିଗଲା । ନେପୋଲିଅନ୍‌ଙ୍କ ଡାକ୍ତର ଲରି ଭାବିଲେ ଯେ ଏ ଅବସ୍ଥା ଶେଷରେ ଆରୋଗ୍ୟ ହେବା ଅପେକ୍ଷା ପ୍ରାଣ ଛାଡ଼ିଯିବା ହିଁ ଅଧିକ ସମ୍ଭବ ।

ଲରି କହିଲେ, ତାଙ୍କର ସ୍ନାୟୁ ବିଗିଡ଼ି ଯାଇଛି । ପିତ୍ତ ବଢ଼ିଛି । ଏ ରୋଗୀ ବଞ୍ଚିବ ନାହିଁ ।”

ବଞ୍ଚିବାକୁ ଯାହାଙ୍କର ଆଶା ନଥିଲା, ସେଭଳି ଅନ୍ୟାନ୍ୟ ରୋଗୀଙ୍କ ସହିତ ପ୍ରିନ୍‌ସ୍ ଆନ୍ଦ୍ରେଙ୍କୁ ମଧ୍ୟ ସେ ଜିଲାର ବାସିନ୍ଦାଙ୍କ ହାତରେ ସମର୍ପଣ କରାହୋଇଥିଲା ।

———

